# କୁନ୍ତଳାକୁମାରୀ ଗ୍ରନ୍ଥାବଳୀ

କାବ୍ୟଖଣ୍ଡ

ସମ୍ପାଦନା :
ଡକ୍ଟର ହେମନ୍ତ କୁମାର ଦାସ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

# କୁନ୍ତଳାକୁମାରୀ ଗ୍ରନ୍ଥାବଳୀ
(କାବ୍ୟଖଣ୍ଡ)

ସମ୍ପାଦନା :
ଡକ୍ଟର ହେମନ୍ତ କୁମାର ଦାସ

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦ ବିହାରୀ
କଟକ - ୭୫୩ ୦୦୨

ପ୍ରଥମ ସଂସ୍କରଣ : ୨୦୦୪

ମୁଦ୍ରଣ :
ସଂଗୀତା ପ୍ରିଣ୍ଟର୍ସ, କଟକ

ପ୍ରଚ୍ଛଦ : ଶଶୀକାନ୍ତ ରାଉତ୍

ମୂଲ୍ୟ : ଟ. ୨୨୦-୦୦

# KUNTALAKUMARI GRANTHAVALI
**(Kabyakhanda)**

**Compiled by :**
Dr. Hemant Kumar Das

**Publisher :**
Sri Gangadhar Tripathy
**Prachi Sahitya Pratisthan**
Binodbihari
Cuttack - 753 002

First Edition 2004

**Cover Design :** Sasikanta Rout

**Printer :**
Sangita Printers, Cuttack

**Price : Rs.220-00**

# ମୁଖବନ୍ଧ

କୁନ୍ତଳାକୁମାରୀ (୧୯୦୧-୧୯୩୮)ଙ୍କ କଥା ଉଠିଲେ ମନକୁ ଆସେ ପାହାନ୍ତି ତାରା ପରି ସଦା ଛଳଛଳ, ଶାନ୍ତ ସାଗର ପରି ଗଭୀର ଓ ବର୍ଣ୍ଣିଳ, ଜାତୀୟତାର ଭାବନାରେ ପ୍ରତିନିୟତ ଚଞ୍ଚଳ, ବୈପ୍ଳବିକତାର ସ୍ଫୁଲିଙ୍ଗରେ ପ୍ରୋଜ୍ଜ୍ୱଳ ତଥା ମାନବିକତାର ଭାବନାରେ ତରଳ ଏକ ଚିର ଅଶାନ୍ତ ମାତୃମୂର୍ତ୍ତି। ନିଜକୁ ସମ୍ପୂର୍ଣ୍ଣରୂପେ ଉଜାଡ଼ି, ସଂସାରକୁ ଆଉ ସମାଜକୁ କେବଳ ଦାନ କରିବାର ଦୀକ୍ଷା ନେଇ ସେ, ଏ ଦୁନିଆକୁ ଆସିଥିଲେ। ସୃଷ୍ଟିର ଶୋଷିତ, ଲାଞ୍ଛିତ ଆଉ ଆର୍ତ୍ତ ଜନତା ଉପରେ କରୁଣାର ଆସାର ହୋଇ ବର୍ଷିଯିବାକୁ, ସମସ୍ତଙ୍କ ପାଦତଳେ ତୃଣଟିଏ ହୋଇ ଅକିଞ୍ଚନ ଭଳି ଜୀବନ ବିତାଇ ଦେବାହିଁ ଥିଲା ତାଙ୍କର ସ୍ୱପ୍ନ। ସେ ଅହରହ ସ୍ୱପ୍ନ ଦେଖୁଥିଲେ 'ନିଜର ସର୍ବସ୍ୱ ଦେଇ ଓଡ଼ିଆମାନଙ୍କୁ ପାଠ ପଢ଼ାଇବେ। ସେମାନଙ୍କୁ ମଣିଷ କରି ଗଢ଼ିବେ। ବିଶ୍ୱର କୌଣସି ଶକ୍ତି ଦେଢ଼କୋଟି ଶିକ୍ଷିତ ଲୋକଙ୍କୁ ପାଦତଳେ ଚାପି ରଖିପାରିବ ନାହିଁ। ଯେଉଁ ଜାତିର ଅତୀତ ଏତେ ଉଜ୍ଜ୍ୱଳ, ତାହାର ବର୍ତ୍ତମାନ କେବେହେଲେ ଲକ୍ଷ୍ୟହୀନ ହୋଇନପାରେ।

କୁନ୍ତଳାକୁମାରୀ ସ୍ୱପ୍ନ ଦେଖୁଥିଲେ। ଆବେଗରେ ଢ଼ୁଳୁଢ଼ୁଳୁ ରସସିକ୍ତ କବିର୍ ମନଟିଏ ନେଇ ସେ ନିଜ ଜନ୍ମଭୂମିର (ହାୟ, ଏଇ ଦୁର୍ଭାଗା ଦେଶ ତାଙ୍କର ଜନ୍ମଭୂମି ସୁଦ୍ଧା ନଥିଲା) ଊଷର ମରୁକୁ ପ୍ଳାବିତ କରି ବହିଯିବା ପାଇଁ ବ୍ୟାକୁଳ ହୋଇପଡୁଥିଲେ। କେବଳ ଭାରତୀୟ ଦରବାରରେ ନୁହେଁ, ବିଶ୍ୱ ଦରବାରରେ ଯେମିତି ଓଡ଼ିଆ ନିଜସ୍ୱ ପରିଚୟର ମର୍ଯ୍ୟାଦାରେ ମୁଣ୍ଡଟେକି ଠିଆ ହୋଇପାରେ, ଏହାହିଁ ଥିଲା ତାଙ୍କ ଜୀବନକାଳର ସଂକଳ୍ପ। ଆଜି ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ଜୀବନର ମାତ୍ର ସତରଟି ବର୍ଷର (୧୯୨୧-୩୮) କର୍ମମୟ ଜୀବନ ମଧ୍ୟରୁ ଓଡ଼ିଶାରେ ରହଣି ସାତଟି ବର୍ଷ। ୧୯୨୮ରେ ସେ ଦିଲ୍ଲୀ ଚାଲିଯାଆନ୍ତି ଏବଂ ସେଠାରେ ୧୯୩୮ରେ ତାଙ୍କର ମୃତ୍ୟୁ ହୋଇଯାଏ। ପ୍ରଥମ ଏକୋଇଶ ବର୍ଷ ହେଉଛି ତାଙ୍କର ସଂଗ୍ରାମର ପର୍ବ - ଭବିଷ୍ୟତ ନିମନ୍ତେ ନିଜକୁ ପ୍ରସ୍ତୁତ କରିବାର ପର୍ବ। ବସ୍ତରରେ ଜନ୍ମ, ପିତାଙ୍କ ସହିତ ବର୍ମା ଯାତ୍ରା, ସେଠାରେ ପ୍ରାଥମିକ ଶିକ୍ଷାର ଆରମ୍ଭ, ୧୯୧୫ରେ ବର୍ମାରୁ ଚିରଦିନ ପାଇଁ ବିଦାୟ ନେଇ ଓଡ଼ିଶା ଆଗମନ। ୧୯୧୭ରେ କିଛିଦିନ ପାଇଁ ରେଭେନ୍ସା ବାଳିକା ବିଦ୍ୟାଳୟରେ ଛାତ୍ରୀତ୍ୱ ବରଣ। ୧୯୧୮ରେ ସେ ସମୟର ମେଡ଼ିକାଲ ସ୍କୁଲରେ ଯୋଗଦାନ ଏବଂ ୧୯୨୧ରେ ସେଠାରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସାଧାରଣ ଜୀବନରେ ପ୍ରବେଶ - ମୋଟାମୋଟି ଭାବରେ ଏହାହିଁ ହେଉଛି ତାଙ୍କର ସଂକ୍ଷିପ୍ତ ଜୀବନପଞ୍ଜି।

ମାତ୍ର ଏକୋଇଶ ବର୍ଷର ତରୁଣୀ। ସଂସାରର ଜଟିଳତାର ଆଭାସ ଅଛି। ମାତ୍ର ନାହିଁ କୌଣସି ଅଭିଜ୍ଞତା। ଦୁର୍ବଳ କାନ୍ଧରେ ବୃଦ୍ଧ ସାନବାପା, ସାନମା, ଅସହାୟ ଆତ୍ମମର୍ଯ୍ୟାଦା ସମ୍ପନ୍ନା ଜନ୍ମଦାତ୍ରୀ ଆଉ ଚାରୋଟି ଛୋଟଛୋଟ ଭାଇଭଉଣୀଙ୍କ ଭାର। ମୁଣ୍ଡ ଉପରେ କୌଣସି ସମର୍ଥ ପୁରୁଷର ବରାଭୟ ହସ୍ତ ନାହିଁ। ପିତା ଦାନିଏଲ୍‌ଙ୍କ ଠାରୁ ୧୯୧୫ରୁ ସମସ୍ତ ପାରିବାରିକ ସମ୍ପର୍କ ଛିନ୍ନ ହୋଇସାରିଥିଲା। ପନ୍ଦର ବର୍ଷର କିଶୋରୀ - ସେତେବେଳେ କି ସ୍ୱପ୍ନ ଦେଖେ, ସାବତ ପରିବାର ଦୁର୍ଯ୍ୟୋଗର ଏ ଯେଉଁ ମହାବାତ୍ୟାରେ ନିଶ୍ଚିହ୍ନ ହୋଇଯିବାକୁ ବସିଛି, କୌଣସିମତେ ତହିଁରୁ ତାକୁ ଉଦ୍ଧାର କରିବାକୁ ହେବ। କୂଳରେ ଲଗାଇବାକୁ ହେବ ପରିବାରର ଜର୍ଜର ନୌକାକୁ।

୧୯୨୧ରେ ଡାକ୍ତର ହୋଇ ବାହାରି ଆସିବା ପରେ ପାଦତଳେ ଅନ୍ତତଃ ମାଟିର ସନ୍ଧାନ ମିଳିଥିଲା। ଜୀବନରେ କିଛି କରିପାରିବାର ବିଶ୍ୱାସ ମନର ନିଭୃତ କୋଣରେ ମୁଣ୍ଡଟେକି ଉଠୁଥିଲା। ମାତ୍ର ତାହା ତାଙ୍କର ସଂକ୍ଷିପ୍ତ ଜୀବନକାଳ ମଧ୍ୟରେ ଆଉ ସମ୍ଭବ ହୋଇପାରିଲା ନାହିଁ। ଚିର ଅଶାନ୍ତ ଏହି ଜୀବନ ନାଟକ ଉପରେ ଶେଷରେ ଯେତେବେଳେ ପର୍ଦ୍ଦା ନଇଁ ଆସିଲା, ସେତେବେଳେ କୁନ୍ତଳାଙ୍କୁ ମୋଟେ ୩୮ ବର୍ଷ। ଅସ୍ଥିର ପକ୍ଷୀଟି ତା'ର ନୀଡ଼କୁ ଫେରିଗଲା। ପଛରେ ଛାଡ଼ିଦେଇଗଲା ତିନୋଟି ନାବାଳକ ସନ୍ତାନ ଆଉ ସ୍ୱାମୀ? କେଜାଣି!

କୁନ୍ତଳା ବୋଧହୁଏ ଏକ ଭୟଙ୍କର ଦୁର୍ଦ୍ଦୈବକୁ ସାଙ୍ଗରେ ଧରି ଜନ୍ମ ହୋଇଥିଲେ। ଏହା ବିରୁଦ୍ଧରେ ପ୍ରତିବାଦ କରାଯାଇପାରେ, ମାତ୍ର ପ୍ରତିକାର ମିଳେନାହିଁ। ସ୍ୱୟଂ ସୃଷ୍ଟିକର୍ତ୍ତା ମଧ୍ୟ ଏଥିପାଇଁ ଅସହାୟତା ପ୍ରକାଶ କରନ୍ତି। ଏହି କଥା ଭଗବାନ୍ ଶ୍ରୀକୃଷ୍ଣ ମହାଭାରତରେ କହିଛନ୍ତି। ତାଙ୍କ ମତରେ,

''ଅହଂ ହି ତତ୍ କରିଷ୍ୟାମି ପରଂପୁରୁଷକାରତଃ,
ଦୈବଂ ତୁ ନ ମୟାଶକ୍ୟଂ କର୍ମ କର୍ତ୍ତୁଂ କଥଞ୍ଚନ।'' — ଉଦ୍‌ଯୋଗ ପର୍ବ - ୭୮ଅଂ

ଅର୍ଥ - ''ମୁଁ ପୁରୁଷକାର ପ୍ରକାଶ କରିପାରେ। ମାତ୍ର ଦୈବ ବିରୁଦ୍ଧରେ ଅସ୍ତ୍ର ଉଠାଇବାର କ୍ଷମତା ମୋର ନାହିଁ।''

ଦୁର୍ଦ୍ଦୈବ ନିକଟରେ ସ୍ୱୟଂ ଭଗବାନ ଯେଉଁଠି ଏତେ ଅସହାୟ, ସେତେବେଳେ ମାତ୍ର ଦି'କଡ଼ାର ଜୀବ ମଣିଷ କଥା ବା କ'ଣ କହିବା? କୁନ୍ତଳା ତେଣୁ ଜୀବନକାଳ ମଧ୍ୟରେ ଏହାରି ଶିକାର ହୋଇଛନ୍ତି। ଅସହାୟ ଏକ କନ୍ଦୁକ ଭଳି ଗୋଟିଏ ବିନ୍ଦୁରୁ ଆଉ ଏକ ବିନ୍ଦୁକୁ ଉଡ଼ିଯାଇଛନ୍ତି। ଟିକିଏ ସୁଖର ସନ୍ଧାନରେ କାହାକୁ ଜାବୁଡ଼ି ଧରିବାକୁ ଦୁର୍ବଳ ଚେଷ୍ଟା କରିଛନ୍ତି। ମାତ୍ର ସଫଳତା ମିଳିନାହିଁ। ପାଦରୁ ପାଦକୁ ନୂପୁର ଭଳି ବାଜିଯିବା ହୋଇଛି ଯାହାର ନିୟତି, ସେ କାହୁଁ ଦୁଇଦଣ୍ଡ ଶାନ୍ତିରେ ରହିବାର ଦୁର୍ଲଭ ସୁଯୋଗ ଟିକିଏ ପାଆନ୍ତା?

ଆଜି ଏତେଦିନପରେ ସେଇ ଦୁର୍ଭାଗ୍ୟତାଡ଼ିତା ନାରୀଟିର ଜୀବନ କାହାଣୀ ଧରି ବିଶ୍ଳେଷଣ କରିବାକୁ ବସିଲେ ମନ ବିଷର୍ଣ୍ଣତାରେ ଭରିଯାଏ। ବାରମ୍ବାର ତାଙ୍କର ସ୍ରଷ୍ଟାଙ୍କୁ ପଚାରିବାକୁ ମନହୁଏ, କ'ଣ ତାଙ୍କର ଅପରାଧ? କେଉଁଥିପାଇଁ ବାଲ୍ୟକାଳରୁ ତାଙ୍କ ମୁଣ୍ଡ ଉପରୁ ସେଇ ଛାୟାଛନ୍ନ ବଟବୃକ୍ଷର ଶୀତଳତା ଟିକକ ଅପସରି ଗଲା, ଯାହାର ନାମ ପିତା? କେଉଁ ଅପରାଧରେ ମନର ମଣିଷ ଜଣକ ତାଙ୍କର ଆବେଗପ୍ରବଣ ହାତଟିକୁ ବାରମ୍ବାର ଫେରାଇଦେଇ କେବଳ ଶୁଷ୍କ ଉପଦେଶରେ କଣ୍ଟକିତ ଜୀବନ ପଥକୁ କୁସୁମିତ କରିବାର ପରାମର୍ଶ ଦେଇଗଲେ? ପୁଣି କେଉଁ ଦୋଷରୁ ତାଙ୍କର ଜୀବନ ଏଭଳି ଜଣକ ସହିତ ଯୋଡ଼ି ଦିଆଗଲା, ପ୍ରବଞ୍ଚନା ଆଉ ପ୍ରତାରଣା ହିଁ ହେଉଛି ଯାହାର ଜୀବନର ଭିତ୍ତି? ସେମାନେ ପୁରୁଷ – କୁନ୍ତଳାଙ୍କ ଜୀବନରେ ତିନି ଦୁଷ୍ଟଗ୍ରହ। ଜଣେ ପିତା, ଦ୍ୱିତୀୟ ଜଣକ ପ୍ରେମିକ ଏବଂ ଶେଷ ଜଣକ ହେଲେ ସ୍ୱାମୀ - ପରମ ଆତ୍ମୀୟ। ଯେଉଁଥିପାଇଁ ମଣିଷ ପରିବାର ଗଢ଼େ, ସ୍ନେହଶ୍ରଦ୍ଧା ଆଉ ଆତ୍ମୀୟତାର ବନ୍ଧନରେ ଜୀବନର ସମସ୍ତ ତିକ୍ତତାକୁ ଭୁଲିବାକୁ ଚାହେଁ - କୁନ୍ତଳାଙ୍କର ସେ ସମସ୍ତ ଥିଲା। ମାତ୍ର ତଥାପି ତାଙ୍କୁ ମିଳିଲା ନାହିଁ କିଛି। ଗୋଟିଏ ଭୟଙ୍କର ଦୁଃସ୍ୱପ୍ନ ଭଳି ଜୀବନ କେବଳ ବହିଗଲା ତା' ବାଟରେ।

ଏଭଳି ସ୍ଥିତିରେ ଜୀବନ ଯେମିତି ପ୍ରତିକ୍ରିୟାଶୀଳ ହୋଇଉଠିବା କଥା, ତା' କିନ୍ତୁ ହେଲାନାହିଁ। ଏ ଦୃଷ୍ଟିରୁ ତାଙ୍କର ଭାଗ୍ୟବିଧାତା ବୋଧହୁଏ ନିଜର ସମସ୍ତ କୋମଳତା ଦେଇ ତାଙ୍କୁ ଗଢ଼ିଦେଲେ। 'ବୃକ୍ଷଭଳି ସହିବାକୁ, ନଦୀ ତୁଲ୍ୟ ବହିବାକୁ, ପଦ୍ମ ଭଳି ଫୁଟି ସୁଗନ୍ଧ ବିତରଣ କରିବାକୁ, ଆଲୋକ ଭଳି ଅନ୍ଧାର ନାଶିବାକୁ, ଫୁଲଟିଏ ଭଳି ହସିବାକୁ ଆଉ ପର୍ବତ ପରାଏ ମୁଣ୍ଡଟେକି ଠିଆ ହେବାକୁ' ହିଁ ସେ ନିଜର ଧର୍ମ ମଣିଲେ। ଦିଆନିଆର ସଂସାରରେ ଜୀବନସାରା ପର ବୋଝ ମୁଣ୍ଡରେ ବୋହି ଦିନ କାଟିଲେ। ସେତେବେଳେ ଯଦି କିଏ ତାଙ୍କୁ ପ୍ରଶ୍ନ କରିଥାଆନ୍ତା- କାହିଁକି କରିବ ଅନ୍ୟର ଉପକାର? ସେଥିରେ ତମର କ'ଣ ଲାଭ'' - ସେ ନିଶ୍ଚୟ ଉତ୍ତର ଦେଇଥାଆନ୍ତେ- ''ଲାଭକ୍ଷତିକୁ ନେଇ ଜୀବନର ଯେଉଁ ଅଙ୍କ, ମୋତେ ତା' ଆସେ ନାହିଁ। ଫୁଲଟିଏ ତା'ର ଆପେ ଫୁଟେ। ଅନ୍ୟମାନଙ୍କୁ ବାସ୍ନା ବାଣ୍ଟିଯାଏ। ଅନ୍ୟମାନେ ତା' ପାଖୁଡ଼ା ଛିଣ୍ଡାଇ ପକାନ୍ତୁ, କି ତାକୁ ପାଦରେ ଦଳିଦିଅନ୍ତୁ, ସେ ତା'ର ଫୁଟିବ - କାରଣ ସେଇଟା ହିଁ ହେଉଛି ତା'ର ଧର୍ମ।'' ଏଇଭଳି ଦର୍ଶନ ଯେଉଁମାନଙ୍କର, ସଂସାରର ହିସାବରେ ସେମାନେ ସୁଖୀ ହୁଅନ୍ତି ନାହିଁ। କୁନ୍ତଳାକୁମାରୀ ମଧ୍ୟ ସୁଖ ପାଇନାହାନ୍ତି। ଜନ୍ମ ବସ୍ତରରେ - ବାଲ୍ୟ ଆଉ କୈଶୋର କଟିଲା ବର୍ମା ଆଉ ଖୋର୍ଦ୍ଧାରେ। ଛାତ୍ର ଜୀବନ ଆଉ କର୍ମ ଜୀବନର ପ୍ରଥମାର୍ଦ୍ଧ କଟକରେ - ଶେଷ ଜୀବନ ସୁଦୂର ଦିଲ୍ଲୀରେ। ସେଇଠି ପ୍ରତିଷ୍ଠା ଆଉ ମୃତ୍ୟୁ। ତାହାରି ଭିତରେ ଚିକିତ୍ସିକା ହିସାବରେ ଖ୍ୟାତି, ସମାଜସେବିକା ରୂପରେ ପ୍ରତିଷ୍ଠା ଆଉ ସାହିତ୍ୟିକ ରୂପରେ ଯଶପ୍ରାପ୍ତି। ସଂକ୍ଷିପ୍ତ ଜୀବନ ପାଇ ତିନୋଟି ଉଲ୍ଲେଖଯୋଗ୍ୟ କୃତିତ୍ୱ। ଦେଶପାଇଁ, ଜାତିପାଇଁ ପୁଣି ଭାଷାପାଇଁ ଅହରହ ଚିନ୍ତା - ଏ ସବୁ ତା'ରି ଭିତରେ।
ଜୀବନର ଲକ୍ଷ୍ୟ ସମ୍ପର୍କରେ କହନ୍ତି —

ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପେ ଦଗ୍ଧକ୍ଲିଷ୍ଟ କ୍ଳାନ୍ତି, ପଥଶ୍ରାନ୍ତ ପାନ୍ଥେ ଦେଉ ଛାୟା ଅବିଶ୍ରାନ୍ତ
ମହତ ହିତ ବ୍ରତର ଏ କି ତୋ ଦୃଷ୍ଟାନ୍ତ।
ଶିଖାଅ ହେବି ତୋ ସମ
ସୁବିନୀତ ନମ୍ର ମନ
ଅକାତରେ ଭବସେବା ଯାଉଥିବି କରି
ମୋ କ୍ଷୁଦ୍ର ଆୟାସେ ବହୁ କ୍ଳେଶ ନେବି ହରି
ପ୍ରତିଦାନେ ବିନା ହିତ କରିବି ତୋ'ପରି।

ପ୍ରତିଦାନ ବିନା ହିତ ସାଧନ ଯେଉଁ ଜୀବନର ଲକ୍ଷ୍ୟ, ସେଥିରେ ସାଂସାରିକ ସୁଖ ମିଳନ୍ତା କୁଆଡୁ? ନିଜର ବ୍ୟକ୍ତିଗତ ଜଞ୍ଜାଳଗ୍ରସ୍ତ ଜୀବନର ଫାଙ୍କେ ଫାଙ୍କେ ବନ୍ୟା ଦୁର୍ଭିକ୍ଷଗ୍ରସ୍ତ ଓଡ଼ିଆ ଜାତିର ମୁକ୍ତି ଚିନ୍ତାରୁ ବିରତ ନରହି କୁନ୍ତଳା ଭାବବିଭୋର ହୋଇ ଲେଖନ୍ତି —

ଉଠରେ ଓଡ଼ିଆ ହୁଅରେ ମଣିଷ
ମଣିଷ ମୁଣ୍ଡରେ ବିଧିର ଆଶିଷ
ମଣିଷ ହିସାବେ ପୂଜା ପାଅ ଭବେ
ନାଚି ଉଠୁ ରକ୍ତ ମଣିଷ ଗରବେ।

ଏହିଭଳି ଚିନ୍ତା ଯେଉଁ ଜୀବନରେ ତହିଁରେ ଐହିକ ସୁଖର ସ୍ଥିତି ସମ୍ଭବ ହୁଅନ୍ତା କିପରି ?

ତଥାପି ଜଣେ ନାରୀ ହିସାବରେ କୁନ୍ତଳାଙ୍କର ପାରିବାରିକ ସୁଖ କାମନା ଥିଲା। ଗୋଟିଏ ଶାନ୍ତ ଦ୍ୱନ୍ଦ୍ୱହୀନ ନିରୁପଦ୍ରବ ନୀଡ଼ର ସ୍ୱପ୍ନ ତାଙ୍କୁ ବାରମ୍ବାର ବ୍ୟସ୍ତବିବ୍ରତ କରି ରଖୁଥିଲା। ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ଯେଉଁ ପ୍ରୌଢ଼ ବ୍ୟକ୍ତି ଜଣକ ତାଙ୍କ ହୃଦୟରେ ଉଲ ପାଇବାର ତୀବ୍ର ଝଲକ ସୃଷ୍ଟି କରିଛନ୍ତି, ସେ ତାଙ୍କୁ ନିରାଶ କରିବେ ନାହିଁ। ପ୍ରେମିକ ଥିଲେ ହିନ୍ଦୁ, ପୁଣି ବିବାହିତ ଓ ଦୁଇ ସନ୍ତାନର ଜନକ। ପ୍ରେମ ଏ ସବୁ ବୁଝେନାହିଁ। ପ୍ରେମ ପୁଣି ଅଳ୍ପ ବୟସରେ ସ୍ୱାଭାବିକ। ଅଧିକ ବୟସରେ ଦୁଶ୍ଚିନ୍ତାର କାରଣ। ବାଟ ଅବାଟ ନମାନି ବହିଯିବାହିଁ ତା'ର ଧର୍ମ। ପ୍ରେମିକ ବୟସ୍କ, ଅଭିଜ୍ଞ ପୁଣି ବିବେଚକ। ସେ ହିଁ ଏଭଳି ବ୍ୟାପାରକୁ ପ୍ରଶୟ ଦେବା ପୂର୍ବରୁ ତାଙ୍କର ପ୍ରେମିକାଟିକୁ ବାଟ ଦେଖାଇ ପାରିଥାଆନ୍ତେ କିମ୍ବା ପରବର୍ତ୍ତୀକାଳରେ କୁନ୍ତଳା ଯେତେବେଳେ ବିବାହ ନିମନ୍ତେ ବ୍ୟସ୍ତ ହୋଇପଡ଼ିଲେ, ତାଙ୍କୁ ପରିସ୍ଥିତି ବୁଝାଇ ଦେଇ ଅନ୍ୟସ୍ଥାନରେ ବିବାହ କରିଯିବା ପାଇଁ ପ୍ରବର୍ତ୍ତାଇ ପାରିଥାଆନ୍ତେ। ମାତ୍ର ଏସବୁ କିଛି ନକରି ଯେମିତି ନିଜର ପୌରୁଷର ସାର୍ଟିଫିକେଟ୍ ଧରି ଗୋଟିଏ ଦଶନ୍ଧିକାଳ ତାଙ୍କୁ କେବଳ ଜଗି ବସିଲେ ଠିକ୍ ବାଘ ତା'ର ଶିକାରକୁ ପହରା ଦେଲାଭଳି। ଶିକାର ହୃଦୟର ରକ୍ତ କ୍ଷରଣ କ'ଣ ବାଘକୁ ଦିଶେ? କରୁଣ ହେଲେ ମଧ୍ୟ ଏହି ମନ୍ତବ୍ୟଟି ଏକାନ୍ତ ଭାବରେ ସତ୍ୟ। ତେବେ ପ୍ରାଥମିକ ଅବସ୍ଥାରେ କବି ହିସାବରେ ପ୍ରତିଷ୍ଠା ପାଇବା ନିମନ୍ତେ ଏହି ବ୍ୟକ୍ତିଙ୍କଠାରୁ କିନ୍ତୁ ଯଥେଷ୍ଟ ପ୍ରୋତ୍ସାହନ ମିଳିଥିଲା ଏବଂ ବୃତ୍ତିଗତ ପ୍ରତିଷ୍ଠା ପାଇଁ ମଧ୍ୟ ସେ କୁନ୍ତଳାଙ୍କୁ ଅକୃପଣ ଭାବରେ ସାହାଯ୍ୟ କରିଥିଲେ। କ'ଣ ତାଙ୍କ ମନରେ ଥିଲା, ଏକଥା କହିବା ବଡ଼ କଷ୍ଟ। ମଣିଷ କ'ଣ ମଣିଷକୁ ବୁଝିପାରେ ?

ଅଭିଶପ୍ତ ଏକ ଜୀବନଧାରା ଭିତରେ ଛନ୍ଦିହୋଇ ଶ୍ୱାସରୁଦ୍ଧକାରୀ ପରିବେଶରେ ସମୟ କଟାଉଥିବା ଏହି ନାରୀ ଜଣକ କିନ୍ତୁ କବିତ୍ୱର ସରୋବରରେ ଏକ ସୁବର୍ଣ୍ଣ କମଳ ତୁଲ୍ୟ ଫୁଟିଉଠି ସ୍ୱର୍ଗୀୟ ସୁରଭିରେ ନିଜର ପରିବେଶକୁ ଆମୋଦିତ କରିଥିଲେ। ରାଧାନାଥ-ମଧୁସୂଦନ-ଗଙ୍ଗାଧର ଏବଂ ନନ୍ଦକିଶୋର – ସେ ଯୁଗର ଏହି ପ୍ରତିଭାଧର କବିମାନଙ୍କଠାରୁ ସେ ଥିଲେ ସମ୍ପୂର୍ଣ୍ଣ ନିଆରା। ବର୍ମାରେ ଓଡ଼ିଆ ଭାଷା ଶିକ୍ଷାର ସାମାନ୍ୟ ସୁଯୋଗ। ସାମୟିକ ଖୋର୍ଦ୍ଧାରେ ରହଣି ସମୟରେ ଏଥି ନିମନ୍ତେ ଆଉ ଟିକିଏ ସୁଯୋଗପ୍ରାପ୍ତି ଏବଂ କଟକରେ ମାତ୍ର ଚାରିମାସର ସ୍କୁଲ ଜୀବନ - ଓଡ଼ିଆ ସାହିତ୍ୟ ସହ ପରିଚିତ ହେବା ନିମନ୍ତେ ମାତ୍ର ଏତିକି ଅବସର। ପ୍ରାଚୀନ ସାହିତ୍ୟ ତ ଆଦୌ ପଢ଼ିନଥିବାର ସମ୍ଭାବନା। ନିଜ ଜୀବନକାଳ ମଧ୍ୟରେ ପ୍ରାଚୀନ ସାହିତ୍ୟ ସହିତ ସମ୍ପର୍କ ଯୋଡ଼ିବାର ଆଉ କୌଣସି ସୁଯୋଗ ଆସି ନଥିଲା। ବିଶ୍ୱନାଥ କର ତାଙ୍କୁ ବୁଝାଇ ଦେଇଥିଲେ, ସେ ସବୁଥିରେ ଅଶ୍ଳୀଳତା ପୂରି ରହିଛି ଏବଂ ତାକୁ ପଢ଼ିଲେ ଚରିତ୍ର ଖରାପ ହୋଇଯିବ। ପଢ଼ିବା ଭିତରେ କିଛି ବଙ୍ଗଳା ଓ କିଛି ଇଂରାଜୀ ସାହିତ୍ୟ ପଢ଼ିଥିଲେ। ଡାକ୍ତରୀ ପାଠପଢ଼ା ଏବଂ ତା'ପରେ ଚିକିତ୍ସା ବୃତ୍ତି ଆରମ୍ଭ – ଏହାରି ଭିତରେ ଯେତିକି ମାତ୍ର ସମୟ ମିଳିବ, ସେତିକିରେ ଯାହା ସାହିତ୍ୟ ଚର୍ଚ୍ଚା। ଏହି ଅଧ୍ୟୟନ ଆଉ ସୀମିତ ଚିନ୍ତାର ପରିଣାମ ହେଉଛି ବାଇଶିବର୍ଷ ବୟସର ପ୍ରଥମ ଦୀର୍ଘ କବିତା 'ତାରାପ୍ରତି' (ଉତ୍କଳ ସାହିତ୍ୟ-୨୫ଶ ଭାଗ- ୩ୟ ସଂ - ୧୯୨୨) ସେଇ କବିତାରୁ ନବୀନ କବିଙ୍କର ଦର୍ଶନ-ମନନ ଓ ଚିନ୍ତନର ସ୍ୱରୂପ ଲକ୍ଷ୍ୟ କରାଯାଇପାରେ, ଯେଉଁଠି ସେ କହିଛନ୍ତି,

ହେଉ ବିଶ୍ୱସେବା ମୋ ଜୀବନବ୍ରତ, ଆସୁ ବାଧା, ଆସୁ ଦୁଃଖ ଶତଶତ,
ନହୁଏ ଯେହ୍ନେ ମୁଁ କ୍ଷଣକେ ନିରାଶ, ହେଉ କର୍ମ ଲକ୍ଷ୍ୟ, ବିଭୁପଦେ ଆଶ,
କର୍ତ୍ତବ୍ୟ ମହତ, କର୍ତ୍ତବ୍ୟ ଉଚିତ, କଲି ତାରା, ଆଜି ଜୀବନେ ନିହିତ।''

ଏହି କବିତାଂଶରେ ପ୍ରତିଫଳିତ ହୋଇଛି କବିଙ୍କର କାବ୍ୟାଦର୍ଶ, ଯାହା ପରବର୍ତ୍ତୀ କାଳରେ ତାଙ୍କର ବିପୁଳ ସୃଷ୍ଟି ମଧ୍ୟରେ ରୂପାୟିତ ହୋଇଥିଲା। ବିଶ୍ୱଜନୀନତା, ସେବା ପରାୟଣତା, ଆଶାବାଦିତା, ଅଟଳ ଭଗବତ୍ ବିଶ୍ୱାସ, କର୍ତ୍ତବ୍ୟ ପରାୟଣତା ତଥା ଅନମନୀୟ ମାନସିକ ଦୃଢ଼ତା – ମାତ୍ର ଗୋଟିଏ ପଦ କବିତାରେ କବି ଏ ସମସ୍ତ ପ୍ରକାଶ କରିଯାଇଛନ୍ତି। ଏହାକୁ ଆମେ ତାଙ୍କର ବିଭୁଦତ୍ତ ପ୍ରତିଭାର ପରିଣାମ ବୋଲି ସ୍ୱୀକାର କରିପାରିବା। ଡଃ ମାନସିଂହ କବିଙ୍କର ରଚନାରେ ଶିଳ୍ପକଳାର ଘୋର ଅଭାବ ଲକ୍ଷ୍ୟ କରି ମନ୍ତବ୍ୟ ଦିଅନ୍ତି, ''ବିଦେଶ-ବର୍ଦ୍ଧିତା ତରୁଣୀ କବିଙ୍କୁ ତାଙ୍କର ବନ୍ଧୁ ବା ଉପଦେଷ୍ଟାମାନେ ରଚନାର ଠିକ୍ ରାସ୍ତା ନଦେଖାଇ ପାରିଥିବା ଫଳରେ କୁନ୍ତଳାଙ୍କ ଗଦ୍ୟ ଓ ପଦ୍ୟ ଉଭୟରେ ଶିଳ୍ପକଳାର ଅଭାବ ଓତଃପ୍ରୋତ'' (ଓ.ସା.ଇ.ପୃ:୩୧୨)। ଡଃ ମାନସିଂହ ଏବଂ କୁନ୍ତଳାକୁମାରୀ ସମସାମୟିକ। ସବୁଜ ସାହିତ୍ୟର ପ୍ରଚଣ୍ଡ ପ୍ରସାର ଓ ପ୍ରଚାର କାଳରେ ଉଭୟ ମାନସିଂହ ଏବଂ କୁନ୍ତଳାକୁମାରୀ – ତହିଁର ସାହିତ୍ୟାଦର୍ଶ ଆଡ଼େ ଦୃକ୍‌ପାତ ନକରି ନିଜ ବାଟରେ ଏକ ଏକା ଚାଲିଥିଲେ। ତେଣୁ ସମଧର୍ମୀ - କବିଙ୍କ ସମ୍ପର୍କରେ ଡଃ ମାନସିଂହଙ୍କ ମନ୍ତବ୍ୟରେ ହୁଏତ କିଛି ସତ୍ୟତା ରହିଛି। ତେବେ ପ୍ରାଣର ଆବେଗରେ ଯାହା ଅନ୍ତର ମଥିତ କରି ବାହାରିଆସେ, ଶୈଳିକ ଲକ୍ଷ୍ମଣଗାର ତା' ପାଇଁ ଦୁର୍ଲଂଘ୍ୟ ନୁହେଁ ବୋଲି ଆମର ବିନମ୍ର ମତ। କବିତାକୁ କୁହାଯାଏ- 'Talking picture'। ଉଦ୍ଧୃତ କବିତାଂଶଟି ଚିତ୍ରମୟ ହୋଇପାରିଛି କିମ୍ବା ନାହିଁ, ତାହା ପାଠକମାନେ ସ୍ୱୟଂ ସ୍ଥିର କରନ୍ତୁ। ବିଶେଷତଃ, ସତ୍ୟକୁ ପ୍ରକାଶ କରିବାକୁ, ଶିବକୁ ଅନୁଭବ କରିବାକୁ ଏବଂ ସୁନ୍ଦରକୁ ଦର୍ଶନ କରିବା ନିମନ୍ତେ କବି ଭିତରେ ଯେଉଁ ବ୍ୟାକୁଳତା, ତାହାକୁ ଆମେ ଅସ୍ୱୀକାର କରିବା?

କେବଳ ସାରସ୍ୱତ କୀର୍ତ୍ତି ସ୍ଥାପନ କରି କବି ଯେ ନିଜର ଅମରତ୍ୱର ସ୍ୱପ୍ନ ଦେଖୁଥିଲେ ଏହା ନୁହେଁ। ନିଜର ୩୮ ବର୍ଷର ସୀମିତ ଜୀବନକାଳ ମଧ୍ୟରେ ସେ ନିଜକୁ ଏଭଳି ବ୍ୟାପ୍ତ କରିଦେଇଥିଲେ ଯେ, ଆଜି ସେ କର୍ତ୍ତବ୍ୟପରାୟଣତାର ଏକ ପ୍ରତୀକ ହୋଇଯାଇଛନ୍ତି। ତାଙ୍କ ଦିନଚର୍ଯ୍ୟାର ଆଦର୍ଶ ଥିଲା ବିବେକାନନ୍ଦଙ୍କର ସେହି କଥା ପଦକ - 'ସଂସାରକୁ ଆସିଛ, ପଦଚିହ୍ନ ରଖିଯାଅ। x x x ପାଣିରେ ପାଦଚିହ୍ନ ମୁହୂର୍ତ୍ତେ, ବାଲି ଉପରେ ପାଦଚିହ୍ନ ମଧ୍ୟ କେତେଦଣ୍ଡ। କିନ୍ତୁ ଶିଳାରେ ଚିହ୍ନିତ ପଦଚିହ୍ନ ହିଁ ରହିବ କାଳକାଳ।'' ଏହାକୁହିଁ ସେ ଦୃଢ଼ କରି ଧରିଥିଲେ। ନିଜର ଜୀବନକୁ ସେହି ଭାବରେ ଗଢୁଥିଲେ। ଏଥିପାଇଁ ସେ ଅନ୍ୟମାନଙ୍କଠାରୁ ଭିନ୍ନ, ସମ୍ପୂର୍ଣ୍ଣ ସ୍ୱତନ୍ତ୍ର। ଗୋଟିଏ ଅପୂର୍ଣ୍ଣ ଏବଂ ଅଶାନ୍ତ ଜୀବନର ଦୁର୍ବହ ଭାର ଧରାଇ ଯଦି ବିଶ୍ୱବିଧାତା ତାଙ୍କୁ ସଂସାରକୁ ପଠାଇ ନଥାନ୍ତେ, ତେବେ ରୂପ-ରସ-ଗନ୍ଧଭରା ଏଇ ସୃଷ୍ଟିର ଆହୁରି କେତେ ଯେ ରହସ୍ୟ ତାଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇ ଚିରଦୁଃଖିନୀ ଏଇ ପୃଥିବୀକୁ ଏକ ଚିରନ୍ତନ ଆନନ୍ଦାଲୋକରେ ପରିବର୍ତ୍ତିତ କରିଥାଆନ୍ତା, ତାହା କହିହେବ ନାହିଁ।

ବୃତ୍ତିଗତ ଜୀବନରେ ତାଙ୍କୁ ଯେଉଁଭଳି ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଥିଲା, ସର୍ଜନା-କର୍ମରେ ମଧ୍ୟ ତାଙ୍କୁ ସେଇଭଳି କଟୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା। ତାଙ୍କର ସମସାମୟିକ ନବୀନ ସାହିତ୍ୟିକ ଗୋଷ୍ଠୀ ତାଙ୍କୁ 'Prolific writer' ବୋଲି ଅଭିଯୁକ୍ତ କରି ନିନ୍ଦା କରିବାକୁ ଆରମ୍ଭ କରିଦେଇଥିଲେ। ଏଭଳି ଅପବାଦ ନିଜ ସମୟରେ ରବୀନ୍ଦ୍ରନାଥଙ୍କୁ ମଧ୍ୟ ଦିଆଯାଇଥିଲା। ଅସମ୍ଭବ ଲୋକପ୍ରିୟତାର ଏହାହିଁ ହେଉଛି ଲଲାଟଲିପି। ଏଥିରେ ମିଶିଥାଏ ଦୁର୍ବଳତାଜନିତ ଈର୍ଷା। କୁନ୍ତଳା ଅଳ୍ପ ସମୟ ମଧ୍ୟରେ କବିଖ୍ୟାତି ପାଇଯାଇଥିଲେ। କୌଣସି ପ୍ରଚାରକ ନଥାଇ ମଧ୍ୟ ପାଠକମାନେ ତାଙ୍କୁ ଆଦରର ଧନ ରୂପେ ଗ୍ରହଣ କରିନେଇଥିଲେ। ପୁରୀର ମହିଳାବନ୍ଧୁ ତାଙ୍କୁ 'ଉତ୍କଳଭାରତୀ' ଉପାଧି (୧୯୨୫)ରେ ମଣ୍ଡିତ କରିଥିଲେ। ସେହି ବର୍ଷ ପୁରୀର ମୁକ୍ତିମଣ୍ଡପ ସଭା ତାଙ୍କୁ ଏକ ପ୍ରଶଂସାପତ୍ର ଦେଇ ସମ୍ମାନିତ କରିଥିଲେ। ପୁଣି ବିଜୟଚନ୍ଦ୍ର ମଜୁମଦାରଙ୍କ ସମ୍ପାଦିତ Typical Selections from Oriya Literatureର ତୃତୀୟ ଖଣ୍ଡରେ ପୂର୍ବଜ କବିମାନଙ୍କ ସହିତ ଏହି ନବୀନା କବିଙ୍କର ରଚନାଟିଏ ମଧ୍ୟ ସ୍ଥାନିତ ହୋଇଥିଲା। ପଣ୍ଡିତ ନୀଳକଣ୍ଠ ତାଙ୍କର 'ପୂଜାପଦ୍ଧତି' ପଢ଼ି ଲେଖିଥିଲେ, ''କବିତାଟିର ମୁଗ୍ଧ ସୁନ୍ଦର ମୂର୍ତ୍ତି ଏବେ ମଧ୍ୟ ମନରୁ ଯାଉନାହିଁ। ବିଶେଷ କଥା ମୋର ମନେ ହୁଏ, ଓଡ଼ିଆ ସାହିତ୍ୟରେ ଏପରି ସାର୍ବଜନୀନ ପ୍ରାଣସ୍ପର୍ଶୀ 'ପୂଜାପଦ୍ଧତି' କେହି କେବେ ଲେଖିନାହାନ୍ତି। x x ଆପଣଙ୍କ ଲେଖନୀର ଧାରା ଏବେ କାହିଁକି ଏତେ ମନ୍ଥର ଭାବରେ ଗତି କରୁଛି ବୁଝିପାରୁନାହିଁ।''(୧୯୨୬) ଗୁଣଗ୍ରାହୀ କବି ନନ୍ଦକିଶୋର ବଳ ଲେଖିଥିଲେ –

ସ୍ୱଦେଶର ପୂର୍ବ ଗଉରବେ ଗରବିତା, ନିସର୍ଗ-ଲାବଣ୍ୟ ମୁଗ୍ଧା ଅୟି ପ୍ରେମମୟି,
କି ଅପୂର୍ବ ପ୍ରତିଭାରେ ହୋଇସନ୍ଦୀପିତା, ଏ ଦୀନ ଉତ୍କଳେ ଅବତୀର୍ଣ୍ଣା ଶକ୍ତିମୟି।

(୧୯୨୫)

ବିଜୟଚନ୍ଦ୍ର ମଜୁମଦାର ଲେଖିଥିଲେ, ''ଏହାଙ୍କର ଯେଉଁ ସକଳ ଗଦ୍ୟ ରଚନା ଧର୍ମପ୍ରାଣତାର ସୂଚନା କରେ, ତହିଁରୁ କେତୋଟି ବଙ୍ଗ ଭାଷାରେ ପ୍ରକାଶିତ ହୋଇଅଛି। ଏହାଙ୍କର ସାହିତ୍ୟିକ ଭବିଷ୍ୟତ ଅତି ଉଜ୍ଜ୍ୱଳ।'' ଏହା ସହିତ ସେ ତାଙ୍କର ଭାଷାର ବିଶୁଦ୍ଧତା ଓ ସରଳତା ଏବଂ ଭାବର ମାଧୁରୀ ଓ ପବିତ୍ରତା ସମ୍ପର୍କରେ ଉଚ୍ଚ ପ୍ରଶଂସା କରି ଅଚିରେ ସେ ଯେ ଓଡ଼ିଆ ସାହିତ୍ୟରେ ଏକ ଉଚ୍ଚସ୍ଥାନ ଅଧିକାର କରିବେ, ଏ ବିଷୟରେ ନିଜର ଦୃଢ଼ମତ ପ୍ରକାଶ କରିଥିଲେ। କବିଖ୍ୟାତି ସହିତ ଆସିଥିଲା, ବିଭିନ୍ନ ସଭାସମିତିରେ ଯୋଗଦେବା ନିମନ୍ତେ ନିମନ୍ତ୍ରଣ। ଏହିଭଳି ଖୁବ୍ ଅଳ୍ପ ଦିନରେ କୁନ୍ତଳା ଓଡ଼ିଶାର କୋଣେ କୋଣେ ପରିଚିତ ହୋଇଯାଇଥିଲେ। କହିବା ବାହୁଲ୍ୟ ଯେ, ଯେଉଁମାନେ ତାଙ୍କୁ ନିନ୍ଦା କରୁଥିଲେ ସେମାନଙ୍କ ଭାଗ୍ୟରେ ଏସବୁରୁ କାଣିଚାଏ ମାତ୍ର ଜୁଟି ନଥିଲା। ତେଣୁ ଈର୍ଷା ହେବା ସ୍ୱାଭାବିକ।

କୁନ୍ତଳାକୁମାରୀଙ୍କର ଧର୍ମ ପ୍ରସଙ୍ଗରେ ସାମାନ୍ୟ ଆଲୋଚନା କରି ଆମେ ତାଙ୍କର ବ୍ୟକ୍ତିଗତ ଜୀବନ ସମ୍ପର୍କୀୟ ଆଲୋଚନା କରିବା। ସେ ଜନ୍ମହେଲେ ଏକ ଖ୍ରୀଷ୍ଟିଆନ୍ ପରିବାରରେ, ମଝିରେ ବ୍ରାହ୍ମ ଧର୍ମ ଗ୍ରହଣ କଲେ ଏବଂ ଶେଷରେ ପୁଣି ୧୯୨୮ରେ ଆର୍ଯ୍ୟସମାଜୀ ହେଲେ। ବ୍ରାହ୍ମଧର୍ମ ହିନ୍ଦୁଧର୍ମର ଏକ ପ୍ରଗତିଶୀଳ ଶାଖା ବୋଲାଉଥିବାରୁ ଆର୍ଯ୍ୟସମାଜରେ ପ୍ରବେଶ ସମୟରେ ତାଙ୍କୁ

କେବଳ ସାମାନ୍ୟ ଔପଚାରିକତା ରକ୍ଷା କରିବାକୁ ହୋଇଥିଲା। ମୃତ୍ୟୁ ପର୍ଯ୍ୟନ୍ତ ସେ ସେଇ ଧର୍ମରେ ଥିଲେ। ଧର୍ମ ପରିବର୍ତ୍ତନର ଏକମାତ୍ର କାରଣ ଥିଲା, ପ୍ରୌଢ଼ ପ୍ରେମିକଙ୍କୁ ସ୍ୱାମୀ ରୂପେ ବରଣ କରିବାର କାମନା। ସେ ମଧ୍ୟ ତାଙ୍କୁ ସେଇଭଳି ଭରସା ଦେଇଥିଲେ। ମାତ୍ର ଶେଷ ମୁହୂର୍ତ୍ତରେ ସେ ନିଜକୁ ଏହି ସବୁ ଯୋଜନାରୁ ପୃଥକ୍ କରିଦେବାରୁ କୁନ୍ତଳା ହାତପାଖରେ ଯାହାକୁ ପାଇଲେ, ତାଙ୍କୁ ସ୍ୱାମୀରୂପେ ବରଣ କରିନେଲେ ଏବଂ ଦୀର୍ଘ ଦଶବର୍ଷକାଳ ମୃତ୍ୟୁ ଯନ୍ତ୍ରଣା ଭୋଗିଲେ। ଉଗ୍ର ବିଷ ଦେହରେ ପ୍ରବେଶ କଲେ ପାଞ୍ଚ ମିନିଟ୍ ଭିତରେ ତାହାର ଚରମ ଫଳ ଦେଖାଯାଏ, କିନ୍ତୁ ବିଷ ମନରେ ପ୍ରବେଶ କଲେ ମୃତ୍ୟୁ ଯନ୍ତ୍ରଣା ଆଣେ- ମୃତ୍ୟୁ ଆସେନାହିଁ। କୁନ୍ତଳାଙ୍କର ସେଇଆ ହେଲା। ପ୍ରେମିକଙ୍କର ପ୍ରତାରଣା ତାଙ୍କର ମନଭାଙ୍ଗି ଦେଇଥିଲା। ଯାହାପାଇଁ ସେ ଯଶ-ମାନ-ଖ୍ୟାତି ଧନସମ୍ପଦ ସର୍ବସ୍ୱ ତ୍ୟାଗକରି ଅକୂଳରେ ଭାସିଗଲେ, ସେଇ ଯେତେବେଳେ ଭରସା ଦେଇ ଦୂରେଇ ଗଲେ, ସେତେବେଳେ ତାଙ୍କ ଆଗରେ ଆଉ କେଉଁ ବାଟ ଥିଲା? ଦୀର୍ଘକାଳର ଅସ୍ଥିରତା ତାଙ୍କୁ ଦେହ ଓ ମନରେ ସମ୍ପୂର୍ଣ୍ଣ କ୍ଳାନ୍ତ କରିଦେଇଥିଲା ମଧ୍ୟ। ତେଣୁ ସେ ଏକପ୍ରକାର ଆତ୍ମହତ୍ୟା କଲେ କହିଲେ ଚଳେ। ପ୍ରେମ ପାଇଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ଉଜାଡ଼ି ଦେବାରେ ଓଡ଼ିଶାରେ ସେ ଅନନ୍ୟ ଦୃଷ୍ଟାନ୍ତ ହୋଇରହିଲେ। ଜନ୍ମ ଫେବୃୟାରୀ ସାତ ୧୯୦୧ ଏବଂ ମୃତ୍ୟୁ ୧୯୩୮ ଅଗଷ୍ଟ ୨୩ ତାରିଖ। ଏହାରି ଭିତରେ ଲେଖା ହୋଇଗଲା ଗୋଟିଏ ଚମକପ୍ରଦ ଜୀବନର ଇତିହାସ। ଯେ ଯଶଗଉରବ, ମାନସମ୍ମାନ, ଧନସମ୍ପଦ କିଛି ଚାହିଁନଥିଲା, ବିଶାଳ ଏ ବିଶ୍ୱରେ କେଉଁ ନିଭୃତ କୋଣରେ ନିଜ ପାଇଁ ଛୋଟ ଏକ ବସାର ସ୍ୱପ୍ନ ଦେଖୁ ଦେଖୁ ଜୀବନ କଟିଗଲା। ସ୍ୱପ୍ନ ଅଧା ରହିଗଲା। କୁନ୍ତଳା କୁମାରୀଙ୍କର ଜୀବନ ତେଣୁ ହେଉଛି ଏକ ସଂଗ୍ରାମ ଓ ସଂଘର୍ଷର ରକ୍ତଲିପ୍ତ ରଣଭୂମି, ଯେଉଁଠି ସେ ପରାଜୟ ବରଣ କରିଛନ୍ତି ସତ୍ୟ, ମାତ୍ର ଶେଷ ପର୍ଯ୍ୟନ୍ତ ବୀର ବିକ୍ରମରେ ଲଢ଼ିଯାଇଛନ୍ତି। ଏହାହିଁ ଦୁଃଖ ଜର୍ଜରିତ ମାନବ ସମାଜ ପାଇଁ ଏକମାତ୍ର ସାନ୍ତ୍ୱନା।

ଏଥର ତାଙ୍କର ସୃଷ୍ଟି ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା। ପରିବାରରେ ସାନମା ଓ ସାନବାପା ପ୍ରାୟ ଅଶିକ୍ଷିତ ଥିଲେ। ବାପା ଦାନିଏଲ ସାବତ୍ ବୃତ୍ତିରେ ଚିକିତ୍ସକ। ମାଆ ମନିକା ସାଧାରଣ ଗୃହିଣୀ। ତେଣୁ ସାହିତ୍ୟପ୍ରୀତି ତାଙ୍କୁ ପାରିବାରିକ ସୂତ୍ରରେ ମିଳିନଥିଲା। ମହାଭାରତର କର୍ଣ୍ଣଙ୍କ ଭଳି ସେ ସାହିତ୍ୟାନୁରାଗ ରୂପକ କବଚ-କୁଣ୍ଡଳ ପିନ୍ଧି ଜନ୍ମଗ୍ରହଣ କରିଥିଲେ। ସବୁଥିରୁ ବଞ୍ଚିତ କରି ବିଶ୍ୱବିଧାତା ସତେଯେମିତି ଏଇ ଗୁଣଟିକକ ଦେଇ ତାଙ୍କୁ ପୃଥିବୀକୁ ପଠାଇଥିଲେ। ୧୮ ବର୍ଷ ବୟସରେ ଚାରିମାସର ସ୍କୁଲ ଜୀବନ ଶେଷକରି ବିଦାୟ ନେଲାବେଳେ ସେ ଲେଖିଥିଲେ ତାଙ୍କର ପ୍ରଥମ କବିତା ଯେଉଁଠି 'ଉତ୍କଳ ଜନନୀ ଯଶୋଗାତେଶାଣି' ତାଙ୍କର 'ଜୀବନମାଜି' ହେଉ ବୋଲି କାମନା କରାଯାଇଥିଲା। ତା'ପରେ କବିତା 'ତାରାପ୍ରତି' (୧୯୨୨), 'ଶେଫାଳି ପ୍ରତି' (୧୯୨୨), 'କମଳ ପ୍ରତି' ଏବଂ 'ପୂଜା' ପ୍ରଭୃତି ପ୍ରକାଶ ପାଇବାରୁ ଅତି ଅଳ୍ପ ଦିନ ମଧ୍ୟରେ ସେ ଜଣେ କବିରୂପେ ପରିଚିତା ହୋଇଗଲେ।

ଲୋକପ୍ରିୟତା ହେଉଛି କବି ପରୀକ୍ଷାର ଏକ କଷଟୀ। 'ଉତ୍କଳ ସାହିତ୍ୟ' ମାସିକ ପତ୍ରରେ କୁନ୍ତଳାଙ୍କର କବିତା ନିୟମିତ ରୂପେ ପ୍ରକାଶିତ ହେଉଥିଲା। ହୁଏତ ସମ୍ପାଦକ କର ମହାଶୟ ଏହି ରହସ୍ୟବାଦୀ କବିଙ୍କ ମଧ୍ୟରେ ଭବିଷ୍ୟତ ସମ୍ଭାବନାର ଉଜ୍ଜ୍ୱଳ ଚିତ୍ର ଦେଖିବାକୁ ପାଇଥିବେ।

ଯାହାହେଉ, କବିଙ୍କ କବିତା ପାଠକମାନଙ୍କ ନିକଟରେ ପହଞ୍ଚି ଅଚିରେ ତାଙ୍କର ଏକ ଭାବମୂର୍ତ୍ତି ଗଢ଼ିଦେଲା। ଏହାକୁ କବିଙ୍କର ଭାଗ୍ୟ ବୋଲି ମାନିନେବାକୁ ହେବ। ମାତ୍ର ୧୬ ବର୍ଷର ସାହିତ୍ୟିକ ଜୀବନରେ ସେ ନିମ୍ନଲିଖିତ କାବ୍ୟକବିତା ଓ ଉପନ୍ୟାସଗୁଡ଼ିକ ରଚନା କରିଥିଲେ। ସେଗୁଡ଼ିକ ହେଲା — (କ) ଅଞ୍ଜଳି (୧୯୨୩), (ଖ) ଉଚ୍ଛ୍ୱାସ (୧୯୨୪), (ଗ) ଅର୍ଚ୍ଚନା (୧୯୨୭), (ଘ) ସ୍ଫୁଲିଙ୍ଗ (୧୯୨୯), (ଙ) ଆହ୍ୱାନ (୧୯୩୦), (ଚ) ପ୍ରେମଚିନ୍ତାମଣି (୧୯୩୦), (ଛ) ଓଡ଼ିଆଙ୍କ କାନ୍ଦଣା (୧୯୩୬), (ଜ) ଗଡ଼ଜାତ କୃଷକ(୧୯୩୯), (ଝ) ମଣିକାଞ୍ଚନ (ଅସମ୍ପୂର୍ଣ୍ଣ କାବ୍ୟ ରାଧାନାଥୀ ଶୈଳୀରେ ରଚିତ ଏବଂ ଉତ୍କଳ ସାହିତ୍ୟରେ ପ୍ରକାଶିତ)। ଉପନ୍ୟାସ — (କ) ଭ୍ରାନ୍ତି (୧୯୨୨), (ଖ) ନଅତୁଣ୍ଡୀ (୧୯୨୬), (ଗ) ପରଶମଣି(୧୯୨୭), (ଘ) କାଳୀବୋହୂ(୧୯୨୭), (ଙ) ରଘୁ ଅରକ୍ଷିତ(୧୯୨୮), (ଚ) ଚିତ୍ରପଟ(ଅସମ୍ପୂର୍ଣ୍ଣ) ଅପ୍ରକାଶିତ।

ଅଞ୍ଜଳି (୧୯୨୩) ଦର୍ପଣୀ କିଲ୍ଲାଧୀଶ୍ୱରୀ ରାଣୀ ଲକ୍ଷ୍ମୀଦେବୀଙ୍କର ଆର୍ଥିକ ସହାୟତାରେ ପ୍ରକାଶିତ ଏବଂ ତାଙ୍କୁ ଉତ୍ସର୍ଗୀକୃତ ୧୦୫ଟି କବିତାର ଏକ ସଙ୍କଳନ। ଏହା ୧୯୨୩ ଜାନୁଆରୀରେ ପ୍ରକାଶ ପାଏ। ଏଥିରେ ଚଉତ୍ତରୀ ପଦର ଦୀର୍ଘ କବିତା (ପୂଜା) ଯେଉଁଭଳି ସ୍ଥାନ ପାଇଛି, ମାତ୍ର ଚାରିପଦର କବିତା (ସ୍ତବ) ମଧ୍ୟ ସେହିଭଳି ରହିଛି। ଅଧିକାଂଶ କବିତା ହେଉଛି କବିଙ୍କର ଆତ୍ମାନ୍ୱେଷଣର ଏକ ଗୀତିମୟ ପ୍ରକାଶ। କବି ଯଦି ହୁଏ ଜୀବନକୁ ପରଖି ଦେଖିବାର ନିତ୍ୟକାଳର ଆଖିଟିଏ, ତେବେ କବି କୁନ୍ତଳାଙ୍କ ଆଖିରେ ଜୀବନ ଓ ଜଗତର ଯେଉଁ ଚିତ୍ର ଉଦ୍‌ଭାସିତ ହୋଇଉଠିଛି, ଅଞ୍ଜଳିର ବିଭିନ୍ନ କବିତାରେ ତାହାର ସେଇ ରହସ୍ୟମୟ ବିଷଣ୍ଣ ରୂପ ବିଶ୍ଳେଷିତ ହୋଇଉଠିଛି। ପ୍ରଥମ ଚିତ୍ରରେ କବିଙ୍କର ଅନ୍ୱେଷା ବିଶ୍ୱସ୍ରଷ୍ଟାଙ୍କୁ ଜିଜ୍ଞାସା କରିଛି 'କାହିଁ ନିବାସ ତୋ'ର ଧରମରାଜ ?' ଧର୍ମରାଜଙ୍କର ଉତ୍ତର- 'ତୋ'ର ହୃଦମନ୍ଦିର ମୋର ପ୍ରିୟ ସଦନ' – ଏହାରି ଭିତରେ ପ୍ରକାଶ ପାଇଛି ଉପନିଷଦୀୟ ଚିନ୍ତାଧାରାର ଏକ ସ୍ପଷ୍ଟ ଝଲକ ଯାହା ଯୁଗେ ଯୁଗେ ଏ ଦେଶର କବିମାନଙ୍କୁ ପ୍ରଭାବିତ କରିଆସିଛି। ଗୋପବନ୍ଧୁ ମଧ୍ୟ ଲେଖିଛନ୍ତି, 'ହୃଦ କପିଳାସେ ତୋ'ର ବହେ ପ୍ରେମଝରେ, ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର'। ଦେବତାର ଅନ୍ୱେଷଣରେ ଦୂର ଦେବାଳୟକୁ ଯିବାର ପ୍ରୟୋଜନ ନାହିଁ। ଆତ୍ମାରେ ପରମାତ୍ମାଙ୍କର ଅଧିଷ୍ଠାନ। ସେଇ ହେଉଛି ମୁଁ। ତତ୍ ତ୍ୱଂ ଅସି। ବାଇଶି ବର୍ଷର ତରୁଣୀଙ୍କର ଏଇ ହେଉଛି ତାଙ୍କର ପରିପୂର୍ଣ୍ଣ ଆଧ୍ୟାତ୍ମିକତାର ଏକ ଚମତ୍କାର ପରିପ୍ରକାଶ। କବିଙ୍କର ଭାଷାପ୍ରୀତି ଯେତିକି ବିସ୍ମୟଜନକ ଠିକ୍ ସେତିକି ଉଲ୍ଲାସକାରକ। କବି ଲେଖନ୍ତି -

''କ୍ଷୁଦ୍ର ମମ ମାତୃଭାଷା ଫୁଲ ଅଞ୍ଜଳିରେ;
କ୍ଷୁଦ୍ର ନୁହେଁ ସେହି ଆହା ପବିତ୍ର, ମହତ;
ମୋର ଭାଷା ବଡ଼ ସିନା ମୋହରି କତିରେ;
କେ ଭାବୁ ତାହାକୁ ନୀଚ, ସେ ମୋର ଅମୃତ।''

ଜୀବନ ଆକାଶର ଚନ୍ଦ୍ରମା ଯେତେବେଳେ ବ୍ୟକ୍ତି-ସ୍ୱାର୍ଥ ରୂପୀ ରାହୁଗ୍ରସ୍ତ ହୋଇପଡ଼େ ନୈରାଶ୍ୟର ବଉଦ ତଳେ ଆତ୍ମଗୋପନ କରେ, ଠିକ୍ ସେତିକିବେଳେ ବଞ୍ଚିବାର ସ୍ୱପ୍ନ ବୁଣିଦେଇ ଗୀତ ଗାଉଥିବା କବି କୁନ୍ତଳାକୁମାରୀ ହିଁ ବେଶି ମନେପଡ଼ନ୍ତି। ସେ କହନ୍ତି —

ବାଜ ହୃଦବୀଣା ସୁମୋହନ ସ୍ୱରେ, ଲାଗ ଆଜି ମନ ପୁଣ୍ୟ କର୍ତ୍ତବ୍ୟରେ,
ମାତିମଧୁ ମାସେ ନବ ଉତ୍ସାହରେ - ଫୁଲ ପରି ହସି ହସି
ଆନନ୍ଦେ କରିବି ଜୀବନର କର୍ମ ବୃଥା ନରହିବି ବସି।''

ପୁଣି 'ପୂଜାପଦ୍ଧତି' କବିତା ସମ୍ପର୍କରେ ଆମେ ପୂର୍ବରୁ ସୂଚନା ଦେଇସାରିଛୁ। ହୁଏତ ପଣ୍ଡିତ ନୀଳକଣ୍ଠଙ୍କ ନିର୍ଦ୍ଦେଶରେ ଏହା ସେ ସମୟରେ ସତ୍ୟବାଦୀ ବନବିଦ୍ୟାଳୟର ପ୍ରାର୍ଥନା ସଙ୍ଗୀତ ରୂପେ ଗୃହୀତ ହୋଇଥିଲା। ଗୋଟିଏ କଥା କିନ୍ତୁ ଏହି ସବୁ କବିତାରୁ ଅତ୍ୟନ୍ତ ସ୍ପଷ୍ଟ। କବି ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି ୧୯୨୧ରେ। ଛାତ୍ରାବାସ୍ଥାରେ ହୁଏତ କିଛି ଲେଖିଥିବେ। ତେବେ ୧୯୨୨ ମଧ୍ୟରେ ଅର୍ଥାତ୍ ମାତ୍ର ଗୋଟିଏ ବର୍ଷରେ ଏଥିରୁ ଅଧିକାଂଶ କବିତା ଲିଖିତ ହୋଇଥିବାର ସମ୍ଭାବନା। ତେଣୁ ଏଥିମଧ୍ୟରୁ ବହୁ ରଚନାରେ ଭାବନା ଓ ଚିନ୍ତାର ପୁନରୁକ୍ତି ଆସିଯାଇଛି। ଏଥିରେ ଆଧ୍ୟାତ୍ମିକତାର ଉଚ୍ଛଳ ପ୍ରକାଶ ରହିଛି। ରହସ୍ୟବାଦିତାର ସ୍ୱର ମଧ୍ୟ ନିତାନ୍ତ ଅସ୍ପଷ୍ଟ ନୁହେଁ, ରହିଛି ପୁଣି ଆଶାବାଦର ଅପୂର୍ବ ସ୍ୱରଝଙ୍କାର, କେବଳ ନାହିଁ ନବାନୁରାଗର ସ୍ନେହ କୋମଳ ମୃଦୁମନ୍ଦ ତାନ – ଯାହା ତାଙ୍କର ମାନସିକତା ଏବଂ ବୟସ ପାଇଁ ଅତ୍ୟନ୍ତ ସ୍ୱାଭାବିକ ହୋଇଥାଆନ୍ତା କିମ୍ବା କବିଙ୍କର ଏହା ସ୍ୱେଚ୍ଛାକୃତ ଆତ୍ମଗୋପନ ପ୍ରୟାସ?

ନନ୍ଦକିଶୋରଙ୍କର ଦୀର୍ଘ ମୁଖବନ୍ଧ ସମ୍ବଳିତ 'ଉଚ୍ଛ୍ୱାସ' ପ୍ରକାଶ ପାଏ ୧୯୨୪ରେ। ଛଅଟି ତରଙ୍ଗରେ ଛଅଟି ଦୀର୍ଘ 'ପ୍ରତି' କବିତା ସ୍ଥାନ ପାଇଛି। ଏଗୁଡ଼ିକ ଇଂରାଜୀ 'Ode' ଜାତୀୟ କବିତାର ପ୍ରତିରୂପ। ଏଥବରେ ପୁଣି ରହିଛି ତାଙ୍କର ବହୁଚର୍ଚ୍ଚିତ କବିତା 'ଶେଫାଳି ପ୍ରତି'। ନବୀନ କବି ଏଥିରେ ସ୍ପଷ୍ଟଭାଷାରେ ଘୋଷଣା କରିଛନ୍ତି –

ଶେଷଗତି ନୁହେଁ ମୋର ମୃତ୍ୟୁ କେଉଁକାଳରେ,
ମରିବାକୁ ଫୁଟିନାହିଁ ଉଦତରୁ ଡାଳରେ।।

କିମ୍ବା, କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ ଅକାରଣେ ଜନ୍ମିନାହିଁ
ଅନନ୍ତ ବିନାଶ ମୋର ଲେଖା ନାହିଁ କପାଳେ,
ଏକରାତି ପାଇଁ ଫୁଟି ଝଡ଼ିଯିବି ସକାଳେ।

ପୁଣି ଦୁଃଖଦୈନ୍ୟ ପରିପୂର୍ଣ୍ଣ ସଂସାରବାସୀଙ୍କୁ ଆଶାର ମୋହିନୀ ମନ୍ତ୍ରରେ ଉଦ୍ଦୀପିତ କରି କବି ଅତନ୍ଦ୍ର କଣ୍ଠରେ ଘୋଷଣା କରିଛନ୍ତି –

ତୋହ ପରି କ୍ଷୁଦ୍ର ମୁହିଁ ତୋହପରି କ୍ଷଣିକ,
ହସେ ରସେ ବାସେ ମାତ୍ର ଫୁଟିଅଛି ଘଡ଼ିକ;
ମାଟିରେ ମିଶିବୁ ତୁହି ମାଟିରେ ମିଶିବି ମୁହିଁ,
ତଥାପି ମୋ ଆତ୍ମାଫୁଲ ନଯିବରେ ମଉଳି;
ତେଣୁ ଆଶା ବହି ଦିନକାଟେ ଗଙ୍ଗଶିଉଳି।

ଆମର ମନେହୁଏ, ଏହି ସମୟକୁ କବିଙ୍କ ଚିନ୍ତାରେ ପରିପକ୍ୱତା ଆସିଯାଇଥିଲା ଏବଂ ଦର୍ଶନ ମଧ୍ୟ ସ୍ଥିର ହୋଇଯାଇଥିଲା। 'ଅଞ୍ଜଳି'ର କବିତାରେ ଯେଉଁ ଅନ୍ୱେଷଣ ଆରମ୍ଭ ହୋଇଥିଲା, ପ୍ରକୃତିର ଉଦାର ଏବଂ ବିସ୍ତୃତ କୋଳରେ ତାହାର ପରିସମାପ୍ତି ଘଟିଥିଲା। କବି ନନ୍ଦକିଶୋରଙ୍କ ଭାଷାରେ,

'ଉଚ୍ଛ୍ୱାସ' କବିଙ୍କର ଉଦ୍ଦାମ ଉଚ୍ଛ୍ୱାସ ତରଙ୍ଗ ସେହି ମଙ୍ଗଳ ବିଧାତା ମହତୋମହୀୟାନ୍ ବିଶ୍ୱନିୟନ୍ତା ଅଥଚ ଚିର ଲୀଳାମୟ ପ୍ରାଣର ଶ୍ରୀହରିଙ୍କ ଶ୍ରୀପାଦପଦ୍ମରେ ସମର୍ପିତ। କବିତାର ଛତ୍ରେଃଛତ୍ରେ ଏହି ଧର୍ମଭାବ, ଈଶ୍ୱର ନିର୍ଭରଶୀଳତା, ସେବା ଧର୍ମରେ ପ୍ରାଣ ଉତ୍ସର୍ଗ କରିବାର ଆକାଙ୍କ୍ଷା ପରିସ୍ଫୁଟ ହୋଇଅଛି। ଆମର ମଧ ସେଇ ମତ।

ଅର୍ଚ୍ଚନା (୧୯୨୭) ଅଧ୍ୟାପକ ବିଜୟ ଚନ୍ଦ୍ର ମଜୁମଦାରଙ୍କ ମୁଖବନ୍ଧ ସହଯୋଗରେ ପ୍ରକାଶ ପାଏ ଏବଂ ଏହା 'ବିଲ୍ୱଦଳ', 'ଦୂର୍ବାଦଳ', 'ଚମ୍ପାଦଳ' ଏବଂ 'ଶତଦଳ' ନାମରେ ଚାରିଭାଗରେ ବିଭକ୍ତ। ପ୍ରତିଟି ଭାଗ ଜଣଜଣଙ୍କୁ ଉତ୍ସର୍ଗୀକୃତ। ଏଥିରେ ସ୍ଥାନିତ କବିତାଗୁଡ଼ିକରେ କବିଙ୍କର ଦେଶପ୍ରେମବୋଧ, ଜାତୀୟତା, ବିଶ୍ୱପ୍ରୀତି, ମାନବିକତା ଏବଂ ସଂସାରବାଦିତା ପ୍ରଭୃତି ପ୍ରକାଶ ପାଇଛି। 'ଉତ୍କଳବନ୍ଦନା'ରେ କବି ଗାଇଛନ୍ତି, ''କୋଟିକୀର୍ତ୍ତି ମୁକ୍ତାମାଳିନୀ, କାନ୍ତ କମଳା କଳାକୁଶଳା ଶାନ୍ତିଶାଳିନୀ'' ଏବଂ କାମନା କରିଛନ୍ତି, 'ଉଠ ଉଠ ଉତ୍କଳ ଜାଗ୍ର ଜୀବନେ ନବୀନ ଆନନ୍ଦ ନବୀନ ଧୃତି।' କର୍ମମନ୍ତ୍ରରେ କବି ଚିନ୍ତା କରିଛନ୍ତି, ''ବସିବି ହରଷେ ଦୀନଦୁଆରେ, କାନ୍ଦିବି ତା' ଦୁଃଖେ ଘନ ଅନ୍ଧାରେ, ଢାଳିବି ପ୍ରାଣ ବିଶ୍ୱସେବାରେ, ଆସୁ ବିଷାଦ ପରୀକ୍ଷା, ପରଲାଗି ମୋର ଜୀବନ ଦେବାର ନିତ୍ୟ କରିବି ଶିକ୍ଷା' – ସେଇ କବି ପୁଣି ବେଦନାରେ ଆକୁଳ ହୋଇ କହିଛନ୍ତି, 'ଭାରତ! ଭାରତ! ଭାରତ! କିପାଁ ହୋଇଲୁ ଦୀନ'।

'ଦୂର୍ବାଦଳ'ରେ ପ୍ରେମର ଏକ କୁଣ୍ଠିତ ଅନୁଭବର ପରିପ୍ରକାଶ ଘଟିଛି। 'ଚମ୍ପାଦଳ'ରେ ପ୍ରେମାନୁଭବ ସହିତ ରହସ୍ୟବାଦିତାର ଏକ ସମନ୍ୱୟ ଘଟାଯାଇଛି ଏବଂ ଶେଷ 'ଶତଦଳ' ବିଭାଗରେ ମଧ ଅନୁରୂପ ଭାବଚେତନାର ବିନ୍ୟାସ ହୋଇଛି। ଏହି ସଂକଳନରେ ସ୍ଥାନିତ କବିତାଗୁଡ଼ିକରୁ କବିଙ୍କର ଶବ୍ଦଗୁମ୍ଫନ ଚାତୁରୀ, ଛାନ୍ଦସିକତା, ପ୍ରକୃତିପ୍ରେମ ଏବଂ ସଙ୍ଗୀତଜ୍ଞାନର ପରିଚୟ ମିଳିଥାଏ। ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଉଦ୍ୟମରେ ଏଥିରୁ କେତେକ କବିତାରେ ସ୍ୱର, ତାଳ ସଂଯୁକ୍ତ ହୋଇ ଏହାର ସାଙ୍ଗୀତିକ ମର୍ଯ୍ୟାଦା ବୃଦ୍ଧିରେ ସହାୟକ ହୋଇଛି।

ସ୍ଫୁଲିଙ୍ଗ (୧୯୨୯) ପ୍ରକାଶ ପାଇବାର ଅନ୍ତତଃ ୩/୪ବର୍ଷ ପୂର୍ବରୁ ଲେଖାଯାଇ ସାରିଥିଲା। ଏହାର କବିତାଗୁଡ଼ିକ ମୁଖ୍ୟତଃ ଦେଶାତ୍ମବୋଧକ ଏବଂ ଉଦ୍‌ବୋଧନମୂଳକ। ତାରୁଣ୍ୟର ଆବାହନରେ ତରୁଣଙ୍କୁ ଆଳସ୍ୟ ତ୍ୟାଗକରି ଜାତୀୟ ଜୀବନର ମହାସ୍ରୋତରେ ସାମିଲ ହେବା ନିମନ୍ତେ ଆହ୍ୱାନ ଦିଆଯାଇଛି। 'ମଣିଷ ଭାଇ' କବିତାରେ ବିଷାଦିତ ମାନବ ଜାତି ନିମନ୍ତେ ସମ୍ଭାବନାର ମନ୍ତ୍ର ଉଚ୍ଚାରିତ ହୋଇ କୁହାଯାଇଛି - 'ଶୁଣରେ ମଣିଷ ଭାଇ! ଝୁରି ମରିବାକୁ ବୁଡ଼ି ମରିବାକୁ ମଣିଷ ଜନମି ନାହିଁ'। 'ନାରୀ ଶକ୍ତି' କବିତାରେ ଭାରତୀୟ ନାରୀ ଜାତିକୁ ଉଦ୍‌ବୋଧନ ଦିଆଯାଇ କୁହାଯାଇଛି, 'ଷୋଳକୋଟି ନାରୀ ଉଠିବେ ଭାରତେ କରୁଣା କଲ୍ୟାଣ ସାଜି'। 'ଅଭୟପଦ' କବିତାରେ ଭୀତକମ୍ପିତ ଏବଂ ବିଷାଦିତ ଅବସ୍ଥାରୁ ମୁକ୍ତି ନିମନ୍ତେ ବିଶ୍ୱସ୍ରଷ୍ଟାଙ୍କୁ ନିବେଦନ କରାଯାଇଛି। ଦୀର୍ଘ କବିତା 'ଅଭିଶପ୍ତର ଅଭିମାନ'ରେ ଲାଂଛିତ ଗୋଷ୍ଠୀର ହୃଦୟରେ ଶକ୍ତି ସଞ୍ଚାର କରିବା ନିମନ୍ତେ କୁହାଯାଇଛି, 'ଜାଣେଁ ଏ ଜୀବନ କେଭେଁ ନହେବ ବିଫଳ''। ମୋଟ ଉପରେ ଏଥିରେ ସନ୍ନିବିଷ୍ଟ କବିତାଗୁଡ଼ିକରୁ କବିଙ୍କର ଅଧ୍ୟୟନ ଓ ଚିନ୍ତାର ବ୍ୟାପକତା, ହିନ୍ଦୁ ପୁରାଣରେ ଗଭୀର ପ୍ରବେଶ, ଶବ୍ଦଚୟନ ନିପୁଣତା ଏବଂ ଛାନ୍ଦସିକତା ପ୍ରଭୃତିର ପରିଚୟ ମିଳିଥାଏ।

ଆହ୍ୱାନ (୧୯୩୦) ଏକ ଦୀର୍ଘ କବିତା ଏବଂ ଏଥିରୁ କବିଙ୍କର ଦେଶପ୍ରେମବୋଧ, ବିଦେଶୀ ଶାସନ ପ୍ରତି ଘୃଣା, ପରାଧୀନ ଭାରତରେ ଶାସକ ସମ୍ପ୍ରଦାୟର ଶୋଷଣ, ଲାଞ୍ଛନା, ଦେଶବାସୀଙ୍କର ଦାରିଦ୍ର୍ୟ, ରାଜାମହାରାଜାମାନଙ୍କର ବିଳାସବ୍ୟସନ, ପଦମୋହ ଏବଂ ଦେଶସେବୀମାନଙ୍କ ବିରୁଦ୍ଧରେ ସରକାରଙ୍କର କଠୋର ଭୂମିକା ସମ୍ପର୍କରେ ନାନା କଥା ସ୍ଥାନ ପାଇଥିବାରୁ ଏଇଟି ସେତେବେଳେ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା। ୧୯୨୫ ବେଳକୁ ତାଙ୍କର ଗାନ୍ଧିଜୀଙ୍କର ସ୍ୱଦେଶୀ-ଦର୍ଶନ ଉପରେ ଆସ୍ଥା ଆସିଯାଇଥିଲା। ୧୯୨୭ରେ ସେ ଚକ୍ରଧର ମହାପାତ୍ରଙ୍କୁ ଗୋଟିଏ ଚିଠିରେ ଚାକିରି ଛାଡ଼ିବାର ସଂକଳ୍ପ ଗ୍ରହଣ କରିଥିବାର ଜଣାଇଥିଲେ। ''ଆମେ ଯେପରି ପୂର୍ଣ୍ଣ ସ୍ୱାଧୀନ, ସ୍ୱାବଲମ୍ବୀ, ବ୍ୟବସାୟୀ, ନିର୍ଭୀକ, ପୂର୍ଣ୍ଣ ସ୍ୱଦେଶୀ ହେବା - ଚାଲ, ବ୍ରତ ଗ୍ରହଣ କରି ଭଗବାନଙ୍କ ପାଖରେ ଶପଥ ଗ୍ରହଣ କରିବା। x x ଭଗବାନ ଗାନ୍ଧିଙ୍କୁ ହିନ୍ଦି ଭାଷାଭାଷୀ କରି ଜନ୍ମ ଦେଇଛନ୍ତି। ଆମେ ତାଙ୍କର ଶାନ୍ତିମୂଳକ ସଂଗ୍ରାମର ସୈନ୍ୟଭୁକ୍ତ।'' ପ୍ରାଣର ଆବେଗରେ ଏହିଭଳି ବହୁ କଥା ସେତେବେଳେ ସେ ଲେଖିଥିଲେ। 'ଆହ୍ୱାନ' ହେଉଛି ସେଇସବୁ ଚିନ୍ତାର କାବ୍ୟିକ ରୂପ।

'ପ୍ରେମଚିନ୍ତାମଣି' (୧୯୩୦) କେତୋଟି ଆବେଗପ୍ରଧାନ କବିତାର କାବ୍ୟିକ ରୂପ, ଯାହା ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ଏକ ପୂର୍ଣ୍ଣାଙ୍ଗ ଦୃଶ୍ୟକାବ୍ୟର ଆକାର ଗ୍ରହଣ କରିଥିବାର ସ୍ୱୀକାର କରାଯାଇଛି। ଏହାର ମୁଖବନ୍ଧ ଲେଖିଛନ୍ତି ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟାପନା କରୁଥିବା ଓଡ଼ିଆ ପ୍ରାଚୀନ ସାହିତ୍ୟର ଅବଗାହୀ, ବୈଷ୍ଣବ ସାହିତ୍ୟର ବେତ୍ତା ପ୍ରବାଦପୁରୁଷ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି। ମହାଭାବମୟ ଶ୍ରୀକୃଷ୍ଣ ଓ ପ୍ରେମମୟୀ ଶ୍ରୀରାଧାଙ୍କୁ ନାୟକ-ନାୟିକା କରି, ପ୍ରେମର ସ୍ୱରୂପ ଏଥିରେ ବିଶ୍ଳେଷଣ କରାଯାଇଛି। ପ୍ରଥମ ସଂସ୍କରଣଟି ଏହିଭଳି ନାଟକ ରୂପରେ ପ୍ରକାଶ ପାଇଥିଲା। ଗ୍ରନ୍ଥାବଳୀରେ କିନ୍ତୁ କବିତାଗୁଡ଼ିକୁ ବିଚ୍ଛିନ୍ନ ରୂପରେ ଦିଆଯାଇଛି। ଡଃ କୁଞ୍ଜବିହାରୀ ଦାଶ ତାଙ୍କର ମୁଖବନ୍ଧରେ ଲେଖିଛନ୍ତି, ''ତାଙ୍କ(କବିଙ୍କ) ଇଚ୍ଛା ବିରୁଦ୍ଧରେ ଏପରି ସଜାସଜି ହୋଇଥିବାରୁ ଅଯଥା ତଦ୍ୱାରା ତାଙ୍କୁ ମଧ୍ୟଯୁଗକୁ ଟାଣି ନିଆହେଉଥିବାରୁ ପୁଣି ଗୋଟି ଗୋଟି ରଖିବା ଦ୍ୱାରା ଆଧ୍ୟାତ୍ମିକ ନହେଉ ପଛେ ମାନବିକ ପ୍ରୀତିରସ ଉପଭୋଗ କରିବାରେ କୌଣସି ବାଧା ନଥିବାରୁ କବିତାଗୁଡ଼ିକୁ ଗୋଟି ଗୋଟି ରଖି ଜୀବନକାଳରେ ନହେଉ ପଛେ ମୃତ୍ୟୁପରେ କୁନ୍ତଳାଙ୍କ ଆନ୍ତରିକ କାମନାକୁ ଚରିତାର୍ଥ କରିଅଛି। ବୃଥା ଦୈବୀକରଣରେ ତାଙ୍କ କାମନା ବାସନାକୁ ଅଯଥା ଶୃଙ୍ଖଳାବଦ୍ଧ ଓ ଆବୃତ କରାଯାଇଛି। ତଦ୍ୱାରା କାବ୍ୟର ମହତ୍ତ୍ୱ ବଢ଼ିନାହିଁ, ଯୁଗୋପଯୋଗିତା ବ୍ୟାହତ ହୋଇଅଛି।'' ସରଳା ଦେବୀ ମଧ୍ୟ କବିତାର ଏହିଭଳି ନାଟ୍ୟକାବ୍ୟରେ ରୂପାନ୍ତରଣକୁ ସମର୍ଥନ କରିନଥିଲେ। ନିଜ ଦାୟିତ୍ୱ ପାଇଁ ତାଙ୍କର ଏହି ଅକପଟ ଆତ୍ମନିବେଦନକୁ ସେ କବିତା ରୂପ ଦେଇ ଅସୀମ ସାହସିକତାର ପରିଚୟ ଦେଇଛନ୍ତି ବୋଲି କହିଥିଲେ। ଏସବୁ କଥା ସତ୍ୟ। ତେବେ 'ପ୍ରେମଚିନ୍ତାମଣି' କବିଙ୍କ ଜୀବଦ୍ଦଶାରେ ପ୍ରକାଶିତ ହୋଇଥିଲା। ତା'ପରେ ସେ ବଞ୍ଚିରହିଲେ ଦୀର୍ଘ ଆଠବର୍ଷ। ଏହାର ସଜ୍ଜୀକରଣ ସମ୍ପର୍କରେ ସେ ଅନ୍ୟତ୍ର ଅସନ୍ତୋଷ ପ୍ରକାଶ କରିନାହାନ୍ତି। ରାଧାକୃଷ୍ଣ ଲୀଳା ସମ୍ପର୍କରେ ନିଜର ଅନଭିଜ୍ଞତା ପ୍ରକାଶ କରିବା ତାଙ୍କର ବିନୟ ମାତ୍ର। ତାଙ୍କର ଲେଖାହିଁ ଏହାର ପ୍ରମାଣ। ଏହିସବୁ କାରଣରୁ ଗ୍ରନ୍ଥାବଳୀରେ 'ପ୍ରେମଚିନ୍ତାମଣି' ତାହାର ପ୍ରକୃତ ରୂପରେ ପ୍ରକାଶ ପାଇବାହିଁ ଉଚିତ

ହୋଇଥାଆନ୍ତା। କବିଙ୍କ ମୃତ୍ୟୁର ଏତେ ଦିନପରେ ତାଙ୍କର ଲେଖା ଉପରେ କଲମ ଚଳାଇବା ଏକ ଗର୍ହିତ କାର୍ଯ୍ୟ ବୋଲି ଆମର ବିନମ୍ର ମତ। ଏ ପୁସ୍ତକ ସମ୍ପର୍କରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ଗୀତିକବିତା ରଚନାରେ କବିପ୍ରତିଭା ଏଥିରେ କୋଟାସ୍ପର୍ଶ କରିଛି। କି ଦାର୍ଶନିକତା, କି ସାଙ୍ଗୀତିକତା, କି ଶବ୍ଦଚୟନ କୌଶଳ, କି ଛାନ୍ଦସିକତା – ଯେଉଁଆଡୁ ଦେଖାଯିବ କବି ଯେମିତି ନିଜକୁ ଅକୃପଣ ଭାବରେ ଉଜାଡ଼ି ଦେଇଛନ୍ତି। ତାହା ବିଷୟରେ ଯାହା କୁହାଯାଉନା କାହିଁକି 'ପ୍ରେମଚିନ୍ତାମଣି' ଯେ ଓଡ଼ିଆ କାବ୍ୟସାହିତ୍ୟରେ ଉଜ୍ଜ୍ୱଳ ରତ୍ନ ବିଶେଷ ଏଥିରେ କୌଣସି ସନ୍ଦେହ ନାହିଁ।

ଓଡ଼ିଆଙ୍କ କାନ୍ଦଣା (୧୯୩୬) ବାରଟି ଛୋଟ କବିତାର ସମାହାର। ଏଥିରେ ଆବେଗ ଅଛି, ସ୍ୱତସ୍ଫୁର୍ତ୍ତତା ଅଛି, ଭାବ ଏବଂ ଭାଷା ଯୋଜନାରେ ଅବାରିତ ସ୍ୱଚ୍ଛନ୍ଦତା ଅଛି। ଚିନ୍ତା ବିନା ...... ରଚନା କଲମରୁ ବହିଯାଇଛି ବାଧାବନ୍ଧନ ଶୂନ୍ୟ ଭାବରେ। ତେବେ କ'ଣ ଯେମିତି ଗୋଟିଏର ଅଭାବ ଏଥିରେ ପ୍ରାଣପ୍ରତିଷ୍ଠା କରିପାରିନାହିଁ। ଏହାକୁହିଁ ବୋଧହୁଏ ଡଃ ମାନସିଂହ ଶିଳ୍ପକଳାର ଅଭାବ ବୋଲି କହିଛନ୍ତି। ତେବେ ଓଡ଼ିଆମାନଙ୍କ ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନାରେ କବି ଏତେ ଅକପଟ ଯେ, ତାଙ୍କର ଆନ୍ତରିକତାକୁ ସନ୍ଦେହ କରିବାର କୌଣସି କାରଣ ନାହିଁ। ନିମ୍ନ ମଧ୍ୟବିତ୍ତ ଓଡ଼ିଆ ପରିବାରର ଦୁଃଖର ବିବରଣୀ ଏଭଳି ନିରୁତା ଓଡ଼ିଆ ଭାଷାରେ କିଏ କେବେ ଦେଇଥିଲେ, ତାହା ଆମକୁ ଜଣାନାହିଁ। ଏହାକୁ ପଢ଼ିଗଲେ ପ୍ରାଣ ହାହାକାର କରିଉଠେ, ଏକ ଅକଥନୀୟ ଯନ୍ତ୍ରଣାରେ ଶ୍ୱାସରୁଦ୍ଧ ହୋଇଗଲା ଭଳି ଲାଗେ। ଚିନ୍ତାର ଗହଳ ବଉଦ ଆରପଟେ ଆସି ଠିଆହୁଏ ଏକ ବିଷଣ୍ଣ, ବିଷାଦିତ ନାରିମୂର୍ତ୍ତି ଆଖିରେ ଯାହାର ବିଶ୍ୱର ନିର୍ଯ୍ୟାତିତ ମାନବ ଜାତିର ବେଦନାକୁ ନିଜ ପ୍ରାଣରେ ଅନୁଭବ କରିବାର କାରୁଣ୍ୟ ଆଉ ମଥା ତାହାରି ଚରଣରେ ସ୍ୱତଃ ନଇଁଯାଏ। ନଥାଉ ଏଥିରେ କବିତାର କାରୁକଳା... ଭାବନାକୁ ନୀତିନିୟମ ନିଗଡ଼ ମଧ୍ୟରେ ପ୍ରକାଶ କରିବାର ବିଦଗ୍ଧ ଜନୋଚିତ ଚମତ୍କାରିତା - ତଥାପି ସେ ଏ ଜାତିର ଜାଗ୍ରତ ଚେତନା।

ଗଡ଼ଜାତ କୃଷକ (୧୯୩୯) ପ୍ରକାଶ ପାଇଛି ତାଙ୍କ ତିରୋଧାନ ପରେ। ଏହାକୁ ଏକ ଗାଥା-କବିତା କୁହାଯାଇପାରେ। ଗଡ଼ଜାତି ଶାସନର କଠୋର ଲୌହପର୍ଦ୍ଦା ଭିତରେ ସେଠାକାର କୃଷକ ଜୀବନ କିଭଳି ନିର୍ଯ୍ୟାତିତ ହେଉଥିଲା 'ଗୋକୁଳି ନାଏକ' ନାମକ କାଳ୍ପନିକ ଚରିତ୍ରର ଜୀବନ ବିଶ୍ଳେଷଣ ମାଧ୍ୟମରେ କବି ତାହା ଦେଖାଇଛନ୍ତି। ଶାସନର ସର୍ବଗ୍ରାସୀ କ୍ଷୁଧାର ଲେଲିହାନ ଶିଖାରେ ଏହି ନିଃସ୍ୱ ଚାଷୀର ପରିବାର କିଭଳି ଭାବରେ ନିଃଶେଷିତ ହୋଇଯାଇଛି, କବି ତାହାର ମାର୍ମିକ ବିବରଣୀ ପ୍ରଦାନ କରିଛନ୍ତି। ଭାଗ୍ୟ ଭବିତବ୍ୟ ଉପରେ ଅଟଳ ବିଶ୍ୱାସ, ଧର୍ମ ପ୍ରତି ଐକାନ୍ତିକ ନିଷ୍ଠା ଏବଂ ସର୍ବୋପରି ପଥର ଦେବତା ପ୍ରତି ଅତୁଟ ଭରସା... ଏ ତିନୋଟି କାର୍ଯ୍ୟ ଯେ, ନିରୀହ ଜନତାର ଦୁର୍ଦ୍ଦଶାର ପ୍ରଧାନ କାରଣ– ଏହା ଚେତାଇ ଦେଇ କବି ହୁଏତ ସେମାନଙ୍କ ମନରେ ପ୍ରତିବାଦ ପ୍ରବୃତ୍ତି ସୃଷ୍ଟି କରିବାକୁ ଚାହିଁଛନ୍ତି।

ମଣିକାଞ୍ଚନ (୧୯୨୫) ଉତ୍କଳ ସାହିତ୍ୟରେ ପ୍ରକାଶିତ ଏକ ଅସମ୍ପୂର୍ଣ୍ଣ କାବ୍ୟ। ଶୁଣାଯାଏ ଯେ, ରାଧାନାଥ ଯୁଗର ଅନ୍ୟାନ୍ୟ କବିଙ୍କ ଭଳି ଏକ ପୂର୍ଣ୍ଣାଙ୍ଗ କାବ୍ୟ ଲେଖିବାର ଶକ୍ତି ତାଙ୍କର ନାହିଁ ବୋଲି ଆକ୍ଷେପ କରାଯିବାରୁ ସେ ଏହି କାବ୍ୟ ଲେଖିବାକୁ ଆରମ୍ଭ କରିଥିଲେ ଏକ ଆହ୍ୱାନର

ଉତ୍ତର ରୂପେ। ମାତ୍ର ଏହାକୁ ପୂର୍ଣ୍ଣାଙ୍ଗ କରିପାରି ନାହାନ୍ତି। ବଙ୍ଗଳାଶ୍ରୀ ରାଗରେ ସାବିତ୍ରୀ ଏବଂ ସତ୍ୟବାନଙ୍କ ମିଳନ କାହାଣୀକୁ ଏଥିରେ ବର୍ଣ୍ଣନା କରାଯାଇଛି। ମାତ୍ର ଯାହା ଦେଖାଯାଉଛି, ଏ ଧରଣର କାବ୍ୟ ଲେଖିବା ପାଇଁ ତାଙ୍କର ଆନ୍ତରିକ ପ୍ରେରଣା ନଥିଲା। ଏଥିପାଇଁ ଯେଉଁ ଧରଣର ମାନସିକ ପ୍ରସ୍ତୁତି ପ୍ରୟୋଜନ, ତାହା ହୁଏତ ତାଙ୍କର ନଥିଲା। ସବୁଠୁ ବଡ଼ ଅଭାବ ଥିଲା ସମୟର। ଡାକ୍ତରୀ ଜୀବନର ସଦାବ୍ୟସ୍ତତା ମଧ୍ୟରେ ଖଣ୍ଡକବିତା କେତୋଟି ଲେଖିଦେବା ହୁଏତ ସମ୍ଭବ, ମାତ୍ର ପୂର୍ଣ୍ଣାଙ୍ଗ ଏକ କାବ୍ୟ ଲେଖିବା ଏକ ବିଳାସ ବ୍ୟତୀତ ଅନ୍ୟ କିଛି ନୁହେଁ। ତେଣୁ ସେ ସେଭଳି ଚେଷ୍ଟା ମଧ୍ୟ କରିନାହାନ୍ତି।

କବି ରୂପରେ କୁନ୍ତଳାକୁମାରୀ ଓଡ଼ିଆ ସାହିତ୍ୟରେ ଏକ ସ୍ଥାୟୀ ଆସନର ଅଧିକାରିଣୀ ହୋଇ ରହିବେ କିମ୍ବା ନାହିଁ, ସେ ଏକ ସ୍ୱତନ୍ତ୍ର ପ୍ରଶ୍ନ ଏବଂ ବିଚାରଗତ କୂଟତର୍କର ଅପେକ୍ଷା ରଖେ। ଆମେ କେବଳ ଏତିକି କହିପାରୁ ଯେ, ସେ ଗଙ୍ଗାଧରଙ୍କ ଭଳି ନୈସର୍ଗିକ ଶକ୍ତିର ଅଧିକାର ନେଇ ଜନ୍ମଗ୍ରହଣ କରିଥିଲେ। ଉପଯୁକ୍ତ ସୁଯୋଗ ଏବଂ ପରିବେଶ ପାଇଥିଲେ, ତାଙ୍କର ସର୍ଜନା ବୃତ୍ତି ଯେ ଅଧିକ ମାର୍ଜିତ ହୋଇଥାଆନ୍ତା ଏଥିରେ ସନ୍ଦେହ ନାହିଁ। ତାଙ୍କର ପ୍ରତିଭା ଥିଲା, ମାତ୍ର ଅନୁଶୀଳନ ନିମନ୍ତେ ସୁଯୋଗ ନଥିଲା। ଯେଉଁ ଶକ୍ତି ଟିକକ ନେଇ ସେ ଆସିଥିଲେ, ତା'ରି ପ୍ରୟୋଗ କରି ସେ କେବଳ ଓଡ଼ିଆରେ ନୁହେଁ, ଇଂରାଜୀ ଓ ହିନ୍ଦୀରେ ମଧ୍ୟ କବିତା ଲେଖିଛନ୍ତି। ତାଙ୍କଭଳି ମାତ୍ର ଚାରିମାସ ବିଦ୍ୟାଳୟର ମୁହଁ ଦେଖିଥିବା ଛାତ୍ରୀ ପକ୍ଷରେ ଏହା କ'ଣ ଏକ ଆଶ୍ଚର୍ଯ୍ୟଜନକ କଥା ନୁହେଁ? ଏ ପ୍ରସଙ୍ଗରେ ରବୀନ୍ଦ୍ରନାଥ, ସେକ୍ସପିୟର୍ ପ୍ରଭୃତି ବହୁ ସ୍ରଷ୍ଟାଙ୍କ ଦୃଷ୍ଟାନ୍ତ ଦିଆଯାଇପାରେ। ବିଧିବଦ୍ଧ ଶିକ୍ଷା କହିଲେ ଯାହା ବୁଝାଯାଏ, ତହିଁରୁ ସେମାନେ ବଞ୍ଚିତ ଥିଲେ। ମାତ୍ର ସେମାନେ ଯେଉଁ ପରିବେଶ ପାଇଥିଲେ, ଆମର କବି ତାହାର କାଣିଚାଏ ମଧ୍ୟ ପାଇନଥିଲେ। ପାର୍ଥକ୍ୟ ହେଉଛି ଏଇଠି।

ଅନୁଭବର ଗଭୀରତା ତଥା ଦର୍ଶନର ତୀକ୍ଷ୍ଣତା – ଏ ଦୁଇଟି ଶକ୍ତି ହେଉଛି ତାଙ୍କର ସହଜାତ ଏବଂ ଯେକୌଣସି ପ୍ରତିଭା ପାଇଁ ଏହା ଗୁଣ ସଦୃଶ। ଏହା ସହିତ ମିଶିଥିଲା ତାଙ୍କର ଜାତୀୟ ଚେତନା, ମାନବିକତା, ବିପ୍ଳବ ଭାବନା, ବିଭୁଚେତନା, ପ୍ରକୃତିପ୍ରେମ ଏବଂ ରହସ୍ୟଧର୍ମିତା ପ୍ରଭୃତି ନାନା କଥା। ଅବଶ୍ୟ ଏଗୁଡ଼ିକ ମଧ୍ୟ ଅନୁଭୂତିର ରୂପାନ୍ତରିତ ପ୍ରକାଶ। ଏ ସବୁର ସମନ୍ୱୟରେ ହିଁ ତାଙ୍କର ପରମ ଆତ୍ମିକ ମୁହୂର୍ତ୍ତରେ କବିତା ସୃଷ୍ଟି ଫୁଲଭଳି ଫୁଟି ଉଠୁଥିଲା। ତାଙ୍କର କଳ୍ପନା ସବୁବେଳେ ଅନ୍ତର୍ବିଚାରର ସୂକ୍ଷ୍ମକୋଟୀକୁ ସ୍ପର୍ଶ କରୁଥିବାରୁ ପାଠକ ସହଜରେ ଏହାର ଭାବ ସହିତ ଏକାତ୍ମ ହୋଇଯାଉଥିଲେ। ବଙ୍ଗୀୟ କବି ହୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ମତରେ, "କବିତା ଫୁଲପରି, ମେଘ ପରି ସ୍ୱୟଂପ୍ରକାଶ। ଏକ ସମୟରେ ପଦ ଗୋଟିଏ ରୂପ ନିଏ, ଯାହା ପଛରେ ଥାଏ କୌଣସି ଆବେଗପ୍ରବଣ ମୁହୂର୍ତ୍ତର ସୂକ୍ଷ୍ମ ଅନୁଭୂତି।" କବି ମାତ୍ରେଇ ଭାବୁକ। ଆମର କବି ମଧ୍ୟ ଏହିଭଳି ଥିଲେ। କଳ୍ପନାକୁ ଚିନ୍ତାର ଦାର୍ଶନିକ ସ୍ତରକୁ ନେଇ ବିନ୍ୟାସର କୌଶଳରେ ଏବଂ ରଚନାଶୈଳୀର ମାଧୁର୍ଯ୍ୟରେ ସେ ସୃଷ୍ଟି କରିଯାଉଥିଲେ। ଭଗବତ୍ ଗୀତାରେ କର୍ମଯୋଗର ମହତ୍ତ୍ୱ ସ୍ୱୀକାର କରାଗଲା ଭଳି କିମ୍ବା ଉପନିଷଦ୍‌ରେ କର୍ମରେ ଆତ୍ମାର ସ୍ୱାତନ୍ତ୍ର୍ୟ ସ୍ୱୀକାର କରାଗଲା ଭଳି ଚିନ୍ତା ଆମର କବିଙ୍କୁ ଗଭୀର ପ୍ରଭାବିତ କରିଥିଲା। 'ତଥାପି ମୋ ଆତ୍ମାମୂଳ ନଯିବରେ ମଉଳି' ଭଳି ବର୍ଣ୍ଣନାରେ ଦୁଃଖର ଦରିଆରେ ଅସହାୟ ଭାବରେ ଉବେଇଟୁବେଇ ହେଉଥିବା ମଣିଷଟି ପାଇଁ କବି ଅଶେଷ ଆଶାର

ସନ୍ଦେଶ ବାଢ଼ିଦେଇଛନ୍ତି। 'କର୍ମ ମୋର ମୁହିଁ କରିଯିବି, ତୁମ ଆଦେଶକୁ ଥିବି ଚାହିଁ / ସୁଖେଦୁଃଖେ ମୋର ଭାଗ ବାଣ୍ଟିବାକୁ ତୁମକୁ ମୁଁ କହୁନାହିଁ'' – ଯେତେବେଳେ ଏହିଭଳି ଚିନ୍ତାଟିଏ ପାଠକ ଆଗରେ ଥୁଆ ହୋଇଯାଏ, ସେତେବେଳେ ପାହାଡ଼ଭଳି ସ୍ଥାଣୁତା ମଧ୍ୟରୁ ବିଜୁଳୀ ଭଳି ଚଞ୍ଚଳତା ଆଡ଼କୁ ସେ ଆପେ ଆପେ ଟାଣି ହୋଇଯାଏ ସେଥିସହ ମିଶିଯାଏ। ପ୍ରତ୍ୟେକ ଅବସ୍ଥା ସହିତ ବୁଝାମଣା କରି ବାଟ ଚାଲିବାର ଏକ ପ୍ରତ୍ୟୟ। ଜୀବନ ପାଇଁ ଏତିକି ହେଉଛି କବିଙ୍କର ଭୂମିକା।

କୁନ୍ତଳାକୁମାରୀ ସର୍ବମୋଟ ଛଅଟି ଉପନ୍ୟାସ ଲେଖିଥିଲେ, ଯେଉଁଥିରୁ ପାଞ୍ଚଖଣ୍ଡି ପ୍ରକାଶିତ ହୋଇଅଛି। ଏଗୁଡ଼ିକ ମଧ୍ୟରୁ 'ରଘୁ ଅରକ୍ଷିତ' ହେଉଛି ସବୁଠାରୁ ବଡ଼। କବିତା ଭଳି କୁନ୍ତଳା କୁମାରୀ ଉପନ୍ୟାସ ରଚନାରେ ସିଦ୍ଧି ହାସଲ କରିପାରି ନାହାନ୍ତି। ତେବେ ସମସାମୟିକ ଜୀବନହିଁ ଏଥିପାଇଁ ତାଙ୍କୁ ଉପାଦାନ ଯୋଗାଇ ଦେଇଛି। 'ରଘୁ ଅରକ୍ଷିତ'ର କାହାଣୀ ତ ଏକ ସତ୍ୟଘଟଣା ଆଧାରିତ ବୋଲି ଚକ୍ରଧର ମହାପାତ୍ର ଲେଖିଛନ୍ତି। ଡାକ୍ତର ହିସାବରେ ତାଙ୍କର ବହୁ ସ୍ଥାନକୁ ଯାତ୍ରା ଏବଂ ବହୁ ଲୋକସମ୍ପର୍କ ହିଁ ତାଙ୍କ ଲେଖାପାଇଁ ଉପାଦାନ ଯୋଗାଇ ଦେଇଥିଲା। ତେବେ ଉପନ୍ୟାସଗୁଡ଼ିକୁ ସେ ମୁଖ୍ୟତଃ ସଂସ୍କାର ନିମନ୍ତେ ବ୍ୟବହାର କରିଛନ୍ତି। ଗ୍ରନ୍ଥାବଳୀର ଗଦ୍ୟ ଖଣ୍ଡରେ ଏସବୁର ବିସ୍ତୃତ ଆଲୋଚନାର ଅବସର ଥିବାରୁ ଏଠାରେ କେବଳ ସୂଚନା ମାତ୍ର ଦିଆଗଲା।

ଏଥର ତାଙ୍କର ଦିଲ୍ଲୀ ପ୍ରବାସ ସମ୍ପର୍କରେ କିଛି ଆଲୋଚନା କରି ଆମେ ଏହି ରଚନା ଶେଷ କରିବା। କୁନ୍ତଳା ୧୯୨୮ ମସିହାରେ ସବୁଦିନ ପାଇଁ ଓଡ଼ିଶା ଛାଡ଼ି ଚାଲିଯାଆନ୍ତି ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ୧୯୩୮ ମସିହା ପର୍ଯ୍ୟନ୍ତ ଦିଲ୍ଲୀରେ ରହନ୍ତି। ସେଠାରେ ସେ ବିବାହ କରନ୍ତି କୃଷ୍ଣପ୍ରସାଦ ବ୍ରହ୍ମଚାରୀ ନାମକ ଜଣେ ନିତାନ୍ତ ଅଯୋଗ୍ୟ ଲୋକକୁ। ସେହିଁ ଶେଷରେ ତାଙ୍କ ମୃତ୍ୟୁର କାରଣ ହୁଅନ୍ତି। ଦିଲ୍ଲୀ ପ୍ରବାସ ସମୟରେ ସେ ଓଡ଼ିଆ ସାହିତ୍ୟ ପାଇଁ ପ୍ରାୟ କିଛି କରିପାରି ନାହାନ୍ତି। ବୈବାହିକ ଜୀବନର ନିତ୍ୟ ଅଶାନ୍ତି ହିଁ ହୋଇଛି ଏହାର କାରଣ। ତାଙ୍କ ଜୀବନୀକାର ଚକ୍ରଧର ମହାପାତ୍ର ଲେଖିଛନ୍ତି, ''ଯେଉଁ ସତ୍‌କୀର୍ତ୍ତି, ଯଶୋରାଶି ଏହି ୨୭/୪/୨୩ ଦିନ (ତାଙ୍କ ଓଡ଼ିଶା ଛାଡ଼ିବା ସମୟ) ବୟସ ମଧ୍ୟରେ ଅର୍ଜିଥିଲେ, ତାହାହିଁ ତାଙ୍କ ଜୀବନର ମୁଖ୍ୟ ମହତ୍ତ୍ୱ। ମୋଟେ ୨୭ ବର୍ଷର କୃତିତ୍ୱ ଯୋଗୁଁ ହିଁ ସେ ଆଜି ମଧ୍ୟ ଘରେ ଘରେ ଅବିସ୍ମୃତା।'' (କୁନ୍ତଳା କୁମାରୀ ଜୀବନ ଚରିତ- ପୃ:୨୮୦)

ଦିଲ୍ଲୀ ରହଣି ସର୍ବଭାରତୀୟ ସ୍ତରରେ ତାଙ୍କୁ ଯେ କେବଳ ଏକ ବିଶିଷ୍ଟ ଚିକିତ୍ସିକା ରୂପରେ ପ୍ରତିଷ୍ଠା ଦେଇଥିଲା, ତାହା ନୁହେଁ। ତାଙ୍କର ସାଂସ୍କୃତିକ ଜୀବନକୁ ମଧ୍ୟ ବହୁ ଦିଗରୁ ବିସ୍ତୃତ କରିଥିଲା। ୧୯୩୦ରେ ବୃନ୍ଦାବନର ଗୁରୁକୁଳ ତାଙ୍କୁ ତାଙ୍କର ବାର୍ଷିକୋତ୍ସବରେ ସଭାନେତ୍ରୀ ରୂପରେ ବରଣ କରିଥିଲେ। ଜଣେ ଓଡ଼ିଆ ନାରୀଙ୍କ ପାଇଁ ଏହା କିଛି କମ୍ ସମ୍ମାନଜନକ ନଥିଲା ଏବଂ ଏହି ଘଟଣା ପରେ ବୁଦ୍ଧିଜୀବୀ ମହଲରେ ତାଙ୍କ ନାମ ବିଶେଷ ଭାବରେ ପ୍ରଚାରିତ ହୋଇଥିଲା। ପୁଣି ୧୯୩୨ରେ ବରେଲିରେ ହେଉଥିବା ଆର୍ଯ୍ୟ ମହାସମ୍ମେଳନର ମହିଳା ଶାଖାର ସଭାନେତ୍ରୀ ରୂପରେ ସେ ବରିତ ହୋଇଥିଲେ। ସେଠାରେ ତାଙ୍କ ଭାଷଣ ଅତ୍ୟନ୍ତ ସାରଗର୍ଭକ ଏବଂ ଉପଯୋଗୀ ହୋଇଥିବାର ପତ୍ରପତ୍ରିକାମାନଙ୍କରେ ବାହାରିଥିଲା। ଦିଲ୍ଲୀରୁ ସେ ପୁରୀ ଜେଲ୍‌ରେ ଥିବା ତାଙ୍କ ସ୍ୱାମୀଙ୍କୁ ସାକ୍ଷାତ କରିବାକୁ ଆସି ଜଗନ୍ନାଥ ଦର୍ଶନ କରିଥିଲେ ଏବଂ ଏହି ଅବସରରେ କଟକରେ ତାଙ୍କୁ ଏକ ସମ୍ବର୍ଦ୍ଧନା

ମଧ୍ୟ ଦିଆଯାଇଥିଲା । ଦିଲ୍ଲୀରେ ଥିବା ସମୟରେ ସେ ହିନ୍ଦୀରେ କେତୋଟି କବିତା ଲେଖିଥିଲେ ଏବଂ ତାହା 'ବରମାଲା' ନାମରେ ପ୍ରକାଶିତ ହୋଇଥିଲା । ହିନ୍ଦି ସମାଲୋଚକମାନେ ଏହାକୁ 'ଗୀତିକାବ୍ୟ' ଅଭିଧାରେ ଚିହ୍ନିତ କରିଥିଲେ । ସେଠାରେ ସେ ମଧ୍ୟ 'ସ୍ତ୍ରୀ ଭୂଷଣ' ନାମକ ହିନ୍ଦି ପତ୍ରିକାର ସମ୍ପାଦନା କରୁଥିଲେ । ଲକ୍ଷ୍ୟଥିଲା, ''ଓଡ଼ିଆ ଜାତିର ପ୍ରଶସ୍ତି ଓ ପ୍ରତିପତ୍ତି'' ସେ ଅଞ୍ଚଳରେ ପ୍ରସାର କରାଇବା । ଏଇଥିପାଇଁ ସେ ହିନ୍ଦୀରେ 'ନାରୀ ଜାଗରଣ', 'ସତିତ୍ୱ' ଓ 'ସୁଦିନ' ପ୍ରଭୃତି ପୁସ୍ତକ ରଚନା କରିଥିଲେ । ବହୁ ସଭାରେ ପୌରୋହିତ୍ୟ କରିବା ପାଇଁ, ବକ୍ତା ହେବାପାଇଁ କିମ୍ବା ପୁରସ୍କାର ବିତରଣ କରିବା ପାଇଁ ତାଙ୍କୁ ନିମନ୍ତ୍ରଣ ମିଳୁଥିଲା ଏବଂ ସେ ମଧ୍ୟ ସେଥିରେ ଯୋଗ ଦେଉଥିଲେ । କଲିକତାରୁ ବାହାରୁଥିବା 'ପ୍ରବାସୀ ଓଡ଼ିଆ' ମଧ୍ୟ ସେ ଏହି ସମୟରେ ସମ୍ପାଦନା କରୁଥିଲେ ।

ଦିଲ୍ଲୀରେ ଥିବା ସମୟରେ ସେ ବହୁକାର୍ଯ୍ୟରେ ଲିପ୍ତ ରହି ହୁଏତ ପାରିବାରିକ ଜୀବନର ଅଶାନ୍ତିକୁ ଭୁଲିଯିବାକୁ ଚାହିଁଥିଲେ । ମାତ୍ର ତାଙ୍କ ଜୀବନର ଦୁଷ୍ଟଗ୍ରହ ତାଙ୍କୁ ଏଇ ସାମାନ୍ୟ ସୁଯୋଗ ଟିକକ ଦେବାପାଇଁ ମଧ୍ୟ ପ୍ରସ୍ତୁତ ନଥିଲେ । ନିତ୍ୟ ନୂତନ ସମସ୍ୟାମାନ ତାଙ୍କ ଆଗରେ ଠିଆ କରାଇଦେଉଥିଲେ । ତା'ରି ଭିତରେ ଓଡ଼ିଶା ପାଇଁ ଓଡ଼ିଆ ଭାଷା ପାଇଁ ଚିନ୍ତା ମଧ୍ୟ ଥିଲା । ତା' ସହିତ ଯୁକ୍ତ ହୋଇଥିଲା ଭାରତ ଚିନ୍ତା । ଲେଖିଛନ୍ତି, ''ମୋର ଦେଶ ପରାଧୀନ, ପଦଦଳିତ - ମୁଁ ମଧ୍ୟ ପରାଧୀନ, ପଦଦଳିତ ବନ୍ଦୀ, ଅକର୍ମଣ୍ୟ । x x ଭାରତବର୍ଷ ଗୋଲାମିର ଜଞ୍ଜିରରେ ଆବଦ୍ଧ । ସେ ମୁକ୍ତି ଚାହେଁ, ସ୍ୱରାଜ୍ୟ ଚାହେଁ'' – ସ୍ୱାମୀର ନିତ୍ୟ ନୂତନ ଉପଦ୍ରବ ଏବଂ ସନ୍ତାନମାନଙ୍କର ଅସୁସ୍ଥତା ତାଙ୍କର ଜୀବନୀଶକ୍ତିକୁ ସତେଯେପରି ନିଃଶେଷ କରିଦେଇଥିଲା । ଏହି ଅବସ୍ଥାରେ ଅଗଷ୍ଟ ୨୩, ୧୯୩୮ରେ ତାଙ୍କର ଏକ ପୁତ୍ରସନ୍ତାନ ଜନ୍ମ ହେଲା । ଏଥିପାଇଁ ତାଙ୍କର ଦୀର୍ଘକାଳର ସ୍ୱପ୍ନ ଥିଲା । ପୁତ୍ର ଜନ୍ମର ସମ୍ବାଦରେ ସେ ଆନନ୍ଦରେ ହସୁହସୁ ମୂର୍ଚ୍ଛିତ ହୋଇପଡ଼ିଲେ ଏବଂ ସେଇ ମୂର୍ଚ୍ଛା ଆଉ ଭାଙ୍ଗିଲା ନାହିଁ । ମାତ୍ର ୩୮ ବର୍ଷ ବୟସରେ ଅଶାନ୍ତ ପକ୍ଷୀଟି ଫେରିଗଲା ତା'ର ଚିରନ୍ତନ ନୀଡ଼କୁ ।

କୁନ୍ତଳାକୁମାରୀଙ୍କ ଜୀବନର ଇତିହାସ ହେଉଛି ସଂଗ୍ରାମ ଓ ସଂଘର୍ଷର, ନିପୀଡ଼ନ ଏବଂ ନିର୍ଯ୍ୟାତନାର ତଥା ଦୁଃଖ ଏବଂ ଯନ୍ତ୍ରଣାର ଏକ ବେଦନା ଜର୍ଜରିତ ଇତିହାସ । ଏ ଏଭଳି ଏକ ଜୀବନ, ଯେଉଁଥିରେ ଅନେକ ସମ୍ଭାବନା ଥିଲା, ଇତିହାସ ସୃଷ୍ଟିର ନିଶ୍ଚିତ ପ୍ରତ୍ୟାଶା ଥିଲା । ମାତ୍ର ଜୀବନ ନଦୀଟି ମରୁପଥରେ ଗତି ହରାଇ ଚିରଦିନ ପାଇଁ ଅକାଳରେ ଲୁପ୍ତ ହୋଇଗଲା । ପ୍ରତିଭା ସହିତ ପ୍ରଣୟର କଳଙ୍କିତ ସମ୍ପର୍କରୁ ବହୁ ଜୀବନ ଏହିଭଳି ବ୍ୟର୍ଥ ହୋଇଯାଇଥିବାର ଇତିହାସରୁ ଦେଖିବାକୁ ମିଳେ ।

ଜୀବନକୁ ସେ ଧରି ନେଇଥିଲେ ଏକ ଖେଳଘର ରୂପେ । ଖେଳୁ ଖେଳୁ ଶିଶୁ ଯେମିତି ନିଜ ନିର୍ମିତ ଧୂଳିଘରକୁ ଭାଙ୍ଗିଦେଇ ଚାଲିଯାଏ, ଭୁଲରେ ସୁଦ୍ଧା ପଛକୁ ଅନାଏ ନାହିଁ. କୁନ୍ତଳାକୁମାରୀ ମଧ୍ୟ ସେହିଭଳି ଘର ଗଢ଼ିଛନ୍ତି, ପୁଣି ତାକୁ ନିଜ ହାତରେ ଭାଙ୍ଗିଦେଇ ଚାଲିଯାଇଛନ୍ତି । ପୁଣି ନୂତନ ନୀଡ଼ ରଚନାର ସ୍ୱପ୍ନ ଦେଖିଛନ୍ତି । ନିରାଶ ହୋଇନାହାନ୍ତି । ଆଗାମୀ କାଲିର ସୁନେଲୀ ସ୍ୱପ୍ନ ତାଙ୍କୁ ବିଭୋର କରିରଖିଛି । ଆଗକୁ ବଢ଼ିବା ନିମନ୍ତେ ପ୍ରେରଣା ଯୋଗାଇଛି । ତେବେ ଯାହାକୁ ଅବଲମ୍ବନ କରି ସେ ଗଢ଼ିବାର ସ୍ୱପ୍ନ ଦେଖିଛନ୍ତି, ସେ ତାଙ୍କୁ ନିରାଶ କରିଛି । ଆଗ୍ରହରେ ବଢ଼ାଇଥିବା ହାତ ତାଙ୍କୁ ଫେରାଇ ନେବାକୁ ପଡ଼ିଛି । ଧୂଧୂ ଜୀବନମରୁରେ ବାଟ ଚାଲୁ ଚାଲୁ ସେ ସବୁବେଳେ ଆଗକୁ

ଅନାଇ ଖୋଜିଛନ୍ତି ଗୋଟିଏ ଛାୟା ଶୀତଳ ଓଏସିସ୍‌କୁ । ସବୁ ରାତିର ସକାଳ ଥାଏ । ତାଙ୍କର ଭାଗ୍ୟବିଧାତା ତାଙ୍କ ପାଇଁ ନିଶ୍ଚୟ ସେହିଭଳି ଏକ ସୁନେଲୀ ପ୍ରଭାତର ବ୍ୟବସ୍ଥା କରିବେ । ମାତ୍ର ତାଙ୍କର ଏହି ପ୍ରତ୍ୟାଶା ସଫଳ ହୋଇନାହିଁ । ଚଲାପଥରେ ଯାହା ବାରମ୍ବାର ତାଙ୍କୁ ପ୍ରଲୁବ୍ଧ କରିଛି, ଯାହାକୁ ନିଶ୍ଚିତ ଆଶ୍ରୟ ମଣି ସେ ଆଗେଇ ଯାଇଛନ୍ତି, ପାଖକୁ ଯାଇ ଦେଖିଛନ୍ତି, ତାହା ମରିଚିକା ମାତ୍ର । ଶକ୍ତି ନଥିଲେ ମଧ୍ୟ ତେଣୁ ତାଙ୍କୁ ପୁଣି ଆଗକୁ ବଢ଼ିବାକୁ ହୋଇଛି ।

ଏ ଏଭଳି ଏକ ଜୀବନ, ପାଇବାର ସମସ୍ତ ସମ୍ଭାବନା ଥାଇ ମଧ୍ୟ ପ୍ରାପ୍ତିର ଘର ଯେଉଁଠି ପ୍ରାୟ ଶୂନ୍ୟ ରହିଯାଇଛି । ଆଜି ଏତେଦିନ ପରେ ତାଙ୍କର ଜୀବନର ସଫଳତା ଏବଂ ବିଫଳତାକୁ ବିଚାର କରିବାକୁ ବସିଲେ ଯାହା ପ୍ରଥମେ ଆଖିରେ ପଡ଼େ ତାହା ହେଉଛି ତାଙ୍କ ସ୍ୱପ୍ନବିଳାସିତା । କବିମାନେ ଏଭଳି ହୁଅନ୍ତି । ଭାବୁକତାର ତୋରା ସ୍ରୋତରେ ଟାଣି ହୋଇ ଯାଉ ଯାଉ ଜୀବନର ଯଥାର୍ଥତାକୁ ଭୁଲିଯାଆନ୍ତି ଏବଂ ସେଥିପାଇଁ ମାହାସୁଲ ଗଣୁଥାଆନ୍ତି । କୁନ୍ତଳାକୁମାରୀ ଏହିଭଳି ଥିଲେ ; ଜାତିପାଇଁ, ଭାଷା ପାଇଁ ବିପ୍ଳବୀ ସାଜିବାରେ ତାଙ୍କର ତିଳେହେଲେ ଶଙ୍କା ନଥିଲା । ଜୀବନ ବିଦ୍ୟାଳୟ ତାଙ୍କୁ ବାଲ୍ୟକାଳରୁ ସଂଗ୍ରାମର ଦୀକ୍ଷା ଦେଇଥିଲା । ବୀର ଭାବରେ ଲଢ଼ିଯିବାର ଶିକ୍ଷା ଦେଇଥିଲା । ଲଢୁ ଲଢୁ ଟଳିପଡୁଥିବା ସୈନିକକୁ ବୀର କୁହାଯାଏ । କୁନ୍ତଳାକୁମାରୀ ସେହିଭଳି ଥିଲେ ।

ମଣିଷ କୁନ୍ତଳା କୁମାରୀ କାଳର ଗର୍ଭରେ ଲୀନ ହୋଇଯାଇଛନ୍ତି । ତା ସହିତ ତାଙ୍କର ମାନବବାଦିତା, ଜାତୀୟତା, ବୈପ୍ଳବିକତା ସବୁ ମଧ୍ୟ ଆମେ ଭୁଲିଯାଉଛୁ । ସାହିତ୍ୟିକ କୁନ୍ତଳାକୁମାରୀ କିନ୍ତୁ ଯୁଗ ଯୁଗ ଧରି ପ୍ରତ୍ୟେକ ଓଡ଼ିଆର ହୃଦୟ ସିଂହାସନରେ ଦେବୀ ରୂପରେ ଅଧିଷ୍ଠିତା ହୋଇ ରହିବେ । ସୁଖର କଥା 'ନାରୀକବି କୁନ୍ତଳା କୁମାରୀ ଗ୍ରନ୍ଥାବଳୀ'କୁ ପୁନଃପ୍ରକାଶ କରିବା ପାଇଁ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ ଆଗେଇ ଆସିଛନ୍ତି । ଏହାର ପ୍ରାଣପୁରୁଷ ଶ୍ରୀ ଗଙ୍ଗାଧର ତ୍ରିପାଠୀ ଏହି ସାରସ୍ୱତ କାର୍ଯ୍ୟ ନିମନ୍ତେ ଯେଉଁ ଆଗ୍ରହ ପ୍ରକାଶ କରିଛନ୍ତି, ସେଥିନିମନ୍ତେ ଏ ଜାତି ଚିରଦିନ ପାଇଁ ତାଙ୍କ ନିକଟରେ କୃତଜ୍ଞ ରହିବ । ଶ୍ରୀଜଗନ୍ନାଥଙ୍କ ନିକଟରେ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି । ସେଥିପାଇଁ ମୋ ନିଜ ପକ୍ଷରୁ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନର ଦୁଇ ବନ୍ଧୁ ବିଭୁବାବୁ ଏବଂ ଶକ୍ତିବାବୁଙ୍କୁ ଆଶୀର୍ବାଦ କରୁଛି । ସଂପାଦିତ ଗ୍ରନ୍ଥାବଳୀ ତଥା ଗବେଷକମାନଙ୍କ ପ୍ରୀତିଭାଜନ ହେଲେ ଶ୍ରମ ସାର୍ଥକ ହେବ ବୋଲି ମଣିବି ।

ଡଃ ହେମନ୍ତ କୁମାର ଦାସ

୨।୮।୦୩
କଟକ

## ସୂଚୀପତ୍ର

◆

# ଅଞ୍ଜଳି

ଉତ୍କଳଭାରତୀ

ଶ୍ରୀମତୀ କୁନ୍ତଳା କୁମାରୀ ସାବତ, ଏଲ୍.ଏମ୍.ପି.

# ଉତ୍ସର୍ଗ

ଓଁ

ଅଶେଷ ସର୍ବଗୁଣାଳଂକୃତା, ଦୟାବାତ୍ସଲ୍ୟ ମଣ୍ଡିତା, ହିନ୍ଦୁରମଣୀର ଆଦର୍ଶ ସ୍ଥାନୀୟା, ସାହିତ୍ୟାନୁରାଗିଣୀ, ପ୍ରତିଭା ମୟୀ ଦର୍ପଣୀ କିଲ୍ଲାଧୀଶ୍ୱରୀ, ପୂଜନୀୟା ରାଣୀ ଲକ୍ଷ୍ମୀଦେବୀଙ୍କର ଶ୍ରୀ କରକମଳରେ ମୋହର ଭକ୍ତି ଓ ଶ୍ରଦ୍ଧାର୍ ଅଞ୍ଜଳି ନିଦର୍ଶନ ସ୍ୱରୂପ ଅର୍ପିତ ହେଲା ।

ଶ୍ରୀମତୀ କୁନ୍ତଳା କୁମାରୀ ସାବତ୍
କଟକ, ୫-୨-୨୨

# ଭୂମିକା

ଇଦାନୀନ୍ତନ ସାହିତ୍ୟ ଯୁଗର ବିଶିଷ୍ଟରଥ ମାନନୀୟ

ଶ୍ରୀଯୁକ୍ତ ନୀଳକଣ୍ଠ ଦାଶ, ଏମ୍.ଏ., ଏମ୍.ଏଲ୍.ଏ.

ମହାଶୟ ଅଞ୍ଜଳିର ପୂଜାପଦ୍ଧତି ନାମକ

ଗୋଟିଏ ମାତ୍ର କବିତା ଶୁଣି କ'ଣ ଲେଖିଅଛନ୍ତି ?

Legislative
Assembly

ଶ୍ରୀରାମଚନ୍ଦ୍ରପୁର
ସାକ୍ଷୀଗୋପାଳ
(ପୁରୀ)
୧୫.୫.୧୯୨୬

ଆୟୁଷ୍ମତୀ କୁମାରୀ,

ଆପଣଙ୍କ ସଙ୍ଗେ ଥରେମାତ୍ର ଦେଖା ହୋଇଥିଲା । ସେ ବହୁଦିନ ତଳେ । ଏ ମଧ୍ୟରେ ଜୀବନର ଗତି ଏକ ପ୍ରକାର ପ୍ରହେଳିକାର ମାୟାଜାଲରୁ ବଳିଛି । ନିଷ୍ଠା ନିମନ୍ତେ ଅବକାଶ ନାହିଁ । ଯେଉଁଠାରେ ନିଷ୍ଠା ନାହିଁ, ସେଠାରେ ସରସ୍ୱତୀଙ୍କର କି ଘୋର ସଙ୍କୋଚ, ତାହା ଆପଣଙ୍କୁ ବୁଝାଇ କହିବା ନିଷ୍ପ୍ରୟୋଜନ । ବେଳେବେଳେ ମନେହୁଏ, ସାହିତ୍ୟ କବିତାଦି ଆଲୋଚନା କରିବା ଦୂରେଥାଉ, ଅନୁଭବ କରିବା ହୁଏତ ଭାଗ୍ୟରେ ଘଟିବ ନାହିଁ । କିନ୍ତୁ ବଡ଼ ବିଚିତ୍ର କଥା ଆଜି ଆପଣଙ୍କ ପାଖକୁ ଏ ପତ୍ର ନଲେଖି ରହିପାରୁନାହିଁ ବୋଲି ଲେଖୁଛି । ମୋର ସାହିତ୍ୟ-ସୁହୃଦ ବାସୁଦେବ ମହାପାତ୍ର ଆଜି 'ସାହିତ୍ୟ ସଂଗ୍ରହ' ପୁସ୍ତକ ଧରି ଆପଣଙ୍କ 'ପୂଜାପଦ୍ଧତି' ଶୀର୍ଷକ କବିତାଟି ପଢୁଥିଲେ । "ହରି ହରି କେହି ଡାକୁଛି ସତତ, ପ୍ରଭୁ, ପ୍ରଭୁ କେହି କହେ," ଏହା ତାହାର ପ୍ରଥମ ପଦ । କବିତା ଶୁଣି ବସିଲି, କିନ୍ତୁ କେତେବେଳେ କିପରି ଶୁଣିଲି ତାହା ଏବେ ମଧ, ବାସ୍ତବିକ୍ ବୁଝିପାରୁନାହିଁ । କବିତାଟିର ମୁଗ୍ଧ ସୁନ୍ଦର ମୂର୍ତ୍ତି ଏବେ ମଧ ମନରୁ ଯାଉନାହିଁ । ବିଶେଷ କଥା ମୋର ମନେହୁଏ ଓଡ଼ିଆ ସାହିତ୍ୟରେ ଏପରି

ସାର୍ବଜନୀନ ପ୍ରାଣସ୍ପର୍ଶୀ 'ପୂଜାପଦ୍ଧତି' କେହି କେବେ ଲେଖିନାହାନ୍ତି । ଆପଣଙ୍କୁ ଅଧିକ କ'ଣ ଲେଖିବି ?

ଆପଣଙ୍କ ଲେଖନୀର ଧାରା ଏବେ କାହିଁକି ଏତେ ମନ୍ଥର ଭାବରେ ଗତି କରୁଛି ବୁଝି ପାରୁନାହିଁ । ଯୌବନହିଁ ଜୀବନର ସମ୍ପଦ— ଭାବୁକତା ଓ କବିତାର ଶୁଦ୍ଧ ଅବକାଶ ଯୌବନରେ ହିଁ ସମ୍ଭବ । ଏହାହିଁ ଅନନ୍ତ ମାନବାଶାର ପରମପୀଠ । ଏତେବେଳେ କାବ୍ୟନିଷ୍ଠା ମାନବର ବିଳାସ ନୁହେଁ, ପ୍ରକୃତିଗତ । ବିଧାତାଙ୍କର ଆପଣଙ୍କଠାରେ ଯେ ଅନୁଗ୍ରହ ପ୍ରକାଶ ପାଇଛି ତାହା ସାବ୍ୟସ୍ତ କରିବାର ଅବକାଶରେ ରହି, ଆପଣ ଏତେବେଳେ କାବ୍ୟଦେବୀଙ୍କୁ ସେବାରେ ବିଶେଷ ନିରାଶ କରିବେନାହିଁ ବୋଲି ଅନୁରୋଧ କରେ । କାମନା କରେ ବିଧାତାଙ୍କର ଶୁଭ ଆଶୀର୍ବାଦରେ ଆପଣଙ୍କ କାବ୍ୟକଳାରେ ପୁଷ୍ପ ବୃଷ୍ଟିହେଉ । ଉତ୍କଳ ଭାରତୀ ଆପଣଙ୍କ ସେବାରେ ତୁଷ୍ଟ ହୁଅନ୍ତୁ । ଇତି ।

ଶୁଭାକାଙ୍କ୍ଷୀ

*ନୀଳକଣ୍ଠ ଦାସ*

# ସୂଚୀପତ୍ର

●

# ଅଞ୍ଜଳି

## ପ୍ରଶ୍ନୋତ୍ତର

ପ୍ରଶ୍ନ – ''କାହିଁ ନିବାସ ତୋର—
କହ, ଧରମରାଜ,
ଧରା, ନଭ, ସାଗର
କେଉଁଣେ କରୁ ବିରାଜ ?''
ଉତ୍ତର– 'ଜାଣିନାହୁଁ ଅଜ୍ଞାନ
ତୋର ହୃଦମନ୍ଦିର
ମୋର ପ୍ରିୟ ସଦନ
ଜେଣେ ଖୋଜୁ ମୋ' ଘର ।
ନିବସିବି ତହିଁରେ
ଦେଲେ ତୁ ଅନୁମତି,
ବିଳମ୍ବେ ଫଳ କିରେ !
ହୃଦ ଦିଅ ସମ୍ପ୍ରତି'' ।



## କା'ପାଇଁ

କାପାଇଁ କିପାଇଁ ହୃଦୟ-ମନ୍ଦିରେ
ସଜାଡ଼ିଛି ପୁଲଡ଼ାଲା,
କାପାଇଁ କିପାଇଁ ଲୋତକ-ସୂତ୍ରରେ
ରଚିଅଛି ପ୍ରେମମାଳା
ହୃଦ-ଦେବୀ ମୋର ସଜାଇ ଯତନେ,
ବସାଇବି ପରା ଦେବତା ରତନେ,
ନିତି ମୋର ଅଭିଳାଷ:
ତାର ଦେଖା ପାଇଁ
ବସିଛି ଅନାଇ
ସୁଦୀର୍ଘ ବରଷ ମାସ ।



## ନିବେଦନ

ଦେବ ହେ !
ତୁମ୍ଭଙ୍କୁ ପୂଜିବା ସକାଶେ ମୋହର
ସାଧନା, ରଚନା, ପ୍ରେମ-ଫୁଲ ହାର,
ଭକତିସୂତ୍ରରେ ଗୁନ୍ଥି ସୁଯତନେ,
ପ୍ରଣମି ଉଦ୍ଦେଶେ ଭକ୍ତି-ପୂତ ମନେ,
ପ୍ରେମ କରେ ବେନି ଦେବି ମୁଁ ଗଳାର,
ବୁହାଇବି ପ୍ରେମେ ନୟନର ଧାର,
ତେଣୁ ଏ ଲେଖନୀ ଧରିଛି ଏଥର ।
ଦେବ ହେ !
ନୟନର ଶତ ଉର୍ଦ୍ଧ୍ୱରେ ବିରାଜି,
ହାତ ଟେକି ଆଶୀର୍ବାଦ କର ଆଜି,
ତୁମ୍ଭରି ଉଦ୍ଦେଶେ ରଚି ଫୁଲମାଳା,
ସଜାଇବି ବୋଲି ସଜାଡ଼ିଛି ଡ଼ାଲା,
ସହଜେ ଅବୋଧ ଅଜ୍ଞାନ ମୁଁ ସଖା,
ତେଣୁ ମୋର ହୃଦେ ଉଦେ ଶତ ଦକା,
ତଥାପି ତୁମ୍ଭେ ମୋ ଅଭ୍ର ବରାଭୟ,
ତୁମ୍ଭ ପାଦପଦ୍ମେ ନେଲି ମୁଁ ଆଶ୍ରୟ ।
ଦେବ ହେ !
ଥରେ ନତ ନେତ୍ରେ ଚାହିଁ ମୋତେ ନାଥ,
ଧୂଳିରେ ଧୂସର କ୍ଷୁଦ୍ର ଅବଜ୍ଞାତ,
ତୁମ୍ଭରି ଚରଣ-ସରସିଜ-ରଜ,
ପୋଛ ବା ନ ପୋଛ ମୋତେ ନ ନରଜ,
ତୁମ୍ଭର ବୋଲି ମୁଁ କର ଦୟା-କର,
ସଫଳ ସାର୍ଥକ ଲେଖା, ମନୋହର,
ହେଉ ସର୍ବପ୍ରିୟ-ହେଉ ସୁଧା ସମ,
ତୁମ୍ଭ ପାଦତଳେ ପ୍ରାର୍ଥନା ଏ ମମ ।
ଦେବ ହେ !
ଆସ, ଆସ, ଥରେ ଆସ ମୂର୍ତ୍ତି ଧରି,
ଜ୍ୱଳନ୍ତ ଜୀବନ ଦେବତା ମୋହରି,

ମୋ' ଶତ କଳ୍ପନା ଜୀବନ୍ତ କବିତା,
ଜୀବନ ସ୍ୱରୂପ ଉଦ ହେ ସବିତା !
ପଦ ଜ୍ୟୋତିର୍ମୟ, ବାସ ପ୍ରଭାମୟ,
ତୁମ୍ଭଙ୍କୁ ନିରେଖି ଉଜ୍ଜ୍ୱଳୁ ହୃଦୟ,
ଭୟ ଅବିଶ୍ୱାସ ଯାଉ ବହୁ ଦୂର,
ପରସ୍ପରେ ହେଉ ମିଳନ ମଧୁର,
ତୁଟିଯାଉ ମୋର ମୋହ-ଅନ୍ଧକାର
ମୋହ ଆବରଣ କରହେ ବାହାର,
ଉଜ୍ଜ୍ୱଳ ଆଲୋକ ନୟନ-ସମକ୍ଷେ,
ନିତି ଅନାଇଣ ଆଲିଙ୍ଗିବି ବକ୍ଷେ ।

ଦେବ ହେ !

ବାସନା ମୋହର ତୁମେ ଆସ ବୋଲି,
ରଚିବି ତୁମ୍ଭର ବେଶ ଫୁଲ ତୋଳି,
ପ୍ରେମାଦରେ ହୃଦେ କରି ଆକର୍ଷଣ,
କ୍ଷଣେ ସ୍ତବ୍ଧ ହେବ ହୃଦୟସ୍ପନ୍ଦନ,
ବେନି ଆଖିପଥେ ପ୍ରେମବାଷ୍ପରାଶି,
ବହିଯିବ ଉଷ୍ଣ, ହୃଦ ଯିବ ଭାସି,
ଜଡ଼ି ପରସ୍ପରେ, ଯୁଗଳ ମିଳନେ
ମଧୁର ଉଜ୍ଜ୍ୱଳେ, ଶକତି ଜୀବନେ
କରୁଣ, କୋମଳ, ଲଳିତ, ରୁଚିରେ,
ଆଙ୍କିନେବି ଛବି ହୃଦୟ ମଝିରେ,
ଅଥବା ଭଗନ ହୃଦ-ବୀଣା-ତାରେ
ସ୍ୱର ଦିଆଇବି ତବ ଚାଳନାରେ ।

ଦେବ ହେ !

ଆସ ମୋର ଦୀନ ହୃଦୟ ମନ୍ଦିରେ,
ପ୍ରଣମିବି ପଦେ ଭକ୍ତି ନତ ଶିରେ,
ଲଗାଇ ଲଲାଟ ଚରଣ ଧୂଳିରେ,
ପବିତ୍ର ହେବି ମୁଁ ଅନ୍ତରେ ଶରୀରେ ।
ମୋହର ମୂରତି ତୁମ୍ଭ ଭିତରକୁ,
ଘେନି ନିରେଖିବି କେବଳ ତୁମ୍ଭକୁ
ମୋର ସତ୍ତା ଯିବ ହଜି ତୁମ୍ଭଠାରେ,
ଏଥୁ ବଳି ସୁଖ ଚାହେଁ ନା ସଂସାରେ

ଦେବ ହେ !

କାତର ପ୍ରାର୍ଥନା ଶୁଣ ମୋର ଆଜି,
ତବ ପ୍ରେମ ଜଳେ ଚିତ୍ତ ଦିଅ ମାଜି,
ସିଞ୍ଚିଦିଅ ତବ ସୁଧାମୟ ସ୍ନେହ,
ପବିତ୍ର ହେଉ ମୋ ପଞ୍ଚମନ ଦେହ,
ତୁମ୍ଭଙ୍କୁ କବିତାଆକାରେ ପ୍ରକାଶି,
ତୁମ୍ଭଠାରେ ରସି ତୁମ୍ଭରେ ଉଲ୍ଲାସି,
ତୁମ୍ଭଙ୍କୁ ବିକାଶି ମୋର ପ୍ରତିକର୍ମେ,
ସାଧନା କରିବି ଶାନ୍ତି ପ୍ରେମ ଧର୍ମେ ।

ଦେବ ହେ !

ଅଜ୍ଞାନ ଅବୋଧ ମୁହିଁ କ୍ଷୁଦ୍ର ଜନ,
ତହୁଁ ବଳି କ୍ଷୁଦ୍ର ଏ ଭାଷା ସୁମନ,
ଆହରଣ କରି କ୍ଷୁଦ୍ର ବେନି କରେ,
ପ୍ରେମ ଫୁଲ ହାର ରଚିଛି ସାଦରେ,
ପୂଜିବି ବୋଲିବି ମୁଁ ତବ ଶ୍ରୀଚରଣ,
କରନାହିଁ ସଖା କେବେହେଁ ବାରଣ,
କ୍ଷୁର୍ଣ୍ଣ ମନେ ଅବା କାନ୍ଦିବି ନୀରବେ,
ଧୈର୍ଯ୍ୟ କି ଧରିବ ନ ବାଧିବ ଲବେ,
ତବ ମନେ ସଖା, ତବ ଆଦରର,
ପ୍ରତ୍ୟାଶୀ ତୁମ୍ଭଙ୍କୁ ଅଟେ ତା ଗୋଚର ।



## ଆବାହନ

ଆସ ପ୍ରଭୁ ଦୟାମୟ ! ଢ଼ାଳ କୃପାବାରି,
ଗାଇବି ସତତ ମୁଦେ ନାମଟି ତୁମ୍ଭର,
ମଧୁମୟ ସୁଲଳିତ ତାନ ମନୋହାରୀ,
ପବିତ୍ର, ସୁନ୍ଦର, ସୁଖ, ଶାନ୍ତିର ଆକାର ।
ଜନ୍ମଭୂମି ଭାରତୀୟ ବୀଣା-ତନ୍ତ୍ରୀତାନେ,
ତୋଷିବି ସଜଳ ହୃଦ ଅମୃତ ନିସ୍ୱନେ,
ଭକ୍ତିଭରେ ନତଶିରେ ତୋଳି ସନମାନେ
ସ୍ୱ ଦେଶ-ଭାରତୀ ପୂତ ସୁନ୍ଦର ସୁମନ ।
ପଦ୍ୟ ପୁଷ୍ପାଞ୍ଜଳି ଭରି ଦେବି ସେ ପୟରେ,
ଭକ୍ତି ଅଶ୍ରୁସିକ୍ତ ଆହା ଲଳିତ ମଧୁର,

କ୍ଷୁଦ୍ର ହେଉ ଉପହାର ଦେବି ତ ସାଦରେ,
ହୃଦୟ ଉଲ୍ଲାସ ଶତ କରୁଣ ବିଧୁର ।
ଉତ୍କଳ-ସାହିତ୍ୟାଳୟେ ତବ ଯଶୋଗୀତି,
ଉତ୍କଳ ଭାରତୀ ରମ୍ୟ, ପୂତବୀଣା-ତାରେ
ଅମୃତ-ଝଙ୍କାରେ ସ୍ଫୁରି ମୋହୁ ସର୍ବକ୍ଷିତି,
ପରଶୁ ମରମସ୍ଥଳ ତୁମରି କୃପାରେ ।
ସଫଳ କର ହେ ମୋର ଏଦୀନ ଲେଖନୀ,
ମାଗେ ଏହି ବର ପ୍ରଭୁ ତବ ଶ୍ରୀପୟରେ,
ସାଦରେ ଗ୍ରହଣ କରୁ ଉତ୍କଳ ଜନନୀ,
ଆଶୀଷ କର ହେ ପ୍ରଭୋ, ଏ ଲେଖନୀ ପରେ ।
ମାତୃଭାଷା-ଦୀପେ ଢ଼ାଳି ତବ ଧର୍ମାଲୋକ,
ସେ ଆଲୋକେ ପାସୋରିଣ ଦୈନ୍ୟ, ଦୁଃଖ ଶୋକ,
ଫୁଟି ହସିବ ସହସ୍ର ହୃଦୟ-କମଳ ।
ତବ ଚରଣ ରାଜୀବ ସେବିବ ସତତ,
କ୍ଷୁଦ୍ର ମମ ମାତୃଭାଷା ଫୁଲ ଅଞ୍ଜଳିରେ;
କ୍ଷୁଦ୍ର ନୁହେ ସେହି ଆହା ପବିତ୍ର, ମହତ,
ମୋର ଭାଷା ବଡ଼ ସିନା ମୋହରି କତିରେ ।
କେ ଭାବୁ ତାହାକୁ ନୀଚ, ସେ ମୋର ଅମୃତ,
ରସନା ଯା' ଉଚ୍ଚାରଣେ ପିଟିଲା ପ୍ରଥମ
କେ ବୋଲୁ ନୀରସ, ରୁକ୍ଷ, ତଥାପି ସେ ପୂତ,
ଭାଷା-ଫୁଲ-ବ୍ରଜେ ସେତ ମନ୍ଦାର-ସୁମନ ।
ଶିଖାଅ ସେବିବି ଯେହ୍ନେ ଦେଇ ସର୍ବଶକ୍ତି,
ମାତୃଭାଷା ଅର୍ଘ୍ୟେ ତବ ଶ୍ରୀପଦ-ନଳିନ,
ଢ଼ାଳି ମୋର ଜ୍ଞାନ, ବିଦ୍ୟା, ବୁଦ୍ଧି, ପ୍ରୀତି, ଭକ୍ତି,
ଦିନୁଁ ଦିନୁଁ ହେଉଥିବି ଉନ୍ନତ-ମହିମ ।
କର ଆଶୀର୍ବାଦ ପ୍ରଭୁ ସେହି ଭାଷାପରେ
ଚିର ଆଦରଣୀୟ, ସେ ବରେଣ୍ୟ, ସୁନ୍ଦର;
ଥାଉ ଶତ ଶତ ଭାଷା ଦେଶ ବିଦେଶରେ
ମଣେ ଯେହ୍ନେ ଏକା ତାହା ସମ୍ପତ୍ତି ମୋହର ।
ସନ୍ତାନର ଦତ୍ତ କ୍ଷୁଦ୍ର ତୁଚ୍ଛ ଉପହାର
ଆଦରରେ ଘେନ ହେ ତାତ ତବ ବଡ଼ପଣେ,
କ୍ଷମ ଶତ ଅସଙ୍ଗତି ଦୋଷରାଶି ତାର,
ଅଛେ ସ୍ଲାନ ପ୍ରଭୁ ଦୀନ ତୁମରି ଚରଣେ ।



# ସେବିକାର ପ୍ରାର୍ଥନା

ତୁମ ପୂଜାପାଇଁ ସଖା ହେ
ସଜାଡ଼ିଛି ବେଦିକା,
ଶୁଦ୍ଧ ଶାନ୍ତ ହୋଇ ବସିଛି
ଦୀନା ତବ ସେବିକା ।
ତୁମେ ଆସ ଆସ ବୋଲି ତ
ନିତି ଡ଼ାକୁଛି କେତେ,
ଯେତେ ହେଉଅଛି ନିରାଶ
ପ୍ରେମ ବଢ଼ୁଛି ତେତେ ।
ତୁମେ ବଡ଼ ମୁଁତ ସାନ ହେ
ତୁମ ଆଦରେ ବଡ଼,
ତୁମେ ସଜଫୁଲ ସରି ହେ,
ମୁଁ ତ ଫୁଟନ୍ତା କଢ଼ ।
ତୁମେ ତେଜୋବାନ ଆଦିତ୍ୟ,
ମୁଁ ତ କ୍ଷୀଣ ଚନ୍ଦ୍ରମା,
ଲଭି ତବାଲୋକ ପ୍ରଭୁ ହେ,
ବଢ଼େ ମୋର ସୁଷମା ।
ତୁମେ ପୂର୍ଣ୍ଣ-ସୁଧା-ସିନ୍ଧୁ ହେ,
ମୁଁ ତ କ୍ଷୁଦ୍ର-ସରିତ,
ତୁମ ପାଦତଳ ଅଧୀନ
ଥିବା ମୋର ଉଚିତ ।



# ଆହ୍ୱାନ

ଆସ ଆସ ମୋର ହେ ଚିରବାଞ୍ଛିତ
ବସ ହେ ହୃଦୟ ଆସନେ
ଦେଖିବି ତୁମର ପବିତ୍ର ଆନନ
ଲୋତକ ପୂରିତ ଲୋଚନେ ।
ମଣ୍ଡିଅଛି ଆଜ ହୃଦୟ-ଭବନ,
ମଣିମୁକୁତାରେ କରି ସୁଯତନ,
ଆସ ଆସ ମୋର ଜୀବନ ରତନ,

ହୃଦ-ପଦ୍ମ ବନ୍ଧୁ-ଭାସ୍କର,
କୁସୁମିତ ଲତା-ନିକୁଞ୍ଜ-କୁଟୀରେ
ପଡୁ ତବ ପାଦ-ପୁଷ୍କର।
ତୋଳିଅଛି ଫୁଲ, ଗୁନ୍ଥିଅଛି ହାର,
ଚାଙ୍ଗୁଡ଼ି ପୂରାଇ ପୂଜାର ସମ୍ଭାର,
ଭକତି-ଅରଘ, ନୟନ ଆସାର,
ସବୁତ ରଖିଛି ସଜାଡ଼ି,
ଘେନି ବେନି କରେ, ପ୍ରୀତି-ପୁଲକିତ
ପାଦତଳେ ଦେବି ଅଜାଡ଼ି।
ଉଚ୍ଛନ୍ନେ ଧାଇଣ ଶ୍ରୀପଦ-ସାରସ,
ଚାହିଁ ଚାହିଁ ହାୟ ! ବିତୁଛି ବରଷ,
କ୍ଷଣେ କ୍ଷଣେ ମନ ଭଜୁଛି ବିରସ,
କିମ୍ବା ଏଡ଼େ ତବ ଉଚ୍ଛର,
ବେଳ ବୁଡ଼ିଲାଣି, ଧୃତି ଛାଡ଼ିଲାଣି,
ଆସ ଆସ ପ୍ରଭୁ ସତ୍ୱର।

# ପୂଜା

ପାଦ ପୂଜିବା ଲାଗି ଶତୋପଚାର
ସଜାଡ଼ି ରଖିଅଛି ପୂଜା-ସମ୍ଭାର,
ଗୁନ୍ଥି ରଖିଛି ମନ-ଫୁଲର ହାର
ଆକୁଳେ ବସିଅଛି ଜଗି ଦୁଆର ।୧।
ହୃଦୟ ବେଦୀ ଗଢ଼ି ଅତି ଯତନ
ମଣ୍ଡିଣ ଅଛି ଘେନି ପ୍ରେମ ରତନ,
ବସିବୁ ତହିଁ ବନ୍ଧୁ, ଏ ଅକିଞ୍ଚନ
କାହୁଁ ପାଇବ ହୀରା, ମଣି, କାଞ୍ଚନ ।୨।
ବ୍ୟସ୍ତ ଥିଲି ମୁଁ ପରା, ସାରା-ସକାଳ
ଗୋଟାଇ ପିଙ୍ଗୁଥିଲି ହୃଦ-ଜଞ୍ଜାଳ,
ଝାଡ଼ି ନିର୍ମ୍ମଳ କରି, ଗୁନ୍ଥିଣ ମାଳ,
ଅନାଇ ରହିଲି ତୋ, ଆସିବା କାଳ ।୩।
କେତେ କାଳ ତ ବୃଥା ବିତିଲା ଆସି
ଅନାଇ ବସି ତୋତେ ହେଲି ଉଦାସୀ,
ଭାଳିବୁ କାଳେ ପରା ମୁଁ ଅବିଶ୍ୱାସୀ,
ଜଗି ବସିଛି ତେଣୁ ବିଶ୍ରାମ ନାଶି ।୪।
ଘଡ଼ିକି ଘଡ଼ି ମନ ହୁଏ ଉଚ୍ଛନ୍ନ
ମୁହୂର୍ତ୍ତେ ଯୁଗେ ବୋଲି ହୁଏ କି ଭ୍ରମ ?
ହୃଦ-କୋଣରେ ପରା ପ୍ରେମ ପ୍ରଚ୍ଛନ୍ନ,
ଛନକା ପଶେ ତେଣୁ ହୃଦେ ସଘନ ।୫।
ପାଦ-ଶବଦ ପରା ଶୁଭିଲା ଆସି,
କଳ୍ପନା ନେତ୍ରେ ରୂପ ଉଠିଲା ଭାସି,
ରୋମାଞ୍ଚ କଳେବର ହର୍ଷେ ଉଲ୍ଲାସି,
ସକଳ ମନୋବୃତ୍ତି ଉଠେ ବିକାଶି ।୬।
ଖରେ କମ୍ପଇ ତନୁ ପ୍ରେମେ ମୋହିତ,
ପ୍ରତି ରୋମ କି ସ୍ୱେଦକଣା ଜଡ଼ିତ,
ଶିରା ଶିରାରେ ଖେଳେ ପରା ତଡ଼ିତ,
ବାଧା ନ ମାନି କିଛି ଧାଏଁ ତ୍ୱରିତ ।୭।
କାହିଁତ କିଛି ନାହିଁ, ଦୂର କାନନେ,
ପତର ମରମର ମନ୍ଦ ପବନେ,
ବାଜିଲା କାନେ ପରା, ମନ-ଉଚ୍ଛନ୍ନେ
ଚାହିଁଲି ଚଉଦିଗ ମୁଗ୍ଧ-ନୟନେ ।୮।
ଆସି ହେଲାଣି ସଞ୍ଜ ଆସିଲୁ ନାହିଁ,
କି କଥା କଲୁ ଏତେ ଭାବ ଲଗାଇ ?
ଆସିବୁ ପରା ମୋତେ କହିଲୁ ସାଇଁ,
ସାନ, ଅଜ୍ଞାନ ବୋଲି ଦେଲୁ ଭଣ୍ଡାଇ ।୯।
ଏବେ ଭଣ୍ଡିଲୁ ସିନା, ଆସିବ ଦିନ,
ଆଣ୍ଟେକରି ରହିଥା' ମହା ମହିମ,
ବଡ଼ିମା-ପଣ ଛାଡ଼ି ଏ ଦୀନହୀନ,
ପଡ଼ିବ କୁଟି-ଦ୍ୱାରେ ପାଦ ନଳିନ ।୧୦।
ଶିଥିଳ କଳେବର ଜରା ପରଶି
ଜୀବନ-ନାଡ଼ୀ ଯେବେ ଯିବଟି ଖସି,
ଘନ-ଅନ୍ଧାରେ ଆତ୍ମା କାନ୍ଦିବ ବସି,
ଓହ୍ଲାଇ ଆସିବୁ ତ ଜ୍ୟୋତି ବରଷି ।୧୧।
ଦୀନ ଭିକାରୀ ପରି ରିକ୍ତ ହସ୍ତରେ
ବସିବି ଯେବେ ଭବ-ସିନ୍ଧୁ ତଟରେ,
ନ୍ୟାତି କରିବୁ ପାରି, ତରୀ ପ୍ରେମରେ,
ଜଉଡ଼ି ବିନା ଦୟା ବନ୍ଧ ମୋ' ପରେ ।୧୨।

ଆସି ଉଇଁଲା ପରା ଗଗନେ ତାରା
ଝରି ତ ପଡ଼ିଲାଣି ଚାନ୍ଦିନୀ-ଧାରା,
ଘୋଟିଲାଣି ଅନ୍ଧାର ଧରଣୀ ସାରା
ଫୁଟିଲେଣି ପ୍ରସୂନ ନୟନ-କାରା ।୧୩।
ଚୁମି ସଧୀରେ ଜ୍ୟୋସ୍ନା ଫୁଲ-ଲପନେ
ଚରଚୁଛି ଧରଣୀ ଅଙ୍ଗ ଚନ୍ଦନେ,
ଫୁଲ ସୁରଭି ବହେ ଧୀର ପବନେ
ଜଳି ଉଠଇ ସଞ୍ଜ-ଦୀପ ସଦନେ ।୧୪।
ମନ୍ଦିରେ ଶୁଭିଲାଣି ଆରତି ନାଦ,
ଗଣିଲାଣି ଆକୁଳେ ମନ ପ୍ରମାଦ,
ହରଷ ବିହାୟସେ ଘନ-ବିଷାଦ
ଆବରି ନାଶେ ଚିତ୍ତ-ଜ୍ୟୋତି-ଆହ୍ଲାଦ ।୧୫।
ତୃଷା ଆକୁଳେ ମୋର ଯୁଗଳ ଆଖି-
କୋଣେ ଝରିଲା ଲୁହ, ରହିଛି ଲାଖି,
ଏ ଚନ୍ଦ୍ର, ତାରା, ସନ୍ଧ୍ୟା, ତହିଁକି ସାକ୍ଷୀ,
କେବେ ଆସିବୁ ସଖା ? ମୁଁ ନିରିମାଖି ।୧୬।
ଦେଖିବି କେତେଦିନ ଧରିବୁ ଆଣ୍ଟ,
ତେତେଦିନ ସରିକି ଚାହିଁଛି ବାଟ,
ତୋ ପ୍ରେମେ ନାହିଁକି ହେ ମୋ ରାଗ ବାଣ୍ଟ,
ଜଗି ବସିଛି ମେଲି ହୃଦ କବାଟ ।୧୭।
ପ୍ରେମ ବିତରୁ ଭବେ ତୁ ପ୍ରେମ-ରାଟ,
ବସାଇ ଅଛୁ ଭାବେ ପ୍ରେମର ହାଟ,
ଟେକିଣ ସର୍ବୋପରି ପ୍ରେମର ଥାଟ
ଭବ-ମାୟାରେ ଖେଳି ପ୍ରେମର ନାଟ ।୧୮।
ଘନେ ବିଜୁଳି ପରି ଦେଇ ତୁ ଦେଖା,
ମିଳାଇ କ୍ଷଣେ ଶୂନ୍ୟେ ଆଙ୍କିଣ ରେଖା,
ମିଳାଇ କ୍ଷଣେ ଶୂନ୍ୟେ ଆଙ୍କିଣ ରେଖା,
ହୃଦୟ ପଟେ ମୋର; କରେ ଅପେକ୍ଷା,
ଆସିବୁ ବୋଲି, ଆଉ କାହିଁ ତୋ ଦେଖା ?।୧୯।
ବୁଝି କି ନାହୁଁ ତୁହି ମୋ ଆକୁଳତା ?
ନୋହିଲେ କିମ୍ବା ଏତେ ଦିଅନ୍ତୁ ବ୍ୟଥା ?
ଜଣାଗଲା ଭଲାରେ ତୋହରି କଥା
ଦୀନ ଜନ ଭାବି ଏ ତୋର ଶଠତା ।୨୦।
ଦୀନ ଜନ ମୁଁ ସତ, ତୁ ନୃପମଣି
ତଥାପି ତୁହି ମୋର ହୃଦୟ ମଣି,
କେମନ୍ତେ ଚାଲିବି ତୋ ବିନା ସରଣୀ ?
ଅନ୍ଧ ମୁଁ, କଣ୍ଟାବନ ସିନା ଧରଣୀ ।୨୧।
କରିବି କିସ ବନ୍ଧୁ ? ତୋ ପାଦ ଛାଡ଼ି,
ଚାଲିବି କେଉଁ ପଥେ କି ବୁଦ୍ଧି କାଢ଼ି ?
ଖଞ୍ଜ ମୁଁ, ନାମ ତୋର ମୋ' ଆଶା-ବାଡ଼ି,
ମୁଁ ସିନା ମାଂସ-ପିଣ୍ଡ, ତୁ ଜୀବ ନାଡ଼ୀ ।୨୨।
ଅବା ଏ ଦେହେ ମୋର ପ୍ରାଣ-ପବନ,
ତୋ' ସଞ୍ଚରଣେ ସିନା ଧରେ ଜୀବନ,
ତୋର ଆଲୋକେ ଦୀପ୍ତ ମୋର ନୟନ
ଅନ୍ତରେ ପ୍ରିୟ ତୁହି ଅନ୍ତରତମ ।୨୩।
ତୋ ରୂପେ ତନୁ ସିନା ଶୋଭା-କାନନ,
ତୁ ପରା ପରିମଳ, ମୁହିଁ ସୁମନ,
ତୁ ଅବା ବସନ୍ତର ଚୋରା ପବନ,
ମୁଁ ତହିଁ ପଦ୍ମଗନ୍ଧ ମନୋମୋହନ ।୨୪।
ମୁଁ ଅବା ଫୁଲ-ଗଭା ଶୋଭିତା ତହିଁ,
ନବୀନ ମଧୁମୟ ବସନ୍ତ ତହିଁ,
ତୁହି ସୁନ୍ଦରତମ, ନୁହଇ କହି
ତୋ ବିନା ପ୍ରାଣ ମୋର କେଡ଼େ ବିରହୀ ।୨୫।
ମୋ ପିକ-କଣ୍ଠେ ପରା ପଞ୍ଚ ଲହରୀ-
ଅମୃତ-ଗୀତ ଗାଉ ମୋହିତ କରି,
ମନ-ଚୂତ-ବକୁଳ ମୁକୁତା କରି,
ଗୁପତେ ପ୍ରେମ-ବାସ ନେଇ କି ହରି ? ।୨୬।
ବଡ଼ ସୁନ୍ଦର ପୁଣି ବଡ଼ ଚତୁର,
ପଦ-ପଙ୍କଜ ଲାଗି ହୃଦ ଆତୁର,
ଜାଣି ମନର କଥା ରହିଲୁ ଦୂର
ବେଳକୁ ଦଗା ଦେଲୁ ଏଡ଼େ ନିଷ୍ଠୁର ।୨୭।
ଏହି କି ପ୍ରେମ ତୋର ହେ ପ୍ରାଣସାଇଁ ?
ବରଷା-ବାରି-ସଙ୍ଗେ ନଦୁଁ ଓହ୍ଲାଇ
କାନେ କାନେ ଗୋପନେ ଧୀରେ ଶୁଣାଇ
ନିରୋଳେ ପ୍ରେମଭାଷା, ଥିଲୁ ତୁ ଯାଇ ।୨୮।
ସନ୍ଧ୍ୟା-ଶିଶିର-ବୋଳା ଶୁଭ୍ର ମଲ୍ଲିକା-
ନବୀନ ବିକଶିତ ରମ୍ୟ କଳିକା,

ଚିକ୍କଣ କରି ଗୁନ୍ଥିଅଛି ମାଳିକା
ବେଢ଼ାଇ ଅଛି ଘେନି ହୃଦ-ବେଦିକା । ୨୯ ।
ନୟନ-ଜଳେ ବାସ କର୍ପୂର ଘଷି,
ସିଞ୍ଚି ମଣ୍ଡପ ଅତି ଯତନେ ବସି,
ଅନାଇ ରହି ଧୈର୍ଯ୍ୟ ଯାଉଛି ଖସି,
ହୃଦ ଆକୁଳ ଘୋର ବେଦନା ପଶି । ୩୦ ।
କାହିଁକି ନ ଆସୁ ତୁ କହ ଦଇତ,
ବଡ଼ ହୋଇଣ ଏହା ନୁହେ ଉଚିତ,
ଆଶ୍ରିତେ ଅନାଦର କରି ବ୍ୟଥିତ,
ନିଷ୍ଠୁର କୃପା ତୋର ପରାଣ ମିତ । ୩୧ ।
ଦୀନଜନ ଭାବି କି କରୁଛ ହେଳା,
ମଝି ସାଗରେ ମୋର ବୁଡ଼ିବ ଭେଳା,
ସାଙ୍ଗ ହୋଇବ କ୍ଷଣେ ଏ ଭବ ଖେଳା,
କୃପା କରିଣ ନାଥ ରଖ ଏ ବେଳା । ୩୨ ।
ତ୍ରିଭୁବନ କାଣ୍ଡାରି ! ଏ ଜୀବ ନାହା,
ଘୋର ବିପଦେ ସିନା ଏକା ତୁ ସାହା,
ଭୀମ-ଭବ ସାଗରେ ଦିଶେ କି ରାହା,
ପ୍ରଭଞ୍ଜନ ତାଡ଼ନେ ବୁଡ଼ିବ ଆହା । ୩୩ ।
ଏ ଭବ-ମରୁ ଦେଶେ କି ପଥ ଦିଶେ,
ତୃଷା ଆକୁଳେ ପ୍ରାଣ ଦଗ୍‌ଧ, ନିମିଷେ,
ମରୀଚି-ଜଳ-ଭ୍ରାନ୍ତି ସେ ଦୁଃଖେ ମିଶେ,
ନିବାର ତୃଷା, ପଦ-ବାରି-ଆଶୀଷେ । ୩୪ ।
ଆଗୋ ! କି ଖେଳ ଖେଳୁ ମୋର ସଙ୍ଗରେ,
ଲୁଚାଇ ମୁଖ ତୋର ପ୍ରେମ ରଙ୍ଗରେ;
ଅନୁଭବେ ବେଦନା ତୀବ୍ର ଅଙ୍ଗରେ,
ଘେନ ହେ ଦୟାମୟ ତୋ ଉତ୍ସଙ୍ଗରେ । ୩୫ ।
ଶାନ୍ତି ପ୍ରଲେପ ବାନ୍ଧି ହୃଦ-କ୍ଷତରେ,
ଶୀତଳ ପ୍ରାଣ ମୋର, ମାଗେ କାତରେ,
ନବ ଜୀବନ ଲଭି ସ୍ୱର୍ଗ ମାତରେ
ଗାଇବି ପ୍ରେମନାମ ଶତ-କଣ୍ଠରେ । ୩୬ ।
କିପା ରହିଛୁ ଦୂରେ ମୋ ଆତ୍ମା ଛଳି,
ପ୍ରେମ ପଣ ମୋର କିନେଉଛୁ କଳି,
ସର୍ବ ପ୍ରାର୍ଥନା ମୋର ଯାଉ ବିଫଳି,
ଭଣା ନୋହିବ ପାଦେ ଆଦର ଅଳି । ୩୭ ।
ସୁନା କି ଭେଳ ତୁହି କଷ-ପଥର
ମନ ମୋର ପରଖି କିଅ ସତ୍ୱର
ଜଣାଯିବ ଭଲାରେ ଗୁଣ ଏଥର,
ଚୋରା ଲୁଚାତ ନୁହେ ଗାରେ ତୋହର । ୩୮ ।
ମୋ'ମନ ଲୁହା ଯଦି, ତୁ ଅୟସ୍କାନ୍ତ,
ବେଗେ ପରଶି ସୁନା କର ସୁକାନ୍ତ,
ଛାଡ଼ିବି ନାହିଁ କେଭେଁ ପୟର ପ୍ରାନ୍ତ,
କହନ୍ତୁ ଲୋକେ ମୋତେ ଉନ୍ମାଦ ଭ୍ରାନ୍ତ । ୩୯ ।
ଉନ୍ମାଦ ହେଲି ପରା ତୋ'ରୂପ ଚାହିଁ,
ସାରା ସଂସାର ଖୋଜେଁ ତୁଳନା ନାହିଁ,
ଯାଉ ହେ ଦିନ ମୋର ତୋ'ଗୁଣ ଗାଇ,
ହୃଦୟ-ବୀଣା ତନ୍ତ୍ରେ ତୋ ନାମ ବାଇ । ୪୦ ।
ଅବା ପିତଳ ଯଦି ନୁହେଁ ମୁଁ ସୁନା,
ମାଜି ଉଜ୍ଜ୍ୱଳ କର, କରି କରୁଣା,
ଦର୍ପ ସକଳ ମୋର କର ହେ ଚୂନା,
ନୂତନ କର ହୃଦ କାଢ଼ି ପୁରୁଣା । ୪୧ ।
ମିଛେ ମୋହର ଏତେ ପାଦେ ଗୁହାରି,
ଭୁଲିଛୁ ଦୀନ ଆତ୍ମା ଅଛି ବିଚାରି,
ଭୁଲିକି ପାରୁ ଭକ୍ତେ, ଭୁଲିବ ନାରୀ,
ସନ୍ତାନ ଗର୍ଭୁ ଯାର ଅଛିବାହାରି । ୪୨ ।
ମୋ ନେତ୍ରେ ମନୋରମ, ତୁ ଶୋଭାମୟ,
ଚିନ୍ମୟ, ମଧୁମୟ, କରୁଣାଳୟ,
ମୁଁ କି ନ ପାରେ ଟାଣି ତୋର ହୃଦୟ,
ପ୍ରେମ ରଜ୍ଜୁ ଆକର୍ଷି, ହେ ପ୍ରେମମୟ । ୪୩ ।
ତୋ' ମୁଖ ଚନ୍ଦ୍ର ମୋର ହୃଦ ଆକାଶେ
ଚାନ୍ଦିନୀ ବରଷିଣ ମଧୁର ହାସେ,
ଉଜ୍ଜ୍ୱଳ ଦଶଦିଶ ଶୋଭା ପ୍ରକାଶେ,
ଭୀମ-କଲୁଷ-ଘନ-ତମିସ୍ର ନାଶେ । ୪୪ ।
ମୁଁ କି ଶରତ ରମ୍ୟ ଶୋଭା ସମ୍ଭାର
ଶୀତଳ-ଜ୍ୟୋତ୍ସ୍ନା ଧବଳିତ ନିଶାର,
ତହିଁ କି ତୁହି ସଜ ଶେଫାଳୀ ହାର
ବିତରୁ ବାସ ଫେଡ଼ି ଦଳ ଦୁଆର । ୪୫ ।
ସୁନ୍ଦର ଘନ-ନୀଳ ଆକାଶ ପଟେ,
ଅଙ୍କା କି ଛବି ତୋର, ପୁଣି କପଟେ,

ଲୁଚାଉ ମୁଖ ତୋରମୋହ ନିକଟେ,
ସତେ ତହିଁ ତୋ' ବଡ଼ପଣ ପ୍ରକଟେ ।୪୬।
ନଦୀ ନୀଳ ତରଙ୍ଗ-ମାଙ୍ଗ-ଭାଙ୍ଗରେ,
ଉଛୁଳି ଉଠେ ରୂପ ପ୍ରେମ ରଙ୍ଗରେ,
ଭାବ ଆବେଶେ ମୁଗ୍‌ଧ, ଅନୁରାଗରେ
ଉଲ୍ଲସି ଉଠେ ମନ ସୁଆଗ-ଭରେ ।୪୭।
ହୃଦ-ଦର୍ପଣେ ପରା ତୋ ରୂପରାଶି,
ପ୍ରତିଫଳିତ, ରମ୍ୟ ଶୋଭା ବିକାଶି,
ଲୁଚିଣ ଦେଖି ରସେ ହୃଦ ଉଲ୍ଲାସି
ତୋ ପାଇଁ ପରା ପ୍ରାଣ ସଦା ପିପାସୀ ।୪୮।
ବନେ ବିହଙ୍ଗ ଗାଏ ତୋ ପୂଜା-ସ୍ତବ,
ଉଦ୍ୟାନେ ଗାଏ ଅଳି କୁସୁମ ନବ –
ପ୍ରମତ୍ତ ପିଇ ମଧମୟ ଆସବ,
ମୁଁ ପିଏଁ, ନାମ-ମଧୁ ହରଷେ ତବ ।୪୯।
କେଡ଼େ ସୁନ୍ଦର ତୁହି ଏକା ସେ ଜାଣେ,
ଅନୁଭବ କରିଛି ଯେ ତୋତେ ପ୍ରାଣେ ହେ,
ଫୁଲଠୁଁ ସୁବାସିତ ମୋ ମନୋଘ୍ରାଣେ,
ବୀଣାଠୁଁ ସୁଲଳିତ ତୋ ସ୍ୱର କାନେ ।୫୦।
ମଧୁଠୁଁ ସୁମଧୁର ମୋ ରସନାରେ,
ସର୍ବ କାମନା ସାର ଜୀବ-ଆତ୍ମାରେ,
ସର୍ବ ସୌନ୍ଦର୍ଯ୍ୟ ପୂର୍ଣ ତୋହରିଠାରେ,
ବାରେ ଅନାଥ-ଦୀନ-ଦଶା କୃପାରେ ।୫୧।
ଅକର୍ମଣ୍ୟ ଅଟେ ମୁଁ ଦୁଃଖିତ ଜନ,
ତହିଁ କି ଦୋଷ ମୋର ଯଦି ଅଧମ,
ତୋ' ହାତ ଗଢ଼ି ଅଛି ଏ ପିଣ୍ଡ ମମ
ତୋ କୃପାଦାନେ ତାକୁ କର ପାବନ ।୫୨।
ସୂର୍ଯ୍ୟ ଉଜ୍ଜ୍ୱଳ ଯଦି ନିଜ ଗୁଣରେ,
ପ୍ରଦାନେ ରମ୍ୟ ଜ୍ୟୋତିଃ ଚନ୍ଦ୍ର ଅଙ୍ଗରେ,
କଳଙ୍କ ରେଖାଙ୍କିତ ଜଡ଼ ପିଣ୍ଡରେ,
ବର୍ଷୁ ତେସନେ ଦୟାକର ମୋ ପରେ ।୫୩।
ଗୁଣହୀନ ଯଦିଚ କ୍ଷୁଦ୍ର ସଂସାରେ,
ନୁହଇ ଗୁଣହୀନ କ୍ଷୁଦ୍ର ତୋଠାରେ,
କେତକୀ ଫୁଟେ ସିନା ଘନ କଣ୍ଟାରେ,
ବିମୁଖ ହୁଏ କିରେ ଅଳି ତା'ଠାରେ ।୫୪।

ମୋ ମନ ମଧୁ ପରା ପିଇବା ଲାଗି,
ରହିଛି ପ୍ରେମ ଅଳି ତୋ' ହୃଦେ ଜାଗି
ପୟରେ ଥାଉ ମୋର ଏ ଚିତ୍ତ ଲାଗି,
ଅନ୍ତେ ପୟର ତଳେ ହୁଏ ମୁଁ ଭାଗୀ ।୫୫।
ମାନସ-ସରୋବର-କମଳାସନେ-
ପୂଜିତ ପ୍ରିୟତମ, ପଦ ସୁମନେ,
ଭକତି ସଦା ଥାଉ, ଏ ଦୀନଜନେ-
ଅଧମ ଦାସ ମଣି, ସାରିବୁ କ୍ଷଣେ ।୫୬।
କସ୍ତୁରି ଘେନି ଯେହ୍ନେ ମୃଗ-ନାଭିରେ
ଗନ୍ଧେ ଆକୁଳେ ଧାଏଁ ସେ ଅଟବୀରେ,
ପୂରି ରହିଥା ତେହ୍ନେ ହୃଦ-ମଝିରେ,
ଭୁଲିଣ ଥିବି ରହି ତୋହ ପ୍ରୀତିରେ ।୫୭।
ତୋ ପ୍ରେମ-ସରୋବରେ ମନ ମରାଳୀ,
ଖେଳି ବୁଲିବ ଭାସି ତରଙ୍ଗ ଚାଳି,
ପ୍ରୀତିକମଳ-ବନ ସଜ ମୃଣାଳୀ-
ଅଙ୍କେଆଦରେ ଦେହ ଦେବ ସେ ଢ଼ାଳି ।୫୮।
ମୁଗ୍‌ଧ ତୋଠାରେ ମନ ନ ରସେ ଆନ,
ତୋ'ଗୁଣଗ୍ରାମ ମୋର ସଦା ଧିଆନ,
କହନ୍ତୁ ମର୍ତ୍ତ୍ୟବାସୀ ମୋତେ ଅଜ୍ଞାନ,
କ୍ଷତି ତହିଁ ମୋ ନାହିଁ ତିଳ-ପ୍ରମାଣ ।୫୯।
ଭାଙ୍ଗି ଯାଉ ମୋ ସବୁ ଭବ-ଖେଳନା
ବିଚିତ୍ର କାରୁକାର୍ଯ୍ୟ ରମ୍ୟ ପେଖନା,
ପାଦ ଅର୍ଚ୍ଚନା ମୋର ଚିର କାମନା
ଘେନା କର ତା' ନାଥ, ଏହି ପ୍ରାର୍ଥନା ।୬୦।
ତୋ ନାମ ପରା ଦୀନ-ଦୁଃଖୀ-ସଙ୍ଗାଳୀ
ତୋ ନାମ ପରା ପ୍ରିୟ ମୋ ଜପାମାଳି ହେ
ଶ୍ରୀପାଦ ତଳେ ଭକ୍ତି-ଅରଘ ଢ଼ାଳି
ପୂଜିବି, ଆତ୍ମା ମୋର ରଖ ସମ୍ଭାଳି ।୬୧।
ବସନ୍ତ ଲତା ଯଥା ନବ ବୃତରେ,
ମୋ ଆତ୍ମା-ଲତା-ଆଶ୍ରା ପଦପ୍ରାନ୍ତରେ ହେ
ସୁଗୁଣ ଫୁଲରାଶି ଫୁଟି ଅଙ୍ଗରେ
ମହକି ଉଠୁ ବାସ ଦଶଦିଗରେ ।୬୨।
ପଙ୍କେ ଫୁଟିଛି ପରା କମଳସମ
ପରଶି ପ୍ରେମ-କର ତୋହର, ମମ ହେ

ମେଳିବ ଦଳ ରାଜି ତହିଁ ଆସନ
ପାରି ବସିବୁ ସଖା, ମୋ ପ୍ରିୟତମ ।୬୩।
ତୋ ପ୍ରେମ ଅକୂପାର, ତା ସୀମା କାହିଁ ?
କେଡ଼େ ଗଭୀର ଭବେ କେ ଜାଣେ ନାହିଁ ହେ,
ଅନ୍ତେ ସୁଦୟା ମୋତେ କରିବା ପାଇଁ
କୁଣ୍ଠିତ ନୋହିବୁ ତୁ ଜଗତ ସାଇଁ



## ପ୍ରାଣର ଉଚ୍ଛ୍ୱାସ

ବିଚିତ୍ର ସୁନ୍ଦର ବଦନ ତୁମ୍ଭର
କହ କିପାଁ ଦେଖାଯାଏ ନା,
ରଖିବ ହେ ବନ୍ଧୋ ପରାଣେ ପରାଣେ,
ସେହି ତ ସତତ ବାସନା ।
ସଜ ବିକଶିତକୁସୁମ ମଞ୍ଜରୀ
ସୁରଭି ବସନ୍ତ ମଳୟ ସଞ୍ଚରି
ଆସେ ମଧୁକର ଗୁଞ୍ଜରି ଗୁଞ୍ଜରି,
କେତେ ବ୍ୟଥା କହିଯାଏ ନା !
ନିଶାର ଶିଶିରସିକ୍ତ ଦୂର୍ବାଦଳ,
ତରୁଣ-ଅରୁଣ-କିରଣ-ଉଜ୍ଜ୍ୱଳ,
ଲହରୀଚଞ୍ଚଳ ନୀଳନିଭ ଜଳ
କେତେ ମନକଥା କହେ ନା !
ବିରହେ କାତର, ଭ୍ରମେ ଦିଶେ ଦିଶେ,
ତବ ସ୍ୱର କାନେ ବାଜେ କି ନିମିଷେ,
ବିହଙ୍ଗ-କାକଳି ଶୁଣି ଯାଏ ଭୁଲି,
ଧାଏଁ କି ଆନନ୍ଦେ ଉନ୍ମନା !
ସଖା ! କାହାର ଏ ବିପଞ୍ଚୀ ଝଙ୍କାର
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଶୁଣେ ନିରନ୍ତର,
ଭୁଲଇ ହୃଦୟ ଯାତନା ?
ପ୍ରାଣର ଉଚ୍ଛ୍ୱାସେ, ଉନ୍ମାଦ ଉଲ୍ଲାସେ,
ଖୋଜେ ଚଉପାଶେ, ଅବନୀ ଆକାଶେ,
ତଥାପି ଦେଖା ମୁଁ ପାଏ ନା ।
ଆହା, କି ପାଇଁ ପ୍ରାଣେ ମୋ ଆସ ନା,
କହ, କିପାଇଁ ପ୍ରାଣେ ମୋ ଆସ ନା ?



## ଗଲା ଦିନ ହାୟ, ଗଲା ବିଭାବରୀ

(୧)
ଆସ ଆସ ବୋଲି ଡ଼ାକିଥିଲି କେତେ,
ଚାହିଁଥିଲି ପଥ ଆକୁଳେ ଉଷତେ,
ବଢ଼ିଲା ପିପାସା, ପ୍ରେମଚିନ୍ତା ତେତେ,
କେ ବୁଝିଲା କହ, କେ ଗଲା ପରତେ ?
ଗଲା ଦିନ କହ, କେ ଗଲା ପରତେ ?
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମ୍ଭରି ।

(୨)
କେତେ ମୁଁ କାନ୍ଦିଲି, କେତେ ମୁଁ ଧାୟିଲି,
କେତେ ମୁଁ ତୁମ୍ଭକୁ ଆକାଶେ ଚାହିଁଲି,
କେବେ ନ ଆସିଲ, ନ ଦେଲ ତ ଦେଖା,
ପ୍ରାଣପଣେ ମାତ୍ର କରିଲି ଅପେକ୍ଷା;
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମ୍ଭରି ।

(୩)
ଆସିଲ ନାହିଁ ମୋ ପ୍ରାଣର ଅତିଥି,
ଚାହୁଁ ଚାହୁଁ ମୋର ଦିନ ଗଲା ବିତି,
ଗଲା ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ,
ଗଲା ତ ଶିଶିର, ଗଲାତ ବସନ୍ତ,
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମ୍ଭରି ।

(୪)
ଦେଖିଲି ଯାହାକୁ ଭାବି ତୁମ୍ଭେ ପରା
ଅକାରଣେ କେତେ ଧାଇଁଗଲି ତ୍ୱରା
ପାଛୋଟି ଆଣିବି ପ୍ରାଣ ଅତିଥିକୁ
ଦୀନ କ୍ଷୁଦ୍ର ଜୀର୍ଣ୍ଣ ଭବନ କୁଟୀକୁ;
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମ୍ଭରି ।

(୫)

ବ୍ୟର୍ଥ ଉନ୍ମାଦନା, ବିଫଳ ରୋଦନ,
ବାରେ କେବେ ତବ ନୋହିଲା ଦର୍ଶନ,
ରୋଗଶେଯ ପରେ ଲୋତକ ନେତ୍ରରେ
ଅପେକ୍ଷା କରିଲି ପ୍ରତ୍ୟେକ ରାତ୍ରରେ;
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମରି।

(୬)

ଭାବିଲି କି ଅବା ରାଜ ମହାରାଜ-
ସମ ଆସି ହୃଦେ କରିବ ବିରାଜ,
ଶତ ସୂର୍ଯ୍ୟ, ତାରା, ଶତ ଚନ୍ଦ୍ର-ପ୍ରଭା
ବିକାଶି ପଶିବ ହୃଦୟେ କି ଅବା;
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମରି।

(୭)

ଭାବିଲି ଅଥବା ଭାବି ମୋତେ ଦୀନ
ଆପଣାକୁ କରୁନାହିଁ ନତ ହୀନ
ଆସିବାକୁ ମୋର କ୍ଷୁଦ୍ର କୁଟୀ ଦ୍ୱାରେ,
ତଥାପି ରହିଲି ପ୍ରେମେ ଅପେକ୍ଷାରେ;
ଗଲା ଦିନ ହାୟ, ଗଲା ବିଭାବରୀ,
ଦେଖା ତ ପାଇଲି ନାହିଁ ମୁଁ ତୁମରି।

(୮)

ମୋ' ଆତ୍ମାର କ୍ଷୁଦ୍ର ପ୍ରେମ ଆକର୍ଷଣେ
ଆସିବ କି କଦି, ଭାବେଁ ଅନୁକ୍ଷଣେ ?
ତଥାପି ନିରାଶ ନୋହି ମୁଁ ରହିଛି,
ତୁମରି ଆସିବା ପଥକୁ ଚାହିଁଛି;
ଯାଉ ଦିନ ମୋର, ଯାଉ ବିଭାବରୀ,
ଅବଶ୍ୟ ଦେଖା ମୁଁ ପାଇବି ତୁମରି।

(୯)

ଯାଉ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ,
ଯାଉ ଶୀତଋତୁ, ମଧୁର ବସନ୍ତ,
ନ ଡାକୁ କୋକିଳ, ନ ଫୁଟୁ ଗୋ ଫୁଲ,
ନ ଗାଆନ୍ତୁ ପ୍ରେମଗୀତ ଅଳିକୁଳ;
ଯାଉ ଦିନ ମୋର, ଯାଉ ବିଭାବରୀ,
ଅବଶ୍ୟ ଦେଖା ମୁଁ ପାଇବି ତୁମରି।

(୧୦)

ହୃଦ-କୁଞ୍ଜବନ ହୋଇଯାଉ ମରୁ,
ଆକୁଳ ପିପାସା ସରୁ ମୋ' ମନରୁ,
କ୍ଷୀଣ ହେଉ ଆଖି, ନୀର ଯାଉ ଶୁଖି,
ଲୁଚିଯାଉ ଶିରୀ, ହୁଏଁ ଚିର ଦୁଃଖୀ;
ଯାଉ ଦିନ ମୋର, ଯାଉ ବିଭାବରୀ,
ବିଶ୍ୱାସ, ଦେଖା ମୁଁ ପାଇବି ତୁମରି ।



## 'ସ୍ୱରୂପ'

ହେ ଅରୂପରୂପ, ତୁମ୍ଭର ସ୍ୱରୂପ
କେବେ ତ ମୁଁ ଦେଖିନାହିଁ,
କଳ୍ପନାନୟନେ ଦେଖେ ଅନୁକ୍ଷଣେ,
କଳ୍ପନାରେ ଅଛି ପାଇ।
ମନେ ହୁଏ ସତେ, ନୀରବ ନିଶୀଥେ
ଆଖି ବୁଜି ଶେଯ ପରେ,
ବିହରେ ଅନ୍ତର ଦୂରଦୂରାନ୍ତର
କେଉଁ ଦୂର ରାଇଜରେ।
କଳ୍ପନା ବଳରେ ଦେଖେଁ ନୟନରେ
କେତେ ଜନପଦ, ଦେଶ,
କେତେ ମହାକାଶ, ରବି, ଚନ୍ଦ୍ର ହାସ,
କେ ତାରା ଜ୍ୟୋତିଃ ବେଶ।
କେତେ ନଦନଦୀ, ଗିରି ଅଭ୍ରଭେଦୀ,
କେତେ ମୃଦୁ ନିର୍ଝରିଣୀ,
କେତେ ଫୁଲବନ, ଗହନ କାନନ,
ବିହଙ୍ଗମ, ବିହଙ୍ଗିନୀ।
ମନେ ହୁଏ ପରା, ସ୍ୱରଗର ତାରା-
ଦଳ ମଝି ଆସନରେ
ସହସା କାହାର ରୂପ ମନୋହର
ପ୍ରତିଭାତେ ନୟନରେ।
ଜଳିଉଠେ ରୂପ, ସ୍ୱଭାବେ ଅରୂପ
ମାନବ-ନୟନ-କାରା,

ପ୍ରତି ଅବୟବ ପୂର୍ଣ୍ଣ ମହାଭାବ,
ଦେଖିନାହିଁ ଭବ ସାରା ।
କଳ୍ପନାରେ ଆଙ୍କି କଳ୍ପନାର ଆଖି
ଘେନି ମୁଁ ନିରେଖୁଥାଏ,
ଯେତେ ଦେଖେ ତେତେ ନୂଆ ଲାଗେ ମୋତେ,
ତଥାପି ମନୁ ନ ଯାଏ ।
ପାଦ-ପଦ୍ମ ବେନି ପ୍ରେମାଶ୍ଳେଷେ ଘେନି
ଜଡ଼ାଇ କୋମଳ ବାହୁ,
ହୃଦୟରେ ଥୁଏଁ, ମନକଥା କହେଁ,
ସେ ସୁଖ ପାଇବି କାହୁଁ ?
ପାଦାମ୍ବୁଜ-ରଜ- ନିକ୍ଷିପ୍ତ କରଜ-
କଳାପେ ପରଶେ ଭାଳ,
ରେଣୁ ଅଣୁମାତ୍ର ଛୁଇଁ ମୁଁ ପବିତ୍ର
ହେବି ଭୋଳେଁ କ୍ଷଣକାଳ ।
ଜ୍ୟୋତିର୍ମୟ ମୁଖ- ଉଜ୍ଜ୍ୱଳ ମୟୂଖ
ସହସା ଝଲସେ ଆଖି
ମୁଖେ କଥା ନାହିଁ, ନ ପାଇଲ ଚାହିଁ,
ତଳେ ନେତ୍ର ରହେ ଲାଖି ।
ତୁମ୍ଭେ କି ସୁନ୍ଦର, ତୁମ୍ଭେ କି ମଧୁର,
ତୁମ୍ଭେ କି କରୁଣ ପ୍ରିୟ,
ଅନୁଭବ ମାତ୍ର ଝଲସଇ ଗାତ୍ର,
କି ରମ୍ୟ, କି କମନୀୟ !
ବଳଇ ବଚନ, ବଳେ ଜ୍ଞାନ, ଧ୍ୟାନ,
ବଳଇ କଳ୍ପନା-ଶକ୍ତି,
ତୁମ୍ଭେ କି ସୁନ୍ଦର ବୁଝେ ତା ଅନ୍ତର,
ଅନ୍ତରୁ ନିଃସରେ ଭକ୍ତି ।
ତୁମ୍ଭେ କି ସୁନ୍ଦର, କାହିଁ ପଟାନ୍ତର,
ଖୋଜିବା ଆଣିବ କାହୁଁ ?
ସର୍ବ ସ୍ୱଭାବର ଶୋଭା ଏକାଧାର,
ତୁମ୍ଭ ସରି ନୁହେ ଆଉ ।
ପ୍ରେମିକ ନୟନ ଦେଖେ ଆନ ଆନ
ନିତି ନବ ନବ ରୂପ,
ପ୍ରେମ ଅଭିବ୍ୟକ୍ତି, ପରମ ଆସକ୍ତି,
ଦେଖେ ଯେହ୍ନେ ଶୋଭାସ୍ତୂପ ।

ଏକାଧାରେ ଅବା ରାଜେ ନିଶା, ଦିବା,
ରବି, ଶଶୀ, ଗ୍ରହ, ତାରା,
ଏକାଧାରେ ଅବା ନଦୀ, ସିନ୍ଧୁ, ବନ,
ଉପବନ ନେତ୍ରକାରା ।
ଏକାଧାରେ ଅବା କରୁଣ, କୋମଳ,
ଭୀମ, ରୁଦ୍ର ସମାବେଶ,
ପ୍ରେମ, ଭକ୍ତି, ଶାନ୍ତି, ମୁକ୍ତି, ମୋକ୍ଷ ଆଦି
ପୂର୍ଣ୍ଣ ତା ନୋହିଛି ଶେଷ ।
ବିମୁଗ୍ଧ ହୃଦୟ ହୁଏ ଜଡ଼ପ୍ରାୟ
ଅଚେତନ, ସ୍ପନ୍ଦହୀନ,
କେବଳ ପରାଣେ ଜାଗେ ଘନେ ଘନେ
ତୁମ୍ଭେ କି ମହାମହିମ !
କଥା ଆସେ ନାହିଁ, ନେତ୍ରୁନୀର ବହି
କମ୍ପେ ଘନ ଅପଘନ,
କ୍ଷଣକେ ସ୍ୱରଗେ ପହୁଞ୍ଚିଲି ସତେ
ଭେଦି ଦେହ ଆବରଣ ।



# ଅଭିଳାଷ

ଆସ ମୋର ସଖା, ଆସ ମୋର ବନ୍ଧୁ,
ଆସ ମୋ ହୃଦୟମଣି,
ସାଦରେ ତୁମ୍ଭଙ୍କୁ କରିଣବରଣ
ଆଣିଛି ହେ ପ୍ରେମଖଣି !
କିମ୍ବା ଲୁଚାଚୋରା ମାନ ଅଭିମାନ,
କିମ୍ବା ଲୁଚକାଳି ଖେଳା ?
ତୁମ୍ଭେ ତ ମୋହର ସଂସାର ସାଗରେ
ଜୀବନରକ୍ଷଣ ଭେଳା ।
ଜୀବନର ବାଲି- ବେଳାଭୂମେ ବସି
ସଜାଉଛି ପ୍ରେମନାହା,
ତୁମ୍ଭଙ୍କୁ କାଣ୍ଡାରି କରି ହେବି ପାରି
ଦୁସ୍ତର ଭବାବ୍ଧି ରାହା ।
ତୁମ୍ଭଙ୍କୁ ଧରି ମୁଁ ହେ ଚିର ଆଶ୍ରୟ,
ତରିବି ସଂସାରବାରି,

ଦଦରା ନାବରେ ନାହିଁ ପ୍ରୟୋଜନ,
ସବୁ ଆଶା ଦେଲି ସାରି ।
ଆସ ମୋର ବନ୍ଧୁ, ଆସ ପୂର୍ଣ୍ଣଇନ୍ଦୁ,
ପ୍ରକାଶ ହୃଦୟାକାଶେ,
ତୁମରି ସୁଧାଗ- ଜୋଛନା ପରଶେ
ମାତୁ ମନ ପ୍ରେମୋଲ୍ଲାସେ ।
ମୋ ପ୍ରେମ ହୃଦୟ- ଅର୍ଣ୍ଣବ ପ୍ରସାରି
ପ୍ରେମର କଲ୍ଲୋଳ ବାହୁ
ଧରିନେଉ କୋଳେ ତବ ପ୍ରତିବିମ୍ବ,
ନଚାଉ ଖେଳାଉ ଧାଉ ।
ଆସ ପ୍ରିୟତମ ହୃଦୟବଲ୍ଲଭ
ଦୁର୍ଲ୍ଲଭ ବିତ୍ତ ଏ ଭବେ,
ତୁମ୍ଭ ବିନା ମୋର ନାହିଁ କିଛି ସୁଖ,
ନାହିଁ ଶାନ୍ତିସ୍ନେହ ଲବେ ।
ଆସ ହେ ଦେବତା ମୋ ପ୍ରାଣସବିତା,
ମୋ କୁଞ୍ଜକୁଟୀରାତିଥି,
ତୁମ୍ଭ ଲାଗି ସିନା ଚାହିଁ ଚାହିଁ ମୋର
ଏତେ ଦିନ ଗଲା ବିତି ।
ଧୋଇବି କାହିଁରେ ପାଦପଦ୍ମ ବେନି,
ନିଅ ତେବେ ଅଶ୍ରୁଜଳ,
ବସାଇବି କାହିଁ, ନାହିଁ ତ ଆସନ,
ଅଛି ହୃଦ-ଶତଦଳ ।
ପାତୁଅଛ ତାହା, ବେଢ଼ି ବସ ସଖା,
କି ଦେବି ପରଷି ଆହା !
ନିଅ ପ୍ରେମ ମୋର, ନିଅ ଭକ୍ତିଶ୍ରଦ୍ଧା,
ନ ଘେନ ହେ ଦୋଷ ଯାହା ।
ଚିର ମୁଁ ଦରିଦ୍ର, ଚିର ଅଯୋଗ୍ୟ ହେ,
ଚିର ମୁହିଁ ନୀଚ ହୀନ,
ତଥାପି ତୁମ୍ଭର କୃପାରେ ହେ ନାଥ,
ହୋଇନାହିଁ କେବେ ଦୀନ ।
କିଛି ଚାହୁଁ ନାହିଁ, ଚାହିଁଦିଅ ବାରେ
ନୟନ ଉଠାଇ ମୁଖେ,
ମର ହୋଇ ମନ- ଅଳି ଲାଖିଥାଉ
ପଦାମ୍ବୁଜେ ମହାସୁଖେ ।



## "ଆସ"

ଆସହେ ଦେବତା ପ୍ରାଣର ସବିତା,
ହୃଦୟ-ମନ୍ଦିରେ ଆଜି ହେ,
ଦେବି ଗୋ ଚରଣେ ପ୍ରେମ-ଉପହାର
ଭକତି-କୁସୁମ ସାଜି ହେ ।
(ମୋର) ନାହିଁ ଧର୍ମ, କର୍ମ, ନାହିଁ ପୁଣ୍ୟ-ଧନ,
ହୃଦ ମୋର ମରୁଭୂମି ହେ,
ଅଛି ଗୋ କେବଳ ହୃଦୟ-ଅନଳ,
ଅଛି ଗୋ କେବଳ ନୟନରେ ଜଳ,
ଅଛି ଗୋ କେବଳ ତୀବ୍ର ଅନୁତାପ,
ଭୀଷଣ ପାତକରାଜି ହେ ।
(ତେବେ) ଆସ ଶାନ୍ତିମୟ, ଏ ଦଗ୍ଧ ହୃଦୟ
ଯାତନା ନ ସହେ ଆଉ ଗୋ,
ଭାସିଯାଏ କେଣେ ଜୀବନ-ତରଣୀ,
ଏ ଭବ-ତୋଫାନେ ନ ପାଇ ସରଣୀ,
ତୁମ୍ଭେ ଥାଉଁ ଥାଉଁ ମୋ ପ୍ରାଣକାଣ୍ଡାରି
ମୋ ତରୀ କି ଯିବ ବୁଡ଼ି ଗୋ ?
ସମ୍ପଦେ ସୁଖରେ କରିନାହିଁ ମନେ,
ଡ଼ାକୁଛି ବିପଦକାଳେ ହେ,
କ୍ଷମ ହେ ଦୁର୍ବଳେ, କ୍ଷମ ହେ ସନ୍ତାନେ,
କ୍ଷମ ହେ ଅଧମ ବ୍ୟଥିତ-ପରାଣେ,
ଦିଅ ହେ ଅଭୟ ଦୀନ-ଦୟାମୟ,
ସ୍ମର ମୋତେ ଅଛ ସୃଜି ହେ ।
କାନନେ ବିଜନେ ସରସୀ-ସଦନେ,
ସାଗର ସରିତ କୂଳେ ଗୋ,
କୁସୁମବିତାନେ, ଲତା-ନିକେତନେ,
ନୀରବ ନିଶୀଥେ ଶଶାଙ୍କ-କିରଣେ,
କାନ୍ଦିଛି ଚରଣେ, ଆସ ହେ ପରାଣେ,
ଅଧମେ ନ ଦିଅ ତେଜ ଗୋ ।



## ଶକ୍ତି ପ୍ରାର୍ଥନା

ଯେଉଁ ଶକ୍ତି ପାଇଁ ଡ଼ାକୁଛି କାତରେ,
ସେ ଶକ୍ତି ପ୍ରଦାନ କର ମୋହଠାରେ ।

ଡାକି ଡାକି ଥକିଗଲିଣି ହେ ନାଥ,
ବହିଗଲାଣି ତ କେତେ ସନ୍ଧ୍ୟାପ୍ରାତଃ,
ହେଲାଣି ଅନ୍ତର ଆକୁଳ ଉକ୍ଷତ,
ପାଇବି ସେ ଶକ୍ତି, ସେ ଶକ୍ତି କେମନ୍ତ ?
ଚାଖିନାହିଁ ତାହା, ଲଭିନାହିଁ ମଧୁ,
କିପରି ବୁଝିବି ତାର କି ସୁସ୍ୱାଦୁ ?
ଅନ୍ତରେ ମାତ୍ର ମୋ' ମିଳିଛି ଆଭାଷ,
ସେ'ଶକ୍ତି ମହାନ, ଏହା ମୋ ବିଶ୍ୱାସ।
ସେ ଶକ୍ତି ନ ଲଭି ଜୀବନ ଅସାର,
ଦିଅ ସେହି ଶକ୍ତି ଆହେ କୃପାଧାର;
ଅବା ଶକ୍ତିରୂପେ ହୁଅ ଆଜି ବିଜେ
ମୋ ମନୋମନ୍ଦିରେ ଶକ୍ତିମୟ ନିଜେ।
ଶୁଣ ବା ନ ଶୁଣ, ପରାଣ-ଆବେଗେ
ମାଗେଁ, ଦିଅଶକ୍ତି, ଦିଅ ଶକ୍ତି ବେଗେ।



# ପ୍ରାର୍ଥନା

ଆସ ହେ ଆସ ହେ ପ୍ରାଣର ଦେବତା,
ଆସ ହେ ହୃଦୟ-ଭବନେ,
ଚାହିଁ ବସିଅଛି ଆକୁଳ ପରାଣେ
ପ୍ରେମ-ପିପାସିତ ନୟନେ।
ଭକ୍ତି-ପୁଷ୍ପହାର ଗୁନ୍ଥି ପ୍ରେମ-ଡ଼ୋରେ
ସଜାଇଛି ଗୃହ ନବପ୍ରାର୍ଥନାରେ,
ଆସ ପ୍ରଭୁ ଆସ, ମୋ ଦୁଃଖ ବିନାଶ,
ଆସ ଏ ସୁଦୀନ ସଦନେ।
ଆସ ଆଜି ମୋର ପ୍ରାଣପ୍ରିୟ ମଣି,
ସହସ୍ରେ ସୁନ୍ଦର ପ୍ରେମସୁଧାଖଣି,
ମୋ ନେତ୍ର-ଅଞ୍ଜନ ମୋ ମନୋରଞ୍ଜନ,
ସର୍ବଶ୍ରେଷ୍ଠ ସାର ଭୁବନେ।
ଏ ଗୃହ ତୁମ୍ଭର ଗୃହ ପ୍ରାର୍ଥନାର,
ନ କରେଁ ଆଉ ମୁଁ ଚୋରର ଗହ୍ୱର;
ହେ ପବିତ୍ରତମ, ହର ହୃଦତମଃ
ପ୍ରେମାନନ୍ଦ ରମ୍ୟ କିରଣେ।

ଆସି ଦେଖ ସଖା ଏ ଗୃହ ବିଜନ,
ତୁମ୍ଭ ବିନା ପ୍ରଭୁ ମୁହିଁ ଶୂନ୍ୟ ଦୀନ,
କର ଅଧିଷ୍ଠାନ ମୋ'ଚିତ୍ତେ ବହନ
ଆଉ ନ ତେଜ ଏ ଜୀବନେ।



# ବାସନା

ହୃଦୟବନ୍ଦନ ନୟନନନ୍ଦନ
ଆସ ଆଜି ହୃଦେ ମୋହର,
ପ୍ରେମ ଫୁଲହାରେ ଲୋଚନ ଆସାରେ
ପୂଜିବି ପୟରପୁଷ୍କର।
ବଡ଼ ଆଶା ମନେ କରିଛି ହେ ସଖା,
ପାଇବି ତୁମ୍ଭର ପ୍ରେମାନନ୍ଦ ଦେଖା,
ହୃଦଥାଳୀ ମୋର ପ୍ରେମଅର୍ଘ୍ୟ ଘେନି
ସଜାଇଛି ବଡ଼ ସୁନ୍ଦର।
ହୃଦୟ ଆସନେ ବସାଇ ଯତନେ
ପୂଜିବି ମୋହର ଅତିଥିରତନେ,
ହେ ପ୍ରାଣଦେବତା, ହେ ପ୍ରାଣନିୟନ୍ତା,
ଆସ ଦୟା ବହି ସତ୍ୱର।



# ଆକ୍ଷେପ

(୧)

ବହୁଦିନ ତଳେ ମଧୁର ପରଶ
ଢାଳିଥିଲା ହୃଦେ ଅପୂର୍ବ ହରଷ,
ଆଜି କିପାଁ ଶୁଷ୍କ ମୋ ହୃଦୟଦେଶ,
ପ୍ରେମବରଷଣେ ନ ହେଲା ସରସ ?

(୨)

ବହୁଦିନ ହେଲା ପାଇନାହିଁ ଦେଖା,
କରିଅଛି ପରା ଶତେକ ଉପେକ୍ଷା,
ହୃଦେ ତେଣୁ ଲେଖା ବିଷାଦର ରେଖା,
ନିଷ୍ଫଳ ହେଲା ଦୀର୍ଘ ଅପେକ୍ଷା।

(୩)
ବହୁଦିନ ହେଲା କାନ୍ଦୁଛି ଅନ୍ଧାରେ
ମଜ୍ଜିଥିଲି ପରା ସ୍ୱେଚ୍ଛାଚାରିତାରେ,
ଜ୍ଞାନ ଗରିମାରେ, ଆତ୍ମମହିମାରେ
ଜଡ଼ି ପଡ଼ିଥିଲି ଅହମିକାରେ ।
(୪)
ତେଣୁ ଆଜି ମୋତେ ଦେଉଅଛ ଶିକ୍ଷା,
ଦୂରେ ଦୂରେ ରହି କରୁଛ ପରୀକ୍ଷା,
ଦ୍ୱାରେ ଦ୍ୱାରେ ବୁଲି ମାଗେଁ ମୁହିଁ ଭିକ୍ଷା,
ନିଷ୍ଫଳ ମୋର ସର୍ବ ପ୍ରତୀକ୍ଷା ।
(୫)
ଆସ ବୋଲି ଆଜି ଡ଼ାକେ ପୁନଃ ପୁନଃ,
ତୁମ୍ଭେ କି ଭୁଲିବ ତବ ପ୍ରେମଗୁଣ,
ତୁମ୍ଭେ ଶୁଣ ଅବା ନିଷ୍ଠୁରେ ନ ଶୁଣ,
ରହି ନ ପାରିବି ଆଉ ତ ମଉନ ।
(୬)
ଧିକ ଧିକ ବୋଲି କହେ ମୋ ଜ୍ଞାନକୁ,
ସୁନା ଛାଡ଼ି ସତେ ରସିଳି ଭେଳକୁ.
ପ୍ରେମମାର୍ଗ ତେଜି କର୍ମମାର୍ଗ ଧାୟି
ବୁଡ଼ିଗଲି ଦୁଃଖସାଗର ତଳକୁ ।
(୭)
ଆହେ ପ୍ରେମମୟ ଧାରଣା-ଅତୀତ.
ତୁମ୍ଭେ ତ ଲୋଡୁଛ ମୋ'ହୃଦୟ ବିତ୍ତ,
ଗର୍ବ ଟିରି ଦୂର, ଦର୍ପ କରି ଚୂର
ପାଦପଦ୍ମ ତଳେ କରୁଛ ନିହିତ ।
(୮)
ନିରାଶେ ଅନେକ ଦିନ କାନ୍ଦିଲିଣି,
ମାୟାର ପସରା ବୃଥା ବାନ୍ଧିଲିଣି,
ଅସାର କରଣି, ବିଅର୍ଥ ଖଟଣି
ଛାଡ଼ିଲିଣି ଏବେ ସବୁ ଛାଡ଼ିଲିଣି ।
(୯)
ଜଗତର ଜ୍ଞାନ ଥାଉ ଜଗତରେ,
ମୁଁ ପୂଜିବି ପଦ ପ୍ରେମ ବିଶ୍ୱାସରେ,
ଯା'ଥାଉ ଆଗରେ, ଯା'ଥାଉ ପଛରେ,
ତୁମ୍ଭେ ଅଛ ମୋର ବାହାରେ ଭିତରେ ।
(୧୦)
ଲୋଡ଼େଁ ଯାହା ତାହା ନ ଦିଏ ଜଗତ,
କର୍ମ୍ମ ସାଧନାରେ ହେଲି ଅନାହତ,
ଡ଼ରି ଡ଼ରି ଚାଲି ପଥ ଯାଏ ଭୁଲି,
(ଏବେ) ହାତ ଧରି ପଥ ଚାଲିବି ସତତ ।
(୧୧)
ଭାବିଥିଲି ବୃଥା ହେବ ମୋ ପ୍ରାର୍ଥନା,
ଶୂନ୍ୟ କି ଶୁଣିବ ଆକୁଳ କାନ୍ଦଣା ?
ବୃଥା ବିଡ଼ମ୍ବନା, ଚିତ୍ତ ଉତ୍ତେଜନା,
ଏବେ ବୁଝେଁ ତୁମ୍ଭେ ଛାଡ଼ି ତ ପାର ନା ।



## ନୀରବ ନିଶୀଥେ

(୧)
ନୀରବ ନିଶୀଥେ ବାଜିଉଠିଲା କି
ଗୋଟିଏ ବୀଣାର ତାର,
ହୃଦୟକନ୍ଦରୁ ପଡ଼ିଲା ଉଛୁଳି
ଗୋପନ-ସଙ୍ଗୀତ-ଧାର ?
ଚିର ଜୀବନର ସଞ୍ଚିତ ବେଦନା
ତପତ-ଲୋତକ-ଭାର
ବହିପଡ଼ିଲା କି ନିମିଷେ ଆକୁଳେ
ଲିଭାଇ ମରମଗାର ?
(୨)
ନୀରବ ନିଶୀଥେ ବହି ଆସିଲା କି
କୁସୁମ ସୁବାସରାଶି
ମୃଦୁଳ ପବନ ଶୀତଳ ପରଶେ
ଅବସାଦ ଦୁଃଖ ନାଶି ?
ଅବଶ ଅଳସେ ନୟନ ବେନି ଗୋ
କିଏ ମୁଦିଦେଲା ଆସି ?
କଳପନାବଳେ ସ୍ୱରଗ ଛବି ଗୋ
ହୃଦୟ ଉଠିଲା ଭାସି

(୩)
ନୀରବ ନିଶୀଥେ ଦୂର କାନନରେ
କିଏ ଗାଇଦେଲା ଗାନ ?
ସହସା ମରମେ ବାଜିଗଲା ପରା
ଅସ୍ଫୁଟ ମଧୁର ତାନ ।
ଶୁଭୁ ବା ନ ଶୁଭୁ, ଆକୁଳ ଆବେଗେ
ଡେ଼ରିଥିଲି କି ମୁଁ କାନ ?
ସହସା ବାଜିଣ ଉଠିଲା ସଘନେ
ହୃଦୟର ତନ୍ତ୍ରୀମାନ ।
(୪)
ନୀରବ ନିଶୀଥେ ଦୂର ଚୂତଡ଼ାଳେ
ଉଠିଲା କି ପିକ ରାଇ ?
ମୋ' ମାନସ-ପିକ ଉଲ୍ଲାସେ ମାତିଣ
ତା' ସଙ୍ଗେ ଉଠିଲା ଗାଇ ।
ସହସା ବସନ୍ତ- ସୁଷମା ହୃଦୟ ।
ଦେଶଟା ଦେଲା କି ଛାଇ ?
ସହସା ମଳୟ- ମାରୁତ ବହି କି
ମାନସକୁ କଲା ବାଇ ?
(୫)
ନୀରବ ନିଶୀଥେ ଦୂର ଆକାଶରେ
ହସି ଉଠିଲା କି ତାରା,
ଭାସି ଉଠିଲା କି ଆନନ୍ଦ-ଲହରୀ
ମୋହରି ହୃଦୟ ସାରା ?
ସୁଖକର ସତେ ମଣିଲି କ୍ଷଣକେ
ଭବ ଯନ୍ତ୍ରଣାର କାରା,
ବହିପଡ଼ିଲା କି ନୟନ-ଆବେଗେ
ନୟନରୁ ଶତ ଧାରା ?
(୬)
ନୀରବ ନିଶୀଥେ ଶୁଭିଗଲା କାନେ
କାହାର ମଧୁର ବାଣୀ ?
ସହସା ଚମକି- ଉଠିଲା ପରାଣ,
ନୟନୁଁ ବହିଲା ପାଣି ।
କେଉଁ ଦିବ୍ୟ ମୂର୍ତ୍ତି ଦେଖିଲି ସ୍ୱପନେ
ଅପୂର୍ବ ଅଦ୍ଭୁତ ଠାଣି,
ନ ଚିହ୍ନଣୁ ତାକୁ ସେ କେଉଁ ମନ୍ତ୍ରରେ
ହୃଦୟ ନେଲା ମୋ'ଟାଣି ।
(୭)
ନୀରବ ନିଶୀଥେ ତେଣୁ ସଦାକାଳେ
ଶୁଭୁଛି ତାହାର ବୀଣା,
ଲଳିତ ସୁନ୍ଦର ମୋହନ ମଧୁର,
କ୍ଷଣକେ ହୃଦୟ କିଣା ।
ମନୋମୋହକାରୀ ସେ ସ୍ୱର-ଲହରୀ
ଚଉଦ-ଭୁବନ-ଜିଣା,
ଆକାଶେ, ପବନେ, ବାଜେ ବନେ ବନେ,
ଭକତ ଶୁଣଇ ସିନା ।



## "ଆସ ପରା ଥରେ"

(୧)
ନୀରବ ନିଶୀଥେ ଆସ ପରା ଥରେ
ବଜାଇ ମୋହନ ମୁରଲୀ,
ଶ୍ୟାମଳ ସୁନ୍ଦର ମନୋମୋହକର
ରୂପଟି ଉଠଇ ଉଛୁଳି;
ଘନେ ଘନେ ପରା ଚମକି ଉଠଇ
ପରାଣରେ ମୋର ବିଜୁଳି,
କ୍ଷଣେ କ୍ଷଣେ ପରା ବହି ପଡୁଥାଇ
ନୟନରୁ ନୀର ତରଳି ।
(୨)
ଦିବା ଦ୍ୱିପ୍ରହରେ ଆସ ପରା ଥରେ
ଧୀର ସମୀରଣେ ମିଶିଣ,
ସ୍ୱେଦ ଶ୍ରାନ୍ତି ହରି କର ଶାନ୍ତ ପ୍ରାଣ
ଅଙ୍ଗରେ ଚନ୍ଦନ ଘଷିଣ;
ନୟନ ପଲକ ମୁଦିଦିଅ ପରା
ସ୍ନେହ-କରଯୁଗ ପରଶି,
ହୃଦୟ ଶୀତଳ କରିଦିଅ ପରା
ସ୍ନେହ-ଶୀତଧାରା ବରଷି ।
(୩)
ଶାନ୍ତ ସାୟନ୍ତନେ ଆସ ପରା ଥରେ
ପୁଷ୍ପ ପରିମଳେ ଚହଟି,

ନୀଳ ନଭ ତଳେ ଝଟକାଇ ରୂପ
ତାରା-ହାସଛଳେ ଉଛୁଟି;
ଢାଳିଦିଅ କିବା ପ୍ରେମସୁଧା ବିନ୍ଦୁ
ଇନ୍ଦୁହାସେ ହସ ପ୍ରକଟି,
ମାଡ଼ିଆସେ ଧୀରେ ନୈଶ ଅନ୍ଧକାର,
ସେ ସତେ ପ୍ରେମର ଉଛୁଟି ।

(୪)

ନବୀନ ପ୍ରଭାତେ ଆସ ପରା ଥରେ
ନବାରୁଣ ଜ୍ୟୋତି ବିକାଶି,
ନବୀନ-ନଳିନ- ନବ ପରିମଳେ
କ୍ଷଣକେ ହୃଦୟ ଉଲ୍ଲାସି;
ନବ ଉତ୍ସାହରେ ଦେଖାଦିଅ ପରା
ଆଳସ୍ୟ ଜଡ଼ତା ବିନାଶି,
ନବ କର୍ମ୍ମପଥେ ଘେନିଯାଅ ତ୍ୱରା
ହୃଦୟର ଭାର ଉଶ୍ୱାସି ।

(୫)

ରୋଗେ ଶୋକେ ଦୁଃଖେ ଆସ ପରା ଥରେ
ଆସ ହେ ଆନନ୍ଦବାସରେ,
କଷ୍ଟ ଚିନ୍ତାଶ୍ରମେ ଦିଅ ଉପଦେଶ
ହସ କାନ୍ଦ, କାନ୍ଦ ହାସରେ;
ସେହିପରି ପରା ଆସିବ ଗୋ ଥରେ
ମୋ ଜୀବନଶେଷ ଶ୍ୱାସରେ,
ଶେଷ କରି କର୍ମ୍ମ ବାହୁଡ଼ିବି ଯେବେ
ବାନ୍ଧିନେବ ବାହୁପାଶରେ ।



## "କି କଥା କହିବି"

କି କଥା କହିବି, କଥା ତ ନ ଆସେ,
ଆଉ କି ଗାଇବି ଗୀତ ?
ତୋତେ ପ୍ରାଣମିତ ପ୍ରାଣରେ ପାଇଣ
ଅବଶ ମୋହିତ ଚିତ୍ତ ।
ଦୂରେ ଥିଲେ ଡୁବି ଝରେ ମୋ' ଲୋଚନ,
ଫୁଟାଇ ବଚନ ତୁଣ୍ଡେ,
ହୃଦ-ପିଣ୍ଡେ ଧରି ଉଲ୍ଲସି ଏବେ ତ
ମନ ହୋଇଅଛି କୁଣ୍ଠେ ।
ହୃଦ-ବୀଣା-ତାର ସଜଡ଼ା ରହିଛି,
ଅଙ୍ଗୁଳି ତ ଚଳୁନାହିଁ,
ସ୍ୱର-ରାଇଜରୁ ସ୍ୱର କି ହଜିଛି,
ଖୋଜି ନ ପାଉଛି କାହିଁ ।
ସରିଛି ଦୁଆରଜଗା ମୋ' ପାଇଟି,
ନିତି ପଥ ଚାହିଁ ବସା,
ତୋତେ ନ ଦେଖିଣ କ୍ଷଣେ କ୍ଷଣେ ମୋର
ଉଡୁଥିଲା ଯେବେ ହଂସା ।
ସରିଛି ମୋହର ନିତି ମାଳାଗୁନ୍ଥା,
ଚନ୍ଦନ ଥରଘ ସାଜ,
ଚଞ୍ଚଳ ଚରଣ ଜଡ଼ ଭଜିଛି କି,
ଆଗୁଳି ଧରିଛି ଲାଜ ?
ପାଉଥିଲି ମନେ କେତେ ଅଭିମାନେ
ରୁଷି ମୁଁ ରହିବି ମୂକ,
ଅଭିମାନ ନାହିଁ ରୁଷି ନ ପାରଇ,
କାହିଁ ଗଲା ଶୋକ ଦୁଃଖ ?
ଇଚ୍ଛାସତ୍ତ୍ୱେ ଏବେ କଥା ନ ବାହାରେ,
ନାହିଁ ସତେ କିଛି କଥା,
ଶତ ପ୍ରହାରେ କି ଆଉ ନ ବାଜୁଛି
ମରମେ ଦାରୁଣ ବ୍ୟଥା ?
ଚିରପରିଚିତ ଅସାର ଲୋଚନ
କରିସାରିଲାଣି ପର,
ଚୁଛାକୁ ଚୁଛାକୁ ହସହସ ଆଖି,
ଚାହେଁ କ୍ଷଣେ ଟରଟର ।
ଦୁର୍ବଳ ବୋଲି ତ ଆଉ ନ ଥରଇ,
ବଳ କାହୁଁ ଆସେ ମାଡ଼ି,
ଅନ୍ଧାର ବୋଲି ତ ଆଉ ନ ଡରଇ,
ଜଡ଼ତା କି ଗଲା ଛାଡ଼ି ?
ଜୀବନେ ଜୀବନ ଜୀବନ ସତେ କି
ଆସି ହେଲା ପରବେଶ,
ଜୀବନ ସ୍ୱରୂପୀ ଚିରାନନ୍ଦମୟ
ଉଦେ ଯବେ ପରମେଶ ।

ଉଦେ ସତେ ପୂର୍ଣ୍ଣ-ପ୍ରଭାକର-ପ୍ରଭା
ବିନାଶି କଲୁଷ-ନିଶି,
ମନୋଧରା ପରା ହେଲା ପ୍ରାଣଭରା,
ଉଜ୍ଜ୍ୱଳ କି ଦଶଦିଶି !
(ପ୍ରଭୁ) ତୁମରି ବିରହେ କାନ୍ଦିଥିଲି କେତେ,
(ଏବେ) ତୁମରି ଆଦରେ ହସେଁ,
(ଏବେ) ତୁମରି ପ୍ରେମରେ ପୂରିତ ଅନ୍ତର,
(ମୁଁ ଯେ) ଆପଣାକୁ ଭୁଲି ବସେଁ।
ତୁମ ରୂପରାଶି ଉଚ୍ଛ୍ୱଳେ ଅନ୍ତରେ,
ବୁଡିଛି ମୁଁ ରୂପାର୍ଣ୍ଣବେ,
କାମନା, ବାସନା, କଲୁଷ-ବର୍ଜ୍ଜିତ
ଆସେ ମାତ୍ର ଅନୁଭବେ।
(ପ୍ରଭୁ) ତୁମରି ଆଦେଶ ହେଉ ମୋ' ଜୀବନ-
ଆକାଶର ଧ୍ରୁବତାରା,
ହୃଦ-ମରୁରାଜ୍ୟ ସରସ ହେ ପ୍ରଭୁ
ଢାଳି ପ୍ରେମଜଳଧାରା।



## "ଅସୀମ"

ସସୀମରେ ଆଜି ଅସୀମ ଲୋକନେ
ପରାଣଟି ପଡ଼େ ଉଛୁଳି,
ଦେହ ଭାଙ୍ଗି ପରା ପଳାଇଯିବ କି,
ଉଚ୍ଛନ୍ନେ ହେଉଛି ଆକୁଳି !
ଅନନ୍ତ ଆକାଶେ ତାରା-ଶଶୀ ହସେ,
ସିନ୍ଧୁ-କଲ୍ଲୋଳେ କି ମାଧୁରୀ ବିକଶେ,
ଖେଳିଖେଳି ଯାଏ ଜିବା ଦିଶେ ଦିଶେ,
ଆହା, କି ରୂପଲହରୀ ତୋଳି !
ଗହନେ, ବିଜନେ, ଗୋପନେ, ସୁମନେ,
ସରୋବର-ନୀରେ, ନଳିନେ ନଳିନେ,
ସୁବାସ ଚନ୍ଦନେ, ମୃଦୁ ସମୀରଣେ
ସତେ, ସୁବାସ ଦିଏ ସେ ଢ଼ାଳି।
ନୀରବ ନିଶୀଥେ, ନଦୀ-କଳସ୍ୱନେ,
ଭ୍ରମର-ଗୁଞ୍ଜନେ, କୋକିଳ-ପଞ୍ଚମେ,
ମେଘ ମନ୍ଦ୍ରସ୍ୱରେ ଉଚ୍ଚାରଇ ଧୀରେ
ଆହା, କି ବାଣି ପ୍ରାଣ ଆକୁଳି।
ମୋହରି ଅନ୍ତରେ ଶୁଭେ ସେହି ସ୍ୱର,
ମୋ ମନୋମନ୍ଦିରେ ସେ ରୂପ ସୁନ୍ଦର
ବିରାଜଇ ନିତି, ଭ୍ରମେ ମୂଢ଼ମତି
ମୁହିଁ ମରୁଛି ସଂସାରେ ବୁଲି।
କ୍ଷୁଦ୍ର ମୁହିଁ ସାନ୍ତ, ଅସୀମ ସେ ପରା,
ନାଜେ ସତେ ମୋତେ ନ ଦିଏ ସେ ଧରା;
କେତେ ମୁଁ ଖୋଜିଛି, କେଣେ ଯାଏ ଲୁଚି,
ଆହା, ମୋତେ କି କପଟେ ଛଳି।
ନାହିଁ କିଛି ମୋର, ମୁଁ ଦୀନ ଭିକାରୀ,
ଧନମାନ ମୋର ଦେଲିଣି ସତ ସାରି;
ନାହିଁ ମୋ ଗୁମାନ, ନାହିଁ ଅଭିମାନ,
ଏବେ, ଗଲାଣି ଚିତ୍ତ ତରଳି।
ନାହିଁ ମୋର ଭକ୍ତି-ଫୁଲ ପରିମଳ,
ନାହିଁ ମୋର ଧର୍ମ୍ମ-କର୍ମ୍ମର ସମ୍ୱଳ,
ଅଛି ମାତ୍ର ମୋର ନେତ୍ରେ ଅଶ୍ରୁଜଳ,
ଆଗୋ, ଦେବି ତା ପୟରେ ଢାଳି।



## ନିବେଦିବି

ଆଜି ମର୍ମଭେଦୀ ଦୀର୍ଘ ନିଃଶ୍ୱାସ,
ନେତ୍ରାବାହୀ ନୀର,
ଆଜି ତପ୍ତ ହୃଦୟ-ବିଷମ ଜ୍ୱାଳା,
କରୁଣ ଦୀନ ଗୀର,
ବହୁ ଦିବସର ରୁଦ୍ଧ ଯାତନା,
ମର୍ମ୍ମର ଦୁଃଖ ତାପ,
ବହୁ ଦିବସର ବିଫଳ ବାସନା,
ପାପ ଶୋକ ଅଭିଶାପ,
ଆଜି ଭଗ୍ନ ବୀଣାର ବେସୁରା ରାଗିଣୀ,
ଭଗ୍ନ ହୃଦୟ ବ୍ୟଥା,
ତାହାର ଚରଣତଳେ ନିବେଦିବି
ହୃଦୟର ଶତ କଥା।



## କାମନା

ବହୁ ଦୂର ପ୍ରଭୁ ! ଆଣିଅଛ ମୋତେ,
ଶିଖାଇଛ ବହୁ ତତ୍ତ୍ୱ,
ହୃଦୟ ମୋହର ପ୍ରସନ୍ନ ହୋଇଛି
ଦେଖି ନବ ନବ ସତ୍ୟ ।
ତେବେ କିପାଁ ପ୍ରଭୁ ! ଆଜି ମୁଁ ଉଦାସ,
ବୁଲୁଛି ଏକାକୀ ଭବେ,
କିପାଁ ନେତ୍ର-ନୀର ବହିଯାଏ ନିତି,
କିପାଁ ମରୁଅଛି କ୍ଷୋଭେ ?
କେଉଁ କର୍ମ ପ୍ରଭୁ ! ସାଧିବି ଜୀବନେ,
କହିଦିଅ ବାରେ ମୋତେ,
କେଉଁ ଧ୍ରୁବତାରା ହେବ ମୋର ଲକ୍ଷ୍ୟ,
ଧାଇଁବି ଉଷତ ଚିତ୍ତେ ।
ସଂସାରସାଗରେ ମେଲିଛି ତରଣୀ,
କେହି ନାହିଁ କର୍ଣ୍ଣଧାର,
ନିତି ନିତି ଶତ ଝଡ଼ ବହିଯାଏ,
ଅକୂଳ ଏ ପାରାବାର;
ଭୟ ହୁଏ ନିତି, ବୁଡ଼ିବି ବୁଡ଼ିବି,
ଧରିଅଛି ଏକା ମୋତେ,
କିପାଇଁ ଧରିଛ, କିପାଇଁ ରଖିଛ,
କି କର୍ମ କରିବି ସତେ ?
ନାହିଁ ମୋର ଜ୍ଞାନ, ନାହିଁ ମୋର ଗୁଣ,
ନାହିଁ ମୋର ମନ ଧର୍ମ,
ନାହିଁ ମୋର ପ୍ରଭୁ ହୃଦୟର ବଳ,
ନାହିଁ ମୋର ମନ କର୍ମ;
ଜୀବନେ ମୋହର ସୁଖ ନାହିଁ ତିଳେ,
ସଂସାର ଭୀଷଣ କାରା,
ଯାହା ଚାହେଁ ତାହା ଠୁଳେ ତ ନ ପାଏଁ,
ଆଉ କି ପାଇବି ପରା ?
ଦୁଃଖ ମୋର ନିତି କୁଟୀର ଅତିଥି,
ସୁଖ ମୁଖ ଦେଖିନାହିଁ,
ଦୁଃଖ ମୋର ସାର ଭାଗ ଏ ଜୀବନେ,
ସୁଖ ପାଇଁ ସ୍ଥାନ ନାହିଁ ?
ଦୁଃଖ ମୋର ବନ୍ଧୁ, ଦୁଃଖ ମୋର ସଖା,
ଦୁଃଖ ମୋ ହୃଦୟବାସୀ,
ଅର୍ଚ୍ଚନା-ମନ୍ଦିରେ ହୃଦ-ବେଦୀ ପରେ
ଦୁଃଖ ମୋର ଫୁଲରାଶି ।
ସଂସାର-ଗଗନେ ଦୁଃଖ ଧ୍ରୁବତାରା,
ଦୁଃଖ ମୋ ପରାଣଶଶୀ,
ଏ ସଂସାର-ମରୁ- ପ୍ରାନ୍ତରେ ଅଛି ମୁଁ
ଦୁଃଖ-ତରୁମୂଳେ ବସି ।
ନୈରାଶ୍ୟ ମୋହର ଚିର ସହଚର,
ନୈରାଶ୍ୟେ ଆନନ୍ଦ ମିଳେ,
ଆଶା ସୁମଧୁର- ଲଳିତ ଝଙ୍କାର
ପଶିନାହିଁ ଶ୍ରୁତିବିଳେ ।
ଦେଖିନାହିଁ ଆଶା- ସ୍ୱପ୍ନ ମୁଁ ଜୀବନେ,
ଦେଖିଲେ ତ ଭାଙ୍ଗିଯାଏ,
ଆଶା-ଚିତ୍ରପଟ ଆଙ୍କିନାହିଁ ହୃଦେ,
ଦେଖିଲେ ଉଭେଇଯାଏ ।
ବନ୍ଧୁତ୍ୱ ମହିମା ବୁଝିନାହିଁ କିଛି,
ପାଇବାର ଇଚ୍ଛା ନାହିଁ,
କ୍ଷୁଦ୍ର ଜୀବନେ ମୁଁ ହେବି ବନ୍ଧୁ କା'ର,
ଏ ଦୁରାଶା କାହିଁପାଇଁ
ଚିର ଅଯୋଗ୍ୟ ମୁଁ, ଚିର ଦୀନହୀନ,
ନାହିଁ ମୋର ଭବେ କେହି,
ଆସିନାହିଁ କିଛି ସଙ୍ଗରେ ମୋହରି;
କାହାକୁ ନ ଯିବି ନେଇ ।
ସର୍ବ ଦୁଃଖ, ସବୁ ଦାରୁଣ ଆଘାତ
ନୀରବେ ସହିବି ଚିରେ,
ପ୍ରାଣ ବିସର୍ଜନ କରିବି କେବଳ
ସଦା ଜଗତର ହିତେ ।।
ସବୁ ମନଃପୀଡ଼ା, କ୍ଲେଶ, ପରିଶ୍ରମ
ନୀରବେ ଶରୀରେ ବହି,
କାହାର ଆଦର- ପ୍ରତ୍ୟାଶୀ ନୋହିବି,
ଥିବି ମୁଁ ଏକାକୀ ରହି ।
ଅଛ ମାତ୍ର ପ୍ରଭୁ ତୁମେ ମୋର କ୍ଷୁଦ୍ର
ଜୀବନର ପ୍ରତି ଶ୍ୱାସେ,

ନମିଷେ ନିମିଷେ ଧରିଅଛ ମୋତେ,
ରଖିଛ ପୟର ପାଶେ।
ହେଲେ ସୁଦ୍ଧା ଦୀନ, ହେଲେ ସୁଦ୍ଧା ହୀନ,
ଅପରିଚିତ ଏ ଭବେ,
ଆଦର ପାଇଛି ତୁମ୍ଭରି ନିକଟେ,
ରହିଛି ମୁଁ ଗଉରବେ।
ସେ ଜୀବନକ୍ଷେତ୍ରୁ ଆଜି ହେ ଅନ୍ତର
କରି ନେଉଅଛ କାହିଁ?
ଦିଗହୀନ ପଥେ ଭୟ ହୁଏ ମୋର,
ପରିଣାମ ବୁଝିନାହିଁ।
ଶତ ଉଚ୍ଚ ଆଶା ହୃଦୟେ ମୋହର
ନିମିଷେ ଉଠୁଛି ଜାଗି,
ଅସାର ସଂସାର ଜାଣିଛି, ବୁଝିଛି,
ମଜ୍ଜିବି ମୁଁ କାହା ଲାଗି?
କିପାଇଁ ହେ ପ୍ରଭୁ ଆଶାଫୁଲରାଶି
ଫୁଟାଉଛ ହୃଦବନେ,
ଉଜ୍ଜ୍ୱଳ ଆଶାର ଛବି ଦେଖାଉଛ,
ପକାଉଛ ପ୍ରଲୋଭନେ?
ଅନ୍ଧାର ହୃଦୟ- କୁଟୀର ମୋହର
ଜାଳୁଅଛ ଆଶାଦୀପ,
ହୃଦୟରୁ ମରୁ- ପ୍ରାନ୍ତରେ ରୋପୁଛ
ଛାୟାମୟ ତରୁ ନୀପ।
ସତେ ଜଳଭରା ହୋଇଅଛ ଆଜି
ନିର୍ଜଳ ହୃଦୟକୂପ,
ଜୀବନର ଅମା- ନିଶୀଥେ ଆକାଶେ
ଭାସେ ପୂର୍ଣ୍ଣଚନ୍ଦ୍ର ରୂପ!
ଆଶାମୟ ନବ ବସନ୍ତ-ପ୍ରଭାତ
ରାଜେ କି ହୃଦୟ-ଦେଶେ?
ହୃଦପଙ୍କ-ସରେ ଫୁଟେ ସତେ ଚାରୁ
ଆଶା-ପଦ୍ମ ପ୍ରେମାବେଶେ!
ଆଶା-ସୁମଧୁର- ମଳୟ-ଅନିଳ
ହୃଦୟ ଉଲ୍ଲାସି ବହେ,
ହୃଦୟ-କୋକିଳ ପଞ୍ଚମ ତାନରେ
ନବ ଆଶା-କଥା କହେ।

ଗୋପନେ କାହାର ମୋହନ ଝଙ୍କାର
ମଧୁ ବୀଣା ବାଜିଉଠେ?
ଆବେଶେ ଗୋପନେ ଶୁଣେ କିପାଁ ବାରେ,
ଲାଗି ରହେ କର୍ଣ୍ଣପୁଟେ?
ବାଜିଉଠେ ମୋର ହୃଦ-ତନ୍ତ୍ରୀ-ତାନ
କାହା ଆଶେ ଆବେଗରେ?
ସ୍ୱର [illegible]ଇ ତହିଁ ଗାଏ କେ ଗୋପନେ
(ମୁଁ ତ) ଶୁଣେ ସତେ ସରାଗରେ।
ଆଶା-ପ୍ରଲୋଭନ କିପାଁ ବାରେ ବାରେ
ନେତ୍ରପଥେ ଦିଏ ଦେଖା?
ଆଶା ସୁମୋହନ ଛବିଟି ଦେଖାଇ
ଶୂନ୍ୟେ ମିଳାଏ ତା' ରେଖା।
ଏ ରୂପ ସରସା, ଏ ମୋହନ ଆଶା
ଏ ନେତ୍ରପୀଡ଼କ ମୋର,
ଚାହେଁ ଯହିଁ ପ୍ରଭୁ ଏ ଆଶା-ସ୍ୱପନ,
ଏ ଯେ ଶତ୍ରୁ ଘୋରତର।
ଚାହେଁ ନାହିଁ ପ୍ରଭୁ ସମ୍ପଦ ସରସ
ଉଚ୍ଚ ପଦ ଗଉରବ,
ଚାହେଁ ପ୍ରଭୁ ମାତ୍ର ଚରଣେ କରିବି
ପୂର୍ଣ୍ଣସୁଖ ଅନୁଭବ।
ଥିବି ମୁଁ ଜୀବନେ ଏକାକୀ ସଂସାରେ
ତବ ପଦପ୍ରାନ୍ତେ ରହି,
କରୁଥିବି ବିଶ୍ୱ - ସେବା ମୁଁ ଗୋପନେ
ଛାଡ଼ିଯିବା ଯାଏ ମହୀ।
ରହିଥିବି ନିତି ଚରଣସେବିକା
ବିଶ୍ୱର ସେବିକା ତଥା,
ରହିଥିବି ନିତି ଦୀନ ଦୁଃଖୀ ଭବେ,
ବହିଶତ ହୃଦବ୍ୟଥା।
ଅନନ୍ତ ପ୍ରକୃତି ଚରଣେ ଯେପରି
ରହିଅଛି ବନ୍ଧା ନିତି,
ଅନନ୍ତ ପିତାଙ୍କ ପଦେ ସେହିପରି
ରହୁ ଏ ଅବଳା-ମତି।
ବିଶ୍ୱ-ପରିବାର- ସେବାରେ ସତତ
ବହିଯାଉ ଦିନ ମୋର,

ବିଶ୍ୱର ଈଶ୍ୱର- ପୟରେ ମୋହର
ପ୍ରାର୍ଥନା ଏ ନିରନ୍ତର।
କେହି ନ ଜାଣନ୍ତୁ ମୋ ହୃଦୟ କଥା,
କେହି ନ ବୁଝନ୍ତୁ ବ୍ୟଥା,
ନ ପଡୁ ଜୀବନେ ଆଲୋକର ରେଖା,
ଅନ୍ଧାରେ ବୁଡୁ ମୋ ସତ୍ତା।
ମୋ ଜୀବନ-ଫୁଲ ଫୁଟିଛି ଅନ୍ଧାରେ,
ଅନ୍ଧକାରେ ଥାଅ ରଖି,
ଅନ୍ଧାରେ ସୌରଭ ବିସ୍ତାର କରୁ ସେ,
ଅନ୍ଧକାରେ ଯାଉ ଶୁଖି।
ସଂସାରେ ନୟନ ନ କରୁ ସନ୍ଧାନ,
ନ କରୁ ସଂସାର ସ୍ପର୍ଶ,
ଏକାକୀ ଜୀବନ ସଂସାରେ ମୋହର
ବହିଯାଉ ବର୍ଷ ବର୍ଷ।
"ସଂସାରେ ଥାଇମୁଁ ସଦା ଉଦାସୀନ"
କବିର ଏ ନୀତି କଥା
ଥାଉ ମୋର ସଦା ଜୀବନରେ ଜାଗି
ଯାଏ ମୁହିଁ ଯଥା ତଥା।
ଦିଅ ପ୍ରଭୁ ଶକ୍ତି କରିବି ଯେପରି
ସଂସାରର ସେବାମାତ୍ର,
ପୂର୍ଣ୍ଣ କର ତୁମ୍ଭ ପ୍ରେମରେ ମୋହର
ହୃଦୟର ପ୍ରେମ-ପାତ୍ର।
ତୁମ୍ଭେ ମୋର ପ୍ରଭୁ, ତୁମ୍ଭେ ମୋର ସବୁ,
ତୁମ୍ଭ ବିନା ଜୀବ ହୀନ,
ସ୍ୱର୍ଗେ, ମର୍ତ୍ତ୍ୟ ତୁମ୍ଭେ ଅଛ ଏକା ମୋର,
ତୁମ୍ଭ ବିନା ମୁଁ ଯେ ହୀନ।
ଦେବି ମୁଁ କାହାକୁ ନାହିଁ ମୋର କିଛି,
ଅଛ ମାତ୍ର ତୁମ୍ଭେ ବିତ୍ତ,
ବିତରିବି ତାହା ଭବେ ଅକାତରେ,
ଶାନ୍ତି ଲଭିବ ମୋ ଚିତ୍ତ।
କେବଳ ତୁମ୍ଭକୁ ପାଇଅଛି ବୋଲି
ବଞ୍ଚୁଛି ସଂସାରେ ଆଜି,
ଦୂର କର ମୋର ଦୁରିତ ଜଞ୍ଜାଳ
ହୃଦୟେ ସତତ ରାଜି।
ହୃଦ ସ୍ତରେ ସ୍ତରେ ଲେଖିଦିଅ ନାଥ
ତବ ପୁଣ୍ୟ ଉପଦେଶ,
ନୟନେ, ବଚନେ, କରମେ ଜୀବନେ
ବିରାଜ ହେ ପରମେଶ।
ଏ ମୋର କାମନା, ଏ ମୋର ପ୍ରାର୍ଥନା
ତବ ଶ୍ରୀଚରଣତଳେ,
ଉଜ୍ଜ୍ୱଳ, ମହତ କର ମୋ ଜୀବନ
ତବ ପୂତ ପ୍ରେମବଳେ।

# ନବୀନ ପ୍ରାତେ

(୧)

ଏ ନବ ଜୀବନ ଶୁଭ ନବୀନ ପ୍ରାତେ
ମୋହୁଛି କେ ମନ ମୋର ମଧୁର ଗୀତେ ?
ସରମେ ମରମେ ମରି, ଶୁଣେ କି ପରାଣ ହାରି,
ଗୋପନେ ମୋହନ ତାନ ବାଜଇ ଚିତ୍ତେ।

(୨)

ଏ ନବ ଜୀବନଶୁଭ ନବୀନ ପ୍ରାତେ
ମୋହୁଛି କେ ମନ ମୋର ମଧୁର ଗୀତେ,
ବହେ କି ବସନ୍ତ-ବାତ, ହିଲ୍ଲୋଳେ ପରାଣ ଶାନ୍ତ,
ଗୋପନେ ମୋହନ ତାନ ବାଜଇ ଚିତ୍ତେ।

(୩)

ଏ ନବ ଜୀବନଶୁଭ ନବୀନ ପ୍ରାତେ
ପରଶୁଛି କିଏ ମୃଦୁ କର ଆଘାତେ ?
ନିମିଷେ ଆକୁଳି ପ୍ରାଣ ହରି ନେଉଅଛି ଜ୍ଞାନ,
ଟାଣି ବାନ୍ଧିଦିଏ ପରା ପୟରପ୍ରାନ୍ତେ।

(୪)

ଏ ନବ ଜୀବନ ଶୁଭ ନବୀନ ପ୍ରାତେ
ଗଗନେ, ପବନେ, ବୀଣା ବାଜଇ ସତେ !
ବନେ ବନେ ପ୍ରତିଧ୍ୱନି, କ୍ଷଣେ ମୋ' ମାନସ ଛିଣି,
ମୋହୁଛି କେ ମନ ମୋର ମଧୁର ଗୀତେ ?

(୫)

ଏ ନବ ଜୀବନ ଶୁଭ ନବୀନ ପ୍ରାତେ
ସହସା ଦେଖିଲି ପରା ପ୍ରାଣ-ସଙ୍ଗାତେ,

ଥୟ ନ ଧରିଣ ମନ ଧାଏଁ ଏକାନ୍ତେ
ଧରିବାକୁ ସେହି ପ୍ରିୟ ପରାଣକାନ୍ତେ,
ଦିଗହୀନ, ଲକ୍ଷ୍ୟହୀନ ଧାଏଁ ଉଦ୍ଭ୍ରାନ୍ତେ ।



## ବସନ୍ତେ

ଦୁଃଖର କଥା ମୁଁ କହିବି ନାହିଁ ଲୋ
ମଧୁମାସ ମଧୁ ବାସରେ,
ହୃଦବୀଣା-ଛିନ୍ନ- ତାରକୁ ଯୋଡ଼ିଣ
ଗାଇବି ଗୀତ ମୁଁ ସୁସ୍ୱରେ ।
ବହି ଆସିଲାଣି ମଳୟ ମାରୁତ,
ଶୁଭିଲାଣି ବନେ ବନେ ପିକ-ରୁତ,
ଚହଟିଗଲାଣି ଚଉଦିଗେ ଚୂତ-
ବକୁଳ-ସୌରଭରାଶି
ଉଦିଲାଣି ନବ ରବି ଗଗନରେ
ଶୀତର ଜଡ଼ତା ନାଶି । ୧ ।
କାନ୍ଦିବି ନାହିଁ ଲୋ ଆଉ ମୁଁ ନୀରବେ,
ଉଠିବି ଏବେ ମୁଁ ଉଲ୍ଲାସେ,
ଫୁଟିଲେଣି ପରା କୋମଳ ପଲ୍ଲବ-
ଶିଖରେ କୁସୁମ ସୁହାସେ ।
ଚଉଦିଗେ ଦେଖ କୁସୁମର ବନ,
କୁସୁମ-ବାସରେ ବାସିତ ପବନ,
କୁସୁମ-ହାସରେ ଧରଣୀଲପନ
ରଞ୍ଜିତ ଉଜ୍ଜ୍ୱଳ ପରା,
କାହା ପୂଜା ଲାଗି ଫୁଲଡ଼ାଲା ସାଜି
ଅନାଇ ବସିଛି ଧରା । ୨ ।
ବସିବି ନାହିଁ ଲୋ ଆଉ ମୁଁ ବିଷାଦେ
ନୀରସ ମଳିନ ଲପନେ,
କହି ଡଗଲାଣି ନବ ଆଶା କଥା
ଗୁଞ୍ଜରି ଭ୍ରମର ଗୋପନେ ।
ହସି ଉଠିଲାଣି ପରା ଶତଦଳ,
ଉଜ୍ଜ୍ୱଳି ବିମଳ ରମ୍ୟ ନୀଳ ଜଳ,
ବାତ-ବିକମ୍ପିତ ଚଞ୍ଚଳ ତରଳ,
କ୍ଷରି ମକରନ୍ଦ ବାସ
ମୋହି ଜନ-ମନ କଲାଣି ଆକୁଳ
ଦୁଃଖଦୈନ୍ୟ କରି ନାଶ । ୩ ।
ଶୁଣିବି ନାହିଁ ଲୋ ଆଉ ଦୁଃଖ କଥା
ନୈରାଶ୍ୟର ବାଣୀ ଦାରୁଣ,
ଦେଖିବି ନାହିଁ ଲୋ ଆଉ ନୟନରେ
ଗଣ୍ଡ-ବାହୀ ଅଶ୍ରୁ କରୁଣ ।
ବାଜ ହୃଦବୀଣା ସୁମୋହନ ସ୍ୱରେ,
ଲାଗ ଆଜି ମନ ପୁଣ୍ୟ କର୍ତ୍ତବ୍ୟରେ,
ମାତି ମଧୁମାସେ ନବ ଉତ୍ସାହରେ
ଫୁଲ ପରି ହସି ହସି
ଆନନ୍ଦେ କରିବି ଜୀବନର କର୍ମ,
ବୃଥା ନ ରହିବି ବସି । ୪ ।



## ରୂପ

ଭୁବନମୋହନ ରପ ତବ କାହିଁ ଫୁଟି ଉଠିଛି,
କାହିଁ ସେ ସୁନ୍ଦର ଶିରୀ ଧୀରେ ଧୀରେ ଲୋଟୁଛି ?
ବିଜନ କାନନେ ଫୁଟି ଫୁଲ-ସୁବାସେ ଚହଟି
ବସନ୍ତଅନିଳେ ଲୋଟି ମନ ମୋ ମୋହୁଛି ।
ଅନନ୍ତ ନୀଳିମା କୋଳେ ମୋହନ ମୂରତି ଦୋଳେ,
ରବି-ଶଶୀ-କରେ କିବା ହାସ ଫୁଟି ଉଠୁଛି !
ରୂପର ଲହରୀ ପରା ଖେଳାଏ କି ବସୁନ୍ଧରା,
ପତରେ ପତରେ ଫୁଲେ ରୂପ ଝରି ପଡୁଛି ।
ମୋ'ମନପଟରେ ସଖା, ଅରୂପ ରୂପଟି ଲେଖା,
କ୍ଷଣେ କ୍ଷଣେ ପାଇ ଦେଖା, ବିରହରେ ମରୁଛି
କେବେ ସେ ଚରଣତଳେ, ବସିବି ମୁଁ କୁତୂହଳେ,
ବିରହେ ହେ ପ୍ରଭୁ ! ତବ, ମନ କାନ୍ଦ ଉଠୁଛି ।



## ବର୍ଷା ଦର୍ଶନେ

ଆଜି କି ଆକାଶେ କଳା ମେଘ ଭାସେ
ଆଜି କି ବିଜୁଳି ବିକାଶେ,

ପଡ଼େ ଝରି ଝରି କା' ରୂପମାଧୁରୀ
ଭସାଇ ପରାଣ ହରଷେ ?
ନୀଳ ନଭୋକୋଳେ ସେ ରୂପ କି ଖେଳେ,
ଖେଳେ ତ ମୋ ହୃଦ-ଆକାଶେ,
ଅରୂପ ରୂପ ସେ ମୋ' ପରାଣ-ରୂପ,
(ସେ ତ) ଭସାଏ ହସାଏ ଆବେଶେ ।
ମୁଗ୍ଧ ମନବୀଣା ବାଜେ କି ସାଦରେ,
ନାଚେ କି ଅନ୍ତର ଉଲ୍ଲାସେ,
ପଡ଼େ ଝରି ଝରି ପ୍ରେମ-ଅଶ୍ରୁବାରି
ମୋହନ କା' କର ପରଶେ ?
ବିଶ୍ୱ ଚରାଚରେ ଯା' ରୂପ ନ ଧରେ
ଶ୍ୟାମଳେ ସୁନ୍ଦରେ ସରସେ,
ଉଜ୍ଜ୍ୱଳେ ମଧୁରେ ରୁଚିରେ ବିଧୁରେ
ଆନନ୍ଦ କାହାର ପ୍ରକାଶେ ?
କି ଅଛି ମୋହର ଏ ସାରା ସଂସାରେ,
କି ଅଛି ମୋହର ବିନା ସେ ?
ସେ ତ ଚିର ମୋର, ସେ ତ ସୁଖ ମୋର,
ପ୍ରାଣ ପ୍ରିୟତମ ପ୍ରଭୁ ସେ ।
ପରମ ସମ୍ପଦ କିଛି ନାହିଁ ମୋର,
ଆସିଛି ଏକାକୀ ଏ ବିଶ୍ୱେ,
ଏ ତନୁ ମୋହର ନୁହେଁ ତ ମୋହର,
କ୍ଳିଷ୍ଟ ଜରାମୃତ୍ୟୁ ତରାସେ ।
ତାହାକୁ ମୁଁ ଧରି ହେବି ଭବ ପାରି,
ପହଞ୍ଚିବି ଯାଇ ସେ ଦେଶେ,
ଚିରଦିନ ଲାଗି ପଦେ ଅନୁରାଗୀ
ରହିଥିବି ପ୍ରେମ ଆବେଶେ ।



## ସ୍ୱରୂପ ସୁନ୍ଦର

ସ୍ୱରୂପ ସୁନ୍ଦର ରାଜେ କି ମୋହର
କ୍ଷୁଦ୍ର ପ୍ରତି ଅବୟବରେ,
ପୁଲକିତ ତବ ବୀଣାଜିଣା ବାଣୀ
ଶୁଣେ କି ମୁଁ ନିଜ କଣ୍ଠରେ ?
ତୁମେ ଅପରୂପ ଶ୍ରୀମୁଖ ସୁନ୍ଦର –
ଶୋଭା ଦେଖିଲି କି ବଦନେ ମୋହର,
ବଦନେନ୍ଦୁ-ବିମ୍ୱ ହୃଦାମ୍ବୁ-ଦର୍ପଣେ
ଆକୁଳ କରିଲା ମୋହରେ ।
ପ୍ରଥମେ ମୋହର ଶୁଣି କଣ୍ଠସ୍ୱର
ତୁମ ସ୍ୱର-ସୁଧା ହୋଇଲା ଗୋଚର,
କିବା ସେ ମୋହିନୀ ମୃତ ସଞ୍ଜୀବନୀ
ବାଜିଗଲା ସତେ ହୃଦରେ ?
କିଏ ସେ ହେ ତୁମେ ପରମ ସୁନ୍ଦର,
ଖୋଜି ଖୋଜି ଗଲି ଦେଶ ଦେଶାନ୍ତର,
ବରଷ ବରଷ ପଥ ପରିଭ୍ରମି
ଆସି ପହଞ୍ଚିଲି ପୟରେ ।
କେତେଦିନ ହେଲା ବସିଛି ଦୁଆରେ
ତୁମ ମୁଖ କଥା ପଦକ ଆଶାରେ,
ଏହି ବାଟେ ଯାଅ ମୋତେ ନ ଅନାଅ,
ମରେ ମୁଁ ସରମ-ଲାଜରେ ।



## କହି ନ ପାରିବି

କହ ନ ପାରିବି ଭାଷାରେ ପ୍ରାଣେ ଅଛି ଯେ ଭାବ,
ଓଟାରି ଆଣିବି ଚରଣ, ଦେବି ହୃଦୟେ ଠାବ ।
ଗାଇ ନ ପାରିବି ଗୀତ ମୁଁ, ନ କରିବି ପ୍ରାର୍ଥନା,
ବଳେ ବଳେ ଧରି ଆଣିବି କରିଅଛି କଳ୍ପନା ।
ତୁଚ୍ଛ ଛାର ପୂଜାସମ୍ଭାର, ସେ ତ ଅତି ମହତ,
କିପାଁ ସଜାଡ଼ିବି ତା' ଲାଗି ଯତନରେ ସତତ ?
ନାହିଁ ମୋର ସୁନାରୂପା ହେ, ଗନ୍ଧରସ, ଅଗୁରୁ,
କାହୁଁ ମୁଁ ପାଇବି ଭିକାରୀ ଚୁଆ, ଚନ୍ଦନ-ତରୁ ?
କାହୁଁ ମୁଁ ପାଇବି କେତକୀ, ବାସ-ଅତରରାଶି,
କିପାଁ ତେଣୁ ରହିଥିବି ହେ ଦୁଃଖ-ସଲିଳେ ଭାସି ?
ଦରିଦ୍ର ବୋଲି ସେ ଆସିବେ ନାହିଁ କି ମୋ' ଦୁଆର ?
ଦରିଦ୍ରେ ଆଦର ତାଙ୍କର, ତେଣୁ ପାଦେ ଜୁହାର ।
ଦରିଦ୍ର ବୋଲି ମୁଁ ତାଙ୍କର, ଧନୀ ପ୍ରେମ-ଧନରେ,
ଅବନୀ-ଈଶ୍ୱର-ଐଶ୍ୱର୍ଯ୍ୟ ସରି କି ତା' ସଙ୍ଗରେ ?



# କିଏ

କିଏ କାନ୍ଦିଉଠେ ମୋ' ହୃଦଭିତରେ
ଆକୁଳେ ବ୍ୟାକୁଳେ ନିତି,
କିଏ ଢ଼ାଳିଦିଏ ବୀଣାର ଝଙ୍କାରେ
ତାପିତ ହୃଦୟେ ଶାନ୍ତି ?
ଗୋପନେ ବିଜନେ ହୃଦ-କୁଞ୍ଜବନେ
ସେ କେଉଁ କୋକିଳ ଗାଏ କଳସ୍ୱନେ ?
ପରଶେ ମୋହର ପରାଣେ ପରାଣେ
ମଧୁର ମୋହନ ଗୀତି ।
ସେ ଅରୂପ ରୂପ ମୋ' ପ୍ରାଣନାୟକ,
କୋଟି ଭୁବନର ପାଳକ ଚାଳକ,
କଳୁଷ-ହାରକ ପାବକ ତାରକ,
ଭକତ-ଜୀବନ-ଜ୍ୟୋତି ।
ନବୀନ ହୃଦୟ ନବ ଆକର୍ଷଣେ
ସେ ଚାରୁ ଚରଣ ଯୁଗ-ନଳିନେ
ବସାଇ ଆଦରେ ହୃଦୟ-ମନ୍ଦିରେ
ଅରପେ ମୋହନ ପ୍ରୀତି ।



# ଅର୍ଚ୍ଚନା

ଶୁଭଦିନେ ଫୁଟିଥିଲେ କି ପ୍ରୀତି-କଳିକା ଧରି
ମଲ୍ଲିକା, ମାଳତୀ, ସେବତୀ, ଜାତି ପୁଷ୍ପସୁନ୍ଦରୀ ?
ମନ୍ଦାନିଳ ସୁଧା-ସୁରଭି ସୁମଧୁର ପରଶେ
ପ୍ରତି ପାଖୁଡ଼ାର କବାଟ ମୁକୁଳିଲା ହରଷେ ।
ଦୀପ୍ତ ରଙ୍ଗଦଳ ଫିଟୁଣୁ ଚୋରି କଲା ପବନ
ସୁମନର ସାର ସୁରଭି, ଚୁମ୍ବି ଫୁଲ ଲପନ ।
ପବନର ପ୍ରିୟ ପରଶେ ଗାତ୍ର ଉଲ୍ଲସି ଉଠି
ଲଜ୍ଜା ଆବରଣ ଫେଇ କି ଫୁଲ ଉଠିଲେ ଫୁଟି ?
ସ୍ୱରଗରୁ ଝରିପଡ଼ିଲା ଉରେ ଶିଶିରକଣା,
ଚିକ୍‌କଣ କୋମଳ ମାଧୁରୀ ନେତ୍ର କରିଲା ବଣା ।
ହରିତ ଶୋଭାରେ ମିଶିଲା ଘନ-ଧନୁ ଝଟକ,
ଅନାଇଁ ଅନାଇଁ ତହିଁରେ ମନ ହେଲା ଅଟକ ।
ମନ ହେଲା ସତେ ଆଣିବି ଘରୁ କୁସୁମ ଡ଼ାଲା,
ଫୁଲ ତୋଳି ଭରି ଅଞ୍ଜଳି ମୁଁ ଯେ ଗୁନ୍ଥିବି ମାଳା ।
ମନ ହେଲା ମାତ୍ରେ ଧାଇଁଲି ଫୁଲ ତୋଳିବା ଆଶେ,
ଗୁନ୍ଥିଛି ତ ଚାରୁ ମାଳିକା ଆହା କାହା ସକାଶେ ?
କାହାକୁ ଅର୍ପିବି ସେ ହାର ପ୍ରିୟ ତୁମ୍ଭରି ବିନା,
ତ୍ରିଭୁବନେ ଦେବ ସୁନ୍ଦର ତୁମ୍ଭେ ମୋ ପ୍ରଭୁ ସିନା ।
ହେଉ ପଛେ କ୍ଷୁଦ୍ର ହାତର କ୍ଷୁଦ୍ର ତୁଚ୍ଛ ରଚନା,
ସାର୍ଥକ ହୋଇବ କରିଲେ ସିନା ପାଦ ଅର୍ଚ୍ଚନା
ଅଥବା ଆଦର ସୁଆଗେ ଲଭି ସାହସ ଅତି
ପହୁଞ୍ଚିପାରିବି ଯଦି ହେ ପୂଳେ ତୁମ୍ଭରି କତି,
ତୁମ୍ଭକୁ ପିନ୍ଧାଇ ଦେଖିବି ପ୍ରେମ-କୁସୁମ ହାର,
ବଢ଼ିବ ଆନନ୍ଦ ପ୍ରିୟ ହେ ତହିଁ ମୋର ଅପାର ।



# ବସନ୍ତ ଭାବନା

ଆସିଅଛି ଆଜି ବସନ୍ତ
ଫୁଲ-ମୁକୁଟ ପିନ୍ଧି,
ସୁନ୍ଦର ଦିଶୁଛି ଧରା କି
ନନ୍ଦ-ନନ୍ଦନ ନିନ୍ଦି !
ଆକାଶେ ନିଶାରେ ହସୁଛି
ରମ୍ୟ ଉଜ୍ଜ୍ୱଳ ଇନ୍ଦୁ,
ବିନ୍ଦୁ ବିନ୍ଦୁ ଝରିପଡ଼େ କି
ନଭୁଁ ଅମୀୟସିନ୍ଧୁ !
ପଦ୍ମପୁଷ୍କରିଣୀ ଜଳରେ
ଫୁଟିଲେଣି ରାଜୀବ,
ରକ୍ତ ନୀଳ ଶ୍ୱେତ ଶୋଭାରେ
ମକରନ୍ଦ ମିଶିବ ।
ଆସିବେ ଏଥର ଅଳିଏ
କଳି କରି ବହନ,
ବନବିହଙ୍ଗମ ନିନାଦେ
ପୂରିଯିବ କାନନ ।
ଧୀରେ ଧୀରେ ବହିଗଲାଣି
ଚୋରା ବସନ୍ତ ବାୟୁ,

ଉଲ୍ଲସିତ ତନୁ ମନ ଯେ
ଥୟ ନ ଧରେ ଆଉ
ଇଚ୍ଛା ହୁଏ ସତେ ବୁଲିବି
ବନେ ବନେ ନିରତ,
ତୋଳି ଫୁଲରାଶି ଗୁନ୍ଥିବି
ହାର ମନର ମତ ।
ସଜାଇବି ଅତି ଯତନେ
ନାନା ରଙ୍ଗ ପାଖୁଡ଼ା,
ପିନ୍ଧିବି କୁସୁମ-ସାଜ କି
ଫୁଲେ ସଜାଇ ଜୁଡ଼ା ?
ତଥାପି ହୃଦୟ ଭିତରେ
ଅତି କୋମଳ ବ୍ୟଥା
କ୍ଷଣେ କ୍ଷଣେ ଜାଗିଉଠେ ଗୋ,
କହି ନ ହୁଏ କଥା ।
ସତ ଗୋ ଯେପରି କାହାର
ପ୍ରାଣେ ଅଛି ଅଭାବ,
ନୁହେ ସେ ଲୋକ ଏ ଭବର,
ନାହିଁ ଏଥି ତା ଠାବ
ତଥାପି ଯେମନ୍ତେ ସେ ମୋର
ପ୍ରାଣ ନିକଟ ବନ୍ଧୁ,
ମୋ ଜୀବନ ନବ ବସନ୍ତେ
ଯେହ୍ନେ କୁସୁମ ମଧୁ ।
କିଏ ସେ, ତାହାକୁ ଖୋଜି ମୁଁ
ବୁଲେ ଚଉଦିଗର,
ପ୍ରାଣର ଭିତରେ ଶୁଣୁଛି
ସତେ ତାହାରି ସ୍ୱର ।
ଚମକି ଥମକି ଅନାଏ
ଏଣେ ତେଣେ ହଠାତ୍,
ନ ଜାଣେ କେଉଁଠି ଲୁଚିଚି
ମୋର ପ୍ରାଣସଙ୍ଗାତ;
ଏତେ ଉଛତରେ ଖୋଜୁଛି,
ଦେଖା ନ ଦିଏ ଆସି,
ବେଶଭୂଷା ଛାଡ଼ି କାଳେ ମୁଁ
ଉଷ୍ଣ ଲୋତକରାଶି ।



# ସନ୍ଧାନେ

କେତେଦିନ ହେଲା ପାଇନାହିଁ ଦେଖା;
କାହିଁ ମୋର ପ୍ରାଣଧନ ରେ,
ଖୋଜିଲିଣି ପରା ସରିତ ସାଗରେ,
ଖୋଜିଲିଣି ବନ ବନରେ ।
(ମୁଁ ତ) ଦିନେ ବୁଲିଥିଲି ଆକୁଳ ଅନ୍ତରେ,
ଆକୁଳ ପିପାସା ଧରି ରେ,
ମରୀଚିକା ପଛେ ଧାଇଁଥିଲି ମିଛେ,
(ସେତ) ଧରିଥିଲେ ମୋତେ ବାଟରେ,
ନେଇଥିଲେ ମୋତେ କୋଳରେ,
ଚରଣକୁ ଧରି ପରାଣ ଆକୁଳେ
କହିଥିଲି କେତେ କଥା ରେ ।
(ମୁଁ ତ) ଶୟନେ ସ୍ୱପନେ ନିତି ଜାଗରଣେ
ଦେଖୁଛି ମୂରତି ଶୋଭାରେ,
ତେବେ ଶୂନ୍ୟ ଶୂନ୍ୟ ଲାଗେ ଏ ଭୁବନ,
(କହ) ସେ ମୂରତି ମୋର କାହିଁ ରେ ?
ପାଇ ମୁହିଁ ପାଇ ନାହିଁ ରେ ।
ସେ ମୂରତି ମୋତେ ଧରିଛି ଆଲିଙ୍ଗି
ଭ୍ରମେ କିପାଁ ମୁହିଁ ଧାଏଁ ରେ ?



# ବନ୍ଦନା

ଆଜି ପ୍ରଣୟ ହରଷେ ପ୍ରଣୟ ଉଦ୍ଦେଶେ
ପ୍ରଭୁ ଗୋ ଚରଣ ସକାଶେ,
ଆଜି ଶ୍ରୀପଦ-ବନ୍ଦନେ ଭକତି ଚନ୍ଦନେ
ଅର୍ଘ୍ୟ-ଡ଼ାଲା ସାଜେ ଆବେଶେ ।
ଚିର ଆଶା ମୋର, ନିରେଖି ନୟନେ
ସ୍ୱରୂପ ସୁନ୍ଦର ଚରଣ-ସୁମନେ
ନମିବି ସାଦରେ, ଧୋଇ ହରଷରେ
ନେତ୍ର-ନୀର ଢ଼ଳା ପାୟୁଷେ ।
ଦେଖିନାହିଁ ମର ନୟନରେ,
ହୃଦୟ ମନ୍ଦିରେ ପୂଜେଁ ତ ଆଦରେ,

ଭକତି-ଆସନେ ବସାଇ ଯତନେ
ବନ୍ଦେ ପଦ ପ୍ରେମ ହରଷେ ।
ନତ ରହୁ ଶିର ଚରଣକମଳେ,
ଚିତ୍ତ-ଅଳି ମଧୁ ପିଉ ଗୋ ବିରଳେ,
ପବିତ୍ର ଏ ଶିର ହେଉ ହେ ମୋହର
ପୂତ ତବ ପଦ ପରଶେ ।



## କରୁଣା ଭିକାରୀ

ଏ ଦୀନ ଚରଣେ କରୁଣା ଭିକାରୀ,
କରୁଣା ଭିକାରୀ ନାଥ ହେ,
ଦୁଆରୁ ତୁମ୍ଭର ନ ଦିଅ ଘଉଡ଼ି
ଭବେ ହେବି ଅବଜ୍ଞାତ ହେ ।
ନାହିଁ ମୋର କିଛି ଜ୍ଞାନ, ଧ୍ୟାନ, ଧର୍ମ,
ନାହିଁ ମୋର କିଛି କର୍ମ ହେ,
ଶୂନ୍ୟ ମୋ ହୃଦୟ, ଶୂନ୍ୟ ମୋ' ନିଳୟ,
ଦିଶେ ଧରା ଶୂନ୍ୟମୟ ହେ ।
ପୂର୍ଣ୍ଣ କର ଦୟାମୟ ହେ,
ବିତରିଣ ବରାଭୟ ହେ,
ମାଗୁଛି ଚରଣେ ଦିଅ ହେ ଅଧମେ
ତୁମ୍ଭର କରୁଣାଚିତ୍ତ ହେ । ୧ ।
ଏ ଦୀନ ଚରଣେ କରୁଣା ଭିକାରୀ,
କରୁଣା ଭିକାରୀ ନାଥ ହେ,
କୃପାଦ୍ୱାର ଫେଡ଼ି ଭର କ୍ଷୁଦ୍ର ପେଡ଼ି,
ନୋହିଲେ ନୋହିବି କ୍ଷାନ୍ତ ହେ;
ଡ଼ାକୁଥିବି ନିତି ବଢ଼ାଇ ବିରକ୍ତି,
ଦିଅ ମୁକ୍ତି, ଦିଅ ମୁକ୍ତି ହେ ।
ଦେବ ବା ବିଭବ, ଦେବ ବା ତ୍ରିଦିବ,
କିନ୍ତୁ ପଦକଞ୍ଜ ତବ ହେ ।
ଯା' ଦିଅ ଦେବାକୁ ହେବ ହେ,
ନ ଭୁଲିବ ଦେବ-ଦେବ ହେ,
ଶ୍ରୀ ଚରଣ ତଳେ ରହୁ ଅବିରଳେ
କ୍ଷୁଦ୍ରେ ମୋ' ଦୁର୍ବଳ ଚିତ୍ତ ହେ ।



## "'ତୋ' ଆଦର"

ଆଖି ତ ନ ଦେଖେ, ସାକ୍ଷୀ ତ ନ ଥାଏ,
ନ ବୁଝେ ଅନ୍ତର ଆନ,
ଲୁଚାଚୋରା ମୋର ସେହି ଲୁହଟିକ
ତୋ ଚରଣେ ଲଭେ ସ୍ଥାନ । ୧ ।
କାନ ତ ନ ଶୁଣେ, ପଶେ ନାହିଁ କାହା
ମରଣର ଅନ୍ତସ୍ଥଳେ,
ଲୁଚାଚୋରା ମୋର ସେହି ଦୀର୍ଘଶ୍ୱାସ
ପଡ଼େ ତୋ' ଚରଣ ତଳେ । ୨ ।
ହୃଦୟ ଭିତରୁ ସବୁ ତାର ଯେବେ
ବାଜିଉଠେ ଏକ ତାନେ,
ଜଗତ ନ ଶୁଣେ, ଜଗତ ନ ଜାଣେ,
ବାଜେ ସିନା ତୋର କାନେ । ୩ ।
ଅନ୍ତରର ସବୁ ଶିରା ଫାଟି ଫାଟି
ବହେ ଯେବେ ରକ୍ତଧାର,
କିଏ ବା ପୋଛଇ, କିଏ ବା ଦେଖଇ
ସେ ଦାରୁଣ କ୍ଷତ ଗାର ? ୪ ।
ସଂସାରର ଘୋର କଣ୍ଟାବଣ-ବାଟେ
ଚାଲେଁ ଯେବେ କଣ୍ଟା ମାଡ଼ି,
କିଏ ବା ଆସଇ ପାଖକୁ ମୋହର
କଣ୍ଟା ଦେବାପାଇଁ କାଢ଼ି ? ୫ ।
ଭ୍ରମଟି କରିଣ ବସିଥାଏଁ ଯେବେ
ମଉନେ ମନଟି ମାରି,
ଜଗତ ଲାଞ୍ଛନା କେ ତେବେ ଘୋଡ଼ାଉ
ନିଏ ପ୍ରେମାଞ୍ଚଳ ପାରି ? ୬ ।
ଚାଲୁ ଚାଲୁ ଯେବେ ଥକିଯାଏଁ ମୁହିଁ
କିଏ ବା ବହଇ କାନ୍ଧେ,
କିଏ ବା କହଇ ସାନ୍ତ୍ୱନାରେ ପଦେ
ଆକୁଳେ ଯେବେ ମୁଁ କାନ୍ଦେ ? ୭ ।
ନୈରାଶ୍ୟଅନ୍ଧାର ଘୋଟିଘାଏ ଯେବେ
ରାହା ନ ଦିଶଇ ଆଉ,
କିଏ ବା ଆଲୁଅ ଦେଖାଏ ରେ ମୋତେ
ବେଳକୁ ନ ସାଧି ଦାଉ ? ୮ ।

ବୁଲନ୍ତି ସରବେ ନିଜ ସ୍ୱାର୍ଥେ ଆଜି,
ପରାର୍ଥ ଲୋଡ଼େ କେ କାହିଁ ?
କିଏ ବା ମୁଠାଏ ଭିକ୍ଷା ଦିଏ ଯେବେ
ଦ୍ୱାରେ ମାଗିବୁଲେ ଯାଇଁ । ୯ ।
ରୋଗର ବିଛଣା କିଏ ବା ସଜାଡ଼େ,
ତ୍ରୁଟିର ଭାର କେ ବହେ,
ଯେତେ ଦୁଃଖ କଲେ ଯେତେ କଷ୍ଟ ଦେଲେ
ନୀରବେ ସବୁ କେ ସହେ । ୧୦ ।
ଆପଦେ ବିପଦେ ଏକା ତୁ ସମ୍ବାନ୍ଧୁ,
ତଥାପି ତୋତେ ମୁଁ ଭୁଲେଁ,
ତୋର ପ୍ରେମ-ଡ଼ୋରି କାଟି ଅବହେଳେ
ଭବ-ମାୟାପାଶେ ଝୁଲେଁ । ୧୧ ।
(ଆହା) ଭଲପାଉ ଏତେ, ଏତେ ତୋ' ଆଦର
କି ବୁଝେଁ ତୋ ଗୁଣକଥା ?
ଯତନେ ହେଲେ ମୁଁ ତୋହରି ଅନ୍ତରେ
ଦିଅଇଁ ଅନନ୍ତ ବ୍ୟଥା । ୧୨ ।
ପିତା, ମାତା, ବନ୍ଧୁ, କୁଟୁମ୍ବଙ୍କୁ ବଳି
ତୋହର ଆଦର ପ୍ରଭୁ,
କେଉଁଦିନ ଆହା ବୁଝିବି ମୋହର
ମୋ ଲାଗି ଯେ ପ୍ରେମସବୁ ? ୧୩ ।



## ଉଦ୍ଦେଶେ

ଯେଡ଼େ ମୁହିଁ ପାପୀ, କ୍ଷୁଦ୍ର ତୁଚ୍ଛ ଛାର,
ଶ୍ରୀଚରଣେ ତାର ଅଛି ଅଧିକାର;
ଆକାଶ ଉର୍ଦ୍ଧ୍ୱରେ ଯଦି ବା ବିରାଜେ,
ଯଦି ବା ମହୀରେ ଅବନତ ଲାଜେ,
ତୁଚ୍ଛ ଧୂଳିକଣା ତୁଚ୍ଛ ମାଟିଦେହ;
ସେ ପଦ-ରାଜୀବେ ନିରତେ ମୋ ସ୍ନେହ ।
ସେ ପ୍ରେମ-ଦେବତା, ସେ ହୃଦ-ସବିତା,
ସେହି ବନ୍ଧୁ, ଭାଇ, ସଙ୍ଗୀ, ମାତା, ପିତା,
ସାରା ଜୀବନର ପୂଜା, ଆରାଧନା,
ହୃଦୟର କ୍ଷତ, ଲୋତକ, ଯାତନା
ହେବ କି ବିଫଳ, ମୋ' ଆତ୍ମା-କମଳ
ଶୁଖି ସେ ଝରିବ, ହୃତ-ପରିମଳ,
ନାହିଁ ନାହିଁ କେବେ ନ ହୁଏ ବିଶ୍ୱାସ,
ରବି ସେ ଉଜ୍ଜ୍ୱଳି ହୃଦୟ-ଆକାଶ
ହସାଇବେ ମୋର ଆତ୍ମା-ଶତଦଳ,
ବୁହାଇବେ ପ୍ରେମବାତେ ପରିମଳ,
ଅଳିରୂପେ ଆସି ପ୍ରେମ ଗୁଞ୍ଜରଣେ
ହୃଦ-କମଳରେ ଲୁଚିଯିବେ କ୍ଷଣେ,
ହେମ-କରରାଶି ପ୍ରେମରେ ବରଷି
ପ୍ରେମର ଅଦ୍ଭୁତ ମନ୍ତ୍ରେ ଆକରଷି
ତଳୁ ଉପରକୁ ନେବେ ଧୀରେ ଧୀରେ,
କିପାଁ ମୁଁ କାନ୍ଦଇ ଲୋଟିଣ ମହୀରେ ?
ନୀଳାକାଶ ତଳେ ଯା' ଛବି ଉଜ୍ଜଳେ
ନୀଳ-ଲହରୀରେ, ନଦୀ-ନୀଳ-ଜଳେ,
ଫୁଲ ପରିମଳେ, ବସନ୍ତ-ଅନିଳେ,
ଲୋଟେ ଯାହା ରୂପ କନ୍ଦରେ, ଶଇଳେ,
ବିଶ୍ୱ ପ୍ରତି କୋଣେ ଯାହା ବାଣୀ ଶୁଣେ,
ହୁଏ ମୁଁ ଅସ୍ଥିର ଯାହା ପ୍ରେମଗୁଣେ,
ପୋଛିଦେବ ମୋର ନୟନର ଧାର
ପ୍ରେମରେ ସୁନ୍ଦର ଶ୍ରୀକର କାହାର,
ତିଳେ ତିଳେ କରି ଦେବ ମୋତେ ହରି
ପ୍ରେମ-ମନ୍ତ୍ରେ ମୁଗ୍ଧ ମୂର୍ଖ ଅନ୍ଧ କରି,
ଦୋଷ ଗୁଣ ଘେନି କରିବ ସେ ସ୍ନେହ,
ନେବ ଏକାବେଳେ କିଣି ଆତ୍ମା-ଦେହ,
ତା'ପ୍ରେମ-ସାଗରେ ବୁଡ଼ାଇବ ମତେ,
ସ୍ନେହ-ଲେପ ଦେବ ହୃଦୟର କ୍ଷତେ,
ନୟନରେ ଜ୍ୟୋତିଃ ପରାଣେ ପୀରତି,
ହୃଦୟେ ଭକତି, ବାହୁରେ ଶକତି,
ବିପଦରେ ଧୃତି, କରମେ ସୁ-ଗତି,
ଜଗତରେ ଶାନ୍ତି, ଅନ୍ତରେ ମୁକତି ।
ଏକାଧାରେ ସଖା, ଗୁରୁ, ପରିଜନ,
କଠୋର, କୋମଳ, ରୁଦ୍ର, ସୁମୋହନ,
ରକ୍ତ ବିନ୍ଦୁରାଶି ଢ଼ାଳି ହସି ହସି,
ପୂଜିବି ଯା' ପଦ ପ୍ରେମରେ ଉଲ୍ଲସି,

କର୍ତ୍ତବ୍ୟ-ବନ୍ଧୁର ଅନ୍ଧକାର ପଥେ
ବନ୍ଧୁସମ ସେହି ଯିବ ମୋ ସଙ୍ଗତେ,
ଧ୍ରୁବତାରା ମୋର ଅନ୍ଧକାର ନଭେ
ଉଜ୍ଜ୍ୱଳେ ହସିବ ପ୍ରେମର ଗୌରବେ,
ହୃଦୟର ମରୁରାଜ୍ୟେ ମନ୍ଦାକିନୀ,
ଦୁଃଖ ଯାମିନୀରେ ବିମଳ ଚାନ୍ଦିନୀ,
ମୋ ଜୀବନତରୀ ପ୍ରେମର କାଣ୍ଡାରି,
ଶତ ଝଞ୍ଜାବାତେ କରିବ ସେ ପାରି,
ପ୍ରେମ କୁଞ୍ଜବନେ ମୋହର ମୁରଲୀ,
ଶୁଣି ଯାହା ସ୍ୱନ ଯିବି ମୁଁ ତରଳି,
ହୃଦ ନେବ ରସି, ଯିବି ମୁହିଁ ମିଶି
ପଦତଳ ଧୂଳି ପରେ ଦିବାନିଶି ।
ମୋ' ପ୍ରେମ ଈଶ୍ୱର, ମୋ' ପ୍ରାଣ ଈଶ୍ୱର,
ଯେତେ ଦେଖେଁ ତେତେ କରେଁ ମୁଁ ନିଜର,
ହେଲେ ହେଁ ମୁଁ ପାପୀ କ୍ଷୁଦ୍ର ତୁଚ୍ଛ ଛାର,
ଶ୍ରୀ ଚରଣେ ତାର ଅଛି ଅଧିକାର ।



## ପ୍ରାଣେ ମୋହର କେ ଜାଗେ

(ବସନ୍ତେ)
ଅବନୀ ହରଷେ ଶ୍ୟାମ ସରସେ
ହୁଏ ଯେବେ ଦରହାସୀ,
ମଳୟ-ହିଲ୍ଲୋଳ ଶୀତଳେ ପରାଗ,
ଫୁଟଇ କୁସୁମରାଶି,
ବସନ୍ତ ଉଲ୍ଲାସେ ଗାଏ ବନପ୍ରିୟ,
ପଞ୍ଚମେ ଅମୃତ ସରାଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ ?

(ନିଦାଘେ)
ବର୍ଷେ ତପନ ପ୍ରଖର କିରଣ
ଯେବେ ଧରାତନୁ ପରେ,
କ୍ଳାନ୍ତ କଳେବର, ଶାନ୍ତ ଅନ୍ତର,
ଘନ ଘନ ସ୍ୱେଦ ଝରେ,
ତୃଷିତ ଶୁଷ୍କ କଣ୍ଠତାଳୁକା,
ଦାରୁଣ ହୃଦୟ ଆବେଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ ?

(ପ୍ରାବୃଟେ)
ସ୍ତବ୍ଧ ଯାମିନୀ ଚମକେ ଦାମିନୀ,
ବାରି ଝରେ ଝରଝର,
ଲୁପ୍ତ ଚନ୍ଦ୍ର, ତାରକା ଗଗନେ,
ଶୁଭଇ ଚାତକ-ସ୍ୱର,
ଡ଼ାକଇ ଦର୍ଦ୍ଦୁର, ନାଚଇ ମୟୂର,
ଭୀତ ଚିର ଆବେଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ

(ଶରତେ)
ଶରଦାକାଶେ ମଧୁର ହାସେ
ଭାସଇ ସୁନ୍ଦର ଶଶୀ,
ମୁଦେ କୁମୁଦ ଭାସେ ସରସେ,
ଉଲ୍ଲସେ ଅବନୀ ହସି,
ଧୀରେ ଧୀରେ ନୈଶ ସମୀରେ,
ବାସିତ କୁସୁମ ପରାଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ ?

(ହେମନ୍ତେ)
ହେମନ୍ତ ଦିନାନ୍ତେ, ନୀଳନଭଃପ୍ରାନ୍ତେ
ସ୍ୱର୍ଣ୍ଣ ପରାଗ ବୋଳି
ବୁଡ଼େ ଯେବେ ରବି, ଦୀପ୍ତ ହେମ ଛବି,
ଗାଏ ପକ୍ଷୀ ତାନ ତୋଳି,
ଢେଉ ଖେଳିଯାଏ ସ୍ୱର୍ଣ୍ଣଶସ୍ୟ ଶିରେ
ଶୀତଳ ସମୀର ସୁଆଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ ?

(ଶିଶିରେ)
ଶିଶିରେ ସୁନ୍ଦର ଫୁଟି ଶତବର୍ଗ
ସ୍ଫୁରଇ ପ୍ରସୂନ ବାସ,

ପର୍ଣ୍ଣ ବିହୀନ ପାପଦ ଅଙ୍ଗ,
ମଳିନ ନଳିନ-ହାସ,
ଶୀତ-ଶୀର୍ଣ୍ଣ ଶାୟିତ ଶରୀର
ଉଷ୍ଣ ଶେଯେ ନିଶିଭାଗେ,
ପ୍ରାଣେ ମୋହର କେ ଜାଗେ ତେବେ ଗୋ,
ପ୍ରାଣେ ମୋହର କେ ଜାଗେ



## ପୂଜା ପଦ୍ଧତି

ହରି, ହରି କେହି ଡାକୁଛି ସତତ,
ପ୍ରଭୁ, ପ୍ରଭୁ କେହି କହେ,
ତୁମ୍ଭ ନାମ ମୁଖେ ନ ନେଇ କେହି ବା
ତୁମ ଲାଗି ଦୁଃଖ ସହେ।
କାଠ ପାଷାଣରେ ଦେଖେ କେ ମୂରତି,
ମାନବରୂପେ ବା କେ କରଇ ପ୍ରୀତି,
ଜନନୀ ଭାବିଣ କେ କରୁଛି ନତି,
ପିତୃଭାବ କେହି ବହେ।
ନାନା ପରକାରେ ଭକତ ଅନ୍ତରେ
ତୁମ ରୂପଜ୍ୟୋତି ଉଜ୍ଜ୍ୱଳେ ପ୍ରେମରେ,
ଆଲୋକେ, ଅନ୍ଧାରେ, ଉଷାରେ, ନିଶାରେ
ତୁମ ରୂପରାଶି ଶୋହେ।
ଧାନ, ଦୂବ, ଫୁଲ, ଚନ୍ଦନ, ତୁଳସୀ,
କେ ସଜାଡ଼େ ତୁମ ପୂଜା ଡ଼ାଲା ବସି,
କେହି କାନ୍ଦି କାନ୍ଦି କେହି ହସି ହସି
ପୂଜେ ପାଦ ସରୋରୁହେ।
ଆକାର ବିନୁ କେ ତୁମ ରୂପ ଦେଖେ,
ସାରା ସଂସାରେ କେ ତୁମକୁ ନିରେଖେ,
କେବା ତୁମ ରୂପ ହୃଦପଟେ ଲେଖେ,
କେବା ଶାଳଗ୍ରାମ ବହେ।
ତୁମ ବାଣୀ କେହି ଶୁଣେ ଚରାଚରେ,
କେହି ଅବା ଶୁଣେ ଆନ କଣ୍ଠସ୍ୱରେ,
କେବା ଶୁଣେ ନିଜ ଅନ୍ତର-ଭିତରେ,
ଯହିଁ ଶୁଭେ ମନ ମୋହେ।
ତୁମ ଲାଗି କେହି କାନ୍ଦ ନିଶିଦିନ
ଲୋଚନ-ଯୁଗଳ ଜ୍ୟୋତି କରେ କ୍ଷୀଣ,
ଆନନ୍ଦ-ସଲିଳେ କାହା ମନମୀନ
ତୁମ ଲାଗି ବୁଡ଼ି ରହେ।
ତୁମ ଲାଗି କେହି ଆଚରେ ସନ୍ନ୍ୟାସ
ଛାଡ଼ି ଦାରା-ପରିବାର-ଗୃହ ବାସ,
ତୁମ ଧର୍ମ୍ମ ପୁଣି କେ କରେ ପ୍ରକାଶ
ଆଚରଣେ ରହି ଗୃହେ।
ତୁମ ଲାଗି କେହି ଦିଏ ଜଳାଞ୍ଜଳି
ସର୍ବସୁଖେ ତାର ଆତ୍ମା ଦେଇ ବଳି,
ଭ୍ରମି ଦେଶ ଦେଶ ଗିରି ବନାବଳୀ
ତୁମ ନାମଧର୍ମ୍ମ କହେ।
କୃଷ୍ଣ କହି କେହି କରେ ଆରାଧନା,
ଖ୍ରୀଷ୍ଟ କହି କେହି କରୁଛି ବନ୍ଦନା,
ସବୁ ତ ଅର୍ଚ୍ଚନା, ସବୁତ ସାଧନା,
ସବୁ ସତ୍ୟ, ମିଥ୍ୟା ନୁହେ।
ତୁମେ ମହାପ୍ରଭୁ, ଜାଣିଛି ଅନ୍ତରେ,
ତୁମେ ଚରାଚରେ, ମୋ' ଆତ୍ମା ଭିତରେ,
ନୟ ରଖି ମନ ତୁମରି ପୟରେ
ସତ୍ୟପଥେ ଆତ୍ମା ରହେ।



## ଦୂର ଗଗନକୁ ଚାହିଁ

(୧)

ଦୂର ଗଗନକୁ ଚାହିଁ ଭାବେ କେତେ କଥା,
ଅନ୍ତରେ ଅନ୍ତରେ ବାଜେ କେତେ ଲାଜବ୍ୟଥା,
କରିଅଛି ଅନାଦର
କେତେ, ପଦ-ଇନ୍ଦୀବର,
ହେଳେ ଶୁଣିନାହିଁ କେବେ ତବ ପ୍ରିୟ ବାଣୀ,
କରିନାହିଁ ପ୍ରିୟ କାର୍ଯ୍ୟ କେତେ ଜାଣି ଜାଣି।
ବ୍ୟାକୁଳିତ ହୁଏ ହୃଦ ଥରି ଥରି ଲାଜେ,
ଶତ ସ୍ମୃତି-ତୀବ୍ର-ଶେଲ ମରମେ କି ବାଜେ ?
ନିଃସୃତ ଲୋତକବ୍ୟଥା
ଅସମ୍ଭାଳେ ଆଖିପତା

ବୁଜି ବୁଜ ପଡ଼େ, କ୍ଷଣେ ଅନ୍ତର ଅନ୍ଧାର,
କହିବି କହିବି କଥା ନ ହୁଏ ବାହାର ।
(୨)
ଦୂର ଗଗନକୁ ଚାହିଁ କାନ୍ଦିଲି ନୀରବେ,
ସତେ ପ୍ରତିଧ୍ୱନି ତାର ବାଜିଗଲା ନଭେ
ନାଗେ ଲୁଚାଇ ଲୋଚନ
ମଉଳିଲେ ତାରାଗଣ,
ଅନ୍ଧକାରେ ଧରାମୁଖ ଦେଲା କି ଆବରି
ଆକୁଳେ ନୟନୁ ଅଶ୍ରୁ-ହିମ ପଡ଼େ ଝରି ।
(୩)
ଦୂର ଗଗନକୁ ଚାହିଁ ଡାକିଲି ଆକୁଳେ,
"ଭାସିଗଲି ଭବାର୍ଣ୍ଣବେ ନଗାଥ ହେ କୂଳେ,
ପ୍ରତିତପାବନ ନାଥ,
ମୁଁ ପାପୀ ପତିତ ଭ୍ରାନ୍ତ,
ଚିର ଅପରାଧୀ ମୁହିଁ, ଚିର ଦୟାମୟ
ତାର ମୋତେ," ପ୍ରତିଧ୍ୱନି ହେଲା ବିଶ୍ୱମୟ ।
ପ୍ରାତଃ ତାରା ନଭୋଭାରେ ଚାହିଁଲା ସରମେ,
ସର ସର ସମୀରଣ କାନ୍ଦିଲା ମରମେ,
ପ୍ରାଚେତସୀ କ୍ଷୋଭେ କଳା,
ଆକୁଳେ ପ୍ରାଚୀ ଯାଟଳା,
ମୋ' ପାପକଳଙ୍କ ଲାଗି କାନ୍ଦେ ଚରାଚର,
ଶିଶିର ଲୋତକ ନେତ୍ରଯୁଗେ ଝରଝର ।
(୪)
ଦୂର ଗଗନକୁ ଚାହିଁ ନୟନ-ପଲକେ
ଆଚମ୍ବିତେ ଦେଖେଁ ଦିବ୍ୟ ଆଲୋକ ଝଲକେ,
ତମୋଆବରଣ ଛେଦି
ଉଷାର ସିନ୍ଦୂରା ଭେଦି
ସହସା ଉଠିଲା ରମ୍ୟ ଅରୁଣ ତରୁଣ,
ସେ କି ତବ ସ୍ନିଗ୍ଧ ସ୍ନେହ, କ୍ଷମା ସକରୁଣ ?



## କଟି ଯାଉଅଛି

କଟି ଯାଉଅଛି କେତେ ବରଷ,
କେତେ ଯୁଗ ଯୁଗ ଅନ୍ତର,
ତଥାପି ଦେଖା ମୁଁ ତାହାର
ପାଇନାହିଁ କ୍ଷଣମାତର ।
କେଉଁ ଅନ୍ଧକାର ଭେଦି ଆସି ମୁଁ
ଜନ୍ମ ଲଭିଛି ଭବେ,
ପ୍ରୟାସେ ସତତ ଜାଣି ମୁଁ
ପାରିନାହିଁ ତ ଲବେ ।
ତଥାପି ଅନ୍ତର ଗୋପନ-
ତମ ପ୍ରଦେଶେ ମୋର
ଶୁଣିଅଛି ସତେ କାହାର
ବୀଣା ମଧୁର ସ୍ୱର ।
କିଏ ସେ, ତାହାକୁ ଚିହ୍ନିବା
ପାଇଁ କାନ୍ଦେ ପରାଣ,
ଚିହ୍ନିବି ଚିହ୍ନିବି, କହି ତ
ହେଲା ଦିନାବସାନ ।
ଆସି ପହଞ୍ଚିଛି ଏବେ ମୁଁ
ମୃତ୍ୟୁନଦୀର ତଟେ,
ଶତ ବିଭୀଷିକା ଦେଖେଁ ମୁଁ
ଭୀତ ନୟନପଟେ ।
ତଥାପି ଅନ୍ଧାର ଭେଦି ସେ
ଦୂର ଗଗନେ ପରା
ଜ୍ୱଳୁଛି ଲିଭୁଛି ସତେ କି
ଦୂର ସ୍ୱରଗ-ତରା ?
ସେହି ହେବ ପରା ମୋହର
ଆଶା ପ୍ରେମ ଆଲୋକ,
ତାକୁ ଚାହିଁ ଯିବି ସେପାରେ
ନ ପଡ଼ୁଣୁ ପଲକ;
ଅନାଇଣ ବସିଥିବେ କି
ମୋର ପ୍ରିୟ ସୁହୃଦେ,
କନ୍ଦାଇ ବିକଳେ ତାହାଙ୍କୁ
ଚକ୍ଷୁ ମୁଦିବି ମୁଦେ ।
ସେତ ନ ପାରିବେ ଜାଣି ଗୋ
କେଣେ ଗଲି ହଠାତ୍,
ମୋର କିନ୍ତୁ ଭବ ସେ ପାରେ
ହେବ ନବ ପ୍ରଭାତ ।



## ଅବସାଦେ

ଆଜି ଅନ୍ଧାର ନଭେ ଅନ୍ଧାର ଭେଦି
ଜଳୁଛି ତାରକା ଜ୍ୟୋତି,
ଦୂରେ ବହୁଦୂରେ ଥାଇ ପରଶଇ
ପ୍ରାଣ ସେ ଅପୂର୍ବ ଜ୍ୟୋତି
ଆଜି ଛିନ୍ନ ହୃଦୟ-ତନ୍ତ୍ରୀ ତାନରେ,
ବିକଳ ରାଗିଣୀ ଯୋଗେ,
କେ ଗାଏ ସଙ୍ଗୀତ ଶୁଣିଛି ଆବେଗେ
ଚିର ଅବସାଦ ରୋଗେ,
ସାରା ଜୀବନର ବେଦନାରାଶି,
ସାରା ଜୀବନର ପ୍ରୀତି,
ନିମିଷକେ ସବୁ ହୋଇଅଛି ଲୀନ,
ଶୂନ୍ୟ ବିଶାଳ କ୍ଷିତି,
ମୃତ୍ୟୁ-ନଦୀ-ବକ୍ଷେ ପହଞ୍ଚି ଦେଖେ ମୁଁ
ଚଉଦିଗ ଅନ୍ଧକାର,
ସେ ଅନ୍ଧାର ଭେଦି ବିମଳ ସ୍ନେହରେ
ଭାତେ ମୁଖଦୀପ୍ତି କାର ?
ସ୍ୱପନରେପରା ଦେଖିଥିଲି ତାଙ୍କୁ,
ଚିହ୍ନି ନ ପାରଇ ଆଜି,
ପୂର୍ବ ଜୀବନର ଶତ କର୍ମଚିତ୍ର
ପ୍ରତେ ହୁଏ ଛାୟା-ବାଜି ।
ସବୁ ଗଲା କାହିଁ ଶୂନ୍ୟରେ ଉଭେଇ,
ଏତେ ପ୍ରେମ, ଏତେ ବ୍ୟଥା,
କେବଳ ସେ ମୁଖ ଉଜ୍ଜ୍ୱଳ ମୟୁଖ
ଭାତେ ଚାହେଁ ଯଥା ତଥା ।
କେହି ନୁହେଁ କା'ର, ସଂସାରେ କାହାକୁ
କେହି ଚିହ୍ନି ପାରେ ନାହିଁ,
ଏକା ସେ ଈଶ୍ୱର ଏ ଆତ୍ମାବାନ୍ଧବ,
ଚିହ୍ନନ୍ତି ଆତ୍ମାକୁ ଭାଇ ।

## ସେ ତ ଗଲା କାହିଁ

ସେ ତ ଗଲା କାହିଁ ଚାଲି ଗୋ, ତାଙ୍କୁ ଝୁରୁଛି ବସି,
ନ ପଡୁଣୁ ନେତ୍ରେ ପଲକ ସେତ ଗଲାଟି ଖସି ।
ରହ ରହ ବୋଲି କହି ମୁଁ ନ ପାଇଲି ହଠାତ୍,
କାହିଁ ଚାଲିଗଲା ସେ କେଉଁ ଦୂର ଦେଶେ ଅଜ୍ଞାତ ।
ସ୍ୱରଗର ଶତବାହିନୀ ତାଙ୍କୁ ଭେଟିବେ ପରା,
ମୁଁ ତ କାନ୍ଦି ଗଡ଼େ ଭୂଇଁରେ ନୀରେ ତିନ୍ତାଇ ଧରା ।
କିଏ ସେ ଥିଲା ସେ ମୋହର କେଉଁ ସ୍ୱରଗ-ତାରା,
କାହୁଁ ଝରି ପଡ଼ିଥିଲା ଗୋ, ପ୍ରେମ-ଜାହ୍ନବୀ ଧାରା ?
କହି ନପାରଇ କଥାରେ ଧୈର୍ଯ୍ୟ ଯାଉଛି ଟୁଟି,
ଆହା ଏତେ କ୍ଷଣେ କାହିଁ ସେ ଉଠିଲାଣି କି ଫୁଟି ?
ଫୁଟିଲାଣି ସତେ କୁସୁମ ସମ କେଉଁ କାନନେ ?
ବସି ବସି ତାଙ୍କୁ ଝୁରୁଛି ଏକା ସିନା ବିଜନେ ।
କେଉଁ ପ୍ରେମଭରା ଆକାଶ ମୃଦ ଉଜ୍ଜ୍ୱଳ ଇନ୍ଦୁ,
କ୍ଷଣକ ସକାଶେ ମୋ ନେତ୍ରେ ଢ଼ାଳି ଅମୀୟ ବିନ୍ଦୁ
ଦୁଇଦଣ୍ଡ ପାଇଁ ଆସି ସେ ହୋଇଥିଲା ଉଦୟ,
ଅନ୍ଧାରେ ଡୁବାଇ ମୋତେ ସେ କଲା ଏବେ ଅଥୟ ।
ଦୁଇଦିନ ପାଇଁ ସତେ କି ବଜାଇଣ ମୁରଲୀ
କର୍ଣ୍ଣେ ଢ଼ାଳି ସୁଧା ଅପୂର୍ବ ଚାଲିଗଲା ସେ ଛଳି !
ସମ୍ପୂର୍ଣ୍ଣ ତାହାକୁ ଦେଖି ମୁଁ ନପାରିଲି ଆହା ଗୋ,
ଶୋକ କରି ଏବେ ବୁଲୁଛି କହି "ଆହା ଆହା ଗୋ" ।



## କିଏସେ ସେ ଥିଲା

କିଏସେ ସେ ଥିଲା ? କାହିଁ ରହିଥିଲା ?
ଜାଣିନାହିଁ କିଛି ନବେ
ସହସା ଉଜ୍ଜ୍ୱଳି ମୋ ହୃଦ-ଆକାଶ
ଉଦୟ ହେଲା କି ଭବେ ?
ଇନ୍ଦୁ ସିନା ଲୁଚେ ରାତିକ ସକାଶ,
ଚିରଦିନ ସେ ତ ଲୁଚାଇଲା ଆସ୍ୟ,
ନିଭାଇଲା ତାର ସୁମଧୁର ହାସ୍ୟ,
ମୋର ଶତ ଶତ ଦୀର୍ଘଶ୍ୱାସ
ଶୁଣି ନ ଶୁଣିଲା, କାହିଁ ଚାଲିଗଲା ?
କାନ୍ଦିଲି ମୁଁ ବର୍ଷ ମାସ ।



## ସେ ତ ଗଲା ଚାଲି

ସେ ତ ଗଲା ଚାଲି, ସେ ତ ଗଲା ଚାଲି,
ଆଉ ନ ଆସିବ ଫେରି,
ତଥାପି ତାହାର ସ୍ୱର ଶୁଣିବାକୁ
ରହିଛି ମୁଁ କାନ ଡ଼େରି ।
ସେ ତ ଗଲା ଚାଲି, ସେ ତ ଗଲା ଚାଲି,
ଆଉ ନ ପାଇବି ଦେଖା,
ତଥାପି ତାହାର ପଥ ଅନୁସରି
ଖୋଜି ବୁଲେ ପଦ-ରେଖା ।
ସେ ତ ଗଲା ଚାଲି, ସେ ତ ଗଲା ଚାଲି,
ଆଉ ନ ପାଇବି କେବେ,
ତଥାପି ତାହାର ଅପେକ୍ଷା କରି ମୁଁ
ପଛ ଚାହିଁଅଛି ଏବେ ।
ସେ ତ ଗଲା ଚାଲି, ସେ ତ ଗଲା ଚାଲି,
ବୃଥାରେ କହନ୍ତି ସବୁ,
ସେ ତ ତିଳେ ଦୂରେ ନାହିଁ ମୋହଠାରୁ
ଜାଣିଛି ମୁଁ ଅନୁଭବୁ ।
ଏତେ ସେ ନିକଟ ହୋଇଅଛି ମୋର,
ତେଣୁ ଦେଖି ପାରୁନାହିଁ,
ଆଖି ଦେଖେ ସବୁ, ତଥାପି ନିଜର
ତାରାକୁ ନ ପାରେ ଚାହିଁ ।



## ସେ କି ବୁଝେ

ସେ କି ବୁଝେ ମୋର ଅନ୍ତର ବେଦନା,
ସେ କି ବୁଝେ ମୋର ବ୍ୟଥା ?
ସେ କି ବୁଝେ ମୋର ତପ୍ତ ଅଶ୍ରୁଧାର,
ସେ କି ବୁଝେ ମୋର କଥା ?
ସେ କି ବୁଝେ ମୋର ଦୀର୍ଘ ହତାଶ୍ୱାସ,
ସେ କି ବୁଝେ ମୋର ଚିର ?
କାହିଁ ସେ ? କାହିଁ ସେ ? କେଉଁ ଦୂରଦେଶେ,
କାହିଁ ମୋର ପ୍ରାଣମିତ ?
ତାକୁ ଖୋଜି ବୁଲେ ରଜନୀଦିବସ,
ତାକୁ ଖୋଜି ବୁଲେ ନିତି,
ତାକୁ ଖୋଜି ବୁଲେ ଅନ୍ତରେ ବାହାରେ,
କେବେ ସେ ନ ଆସେ କତି ।
ସେ କି ଭାବେ କ୍ଷୁଦ୍ର ଅନ୍ତରେ ମୋହର
ନାହିଁ ଅନୁଭବଶକ୍ତି,
ଏକ କଠିନ ମାଂସ-ଆବରଣ ମଧ୍ୟେ
ନାହିଁ ପ୍ରେମ, ନାହିଁ ଭକ୍ତି ?
ସେ କିବୁଝେ ନୈଶ ଆକାଶ ଉରଂସେ
ଦୀପ୍ତ-ତାରାଦଳ ହାସେ
ଦେଖେ ମୁଁ ତାହାର ପ୍ରେମମୟ ରୂପ,
ଅନ୍ତରୀକ୍ଷେ ସତେ ଭାସେ ।
ପବନେ, ଗହନେ, ହୃଦୟ-କନ୍ଦରେ
ସେ ତ ମୋର ବିରାଜିତ,
ନୟନର ପ୍ରତି ନିମିଷେ ଦେଖେ ମୁଁ
ମୋ ନିକଟେ ଉପସ୍ଥିତ ।
ଏତେ ପ୍ରେମ କରେ କହ କି କାରଣେ,
ତାକୁ ପାଇ ପାରେ ନାହିଁ,
ବରଷ ବରଷ ଗଲା ବହି ମୋର,
ତା' ସ୍ୱରୂପ ମନେ ଧ୍ୟାୟି ।



## ଫୁଲ ପ୍ରତି

କାହିଁକି ରେ ଦୂର ବନେ ଫୁଟିଅଛୁ ଫୁଲ,
ରୂପ ନ ଦେଖାଇ ଗନ୍ଧେ କରୁଛୁ ଆକୁଳ ?
ଦେଖିବି ବୋଲି ମୁଁ ତୋତେ ଖୋଜି ଖୋଜି ବୁଲେ,
କେଉଁ ପତ୍ର ଅନ୍ତରାଳେ ନ ଦେଖେ ତ ଭୁଲେ ।
ମାଂସ ଆବରଣ ମଧ୍ୟେ ମୋ ହୃଦୟଫୁଲ
ଫୁଟିଗନ୍ଧେ ଜନମନ କରୁ ସେ ଆକୁଳ ।



## କିଏ ସେ

କିଏସେ ସେ ମୋର ଅନ୍ତର-ଅତିଥି,
କିଏସେ ସେ ମୋର ଦେବତା,
କିଏସେ ସେ ମୋର ନୟନର ଉର୍ଦ୍ଧ୍ୱେ
ପ୍ରେମମୟ ନବ-ସବିତା ?
କିଏସେ ସେ ମୋର ଦୁଃଖରେ, ସୁଖରେ,
ନୟନର ତପ୍ତ-ସଲିଳେ,
କିଏସେ ସେ ମାର ରବିତାରାଚନ୍ଦ୍ରେ,
ମେଘ-ମନ୍ଦ୍ରେ, ନଭେ, ଅନିଳେ ?
କିଏସେ ସେ ମୋର ଫୁଲ ମଧୁବାସେ,
ମଧୁମାସ ନବ ଉଷାରେ,
କିଏସେ ସେ ମୋର ଚପଳା-ଚମକେ,
ଶରତ-ଚାନ୍ଦିନୀ-ନିଶାରେ ?
କିଏସେ ସେ ମୋର ଶୟନେ, ସ୍ୱପନେ,
ମୋର ନିତ୍ୟ ଜାଗରଣରେ,
କିଏସେ ସେ ମୋର ଜୀବନେ, ମରଣେ,
କାନ୍ଦେ କି ମୁଁ ଅକାରଣରେ ?



## ମିଛେ

ଏଡ଼େ ପାଖେ ପାଖେ ରହିଛି ସେ ମୋର,
ତାକୁ ଦେଖିନାହିଁ କାହିଁକି,
ବେଢ଼ି ବସିଅଛି ମୋତେ ସେ ଘେନିଣ,
ବସେ ତାହା ପଥ ଚାହିଁ କି ?
ନିତ୍ୟ ଆଲିଙ୍ଗନେ ଧରିଛି ସେ ମୋତେ,
ଖୋଜି ବୁଲେ ମୁହିଁ ତାହାକୁ,
ଅନ୍ତରେ ମୋହର ରହିଛି ଜାଗ୍ରତ,
ତଥାପି ଖୋଜେ ମୁଁ ତାହାକୁ ।
ସବୁ ସୁଖ ମୋର ଥୁଳ ତାହାଠାରେ,
ତଥାପି ଖୋଜେ ମୁଁ ସୁଖକୁ,
ସବୁ ଶାନ୍ତି ମୋର ତାହାରି ପାଦରେ,
ତଥାପି ଯାଏ ମୁଁ ଦୂରକୁ ।
ହାତେ ଘେନିମୁହିଁ ଦରପଣ, ଅନ୍ଧ
ପରାଏ ନ ଦେଖେ ଆନନ,
ପବନ ସ୍ୱରୂପ ଦେଖିବାକୁ ବାଇ
ନିଶ୍ୱାସେ ଘେନିଣ ପବନ ।
ହାତେ ଘେନିବୀଣା ବଜାଇ ନ ପାରି
ଛିନ୍ନ ତାର ବୋଲି କହେ କି,
ହାତେ ଆତପତ୍ର ଘେନିଣ ତଥାପି
ଆତପ ଦୁଃଖକୁ ସହେ କି ?
ନଦୀତୀରେ ନାହା ଦେଖି ମୁଁ ତଥାପି
ସନ୍ତରଣେ ମତି ବଳାଏ,
ନିଜର ଛାୟାକୁ ଡ଼ରି ଡ଼ରି ସତେ
ନିଜଠାରୁ ନିଜେ ପଳାଏ !
ଅମୃତ-ଭୋଜରେ ବସି ଉପବାସୀ,
ଭାଗ୍ୟକୁ ନିନ୍ଦୁଛି ଦୁଃଖରେ,
ମିଛେ ମିଛେ ମୋର ବିକଳ କାନ୍ଦଣା,
ସହୁଛି ଦୁଃଖକୁ ଇଚ୍ଛାରେ ।



## "ହେ ପ୍ରଭୁ"

ହେ ପ୍ରଭୁ !
ସବୁ ସୁଖ ମୋର ଯାଇଛି ସରି,
ଜୀବନେ ଥାଇଁ ମୁଁ ରହିଛି ମରି,
ଅବଶ ପରାଣେ ଆଶାମାତ୍ର ଧରି
ହରାଇଛି ଆଉ ସବୁ ।
ହେ ପ୍ରଭୁ !
କିପାଁ ଅନ୍ଧକାରେ ବସି ରହିଛି,
ଆକୁଳେ ବ୍ୟାକୁଳେ ବାଟ ଚାହିଁଛି,
ସବୁ ତ ସରିଛି, ନାହିଁ ଆଉ କିଛି,
ହରାଇଛି ମୋର ସବୁ ।
କେବେ କେଉଁ ଦିନ ନାହିଁ ତା ସ୍ମରଣ,
ଶୁଣିଥିଲି ତବ ତ୍ୱରିତ-ଚରଣ
ବୀଣାଜିଣା ଧ୍ୱନି ତୋଷିଣ ଶ୍ରବଣ
ବାଜିଥିଲା ମରମରେ,

ଆନନ୍ଦ-ବଦନେ  ରହିଲି ମଉନେ
ବିଜଡ଼ିତ ସରମରେ ।
ତୁମରି ଆଲୋକ ଆକାଶ, ପବନ,
ଚନ୍ଦ୍ର ତାରାବଳୀ ଉଜ୍ଜ୍ୱଳି ତପନ,
ପୁଲକି ପରାଣ, ତୋଷି ଅପଘନ,
ବିକାଶିଲା ନେତ୍ର ବେନି,
ବରଣ ଡ଼ାଲାଟି  ସଜାଡ଼ିଲି ତେଣୁ
ଅଶ୍ରୁ-ମୁକ୍ତା-ହାର ଘେନି ।
ଅବା ଫୁଲମାଳା ଗୁନ୍ଥିଲି ହରଷେ,
ପିନ୍ଧାଇଲି କରି ଆଦର ପରଶେ,
ଗଲାଣି ସେ ଦିନ ଏବେ ଭାଳି ବସେ,
ବୁଝେ ନାହିଁ ବୁଝେ ନାହିଁ,
ତୁମ ଶକ୍ତି କନ୍ଦ  ଊଣା ମୋ ପରାଣେ
ହୋଇଅଛି କାହିଁପାଇଁ ?
କାହିଁ ସେହି ଶକ୍ତି, ସେ ପ୍ରେମସ୍ପନ୍ଦନ,
ହୃଦ ପ୍ରତି ତାରେ ଯା' ମୃଦୁ କମ୍ପନ
ଅନୁଭବିଥିଲି, ଏବେ ଶୂନ୍ୟମନ
ଆକୁଳିତ ଅବସାଦେ,
ତୁମକୁ ହରାଇ  ବାଟବଣା ହୋଇ
ଦିନ କାଟେ ପରମାଦେ ।
ମୋ' ନେତ୍ର କାହିଁରେ ଆବରିଲ ସଖା,
ଦେଖା ପାଇବାର ଆଶାରେ ମୁଁ ଥକା,
(ହୀରା ଦେବ ବୋଲି ଦେଉଛ କରକା,)
ତୁମ୍ଭଙ୍କୁ ଚାହେଁ ମୁଁ ପ୍ରଭୁ,
ଆପଣାକୁ ଛାଡ଼ି  ଯାହା ମୁଁ ମାଗିଲି,
ଦେଇ ସାରିଲଣି ସବୁ ।
ଏ କି ପ୍ରଭୁ ତବ ପ୍ରେମ ବ୍ୟବହାର,
ଅଥବା ମୋ' ପ୍ରେମ କରୁଛ ବିଚାର,
କି ଭୟ ମୋହର, କର ଯାହା ପାର,
ମୁଁ ତୁମ୍ଭରି ପ୍ରତିଆଣୀ,
ତୁମ୍ଭେ ମୋତେ ଦୟା  କରିବ ଜାଣେ ମୁଁ,
ମୋ' ଦୁଃଖବିଷାଦ ନାଶି ।



# ବିରହେ

ଆଜି ଅଭାଗିନୀ  କାହାର ବିରହେ
ବୁହାଏ ନୟନୁ ନୀର ?
ଆକୁଳ ଏ ପ୍ରାଣ,  ଆକୁଳ ଏ ଚିତ୍ତ,
ଆକୁଳ ଏ ଚରାଚର ।
ଆଉ ତ ଭ୍ରମର  ନ ଆସେ ଗୋପନେ
କୁସୁମିତ କୁଞ୍ଜବନେ,
ଆଉ ତ କୋକିଳ  ନ ଢାଳେ ସଙ୍ଗୀତ
ନବ ବସନ୍ତର କାନେ ।
କଳ କଳ ନାଦେ  ବହିଯାଏ ନଦୀ,
ନଦୀ ଗାଏ ଦୁଃଖଗାଥା,
ଲହରୀ, ଲହରୀ,  ଦିଏ କି ଉଦ୍‌ଗାରି
ହୃଦୟନିହିତ ବ୍ୟଥା !
ଉଠେ ଫେନରାଶି  ଉଦ୍ଦାମ, ଚଞ୍ଚଳ,
ଭାସିଯାଏ ପୋତ ବକ୍ଷେ,
ରବିକର ରଶ୍ମି  ନଚାଏ ତରଙ୍ଗ,
ବିହଙ୍ଗମ ଅନ୍ତରୀକ୍ଷେ-
ଉଡ଼ିଯାଏ ଗାଇ  କି କରୁଣ ଗୀତି,
ଘୋଟେ ପ୍ରାଣେ ଅବସାଦ,
ସ୍ୱତଃ ଏ ନୟନେ  ଜଳ ଉଛୁଳଇ,
ସ୍ୱତଃ ଯେ ଦହୁଛି ହୃଦ ।
ଆଉ ତ ନ ହସେ  ରାକା-ଶଶଧର
ଶାରଦ ଗଗନ ଶୋଭା,
କାନ୍ଦୁଛି କି ଶଶୀ  ହିମ-କରଧାରେ,
ମଳିନ କି ତାରାପ୍ରଭା !
ଗଭୀର ନିଶୀଥ  କାନ୍ଦେ କି ଗୋପନେ
ଶବ୍ଦହୀନ ତାର ଧରି,
ଭେଦୁଅଛି ମୋର  ମରମେ ମରମେ
ସେ ବ୍ୟଥା ଛୁରିକା ପରି ।
ମଳୟ ହିଲ୍ଲୋଳ  ନ କରେ ଶୀତଳ
ଏ ଅନଳତପ୍ତ ଚିତ୍ତ,
ଜ୍ୱଳୁଅଛି ବହ୍ନି  ଜ୍ୱଳୁଛି ଗୋପନେ
ଜ୍ୱଳୁଛି ତ ଅବିରତ ।

ଫୁଲ ପରିମଳ ତହିଁ କି ଗରଳ,
ତହିଁ ସତେ ହଳାହଳ,
ଶାରଦୀୟା ଶୋଭା ଧରଣର, ରବି-
କର-ଦୀପ୍ତ ନଭୋତଳ !
ଏ ବିଶ୍ୱ ସଂସାରେ ନାହିଁ ମୋର ପାଇଁ
ଚିରଶାନ୍ତି ମହୌଷଧ,
ନିତି ହାହାକାରେ ବହିଯାଏ ଦିନ,
ନିତି ହୃଦ ବିଦଗଧ ।
ଭାଙ୍ଗି ଯାଇଅଛି ମନୋବୀଣା ମୋର,
ଆଉ ନ ଧରିବ ତାନ,
ଆଉ ନ ଗାଇବ କୋକିଳ ପଞ୍ଚମେ
ଚିତ୍ତ ମୋହି ଗୀତମାନ ।
ଆଜି ସବୁ ସ୍ନେହ, ପ୍ରାଣଭରା ପ୍ରୀତି
ଲଭିଅଛି ଅବସାନ,
ତାହାରି ବିରହେ ମରି ତିଳେ ତିଳେ
ସରିଗଲାଣି ମୋ ପ୍ରାଣ ।
ସଂସାରର ଶତ କର୍ତ୍ତବ୍ୟେ ମୋହର
ନାହିଁ ସ୍ଫୂର୍ତ୍ତି, ନାହିଁ ଶ୍ରଦ୍ଧା,
ଉତ୍ସାହର ବହ୍ନି ଲଭିଛି ଅନ୍ତରୁ,
କେବଳ ଅନନ୍ତ କ୍ଷୁଧା ।
ଅନନ୍ତ-ପିପାସା- ଶୁଷ୍କ କଣ୍ଠ ତାଳୁ,
ବିକଳ ମରମ ମୋର,
କାନ୍ଦିଲେ କି ହେବ ? ଅନନ୍ତ ଏ ଦୁଃଖ,
ଅନନ୍ତ ଏ ତମଃ ଘୋର ।
ଅବସାଦଶୁଷ୍କ ହୃଦ-କୁଞ୍ଜବନେ
ନ ଫୁଟଇ ଆଶା-ଫୁଲ,
କାହିଁ ସେ କାହିଁ ସେ, କେଉଁ ଦୂର ଦେଶେ ?
କହ କିପାଁ ମୁଁ ଆକୁଳ ?
ସେ କି ଜାଣେ ମୋର ପରାଣର ବ୍ୟଥା,
ଗୋପନ ଲୋତକ ଧାର ?
ସେ କି ଜାଣେ ମୋର ମରମ-ବେଦନା
କି ଭୀଷଣ ଦୁର୍ନିବାର !
ସେ କି ଜାଣେ ତାର ବିରହ-ଅନଳେ
ପୋଡୁଛି ଏ ହୃଦବନ,

କାହିଁ ଶାନ୍ତ କହ, କାହିଁ ଶାନ୍ତି ମୋର,
କାହିଁ ମୋର ଶାନ୍ତି-ଧନ ?
ଶ୍ରେୟ ମଣେ ମୁଁ ତ ନରକ-ନିବାସ,
ନ ଚାହେଁ ମୁଁ ମଣି, ହେମ,
ଚାହେଁ ତାକୁ, ଯା'ର ଲାଗି ଏତେ ଦୁଃଖ,
ଯା'ର ଲାଗି ଏତେ ପ୍ରେମ;
କି ପ୍ରେମ-ମନ୍ତର ପଢ଼ାଇଛି ମୋତେ,
କରିଅଛି ଉନ୍ମାଦିନୀ,
ଖୋଜି ବୁଲେ ମୋର କାହିଁ ମନଚୋର,
ଖୋଜି ବୁଲେ ଅଭାଗିନୀ ।
ଚଉଦ ଭୁବନେ ଦେଖେଁ ତ ତା'ରୂପ,
ନାହିଁ କିପାଁ ହୃଦକୋଣେ ?
ଆସିବ କି ମୋର ଅନ୍ତର-ଆରାଧ୍ୟ
ପ୍ରେମ ବଳ ଆକର୍ଷଣେ ?
ବଚନେ ମୋହର ନାହିଁ ସରସତା,
ପଠନେ ନ ହରେ ତୃଷା,
ଶୟନେ ସ୍ୱପନେ କାନ୍ଦେ ମୁଁ ଉନ୍ମନେ,
ସତେ କି ପୂରିବ ଆଶା ?
ପ୍ରାର୍ଥନାର ସତ ' ଆକୁଳ କ୍ରନ୍ଦନେ
ଚିତ୍ତ ମୋର ଥମିଲାଣି,
ଶୁଣି ନ ଶୁଣେ ସେ ପ୍ରାଣର ଦେବତା,
ହୃଦ ମୋର ଦମିଲାଣି ।
ଅଶ୍ରୁର ଅତୀତ ଏ ଦୁଃଖ ମୋହର,
ପାଗଳିନୀ ମୁହିଁ କିବା,
କହିଲେ କାହାକୁ ହରେ ଯଦି ଦୁଃଖ,
କହନ୍ତି ଯାମିନୀ ଦିବା ।
ସହ-ଅନୁଭୂତି କିଏ ଦେବ ମୋତେ
ବିନା ଅନୁଭବେ କହ,
ଯେ ନ ଜାଣେ ତାକୁ, କି ବୁଝିବ ତାର
ବିରହ କି ଦୁରବହ ?
ମୋହରି ଅନ୍ତରେ ଶୁଣିଛି ତା'ସ୍ୱର,
ତା' ରୂପେ ହୋଇଛି ବାଇ,
ଅରୂପ ରୂପ ତା' ବିଶ୍ୱ ବିମୋହନ,
ଦେଖି ସତେ ଦେଖିନାହିଁ

ଏ ମର ନୟନେ ଦେଖି ନାହିଁ ସିନା,
ଅନୁଭବେ ମର୍ମ୍ମେ ମର୍ମ୍ମେ,
ସେ ଅନନ୍ତ ରୂପ, ଅନନ୍ତ ମାଧୁରୀ
ପୂରିତ କି ପ୍ରେମ-ଶର୍ମ୍ମେ ?
ଶୁଣିଛି ଗୋପନେ ହୃଦ-କୁଞ୍ଜବନେ
ତାହାର ଲଳିତ ବୀଣା,
ଶୁଣି ମୋ' ପରାଣ ହୋଇଛି ଆକୁଳ,
ନିମିଷେ ହୋଇଛି କିଣା।
ପତରେ ପତରେ ଲେଖା ତ ତା ରୂପ,
କିପାଁ ଏ ହୃଦୟ ଶୂନ୍ୟ ?
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଶୁଣେ ତ ତା'ବାଣୀ,
କିପାଁ ଏ ଅନ୍ତର କ୍ଷୁଣ୍ଣ ?
ଯେତେ ସୁଖେ ଚାହେଁ ଭୁଲାଇବି ମନ,
ତେତେ ମନ ଭୁଲେ ନାହିଁ,
ଯେତେ ଚାହେଁ କର୍ମ୍ମେ ନିବେଶିବି ମନ,
ତେତେ ମନ ହୁଏ ବାଇ।
ଶତ ଉତ୍କଣ୍ଠାରେ ଫାଟିପଡ଼େ ହୃଦ,
ଶତ ଦୀର୍ଘ ହତାଶ୍ୱାସେ,
''ହେ ହୃଦୟସଖା, ଦିଅ ହୃଦେ ଦେଖା,
ବାନ୍ଧିବି ମୁଁ ପ୍ରେମ-ପାଶେ।
''ପାଇବି ବୋଲି ମୁଁ ତୁମ୍ଭଙ୍କୁ ପ୍ରାଣେଶ,
ଆସିଅଛି ଶୂନ୍ୟ ବେଶେ,
''କରିଅଛି ଶୂନ୍ୟ ହୃଦୟ-ନିଳୟ,
ଡାକି କି ମରିବି ଶେଷେ ?
''ଚିର ଦୟାମୟ, ତ୍ରିଭୁବନ ଦେବ,
ପୂର୍ଣ୍ଣ-ପ୍ରେମ-ପାରାବାର,
''ଏତେ ବ୍ୟଥା କିଂପାଁ ଦିଅ ହେ ଦୟିତ,
ପୋଛିଦିଅ ଅଶ୍ରୁଧାର।
''ଆଜି ମୁଁ ଚରଣେ କରିଅଛି ପଣ,
ନ ଯିବି ଏଥୁଁ ମୁଁ ଫେରି,
''ରହିଥାଉ ମୋତେ ବିପଦ ଜଞ୍ଜାଳ,
ଦୁଃଖ, ଶୋକ, ଚିନ୍ତା ଘେରି।
''ଆକୁଳେ ମୋହର ଆସୁନାହିଁ କଥା,
କହିବି କି ହୃଦ ଫେଡ଼ି ?
''ତୁମ୍ଭରି ଚରଣ ଧରି ପଡ଼ିଥିବି,
ଥାଉ ମୋତେ ଦୁଃଖ ବେଢ଼ି।
''ଚାହେଁ ନାହିଁ ତବ ଆଶିଷ-ଆସାର,
କେତେ ବରଷିଛ ଶିରେ,
''ବୁଡ଼ିବାକୁ ଚାହେଁ ମାନସ-ମରାଳ
ତବ ପ୍ରେମ-ସରସୀରେ।
''ଚିଚିନ୍ତ କରୁଣ, ଅନନ୍ତ ସୁନ୍ଦର,
ପୂର୍ଣ୍ଣ ତହିଁ ସବୁ ଆଶା,
''ନାହିଁ ଶକ୍ତି ମୋର କ୍ଷୁଦ୍ର ଲେଖନୀରେ,
ବର୍ଣ୍ଣିବାକୁ ନାହିଁ ଭାଷା।
''ମୋ ହୃଦୟ-ଗୁହ ଗୁହ ପ୍ରାର୍ଥନାର
ହେଉ ତବ ଅଧିଷ୍ଠାନେ,
''ହେ ପବିତ୍ରତମ, ହର ହୃଦ-ତମଃ,
ପ୍ରେମାନନ୍ଦ-ଜ୍ୟୋତିଃ ଦାନେ।
''ପ୍ରଭୁ ! ତୁମ୍ଭରି ବିରହେ ବିକ୍ଷୁବ୍ଧ ଏ ଚିତ୍ତ
ଅବସାଦ ମହାଶ୍ରାନ୍ତି,
''ଯାହା କଲେ ତହିଁ ଘଟଇ ପ୍ରମାଦ,
ଶତ ଶତ ଭୁଲଭ୍ରାନ୍ତି।
''କେତେ ଇଚ୍ଛା ମୋର ଜୀବନେ, ମରଣେ
ତୁମ୍ଭଙ୍କୁ ଥିବି ମୁଁ ପାଇ।
''ଦିବସ ଯାମିନୀ ଡାକି ଡାକି ପ୍ରଭୁ,
ଥକିଲାଣି ହୃଦ ମୋର,
''ଆସ ହେ ବହନେ, ଆସ ଏ ଜୀବନେ,
ଆସ ହେ ହୃଦୟେଶ୍ୱର।
''ତବ ସୌନ୍ଦର୍ଯ୍ୟରେ ତବ ମାଧୁର୍ଯ୍ୟରେ
ମଧୁର, ସୁନ୍ଦର କର,
''ତବ ପ୍ରେମାର୍ଣ୍ଣବେ ବୁଡ଼ାଅ ହେ ମତି,
ମୋ' ଶତ କଲୁଷ ହର।
''ହୃଦୟର ଶତ ଆବର୍ଜ୍ଜନା ହରି
ପ୍ରେମେ ତବ ଦିଅ ମାଜି,
''ତବ ପ୍ରେମ-ଫୁଲ- ଫଳେ ଏ ହୃଦୟ-
ଭବନ ଦିଅ ହେ ସାଜି।
''ଏ ମନୋମନ୍ଦିରେ ପ୍ରେମର ମନ୍ଦିରା
ବଜାଇ କର ହେ ବାଇ,

"ତବ ପ୍ରେମ-ସୁଧା- ପାନେ ମୋର ଚିତ୍ତ
ଭୋଳ ଥାଉ ପ୍ରାଣସାଇଁ।
"ପ୍ରେମ କର୍ତ୍ତବ୍ୟର ମିଳନ ମଧୁର
ଆଣ ଏ ହୃଦୟ-ରାଜ୍ୟେ,
"ଉଚ୍ଛଳୁ ହେ ସୁଧା ଅନ୍ତରେ ମୋହର
ପ୍ରତି ଗିରେ, ପ୍ରତି କାର୍ଯ୍ୟେ।
"ଆସୁ ଏ ଅନ୍ତରେ ସ୍ୱରଗର ରାଜ୍ୟ
ଅନନ୍ତ ସୁଷମାମୟ,
"ସାନ୍ତ ମୁଁ ମାନବ, ଅନନ୍ତ ସୌନ୍ଦର୍ଯ୍ୟେ
ଆତ୍ମା ହେଉ ଜ୍ୟୋତିର୍ମ୍ମୟ।
"ଅନନ୍ତ-ଜୀବନ- ଫଳ-ପ୍ରସୂନରେ
ସୁଶୋଭିତ ସୁରଭିତ,
"ହୃଦୟ-କାନନ କର ହେ ବହନ
ତବ ଯୋଗ୍ୟ ପ୍ରାଣମିତ।
"ସେ କୁସୁମ-କୁଞ୍ଜ- କାନନେ ବିଜନେ
ପ୍ରେମ-ଲତା-ଦୋଳାସନେ,
"ତବ ପ୍ରେମଲୀଳା ଲଳିତେ, କରୁଣେ
ପ୍ରକାଶ ହେ କ୍ଷଣେ କ୍ଷଣେ।
"ଉଜ୍ଜ୍ୱଳେ, ମଧୁରେ, ରୁଚିରେ, ବିଧୁରେ,
ହେଉ ଶୁଭ ସମ୍ମିଳନ,
"କରୁଣେ, କୋମଳେ, ପ୍ରେମଅଶ୍ରୁଜଳେ
ହେଉ ନିତ୍ୟ ଆଲିଙ୍ଗନ।
"ମୃଣ୍ମୟ ସଂସାରେ ଭୁଲାଇ ପାର କି
ଚିନ୍ମୟ ସୁନ୍ଦର ଦେବ?
"ତନ୍ମୟ ଏ ଚିତ୍ତ ଥାଉ ନିତି ପ୍ରଭୁ
ପ୍ରେମ ଦୟା ଲଭି ତବ।
"ଆସ ହେ କାତରେ ଡ଼ାକେ ବାରେ ବାରେ
ହୃଦୟ-କମଳ-ବନେ,
"ପୂଜିବି ତୁମ୍ଭର ପଦ-ଅରବିନ୍ଦ
ବସାଇ ହୃଦୟାସନେ।
"ନିବାର ଏ ହୃଦ ପ୍ରେମର ପିପାସା
ପ୍ରେମ-ସୁଧା-ମଧୁ ଦାନେ,
"ସାରା ସଂସାର ମୁଁ ଛାଡ଼ି ରତ ଥିବି
ବାସନା, ତୁମ୍ଭରି ଧ୍ୟାନେ।

—◆—

# ବିଡ଼ମ୍ବନା

ଦେଖା ହେଲେ କଥା କହେ,
ମୁଖ ବୁଲାଏ ରୋଷେ,
ତୁମେ ଫେରି ଚାଲିଗଲେ ଗୋ
ତୁମ ନାମଟି ଘୋଷେ।
ଶତ ପାପ-ଆବର୍ଜ୍ଜନାର
ବଡ଼ ଗଣ୍ଠିରି କରି,
କାନ୍ଧେ ଘେନି ଘେନି ଫେରୁଛି
ବହୁ ବରଷ ଧରି।
ତୁମକୁ ଦେଖିଲାକ୍ଷଣି ତା
ଖସିଯିବ ମୋ' ପରୁ,
ତଥାପି ଆସିଲେ ତୁମେ ଗୋ,
ମନ ହୁଅଇ ଗରୁ।
ଭୁଲିଯାଏ ମୋର କର୍ତ୍ତବ୍ୟ
କାନ୍ଦି ବସଇ ମାନେ,
"ଏତେ ଦିନ ଥିଲ କେଉଁଠି"
କହେଁ ପ୍ରେମାଭିମାନେ।
ତୁମେ ନ କହିଲା ଆଗରୁ
ମୁଁ ତ କହଇ କଥା,
ପରକ୍ଷଣେ ତୁମେ ପଳାଅ,
ମୁଁ ତ ସହଇ ବ୍ୟଥା।
ଏହିପରି କେତେ ବରଷ
ବିତିଗଲାଣି ମୋର,
ପ୍ରାଣରୁ ଘୁଞ୍ଚିଲା ନାହିଁ ତ
ଦକା ଜଞ୍ଜାଳ ଘୋର।
ତଥାପି ବଞ୍ଚିଛି ଅନାଇ
ପୁନଃ-ଦର୍ଶନ-ଆଶେ,
ତୁମେ ଆଉ ଥରେ ଆଦରେ
ଆସିବ ଗୋ ମୋ ପାଶେ।

—◆—

# ମୋହନ ବୀଣା

ସଖା ଶୁଭିଲା କି ତୋର ମୋହନ ବୀଣା,
ପଲକେ ପୁଲକେ ମୁହିଁ ହୋଇଲି କିଣା,

ଉଦ୍‌ବେଳ ହୋଇଲା ମନ, କମ୍ପିଲା ତ ଅପଘନ,
ଗଗନେ, ପବନେ, ବାଜି ଉଠିଲା ପରା,
ଧାଇଁଲି ପଛରେ, ସେ ତ ନ ଦେଲା ଧରା।

ସଖା କେଉଁ ଦେଶେ କହ ଅଛି ତୋ ଘର ?
ଅନ୍ତରାଳେ ଥାଇ କିପାଁ ବାଉ ତୋ' ସ୍ୱର ?
ବାତୁଳ କରିଛୁଟିକି, ନିଜେ ମୁଁ ହୋଇଛି ବିଜି,
ଦେଖା ଦେଉନାହୁଁ କିପାଁ ସ୍ୱପନେ ଥରେ ?
ତୋତେ ଖୋଜି ବୁଲେ ମୁହିଁ ଧରା ଅମ୍ବରେ।

ସଖା ସଖା ବୋଲି ମୁହିଁ ଡ଼ାକେ ଆକୁଳେ,
ତଥାପି ଦେଖା ମୁଁ ତୋର ନ ପାଏ ଠୁଳେ,
ସହସା ଗୋପନେ ଆସୁ ସହସା ଅମୃତ ଭାଷୁ,
ବିଜୁଳି ଝଟକ ପରି ଯାଏ ମିଳାଇ,
ଅତୃପ୍ତ ବାସନାବହ୍ନି ହୃଦେ ଜଳାଇ।

ପାଇଲେ ଛାଡ଼ିବି ନାହିଁ ମନେ ପାଞ୍ଚଇ,
ଦଣ୍ଡେ ଦରଶନ ତୋର ଚିତ୍ତ ବାଞ୍ଛଇ,
ନପଡ଼ୁଁ ପଲକ ମୋର ରୂପଟି ବିକଶେ ତୋର
ମୋ' ମନୋନୟନେ ସଖା ସୁନ୍ଦର ଝଲି,
ବିମୁଗ୍ଧ ଅବଶ ପ୍ରାଣେ ପଡ଼େ ମୁଁ ଢ଼ଳି।

କ୍ଷଣକ ପରେ ତ ଆହା ଗଲୁଣି ଚାଲି,
ଆଉ କି ଆସିବୁ ଆଜି, ଆସିବୁ କାଲି ?
"କାଲି କାଲି" ଯାଏ ବହି, ବିରହେ ଅନ୍ତର ଦହି
କଳ୍ପନା-ନୟନ-ପଟେ ତୋର ମୂରତି
ଆଙ୍କି ମୁଁ ଲଭଇ କ୍ଷୀଣ ହୃଦେ ଶକତି।



# ଅପରାଧୀ

କହିବି କି କଥା ଫେଡ଼ି ହୃଦ-ବ୍ୟଥା,
ତୁଣ୍ଡ ତ ଫିଟଇ ନାହିଁ,
ଶତ ଅପରାଧେ ଅପରାଧୀ ପରା,
ମୁଣ୍ଡ ତ ଉଠଇ ନାହିଁ।
ଗଣ୍ଡବାହୀ ଅଶ୍ରୁ ଝରି ଝରି ପଡ଼େ
ରୁଣ୍ଡ ବ୍ୟଥା ହୃଦପିଣ୍ଡେ,
ଅନଳ-କୁଣ୍ଡରେ ଜୀବନ୍ତେ ଜ୍ୱଳୁଛି
ପ୍ରାଣ ଖଣ୍ଡ ଖଣ୍ଡ ଛିଣ୍ଡେ।
ସବୁ ତ ଅଛଇ ପୂର୍ବ ସମାନ,
ଶିରୀ ଗଲା କିପାଁ ଛୁଟି,
ସେହି ଚନ୍ଦ୍ରତାରା ହାସ ପରିବର୍ତ୍ତେ
କିପାଁ କାଢ଼ନ୍ତି ଭ୍ରୂକୁଟୀ ?
ସେହିମରି ଫୁଲ ଫୁଟି ତ ହସୁଛି,
ବିତରୁଛି ଗନ୍ଧରାଶି,
ସେହିପରି ପିକ ଗାଉଛି ପଞ୍ଚମେ
କାନ୍ତ-ବସନ୍ତ-ବିଳାସୀ।
ସେହିପରି ଅଳି ସଜ ରଙ୍ଗ ଦୋଳି
କୋମଳ କମଳ-ଦଳେ
ନୀଳ ଅଙ୍ଗ ଢ଼ାଳି ଗୁଞ୍ଜରେ ମଞ୍ଜୁଳ
ନୀଳ ସରୋବର-ଜଳେ।
ସେହିପରି ବାୟୁ ବହି ତ ଯାଉଛି
ଗଛ-ଲତା-ପତରରେ,
ସେହିପରି ଦିଗ ମହକି ଉଠୁଛି
ସଜ ଫୁଲ-ସୁବାସରେ।
ସ୍ୱଭାବର ଶୋଭା ସବୁତ ରହିଛି,
ସୁଷମା ହଜିଛି କାହିଁ,
ଅଛି ଜଡ଼ ପିଣ୍ଡ ଅବଶ ଅଚଳ,
ପ୍ରାଣ ଥାଇଁ ପ୍ରାଣ ନାହିଁ
ତୁମରି ବିରହେ ଝରେ ପରା ଆଖି,
ଆକୁଳ ବ୍ୟାକୁଳ ହିୟା,
ସବୁ ସୁଖେ ପୂରି ରହିଅଛି ଶୂନ୍ୟ
ଲୋକାଳୟେ ଏକୁଟିଆ।
ସଜନ ନଗର ବିଜନ ଶ୍ମଶାନ
ପରି କି ମଣଇ ମନ ?
ଜୀବନ-ବସନ୍ତ- ନିଶାନ୍ତେ ଉଦିଲା
ଅନନ୍ତେ କି ଦୁଃଖ-ଘନ !
କାନ୍ତ-ଚୂତଲତା ମୁକୁଳ-ମଞ୍ଜରୀ
ପଡ଼ିଲା ଅକାଳେ ଝରି,
ଉଡ଼ିଗଲା ପିକ ଜେଉଁ ଗାଇଚକୁ
ମନୋବନ ଶୂନ୍ୟ କରି।

ଦୂରେ ଦୂରେ ପ୍ରଭୁ ଘୁଞ୍ଚୁ ଘୁଞ୍ଚୁ ଗଲ,
ଆଉ ତ ନ ଦେଲ ଧରା,
କେତେ ଗୋଡ଼ାଇଲି ଧରି ନ ପାରିଲି
ସହି ବର୍ଷା ଶୀତ ଖରା।
ବିଫଳେ ଶ୍ରମିଲା ମନ ମାରିଦେଇ
ଆସିଲି ଫେରି ମୁଁ ଚାଲି,
ଅନ୍ଧାର କବାଟ କୋଣରେ ଲୁଚିଣ
ନେତ୍ର-ନୀର ଦେଲି ଢ଼ାଳି।
ଦେଖିଥିଲି ପରା ସୁନ୍ଦର ରୂପଟି
ଛିଣ୍ଡା ମେଘ ଫାଙ୍କେ ଫାଙ୍କେ,
ଚାହିଁଥିଲ ପରା ଚାନ୍ଦିନୀ ଆଲୋକେ
ତାରା ହାସେ ବାଙ୍କେ ବାଙ୍କେ,
କାନ୍ଦିଥିଲା ପରା ଶିଶିର-ଲୋତକେ
ଝଡ଼ି ଝଡ଼ି ଥିଲା ପଡ଼ି
ମୁକ୍ତାହାର ପରି ଘାସ-ପତରରେ
ତୁମ୍ଭି ଦରଫୁଟା କଢ଼ି।
ବରଣ-ଡ଼ାଲାଟି ସଜାଇଥିଲି କି
ଘେନି ଅଶ୍ରୁ-ଫୁଲ-ମାଳି,
ଅରଘ, ଚନ୍ଦନ ସକାଶେ ହୃଦୁଁ କି
ରକ୍ତ ଦେଇଥିଲି ଢ଼ାଳି?
କିଛି ନ ଘେନିଲ ମୋ ପୂଜା ଆଦର,
ପଳାଇଗଲ ହେ କାହିଁ
ହୃଦୟ-ମନ୍ଦିର- ମଣ୍ଡପ ତ ଶୂନ୍ୟ,
ଅନ୍ଧାର ଅଛି ଘୋଡ଼ାଇ।
ଧୂଳି ଆବର୍ଜ୍ଜନା ସହସ୍ର ଜଞ୍ଜାଳ-
ଅଳନ୍ଧୁ ରହିଛି ପୁଟି,
ମାକଡ଼ସା ଜାଲ ବୁଣୁଅଛି କାନ୍ଥେ,
ଶିରୀ ଯାଇଅଛି ତୁଟି।
ତବ ସୁମଧୁର ବେଣୁନାଦ ଆଉ
ନ ପଶେ ଶ୍ରବଣ ପୂରି,
ମରମେ ମରମେ ବାଜି ଯାଉଅଛି
ବାସନା-ବିଷାଣ ଛୁରୀ।
ଶୁଣିବା ପାଇଁକି ଅଛି କାନ ଡେରି
ମଧୁର ଚରଣ-ନାଦ,
କେତେଦିନେ ସଖା ଆସିବ ଆକୁଳେ
ଦୂର କରି ଅବସାଦ?
କେତେଦିନେ ସଖା ପୂର୍ବପରି ହସି
ସମ୍ଭାଷିବ ସମାଦରେ,
କେଉଁ ଦିନ ପୂରି- ଉଠିବ ହେ ରୂପ
ତବ ଅବନୀ-ଅମ୍ବରେ?
ସାନ ହୀନ ବୋଲି ନ କର ହେ ହେଳା,
ସାନ ମୁଁ ତୁମରି ଲାଗି,
ସେହି ସାନ ହେତୁ ଗଢ଼ି ପ୍ରେମ-ସେତୁ
ଦେଇଛ ବିଚ୍ଛେଦ ଭାଙ୍ଗି।
ସାନ ବଡ଼ ବେନି ତାରକୁ ଯୋଡ଼ିଣ
ଗାଇଛ ମଧୁର ଗୀତ,
ଏବେ ଦୂର କରି ପରାଣେ ମାରୁଛ
କି ଲାଗି ହେ ପ୍ରାଣମିତ?
ମୁଁ ସାନ, ମୁଁ ନୀଚ, ମୁଁ କ୍ଷୁଦ୍ର ମାନବ,
ତୁମେ ରାଜା, ତୁମେ ପ୍ରଭୁ,
ତେଣୁ ତବ ପ୍ରେମ- ରାଜ୍ୟେ ଅଛି ସ୍ଥାନ
ଅଧିକାର ମୋର ସବୁ।
ଆସ ଆସ ବୋଲି ଡ଼ାକି ନ ପାରୁଛି,
ରହି ନ ପାରୁଛି ପୁଣି,
କାନ୍ଦକାନ୍ଦ ଆଖି ଝରି ତ ପଡ଼ୁଛି
ଯେତେ ରହୁଛି ମଉନୀ।
ତମେ ଯଦି ଦୁଃଖ ବୁଝି ନ ପାରିବ,
ଆଉ କେ ବୁଝି ସଖା?
ତୁମ ଲାଗି ଯଦି ଏ ପ୍ରାଣ ଫାଟୁଛି,
ତୁମେ ନିବାର ଏ ଦକା।



# ଆକୁଳେ

ଦିବସ ରଜନୀ କାହାର ଲାଗି ଗୋ
ଆକୁଳେ ବସି ତୁ ଚାହିଁଛୁ,
ପ୍ରତି ଶବଦରେ ଥରି ଥରି ଉଠି
ବାଧା ନ ମାନି ତୁ ଧାଇଁଛୁ?

ନୀରବ ନିଶୀଥେ, ଶ୍ୱେତ ଚନ୍ଦ୍ରାଲୋକେ,
ଝକ ଝକ ତାରା ଝଟକେ,
ପ୍ରଶାନ୍ତ ଅନନ୍ତ ନୀଳ ନଭ ପ୍ରାନ୍ତେ,
ଦେଖିଛୁ ତା ମୂର୍ତ୍ତି ପୁଲକେ।
ପ୍ରଭାତର ମନ୍ଦ ସମୀର-ହିଲ୍ଲୋଳେ,
ଶିଶିର-ନିଷିକ୍ତସୁମନେ
ତା'ପରଶ ପ୍ରାଣେ ଲାଗିଛି ତୋହର,
ଦେଖିଛୁ ତା ରୂପ ସ୍ୱପନେ।
ଅବଶ ଅଳସେ ମୁଦି ନେତ୍ରବେନି
ହୃଦୟେ ଆଙ୍କିଛୁ ମୂରତି,
କମ୍ପିତ ଉଲ୍ଲାସେ ଭାସି ପ୍ରେମନୀରେ
ଢ଼ାଳିଛୁ ତା' ପାଦେ ଭକତି।
ଲୋକଲୋକାନ୍ତରେ, ଯୁଗଯୁଗାନ୍ତରେ,
ହୋଇଥିଲା ପରା ସଙ୍ଗୀ ସେ,
ଗାଇଥିଲା ପରା ହୃଦ-ବୀଣା-ତାରେ,
ଆଜି ପାରିନାହିଁ ଭାଙ୍ଗି ସେ।
ତା' ପ୍ରେମ-ଶୃଙ୍ଖଳେ ବନ୍ଦୀ କରି ତୋତେ
ରଖିଛି ତା' ହୃଦ ଭିତରେ,
ନିତ୍ୟ ଆଲିଙ୍ଗନେ ରହି ତୁ ତାହାର
କିପାଇଁ କାନ୍ଦୁଛୁ କାତରେ ?
ଚିର ଜୀବନର ସାଥୀ ପରା ତୋର,
ଚିର ସଖା ଜନ୍ମେ ମରଣେ,
ତୋ' ପ୍ରାଣ ବନ୍ଧା ତ ତା ପ୍ରାଣ-ଡ଼ୋରିରେ,
ତାହାରି କମଳ-ଚରଣେ।
ତୋ' ପ୍ରାଣ-ପିପାସା, ତୋ' ଆକୁଳ ଆଶା
ଜନ୍ମେ ଜନ୍ମେ ମେଣ୍ଟେ ନାହିଁ ଗୋ,
ହୃଦାନଳେ ଜଳି ଶୁଦ୍ଧ ହେମ ହେବୁ
ତାହାରି ଭୂଷଣ ପାଇଁ ଗୋ।
ହୃଦୟର ଫୁଲ ଫୁଟି ଉଠିଛି କି,
ଚହଟିଛି ପ୍ରେମ-ସୁବାସ ?
ଆସିବ ସେ ଅଳି ଖୋଜି ଖୋଜି ତାକୁ,
ବଢ଼ାଇ ତାହାର ଉଲ୍ଲାସ।
ଧୈର୍ଯ୍ୟ ଧରି ମନେ ବସିଥା' ମଉନେ,
ଆସିବେ ତୋ' ପ୍ରାଣସଙ୍ଗାତ

ଦେବତାର ବେଶେ, ତାରକାର ଦେଶେ
ହେବ ପରା ଶୁଭ ସାକ୍ଷାତ।
ତୋହରି ଦେବତା ତୋତେ ଛଳିବାକୁ
ଲୁଚାଇଛି ତାର ବଦନ,
ସ୍ଥିର ମନପ୍ରାଣେ ସଜାଡ଼ି ରଖିଥା'
ପୂଜାପାଇଁ ଫୁଲ ଚନ୍ଦନ।
କାନ ଡ଼େରି ବସି ତାର ପାଦଶବ୍ଦ
ଶୁଣିବାକୁ ରହ ଜଗି ଗୋ,
ବାତୁଳ ପରାୟେ ଆସି ତ ପାରନ୍ତି
ପ୍ରାଣସଖା ତୋର ଲାଗି ଗୋ।
ଶତ ଫୁଲ-ବାସେ ବାସିତ ତା' ତନୁ-
ସୁବାସେ ବୁଝିବୁ ତୋହର
ପ୍ରାଣବନ୍ଧୁ ଆସି ତୋହରି କତିରେ,
କୁଣ୍ଢାଇ ଧରିବୁ ପୟର।
ଅବା ଧୀରେ ଧୀରେ ବାଜିବ ତା' ବେଣୁ
ତୋ' ହୃଦ-କାନନ ମଝିରେ,
ଧୀରେ ଭାସି ଆସି ବାଜିବ ମରମେ
ପ୍ରଶାନ୍ତ-ଶୀତଳ ସମୀରେ।
ଲାଜ-ଅଭିମାନ-ବନ୍ଧନ ଭାଙ୍ଗିଣ
ଧାଇଁବୁ ଆକୁଳେ ଉଷତେ,
କନ୍ଦରେ କନ୍ଦରେ ଖୋଜିବୁ ତାହାକୁ
ନଦୀତୀରେ, ବନେ, ପର୍ବତେ।
ପ୍ରତି ବିହଙ୍ଗକୁ ପଚାରିବୁ ପରା,
ଦେଖିଛୁ କି ପ୍ରାଣବନ୍ଧୁକୁ,
ଶୁଣିଛୁ କି ତାର ବିନୋଦିଆ ବୀଣା,
ଦେଖିଛୁ କି ହୃଦ-ବନ୍ଧୁକୁ ?
ଅବଶ ଅଳସେ ଶୋଇଥିବୁ ପରା,
ଆସି ତୋତେ ଛୁଇଁଯିବ ଟି,
ଆଖି ମେଲି ଦେଖି ନ ପାରି ତାହାକୁ
କେତେ ନ କାନ୍ଦିବୁ ଜନ୍ଦ ଟି !
ଅଥବା ଆସିବ ଛଦ୍ମବେଶ ଧରି
ଜଗାଇ ତୋ' ମନେ ଆତଙ୍କ,
ନିମିଷେ ଚିହ୍ନିବୁ ପ୍ରାଣର ସଖାକୁ,
ପ୍ରସାରି ଦେବୁ କି ପ୍ରେମାଙ୍କ ?

ଉଲ୍ଲସି ଉଠିବ ପୁଲକରେ ତନୁ
ରୋମାଞ୍ଚିତ ହୋଇ ଆଦରେ,
ନୟନ-ପଲ୍ଲବୁଁ ଅଶ୍ରୁ-ହିମ-କଣା
ଝଡ଼ି ପଡ଼ିବ କି ପୟରେ ?
ତା' ରୂପ-ଚାନ୍ଦନୀ ପିଇବା ଆଶାରେ
ଉନ୍ମତ୍ତ କି ଚିତ୍ତ-ଚକୋର ?
ଚିନ୍ତାକାଶ-ପଥେ ଉଡ଼ି କି ବୁଲୁଛି
ନିଜ ଧ୍ୟାନେ ନିଜେ ବିଭୋର !
ତା' ରୂପ-କୁସୁମ-ସୁଧା ପିଇବାକୁ
ମନ-ଅଳି ତୋର ଧାଏଁ କି ?
ତା' ସୁନ୍ଦର ରୂପ ବାରେ ଦେଖିବାକୁ
ନେତ୍ର ଏଣେ ତେଣେ ଚାହେଁ କି !
ଲତା-ପତରରେ, କୁସୁମ-ଫଳରେ
ଜଳେ, ସ୍ଥଳେ, ନଭେ, ପବନେ,
ଭାସି ବୁଲୁଛି କି ତା' ଅରୂପ ରୂପ
ମଜାଇ ତୋ' ପ୍ରାଣ ଗୋପନେ ?
ପ୍ରଭାତର ନବ ଅରୁଣ-କିରଣ
ତରଳି ତା ରୂପ ଝଳେ କି,
ପୁଲକ-କମ୍ପିତ ତଟିନୀ-ଜଳରେ
ରମ୍ୟ ରୂପ ପ୍ରତିଫଳେ କି ?
ନାନା ରଙ୍ଗେ ଭଙ୍ଗେ, ତରଙ୍ଗେ ତରଙ୍ଗେ
ଶ୍ରୀଅଙ୍ଗ ଶୋଭା କି ଉଛୁଳେ,
କଳକଳ ନାଦେ ଶୁଭେ କି ସଙ୍ଗୀତ,
ନିମିଷେ ତୋ ପ୍ରାଣ ବିହ୍ୱଳେ ?
ଉଚ୍ଚଣ୍ଠ ହୋଇ କି ଦିବସ ଯାମିନୀ
ପ୍ରେମାବେଶେ ପ୍ରାଣ ଜର୍ଜର ?
ପତ୍ର-ମରମରେ ଥରିଉଠେ ତନୁ,
ଶୁଭିଗଲା ପରା ତା ସ୍ୱର !
ନୟନେ ତୋହର ବୋଳା କି ତା ରୂପ,
ଖେଳା କି ହୃଦୟ ପଟାରେ,
ପ୍ରତି ରକ୍ତବିନ୍ଦୁ କମ୍ପାଇ ତା ନାମ
ବହୁଛି କି ଶିରା ଶିରାରେ ?
ତୋଳି କି ତାହାର ପୂଜାର ମନ୍ଦିର
ତୋହରି ହୃଦୟ-ଅଙ୍ଗନେ
ହୃଦ-ବେଦୀପରେ ପୂଜିବୁ କି ତାକୁ
ପ୍ରେମ-ଭକ୍ତି-ପୂତ ସୁମନେ ?
ତାହାରି ପ୍ରାଣରେ ପ୍ରାଣକୁ ମିଶାଇ
ତା ପ୍ରାଣେ ମିଶାଇ ତୋ ସତ୍ତା
ଆତ୍ମ-ଅନୁଭୂତି ଭୁଲିବୁ ତୋହରି,
ସେ ଆଜି ତୋ ପ୍ରାଣନିୟନ୍ତା ।
ତା ସୁଖରେ ସୁଖଆଦରେ ମିଶାଉ,
ତାହାରି ଜୀବନେ ଜୀବନ,
ତାହାରି ପ୍ରେମରେ ପ୍ରେମ ପ୍ରୀତି ତୋର,
ହୋଇବୁ ତା'ଠାରେ ମଗନ ।
ଦୂରଦୂରାନ୍ତରେ ସେ ଅଛି, ତଥାପି
ପ୍ରାଣେ ପ୍ରାଣେ ଏକ ଅଭିନ୍ନ,
ହୋଇଅଛି ନବ ଅପୂର୍ବ ସୁନ୍ଦର
ବେନି ପାଣେ ବେନି ମିଶିଣ ।



## "ସାରା"

ସାରା ଜଗତରେ ଖୋଜେ ମୁଁ ଯାହାକୁ
ସେ ତ ଅଛି ମୋର ଅନ୍ତରେ,
ସାରା ବିଶ୍ୱେ ଦେଖେଁ ଯାର ପ୍ରତିମୂର୍ତ୍ତି
ଅଙ୍କା ସେ ମୋ ହୃଦ-ପଟରେ
ସାରା ଜୀବନର ବେଦନା-ବିଧୁର
ନିତି ବିଗଳିତ ଅଶ୍ରୁରେ
ସାରା ଜୀବନର ଶତ ଦୀର୍ଘଶ୍ୱାସେ
ମିଶିଛି ପରା ସେ ମଧୁରେ ।
ସାରା ହୃଦୟଟା ତା ପ୍ରେମରେ ବାଇ,
ସାରା ଦିନ ବସି କାନ୍ଦୁଛି,
ସାରା ନିଶି ମୋର କାଟେ ଉଜାଗରେ,
ସାରା ମନ ପ୍ରାଣେ ବନ୍ଦୁଛି ।



## "ମୁଁ ତ ତାକୁ କେଭେଁ"

ମୁଁତ ତାକୁ କେଭେଁ ଦେଖିନାହିଁ ନେତ୍ରେ,
ଅନୁଭବୁଅଛି ପ୍ରାଣେ,
କାହିଁ ଅଛି ସେହି କେଉଁ ଦୂର ଦେଶେ,
କିନ୍ତୁ, ତା' ଆଡ଼କୁ ମନ ଟାଣେ ।
ନବ ବସନ୍ତର ଫୁଟନ୍ତା ଫୁଲରେ,
ମୃଦୁଳ ମଧୁର ବାତ-ହିଲ୍ଲୋଳରେ,
ଲେଖା କି ତା' ନାମ ଲତାପତରରେ,
ମୋତେ ଲାଗେ ସେହିପରି,
ତାକୁ ଝୁରି ଝୁରି ଅନ୍ତ ପାଏନାହିଁ
ତାର ଦିବା ବିଭାବରୀ ।
ମୁଁ ତ ତାକୁ କେଭେଁ ଡ଼ାକିନାହିଁ ପାଶେ,
ସେ ତ ଆସେ ବଳେ ବଳେ,
ମୁଁ ତ ତାକୁ ପାଏ ହୃଦ ବେଦନାରେ
ମୋର, ନୟନର ତପ୍ତ ଜଳେ
ମେଘ-ଅନ୍ଧାରିତ ବରଷା ଆକାଶେ
କ୍ଷଣକେ ଚମକି ଚପଳା ପ୍ରକାଶେ,
ସେହିପରି ପରା କ୍ଷଣକେ ସେ ଆସେ,
ଲୁଚିଯାଏ ପରକ୍ଷଣେ,
ଖୋଜେ ମୁହିଁ ତାକୁ ନଗରେ, ପ୍ରାନ୍ତରେ,
କେତେ ବନେ, ଉପବନେ ।
ମୁଁ ତ ତାକୁ କେଭେଁ ସାଧିନାହିଁ ପ୍ରେମେ,
ସେ ତ ପ୍ରେମ କରେ ନିଜେ,
କିଁ ଜାଣି ସେ କେଉଁ ଅଜଣା ଶକ୍ତିରେ
ମୋତେ, ବାନ୍ଧେ ପଦ-ସରସିଜେ ।
ଶରତର ଶୁଭ୍ର ଚାନ୍ଦିନୀ ରାତିରେ,
ମନ୍ଦେ ମନ ସତେ ତାର ପୀରତିରେ,
ନିମିଷେ ଆସଇ ସତେ କି କତିରେ
ଆଲୋକ ହୃଦୟପୁର,
ହୃଦୟର ଶତ ଜଞ୍ଜାଳ ଅନ୍ଧାର
କ୍ଷଣକରେ କରି ଦୂର ।



## ଆସେ

ଗୁରୁ ଚନ୍ଦ୍ରମା କିରଣେ ହସି ହସି ଆସେ
ବିମଳ ବିମାନ ବିତାନେ
ସଜ ଶେଫାଳିକା କଳିକା ଫୁଟାଇ
ବାସ ଚହଟାଇ ଉଦ୍ୟାନେ ।
କୋମଳ ଲଳିତ ମୃଦୁଳ ମାରୁତେ
ଗନ୍ଧ ଝରି ଝରି ପଡ଼େ କି ?
କାହା ଦରଶନ ଲାଗି ମନପକ୍ଷୀ
ଆଶା-ଅନ୍ତରୀକ୍ଷେ ଉଡ଼େ କି ?



## "ହେମନ୍ତେ"

ଧାନକ୍ଷେତେ ପରା ଢେଉ ଖେଳିଯାଏ
ହେମନ୍ତ-ଦିନାନ୍ତ ପବନ,
ସୁବର୍ଣ୍ଣ ଲହରୀ ପଡ଼େ ଥରି ଥରି
ଲଭି କି ସମୀର ଚୁମ୍ବନ ?
କାହା ପୂଜା ଲାଗି ଅରଘ-ଥାଳି
ଧାନ, ଦୂର୍ବା ଘେନି ସାଜିଛ ବାଳୀ,
ଓହ୍ଲାଇ ଆସେ କି ଗଗନ ପ୍ରାନ୍ତରେ
କନକ କୁଙ୍କୁମ ବରଣେ,
ରଞ୍ଜିତ ଗୋଧୂଳି ଚରଣେ,
ହସି ହସି କିଏ ପ୍ରଫୁଲ୍ଲ, ଉଜ୍ଜ୍ୱଳ
ଆସେ, ସୁନ୍ଦର ଚନ୍ଦ୍ର କିରଣେ ।



## ତଟିନୀ ତରଙ୍ଗ

ଭାଙ୍ଗି ଭାଙ୍ଗି ପଡ଼େ ତଟିନୀ ତରଙ୍ଗ
ତଟ ଦେଶେ ଶିର ପିଟି,
ବହିଯାଏ ପରା ପ୍ରେମ-ସରସ୍ୱତୀ
ମୋ' ମନ-କନ୍ଦରା ଫିଟି ।
ପାଷାଣ କଠିନ ହେଲେ ସୁଦ୍ଧା ମନ
ତା'ର, ଶିରାରେ ଶିରାରେ ଝର,

କଲୁଷକାଳିମା-ଘେରା ଲୋଚନ ତ
ପ୍ରେମଲୁହେ ଝର ଝର ।
କଳିଙ୍କିଆ ଲୁହା ହୃଦୟଟା ପରା,
ରହିଅଛି ପ୍ରେମଦାଢ଼,
ହେଲେ କାଟିପାରେ ତା' ପ୍ରଭୁ କାରଣେ
ବାଧା ବିପଦର ବାଡ଼ ।
ଥର ଥର ଜାନୁ ଦୁର୍ବଳ ଚରଣ
ନ ପାରୁଛି ପାଦେ ଚାଲି,
ଯିବ ପରା ହେଲେ ତା'ପ୍ରଭୁ ସକାଶେ
ଘୁଞ୍ଚୁରି ତତଲା ବାଲି ।
ଅବଶ ରସନା ଜଡ଼ ହୋଇଅଛି,
ନ କହୁଛି ପଦେ କଥା,
ମୂକ ମୁଖେ କିନ୍ତୁ ହାସ ବିକାଶି ସେ
ବିପଦେ ପୋତିଛି ମଥା ।
ଅନ୍ଧନେତ୍ର ସେହି, ନ ପାରୁଛି ଚାହିଁ,
ଅଣ୍ଡାଳି ଅଣ୍ଡାଳି ବୁଲେ,
ପରଶି ପରଶି ପାଦପୂଜା ଲାଗି
ବସି ମାଳ ଗୁନ୍ଥେ ଫୁଲେ ।
କି କରି ତୋଷିବ ପ୍ରିୟ ପ୍ରଭୁ ମନ,
ନ ଜାଣେ ଉଚିତ ସେବା,
ନିତିପ୍ରତି ତାର ହୋଇଛି କର୍ତ୍ତବ୍ୟ
ଦେହ ଆତ୍ମା ମନ ଦେବା ।

## ସ୍ୱପନ

ଚମକି ଉଠିଲି ଦେଖି କି ସ୍ୱପନ
କାହାର ଲଳିତ ମୂରତି,
ଫିଙ୍ଗିଦେଲି ପରା ଚରଣନଳିନ-
ତଳକୁ ପରାଣ ପୀରତି ।
ବେଳକୁ ବେଳ ମୋ' ହୃଦ ଦାଉ ଦାଉ
ପୋଡ଼ିଉଠିଲା କି ଅନଳେ ?
ଢଳଢଳ ଅଶ୍ରୁ-ଶିଶିରମାଳିକା
ଠୁଳ ବେନି ନେତ୍ର-କମଳେ ।
କଳ କଳ ସ୍ୱନେ ବହେ ମନୋବନେ
ପ୍ରେମ ଜାହ୍ନବୀଧାରା କି,
କୂଳେ କୂଳେ ଫେରେ କେ ବାଇ ମୁରଲୀ,
ମଞ୍ଜୁ ତାନ କର୍ଣ୍ଣ-କାରା କି ।
ଚମ୍ପାଗୋରା ତୋରା ପାଖୁଡ଼ା ଝଟକ
କେତକୀ-କଳିତ-କନକ-
-କିରଣ ଅରୁଣ-ବରଣ ଉଜ୍ଜ୍ୱଳ
ପ୍ରାଣେ ମୋର ଆଣେ ଛନକ ।
ଅବା ଘନଶ୍ୟାମ, ବାସନ୍ତ-ସୁକାନ୍ତ-
ନବ ଚୂତ ପତ୍ର ସୁଷମା,
ଶାରଦ ଆକାଶ ଶୀତ-ଶୀତଅଂଶୁ-
ସମ ଶୋଭେ ରୂପଚନ୍ଦ୍ରମା ।
ଧାଇଁ ଧାଇଁ ଗଲି ପଛେ ପଛେ ତାର
ନିଜ ଜୀବନକୁ ମୁରୁଛି,
ଧରା ଦେବାକୁ ସେ ନୁହେ ତତପର,
ପଳାଇଲା କାହିଁ ତରଛି ।
ପାପ-ପରଶ ମୋ' ଲାଗିଯିବ ପରା,
ତେଣୁ କି ପାଶକୁ ନ ଆସେ ?
କହ, ହସେ ତେବେ କିପାଁ କୋମଳ କୁସୁମ-
ଦୀପ୍ତ-ଦଳ-ଦାମ ବିକାଶେ



## "ଦୂର ବନୁଁ କିଏ"

ଦୂର ବନୁଁ କିଏ ବାଇଦେଲା ବେଣୁ,
ଶୁଣି ମୁଁ ରହିଲି ଚକିତ,
ଦୂର ନଭୋପଟେ କା' ମଞ୍ଜୁ ମୂରତି
ଦେଖି ଦେଖି ହେଲି ମୋହିତ ?
ସେ ପ୍ରିୟ ସୁନ୍ଦର ମୂରତି ମୋର,
ପରାଣେ ବେଢ଼ିଛି ତା' ପ୍ରେମଡୋର,
ଅନାଇ ନିମିଷେ ଚିହ୍ନି ମନଚୋର
ଧାଇଁଗଲି ସତେ ତ୍ୱରିତ,
ଲୁଚିଗଲା ଦୂର ମେଘ ଅନ୍ତରାଳେ,
(ଏବେ) କ୍ଳାନ୍ତ ଆଖି ଚାହିଁ ଚାହିଁ ତ ।



## ନିଶା ନ ପାହୁଣୁ

ନିଶା ନ ପାହୁଣୁ ଡ଼ାକିଗଲା କିଏ
ନିଦରେ ଥିଲି ମୁଁ ମଗନ,
ନିଦରେ ଥାଇ ମୁଁ ଆକୁଳ ପରାଣେ
ଦେଖିଲି ତାହାରି ସ୍ୱପନ।
ସାରା ସଂସାରର ରୂପ ଜିଣି ତାର
ରୂପଶୋଭା ଦେଖି ହେଲା ଚମତ୍କାର,
ଫିଟି ଉଠିଲା ମୋ ମୁଦ୍ରିକା ଯୁଗଳ-
ଲୋଚନ ପତାର ଦ୍ୱାର,
ଆଖି ମଳିମଳି ଦେଖେଁ ସେତ ନାହିଁ,
ଅଛି ମାତ୍ର ସ୍ମୃତି ତାର।

## କାହା ବ୍ୟାକୁଳତା

କାହା ବ୍ୟାକୁଳତା-ବ୍ୟଥା କହିଯାଏ
ପ୍ରଭାତ-ସମୀର ସଞ୍ଚରି,
ଆକାଶୁଁ ଅଶ୍ରୁଶିଶିର କାହାର
ଝରୁଛି ଧରଣୀ ଉପରି ?
ମେଘ ଆଢୁଆଳୁ ଦିଶି ଦିଶି ଯାଏ
କାହାର ଅରୁଣ ଆନନ,
ପରାଣେ ଆସି ମୋ' ମିଶିମିଶି ଯାଏ
କା'ର, ସୁଦୂର ଅଧର ଚୁମ୍ବନ ?

## "ଆଖି ମୁଁ ବୁଜିବି କେତେ"

ଆଖି ମୁଁ ବୁଜିବି କେତେ କହ ଦେଖି
ଶ୍ୟାମଳ ମୋହନ ମୂରତି,
ଲୁହ ଥନଥନ ଲୋଚନଯୁଗଳେ,
କେତେ ମୁଁ ପାରିବି ନିବର୍ତ୍ତି ?
ଛାତି ଧଡ଼ଧଡ଼େ ଧୃତି ଖସିପଡ଼େ,
କର-ପଦ ଉଭେ ଜଡ଼ତା,
ମୁହଁଦିଆ ପାଟି ନ ଫିଟେ, ସତେ କି
ଆତ୍ମା ଭୁଲିଯାଏ ତା' ସତ୍ତା !
ଅନାଇବି ନାହିଁ କରେଁ କେତେ ପଣ,
ଟାଣ ଭାଙ୍ଗିଯାଏ ନିମିଷେ,
ଦୂର ଗଗନରୁ ଚୋରା ଚାହାଣିରେ
ତାରାରୂପେ ଚାହେଁ ହସି ସେ।
ଚୋରାଇ ଚୋରାଇ ଚୁମ୍ବ ଦେଇଯାଏ
ଫୁଲବାସଭରା ପବନେ,
ଫେରି ମୁଁ ତାହାକୁ ଧରିବି ପାଖୁନେ
ପଳାଇଯାଏ ସେ ବହନେ।

## ଶରତେ

ଶରତର ରମ୍ୟ ଉଷାରେ,
ଝୁରୁ ଝୁରୁ ଗନ୍ଧ ଗଙ୍ଗଶିଉଳୀରେ
ପଶିଗଲା ସତେ ନାସାରେ।
ଶିଶିରବୋଳା ସେ କା' ତନୁସୁରଭି
ଝରିପଡ଼ିଲା କି ସମୀରେ ଦରବି !
(ମୋହି) ଗଗନ, ପବନ, ଗହନ ଅଟବୀ
ମିଶିଗଲା କୁଞ୍ଜ-କାସାରେ।
ରଞ୍ଜିତ-ରାଜୀବ-ରୂପ ଚମକାଇ
ଲଳିତ କୋମଳ ପାଖୁଡ଼ା ଫିଟାଇ
ତୋଷିଲା ତା'ମନ ତରୁଣ-ତପନ-
କନକ-କିରଣ ଆସାରେ;
କହି ନ ପାରୁଛି ଭାଷାରେ,
ପଲକେ ପୁଲକେ ପୂରିଣ ପରାଣ
(ମୋର) ଉଲ୍ଲସିଲା ଶତ ଆଶାରେ।

## ଦେଖିନାହିଁ ବୋଲି

ଦେଖିନାହିଁ ବୋଲି କହିବି କେମନ୍ତେ,
ଦେଖିଅଛି ହୃଦଭିତରେ;
ଦେଖିନାହିଁ ବୋଲି କହିବି କେମନ୍ତେ,
ନାଖିଅଛି ନେତ୍ର-ପଟରେ।

ଆଙ୍କିଅଛି ରୂପ ହୃଦ-ଚିତ୍ରପଟେ,
ନିତି ଦେଖୁଥାଏଁ ଗୋପନେ କପଟେ,
ତଥାପି ଆସିଲେ କ୍ଷଣକେ ନିକଟେ
କହେ ମୁହିଁ ଦେଖିନାହିଁ,
ଦିବାନିଶି ରହିଅଛି ଉଜାଗର
ତାର ଆଶା-ପଥ ଚାହିଁ।

## ପାହାନ୍ତାରୁ କିଏ

(୧)

ପାହାନ୍ତାରୁ କିଏ ଡ଼ାକି ଚାଲିଗଲା
ହୃଦୟ-ଦୁଆରେ ମାରି,
ଦିନ ଦଣଘଡ଼ି ହେଲାଣି ତ ଆସି
ରହିଛି ମୁଁ କାନ ପାରି;
ଆଉ ସେ ନ ଆସେ ଫେରି,
ମୋତେ ବିଷାଦ ଦେଲାଣି ଘେରି।

(୨)

ପାହାନ୍ତାରୁ କିଏ କହିଗଲା କଥା
କାନେ କାନେ ସଂଗୋପନେ,
ମରମେ ମରମେ ବାଜିଗଲା ପରା
ରହିଲି ମୁଁ ଉନମନେ;
ସତେ, ପାହାନ୍ତା-କାକର-ଚିନ୍ତା
କଥା ତାର ଅତି କୋମଳ ଲଳିତ,
ନ ବୁଝି କରୁଛି ଚିନ୍ତା।

## ଆଷାଢ଼ ନିଶା

ଘନ-ଘନ-କୋଳେ ବିଜୁଳି
ଚମକେ ଛନକେ ଉଜ୍ଜ୍ୱଳି
ଆଷାଢ଼ ନିଶାରେ ବରଷା-ଆସାରେ
ଫୁଟିଲେଣି ଯୂଥୀମଣ୍ଡଳୀ।
ଦୂର ଆକାଶରୁ କା' ଆଖି ଆସାର
(ସତେ) ପଡ଼ିଲାଣି ଭୂମେ ତରଳି,
ତା' ତନୁ-ଗନ୍ଧ କି ଚୋରାଇ ସମୀର
ଚହଟାଏ ଫୁଲପଟଳି ?

## ତାରାଟି ପରାଏ

ତାରାଟି ପରାଏ ଦୂର ଆକାଶରୁ
ଚାହିଁଦେଲ ମୋତେ ଆଦରେ,
ଚିର-ଜୀବନ ମୋ' ସଞ୍ଚିତ କଲୁଷ
ହରିଲ ନିମିଷ ମଧ୍ୟରେ।
ପଲକେ ପୁଲକେ କମ୍ପି ଅପଘନ
ଥନ ଥନ ବେନି ଲୋଚନ,
ଛନ ଛନ ମନ ଗୋପନ-ପ୍ରଦେଶ,
ବହେ ଘନ ଶ୍ୱାସ ପବନ।
ତାରାଟି ପରାଏ ମେଘ ଆଢୁଆଳେ
ଲୁଚିଗଲା କ୍ଷଣେ ବଦନ,
ପାଗଳ ପରାଏ ବିରହ ଆକୁଳ
ହୃଦ କି ଭୁଲିଲା ସ୍ପନ୍ଦନ ?

## ତୁମ ରୂପଛବି

ତୁମ ରପଛବି ଦେଖିବି ଦେଖିବି
କେତେ ମୁଁ କରୁଛି ଯତନ,
ବିମଳ-ଚନ୍ଦ୍ରମା-ଚାନ୍ଦିନୀ-ଚନ୍ଦନ
ସେ କି ତୁମ ରୂପ ରଚନ-
ଚମ୍ପାର ଚହଟ-କନକ-ଚିକ୍‌କଣ
ରଙ୍ଗପରା ତୋରା ତନୁର,
ବାସ ଝଲମଲ, ନୀରଦ-ନୀଳିମେ
ବର୍ଣ୍ଣ ଶୋଭେ ଇନ୍ଦ୍ରଧନୁର।
ଫୁଲସାଜ ପରା ପିନ୍ଧିଛ ସଜାଡ଼ି
ବସନ୍ତ-କୁସୁମ-ପଟଳି,
ନୀଳ ସରୋବରେ ପାତିଛ ଆସନ
ଫୁଟାଇ କମଳ-ମଣ୍ଡଳୀ।

ଚନ୍ଦନ କେତକୀ-କୁଙ୍କୁମ-ଅତରେ
ଅଙ୍ଗ କି କରିଛ ସୁବାସ ?
ତରୁଣ-ଅରୁଣ-କନକ-କିରଣେ
ଦିଶେ ମଞ୍ଜୁ ମୁଖ ସୁହାସ ।



## ଆଶା

ଦେଖା ଦେଲେ ସବୁ କହିବି ପାଉଛି,
ଦେଖା କିପାଁ ମିଳୁନାହିଁ ?
ତୁମ ଲାଗି କେତେ କଷଣ ସହୁଛି,
କେତେ ଦୁଃଖ ତୁମ ପାଇଁ !
ଆଶାରେ ଆଶାରେ ବହିଯାଏ ଦିନ,
ଆଶା ଆସି ହେଲା ଦିନୁଁ ଦିନୁଁ କ୍ଷୀଣ,
ମାସ ମାସ ହେଲା ବରଷରେ ଲୀନ
ତୁମ ଆଶାପଥ ଚାହିଁ ।



## ଅଭିମାନେ

ଆସ ଆସ କେତେ ଡ଼ାକିବି ବନ୍ଧୁ ହେ,
ତୁମେ ନ ଆସିବ ନିଜେ;
ସାରା ବିଶ୍ୱେ ତୁମ ଚରଣରେଖା ଗୋ,
(କିପାଁ) ହୃଦେ ନ ହୋଇବ ବିଜେ ?
ଆନ ଆସନ ତ ନାହିଁ ମୋହର ହେ,
ବସ ହୃଦ-ସରସିଜେ,
ନିଜ ପ୍ରାଣ ଆତ୍ମା ସଜାଡ଼ି ଦେବି ମୁଁ
(ଆଉ) ପାଦ ତଳେ ଦେବି କି ଯେ ?



## ତୁମ

ତୁମ୍ ଦେଉଥିବା ମୁରଲୀମୁରଜେ
ଗାଉଛି ତୁମରି ନାମଟି,
ଆନ କାର୍ଯ୍ୟ ଲାଗି ହୋଇଛି ଅଳସ,
କରେ ମାତ୍ର ତୁମ କାମଟି ।

ତୁମରି ଦରବେ ତୁମରି ବିପଣୀ
ସଜାଇ ବସିଛି ବଜାରେ,
ତୁମରି ଚନ୍ଦନ ତୁଳସୀ ଘେନି ମୁଁ
ବସିଛି ତୁମରି ପୂଜାରେ ।



## ମୋ କର୍ମ୍ମ

କର୍ମ୍ମ ମୋର ମୁହିଁ କରିଯିବି, ତୁମ
ଆଦେଶକୁ ଥିବି ଚାହିଁ,
ସୁଖେ ଦୁଃଖେ ମୋର ଭାଗ ବାଣ୍ଟିବାକୁ
ତୁମକୁ ମୁଁ କହୁନାହିଁ ।
ମରମେ ମରି ମୁଁ ଦିବା ଶରବରୀ
କାନ୍ଦିବି ବିରସ ଚିତ୍ତେ,
ତୁମରି ଆଦେଶେ କର ଚରଣ ମୋ'
ଲାଗିବ ଜଗତହିତେ ।
ଭୟେ ଭୟେ ନିତି ଚାଲୁଥିବି ବାଟ,
ଲୋଡ଼ା ନାହିଁ କଢୁଆଳ,
ତୁମ କ୍ରୋଧ ଖରା ବରଷା-ଆସାର
ଯେତେ ପାରୁଥାଅ ଢାଳ ।



## ହେଳା

ପତିତପାବନ ନାମ ବହି ପ୍ରଭୁ
ପତିତକୁ କର ହେଳା;
ଆକୁଳେ ଆକୁଳେ ବ୍ୟାକୁଳେ କାନ୍ଦୁଛି,
ବୁଡ଼ିବ ମୋ ଜୀବ-ଭେଳା ।
ଆରତେ ଡ଼ାକିଲେ ତୁମେ ନ ଶୁଣୁଛ,
ଏ ପୁଣି ପ୍ରଭୁ କି ଲୀଳା ଦେଖାଉଛ ?
ଅନନ୍ତ-ଅର୍ଣ୍ଣବ-ଅମ୍ବୁରାଶି ତଳେ
ବୁଡ଼ି, ସରିବ ମୋ ଖେଳା !
ଦୟାମୟେ ହରି କିପାଁ ନାମ ତବ,
ଭକତ-କଷଣ ଦେଖି କି ଗୌରବ,
ପ୍ରଭୁ ପ୍ରଭୁ କହି ଯିବ ଯଦି ଜୀବ,
ମାର ମାର ଏହି ବେଳା ।

ତାରଣ, ମାରଣ, ପାପୀ-ଉଦ୍ଧାରଣ,
ଅଙ୍ଗୁଳି ଅଗରେ କରିଛ ଧାରଣ
କୋଟି ବିଶ୍ୱ, ସୃଜି କରୁଛ ପାଳନ,
ମୁଁ ତ ଛାର ମାଟି-ଢେଲା।
ମାଟି ଦେହ ତୁମ କୃପାରେ ବଞ୍ଚିଛି,
ମାଟିଘଟେ ତବ ପୀରତି ସଞ୍ଚିଛି;
ତେଣୁ କିହେ ପ୍ରଭୁ ନପାର ମୁରୁଛି,
ଦେଖାଅ ଏ ମାୟାମେଳା ?



## ଗୁହାରି

ତୁମରି ଛାମୁରେ ଗୁହାରି ମୋହର,
ତୁମେ ନ ଶୁଣିବ ସତେ କି ?
ଦୟାର ସାଗର ନାମ ବହି ପୁଣି
ହୋଇବ ନିଷ୍ଠୁର ଏଡ଼େ କି ?
ତୁମେ ନ ଶୁଣିଲେ ନ ଯିବି ମୁଁ ଚାଲି,
ବସିଥିବି ଜଗି ଦୁଆର,
କାନ୍ଦି ଗଡୁଥିବି ତୁମରି ପାଦରେ
କରୁଥିବ ଯେତେ ପ୍ରହାର।
କହନ୍ତୁ ହେଲା କେ ଅଜ୍ଞାନ ବାତୁଳ,
ତହିଁ ମୋର କ୍ଷୋଭ କିପାଇଁ ?
ତୁମରି ସକାଶେ କଳଙ୍କ ଭୂଷଣ
ଦେବ ମୋର ସୁଖ ବଢ଼ାଇ।
କେଉଁ ସତ୍ୟଲୋକେ ଅବା ଦୂର ସ୍ୱର୍ଗେ
ଥାଅ ହେ ବିରାଜି ସତତ ?
ମୋ' ଭରସା କିନ୍ତୁ ଅଛି ମୋ ପାଖରେ,
ଅଛୁଁ ପରସ୍ପରେ ଯୁକତ।
ଅଛ ସତେ ହାତ ଦେଇ ଆଖି ମୁଦି
ତେଣୁ ମୁଁ ଦେଖି ନ ପାରଇ,
ତୁମରି କୋମଳ ପରଶ ଲଭି ଗୋ
ଅକାରଣ କ୍ଷୋଭେ ମରଇ।
କାଢ଼ି ଦିଅ ହାତ ଆଖି ଉପରର,
ଥରେ ମୋତେ ସଖା ହେ,
ନୟନେ ନୟନେ ମିଳି ମୋ' ପ୍ରାଣର
ଘୁଞ୍ଚୁ ଅବସାଦ ଦକା ହେ।



## ସାଧନା

କେତେ ସାଧିଲିଣି ଚରଣ ଧରିଣ,
ପଦେ କଥା କହି ଯାଅ ହେ,
ପଦେ ସୁମଧୁରେ ବାଣି ବୋଲ ମୋତେ
ଦୂରେ ଦୂରେ ଯଦି ଥାଅ ହେ।
ରୂପଟି ଲୁଚାଇ ରଖ ହେ ଯତନେ
ପଛେ ବା ପଡ଼ିବ ଲୋଚନ,
ଅଛି ତ ବିଶାଳ ବିଶ୍ୱ ପରିପୂରି
ତବ ରମ୍ୟ ରୂପ ମୋହନ।
ପଦେ ଗୀତ ଗାଇଯାଅ ପ୍ରାଣଯନ୍ତ୍ରେ
ଦରସ୍ଫୁଟ କ୍ଷୁଦ୍ର ରଙ୍ଗରେ,
ବିଶ୍ୱଭରା ତବ ସୁମଧୁର ସ୍ୱର
ଶୁଣିବି ମୁଁ ଅନୁରାଗରେ।
(ଖାଲି) ତୁମରି ଅଧର ହସଟିକ ଲାଗି
ତୁମରି ନୟନ-ଚାହାଣୀ,
(ଖାଲି) ତୁମରି ହୃଦର ପ୍ରିୟ ଅନୁଭୂତି
ମାଗେ ମୁଁ ଅଧମ ପରାଣୀ।
ସୁନାର ସଂସାର ରଖ ହେ ତୁମର
ଗଢ଼ି ଆନପାଇଁ ଯତନେ,
(ଖାଲି) ତୁମରି ପୟର ପଦ୍ମ-କଞ୍ଜ-ସୁଧା
ଟିକେ ମାତ୍ର ଦିଅ ଅଧମେ।
ତୁମ ମଣି, ହୀରା, ତୁମ ବିଶ୍ୱୈଶ୍ୱର୍ଯ୍ୟ
ଆଉ କାହାପାଇଁ ନେଖ ହେ,
ତୁମ ପାଦତଳେ ରହିବା ସକାଶେ
ଟାଖଣ୍ଡକ ଭୂଇଁ ରଖ ହେ।
ତୁମର ବିଭୁତି, ତୁମର ଶକତି,
ଆଉ କାହା ପାଇଁ ବିତର,
ତୁମ ପ୍ରେମ-ସୁଧା ଢାଳିଦିଅ ମୋତେ,
ମେଲାଇଛି ହୃଦ-ପତର।

ରାଜା, ମହାରାଜା କର ହେ କାହାକୁ,
ସୁଯଶ ଦିଅ ହେ ଅପାର,
କିଙ୍କର ପରାଏ ରଖିଥାଅ ମୋତେ
ଜଗାଇଣ ତବ ଦୁଆର ।



## ମୁଁ ଦେଲି

ମୁଁ ଦେଲି ମୋହର ସବୁଟା, ତଥାପି
ନ କହିଲି ମୁଖ ପିଟାଇ,
ତୁମେ ଦେଲ ଭିକ୍ଷା ତଣ୍ଡୁଳ ଗଣ୍ଡାକ
(ତେଣୁ) ଧେଣ୍ଡୁରା ଦେଲ କି ପିଟାଇ ?
ମୁଁ ଦେଲି ମୋହର ଦେହ, ଆତ୍ମା, ପ୍ରାଣ,
ତୁମେ ଦେଲ ସ୍ନେହ-କଣାଟି,
ତଥାପି ମୋହର ମୂଲ ନ ହୋଇଲା,
କାହିଁରେ ନୋହିଲି ଗଣା ଟି ।
ବାସନ୍ତ ଗୋଲାପ, ନିଦାଘ-ମଲ୍ଲିକା,
ଯୂଥିକା ବରଷା କାଳର,
ଶରଦ-ଶେଫାଳୀ, ହିମ-କୁଞ୍ଜଲତା,
ଶତବର୍ଗ ଫୁଲ ଶୀତର,
ପାହାନ୍ତିଆ ତାରା, ଦୂରବନ-ବେଣୁ
ମଧୁର ମୋହନ ନିକ୍ୱଣ,
ମେଘର ବିଜୁଳି, ସଞ୍ଜର ଗୋଧୂଳି,
ଅନ୍ଧ ନୟନର କିରଣ,
ମୁଁ ଭାବିଲି ତୁମେ ସବୁଟା ମୋହରି,
ତୁମେ ଭାବିଲ ମୁଁ ଭିକାରୀ,
ବୃଥା କର୍ମଫଳ, ଦୁଃଖ ଜଞ୍ଜାଳରେ
ପ୍ରାଣଟି ହୁଏ ମୋ ଧିକ୍କାରି ।
ଚିର ଅନୁତାପେ ଦଗ୍ଧ ହିଆ ମୋ,
ଭାବନ୍ତି ଜଗେ ମୁଁ ସୁକୃତ,
ତୀବ୍ର ଗଞ୍ଜଣାରେ, ଲୋକ ଲାଞ୍ଛନାରେ,
ଅମୃତ ଭାଳେ ମୋ' ଅନୃତ ।
'ପୋଡ଼ା କପାଳ ମୋ', ପୋଡ଼ା କପାଳ ମୋ !
କେତେ କହି ବୁଲୁଥିବି ଗୋ ?
ପୋଡ଼ ଏ କପାଳ ଏକାବେଳେ ପ୍ରଭୁ
ଯାଉ ମୋ ଯାତନା ଳିଭି ଗୋ ।
ତୁମ ସରିସମ ହେବା ମୋ' ଦୁରାଶା,
ଆକାଶେକୁସୁମ ତୋଳିବା,
ପିପାସା-ଆକୁଳେ ମରୁପ୍ରାନ୍ତରେ କି
ବୃଥାଶ୍ରମେ କୂପ ଖୋଳିବା ?
ତୁମେ ମହାପ୍ରଭୁ, ମୁଁ ଦୀନ ମାନବ,
ତୁଚ୍ଛ ଅତି ମୋର ଗୁହାରି,
ନ ଶୁଣିବ ଯଦି ମୋ' କାକୁ ବଚନ
ଲୋଡ଼ା ନାହିଁ ଦୟା କାହାରି ।
''ପୋଡ଼ା ମୋ' କପାଳ, ପୋଡ଼ା ମୋ' କପାଳ''
କହି ନ ବୁଲିବି ଜଗତେ,
ହସିବି ଯଦି ବା ଆନ ସନ୍ନିଧାନେ,
କାନ୍ଦୁଥିବି ନିତି ଗୁପତେ ।



## ''ଅବିଶ୍ୱାସ''

କରିଛ ବାରଣ, ଥିବି ମୌନୀ ହୋଇ,
ନ କହିବି କିଛି କଥା ହେ,
ଚାପି ରଖିଥିବି ହୃଦୟ ମଧରେ
ହୃଦୟର ଶତ ବ୍ୟଥା ହେ ।
ସବଳେ ରୋଧିବି ନୟନପଲ୍ଲବେ
ନୟନରୁ ଝରା ଲୋତକ,
ପ୍ରକାଶିବି ନାହିଁ କିଛି ହିଁ ସମୀପେ
ହରଷ, ବିଷାଦ, ପୁଳକ ।
ଦୀର୍ଘ ଦିନ ମୋର ବହିଯିବ ଏକା,
ସୁଦୀର୍ଘ ରଜନୀ, ବନ୍ଧୁ ହେ,
ନିର୍ମ୍ମମ, ନିଷ୍ଠୁର ତୁମେ ନ ଆସିବ,
ଭୁଲିଯିବ ମନମଧୁଁ ହେ ।
ଭବ-କାରାବାସ କେବେ ମୋ ସରିବ,
ପ୍ରାଣପକ୍ଷୀ ଉଡ଼ିଯିବ ଟି,
ସେହିଦିନ ସରି ରହିବି ମଉନେ
କ୍ଷଣେ ନ ଶୁଣାଇ ସ୍ୱରଟି ।

ତୀବ୍ର ଉତେଜନା, ଜ୍ୱଳନ୍ତ ବାସନା
ହୃଦୟ ରଖିବି ଗୋପନେ,
ମୋ କାମନାରାଶି ହୃଦେ ଯିବ ମିଶି,
ବିକାଶ ନୋହିବ ଲପନେ।
ଦୀର୍ଘ ହାହାମୟ, ଚିର ଜ୍ୱାଳାମୟ
ହୋଇବ ଜୀବନ-ବାସର,
କେହି ନ ବୁଝିବେ, କେହି ନ ଦେଖିବେ
ତୁମ ବିନାବନ୍ଧୁ ମୋହର।
ତୁମେ ବନ୍ଧୁ ଦୂରେ, ମୁହିଁ ବନ୍ଧୁ ଦୂରେ,
ଅନନ୍ତ ବିଚ୍ଛେଦେ ବିବଶା,
ତୁମ ରୂପ କିନ୍ତୁ ଆକାଶେ ପବନେ
ଦେଖିବା ମୋହର ଭରସା।
ତୁମ କତି କେଭେ ଯାଇ ନ ପାରିବି,
ଧରି ନ ପାରିବି ତୁମକୁ,
କୋଳେ ତୋଳିନେବ ନାହିଁ କେଉଁ ଦିନ,
କାନ୍ଦିବି ସିନା ମୁଁ ମନକୁ।
ଆକୁଳ ପିପାସା ବଢ଼ାଇଣ ନିତି
ନ ତୋଷିବ କେବେ ସଲିଳେ,
ଅଚେତନ ସିନା ହୋଇ ପଡ଼ିଥିବି,
ନ ଶମିବ ସ୍ନିଗ୍ଧ ଅନିଳେ।
ଚହଟାଇ ଫୁଲ ତୋରା ରଙ୍ଗ, ରୂପ,
ଫୁଟାଇ ରଖିବ ଉଦ୍ୟାନେ,
ତୋଳୁ ନ ତୋଳୁଣୁ କରିବ ବାରଣ,
ଫେରିଯିବି କ୍ଷୁବ୍ଧ ପରାଣେ।
ଅମୃତ ଭୋଜନେ ବସାଇଣ ସଖା
ମୁଖରୁ ନେବ କି ଛଡ଼ାଇ,
କମଳ କାନନେ ପଦ୍ମ ତୋଳି ନେଇ
ମାରିବ ପଙ୍କରେ ବୁଡ଼ାଇ ?
ଦୂର କାନନରେ ବାଉଥିବ ବୀଣା
ଚିତ୍ତବୃତ୍ତି କରି ବଶୀ ହେ,
ଧାଇଁ ଧାଇଁ ଯିବି, ଦେଖା ନ ପାଇବି,
କାନ୍ଦି ହେବ ଆଖି କଣା ହେ।
ଦୂର ଆକାଶରେ ମେଲାଇଣ ଦେବ
ରୂପର ମୋହନ ପସରା,
ଦୂରୁଁ ଦେଖୁଥିବି, ପ୍ରାଣେ ନ ଲଭିବି,
ନେତ୍ରୁଁ ବହୁଥିବ ଅସରା।
ମଧୁର ବସନ୍ତେ, ମଳୟ ମାରୁତେ,
କଳ-କୋକିଳର କଣ୍ଠରେ,
ନଭୋ-ନୀଳିମାରେ, ଚନ୍ଦ୍ର ସୁଷମାରେ,
କୋମଳ ପଲ୍ଲବ ପତରେ,
ଫୁଲ ପରିମଳେ, ବିକଚ କମଳେ,
କୁସୁମିତ ଲତା-କୁଞ୍ଜରେ,
ତଟିନୀ ସଲିଳେ, ଆନନ୍ଦ ହିଲ୍ଲୋଳେ,
ସିନ୍ଧୁ ବେଳାଭୂମି ତଟରେ,
ତୁମେ ବିକଶିବ ତୁମର ସ୍ୱରୂପ,
ଆକୁଳ କରିଣ ପ୍ରାଣକୁ,
ପବନ ପରାଏ ଛୁଇଁ ଛୁଇଁ ଯିବ,
ଧରା ନଦେବ୍ ମୋ' ଟାଣକୁ।
ବସନ୍ତ ବାସରେ ଝୁରି ମୁଁ ମରିବି,
ତୁମେ ନ ଆସିବ କତିକି,
ତୁମେ ନ ଶୁଣିବ, ତୁମେ ନ ଚାହିଁବ,
ଫିଙ୍ଗିଦେବ ମୋର ପ୍ରୀତିକି।
ବରଷା-ନିଶାରେ ନିରବ ଭାଷାରେ
ଧୀର ଝରଝର ତାନରେ
ମେଘ-ଅନ୍ଧାରିତ ଦୂର ଆକାଶରୁ
କହୁଥିବ କଥା କାନରେ।
ଧବଳ-ଚାନ୍ଦିନୀ- ବୋଳା ଶରତର
ଶେଫାଳୀ-କଳିକା ଫୁଟାଇ
ଆକୁଳିବ ପ୍ରାଣ ଉଷତେ ମୋହର
ମଧୁମୟ ବାସ ଲୋଟାଇ।
ହେମନ୍ତ ଦିନାନ୍ତେ ଦିଗ୍‌ବଳୟ ପ୍ରାନ୍ତେ
ଗୋଧୂଳିପରଶ ବୁଲାଇ
ନୟନ ସମୀପେ ଅପରୂପ ରୂପେ
ଆସିବକି ନଯୁଁ ଓହ୍ଲାଇ ?
ଧରିବାକୁ ଧାଇଁ- ଗଲେ ପଳାଇବ,
ଆଉ ନ ଦେବ ଟି ଦେଖା ହେ,
ତୀବ୍ର ଅଭିମାନ- ତପ୍ତ ଶଳାକାରେ
ହୃଦୟେ କାଟିଣ ରେଖା ହେ।

ଦୀର୍ଘ ବନପଥେ    ବୁଲାଇ ନେଇଣ
ହଜାଇଦେବ କି ଅରଣ୍ୟେ,
ଭେଲ ଦେବ କିବା    ପରିଶେଷେ ବନ୍ଧୁ,
ପ୍ରଥମେ ଭୁଲାଇ ହିରଣ୍ୟେ ?
ସରୋବର-ସ୍ଥାନେ    ଛାଡ଼ି ପଳାଇବ
ଦେବ ଉଷ୍ଣ ପ୍ରସ୍ରବଣରେ,
ସିନ୍ଧୁତୀରେ ଘେନି    ଛାଡ଼ି ପଳାଇବ
ପ୍ରଚଣ୍ଡ ତରଙ୍ଗ ମୁଖରେ ।
ନୟନ ଅଗ୍ରତେ    ଫେଡ଼ି ଛାୟାବାଜି
ଆକୁଳ କରିବ ଅନ୍ତର,
ବିଷାଦେ ପଶ୍ଚାତେ    ବୁଝିବି ମୋ ଭ୍ରମ,
ବୃଥା ଆଶା-ସୁଖ ମାତର ।
ଆଗପଛେ ମୋର    କିଛି ନ ରଖିବ,
କେବଳ ଅଳୀକ ଜଞ୍ଜାଳ,
ଭବମାୟାରୂପେ    ଭୁଲିଣ ଶେଷକୁ
ଦେଖିବି କୁତ୍ସିତ କଙ୍କାଳ ।
ଦୂର ନଭୋଭାଳେ    ପାହାନ୍ତିଆ ତାରା
ଘନ ଅନ୍ଧକାର ଭେଦିଣ
ଉଇଁଥିଲା ପରି    ଦୁଃଖ-ତମ ଭେଦି
ସୁଖ-ଆଶା ଥିବ ଉଦିଣ ।
କିନ୍ତୁ ଦୁଃଖ-ନିଶା    ନୋହିବ ପ୍ରଭାତ
ଜୀବ ଯିବାଯାଏ ସଖା ହେ,
ଦୁଃଖେ ଥାଇ ଦୁଃଖେ    ସୁଖ ମଣୁଥିବି,
ନୋହିବି ବିବଶା, ଥକା ରେ ।
ହେ ଭବ-ନିୟନ୍ତା    ଏହିକି ତୁମ୍ଭର
ନିଷ୍ଠୁର ନିୟତି ମୋ' ପାଇଁ,
କେତେ ଅଭିଯୋଗ    କରିବି ଚରଣେ
ନୟନ-ସଳିଳେ ତିନ୍ତାଇ ?
ଶୁଣ ବା ନ ଶୁଣ    କିଛି ନ କହିବି,
ନ କରିବି କିଛି ପ୍ରାର୍ଥନା,
ତୁମ୍ଭେ ଯାହା ଦେବ    ତୁମ୍ଭେ ଯା' କରିବ
ନୋହିବି ସେଥିରେ ବିମନା ।
ତଥାପି ବିଶ୍ୱାସ,    ଆଶାପ୍ରେମ ଘେନି
ଦୁଃଖକୁ ସୁଖ ମୁଁ ମଣିବି,
ଯେ ଯାହା କରନ୍ତୁ    ନ ଶୁଣିବି କିଛି,
ତୁମ୍ଭ ନାମ-ଗୁଣ ଭଣିବି ।
ସଂସାର ସେବାରେ    ଲଗାଇଣ ମନ
ରହିବି ତହିଁରେ ନିରତ,
ଅନ୍ତେ ଯା' କରିବ    ଜଣାତା' ତୁମକୁ,
(ତେଣୁ) ଭାବନାରୁ ହେବି ବିରତ ।



# ନିର୍ଦ୍ଦୟ

ସାରାଦିନ ବସି ଜଗିଲି ଆକୁଳେ
ତୁମ ଆଶା-ପଥ ଚାହିଁ,
ଆସିବ ଆସିବ କହି ତ ଛଳିଲ
ଦଣ୍ଡେ ଦଣ୍ଡେ ପ୍ରାଣସାଇଁ ।
ଜୀବନର ସଞ୍ଜ ଅନ୍ଧାରେ ଆସି ଗୋ
ଦେଖା ଦେଲ ଯେବେ ବାରେ,
ତିନ୍ତାଇଲ ତୀବ୍ର ଦାରୁଣ ପ୍ରହାରେ
ଗଣ୍ଡଯୁଗ ଅଶ୍ରୁଧାରେ
ସାରାଦିନ ଖରା ଖାଇଲି ତୁମରି
କାରଣେ ଜଗି ମୁଁ ବାଟ,
ଦାରୁଣ ହୃଦୟେ ଦୟା ନୋହିଲା କି,
ମାରୁଛ କୋରଡ଼ା ଛାଟ ?
ତୁମ କର୍ମ ତୁମେ ବୁଝ ମହାପ୍ରଭୁ,
ପାପୀ ଅଧମ କି ବୁଝେ ?
ନିତି ନବ ନବ ଆଶା ଅକାରଣେ
ଦୁଃଖ ନବ ନବ ସୃଜେ ?



# କିପାଁ

ସୁଖୀ ଯଦି ମୋତେ କରି ନ ପାରିବ
କିପାଁ ଦେଲ ସୁଖ ପିପାସା,
ଦୁଃଖୀ ଯଦି ମୋତେ କରି ରଖିଥିବ
କିପାଇଁ ନ ଦିଅ ନିରାଶା ?

କିପାଁ ଦେଖେ ନିତି ନୟନ ସମୀପେ
ଇନ୍ଦ୍ରଜାଲ ସୁଖ ଆଲୋକ,
କିପାଁ ମରୀଚିକା ପଛେ ଧାଇଁ ଯାଇଁ
ଖୋଜେଁ ମୁଁ ଦ୍ୟୁଲୋକ ଭୂଲୋକ ?
କାହିଁରେ ତ ମନ ମିଶି ନ ପାରିଲା,
ଜୀବନ ହୋଇଲା ଦୁର୍ବହ,
କେହି ଦେଲେ ନାହିଁ ସହ-ଅନୁଭୂତି,
ଦୁଃଖ ତ ବଢ଼ିଲା ଦୁଃସହ ।
କର୍ତ୍ତବ୍ୟରେ ଆଉ ନାହିଁ ସ୍ଫୂର୍ତ୍ତି, ଶ୍ରଦ୍ଧା,
ତିକ୍ତ ଲାଗେ ମୋତେ ସକଳ,
ଦ୍ୱାରଦେଶେ ମୃତ୍ୟୁ ଆସି ଛିଡ଼ା ହୋଇ
ଡ଼ାକୁଛି ମୋତେ କି କେବଳ ?
ଏ ଲୋକରେ ଯଦି ସ୍ଥାନ ନାହିଁ ମୋର
କଲବଲ କର କିପାଇଁ ?
ତୁମରି ସନ୍ତାନ, ଦୟା ବହି ତୁମେ
ଆସି କୋଳେ ନିଅ ଉଠାଇ ।
ଅଥବା ମୋ ମନ କରିଦିଅ ନୂଆ
ପରିଷ୍କାର କରି ଜଞ୍ଜାଳ,
ଜଗତର ସବୁ ଭଲ ଲାଗୁ ମୋତେ,
ତୁମ ଧନ ତୁମେ ସମାଳ ।
ଉବେ କିଏ ଅଛି ଦେବାକୁ ହେ ମୋତେ
ସତ୍ୟ ଉପଦେଶ ଶାସନ ?
ବାତୁଳ ପରାଏ ଏଣେତେଣେ ଧାଏଁ,
ତୁମେ ଧରି ରଖ ବହନ ।

—✧—

# ବିନତି

ଚରଣ ଧରି ମୁଁ ଶରଣ ପଶିଚି,
ଚରଣରେ ଫିଙ୍ଗିଦିଅ ନା,
ଦାରୁଣ କଷଣ କରିବି ବରଣ,
ନ ହୁଅ ମୋ'ଠାରେ ବିମନା ।
କରୁଣା-କାରଣ, କରୁଣା-କିରଣ
ନ କର ମୋ'ଠାରୁ ଊଣା ହେ,
କିଣା-କିଙ୍କର ମୁଁ, କ୍ଷୀଣ ପ୍ରାଣ ମଣି
ନ କର କ୍ଷଣକେ ଘୃଣା ହେ ।
ଶୋକ-ନିବାରଣ, ଶାନ୍ତି-ପ୍ରସ୍ରବଣ
ନାମଟି ତୁମର ଜଣା ହେ,
ଛାଡ଼ିଣ ତୁମକୁ ଯିବି କାହାଠାକୁ,
ଭବ-ବଣେ ହେବି ବଣା ହେ ।
ତାରଣ କାରଣ ଧରଣୀ ଧାମରେ
ତୁମ୍ଭ ବଡ଼ପଣ ସିନା ହେ,
ତାରଣ, ମାରଣ ତୁମ୍ଭରି ଅଧୀନ,
ତାରେ କିଏ ତୁମ୍ଭ ବିନା ହେ ?
ପତିତପାବନ, ଦୁରିତଦହନ,
ହର ମୋ ମାନସ ଯାତନା,
ଟାଣିନିଅ ମନ ଚରଣ ତଳକୁ,
ଅନ୍ତରେ ପୋଷିଛି ବାସନା



# ଅଭିଯୋଗ

ସବୁ ନେଇ ଶୂନ୍ୟ କରିଅଛ ମୋତେ,
ପୂରାଅ ସକଳ ଦେଇଣ,
ନେଉ ମୋତେ ହରି, ନେଲ ମୋତେ ଧରି
ଜୀବନେ ବଞ୍ଚାଇ ମାରିଣ;
ନେଲ ଗୁଣ, ଜ୍ଞାନ, ନେଲ କର୍ମ୍ମ, ଧ୍ୟାନ,
ଧନ, ମାନ, ବିଦ୍ୟା-ଭୂଷଣ,
ଦୁଃଖ ହେଲା ମୋର ଚିର ସହଚର,
ନିତି ତ ଭୋଗିଲି ମରଣ ।
ଯାହା କରିବାକୁ ନ ଚାହେଁ ପରାଣ,
ଯାହା କରିବାକୁ କରେଁ ମୁଁ ବାରଣ,
କଲି ତାହା ପ୍ରଭୁ, କହିଲି ତାହା ମୁଁ,
ନିନ୍ଦାକୁ କଲି ଟି ଭୂଷଣ ।
କହ କହ ପ୍ରଭୁ କହ ମୋତେ ଆଜି,
କିପାଁ ଦିଅ ଏତେ କଷଣ,
ଝରେ କିପାଁ ମୋର ଏତେ ଅଶ୍ରୁଝର,
କହ କେଉଁ କାର୍ଯ୍ୟ କାରଣ ?



## ଛଳନା

ଦଣ୍ଡେ ଦଣ୍ଡେ ମୋତେ ରଖୁଛ ଭୁଲାଇ
ଅସାର ସଂସାର ଦେଖାଇ,
ସବୁ ଛାଡ଼ି ମୁଁ ତ କାନ୍ଦି କାନ୍ଦି ତୁମ
ପଛରେ ଯାଉଛି ପଳାଇ।
ଲୁଚି ଯାଉଅଛ ପୁଣି ଥରେ ଥରେ,
ଖୋଜି ମୁଁ କାନ୍ଦଇ କି ବିକଳ ସ୍ୱରେ,
ଏହି କି ତୁମର ଲୀଳା ହେ,
କାଣ୍ଡାରି ହୋଇକି ଛାଡ଼ି ପଳାଉଛ
ଆକୁଳେ ଜୀବନ-ଭେଳା ହେ !
ତୁମେ ମୋର ଗତି, ସାଧନା, ଧାରଣା,
କିପାଁ ଦିଅ ମୋତେ ଅସାର ଖେଳନା,
ଭୁଲିବି ନାହିଁ ମୁଁ ମାଟିକୁ କୁଣ୍ଢାଇ,
ବନ୍ଦ ନୋହିବ ମୋ କାନ୍ଦଣା।
ମାର ପଛେ ଆସି ମାର ହେ,
ଅଥବା ଅଧମେ ତାର ହେ,
ଅବୁଝା ବାଳକ ପରାଏ କାନ୍ଦିବି
ସବୁ ସୁଖ ଗଣି ଛାର ହେ।



## ଦୀନ

ଦୁଆରେ ତୁମର ଯାଉଛି ହକାରି
ଦାଣ୍ଡର ମୁଁ ଦୀନ ଭିକାରୀ,
ଆସେ ନିତି କିପାଁ କରି କି ମାଗୁଣି
ଥିଲ କିବା କେବେ ପଚାରି ?
ଛିଣ୍ଡା କନ୍ଥା ବେଢ଼ି ତୁମ ପ୍ରାସାଦର
ତଳେ ବସି କରେ ଗୁହାରି,
ତଣ୍ଡୁଳ ଗଣ୍ଡାକ ନ ମିଳେ ଦିନାନ୍ତେ
ନିତି ହୋଇ ତବ ଦୁଆରୀ।
ଭଙ୍ଗା କେନ୍ଦରା ମୋ' ସ୍ୱର ତୁମ କାନେ
ପଶି କି ଯାଉଛି ବାହାରି,
ବ୍ରହ୍ମାଣ୍ଡ-ଠାକୁର ନାମ ବହି ପ୍ରଭୁ
ଦୁଃଖ କି ନ ଦେଖ କାହାରି ?
ଅବା ଦୀନ ମଣି କର ମୋତେ ଘୃଣା,
ଦିନେ ତେଣୁ ନାହିଁ ପଚାରି,
ଦୀନ ସିନା ତୁମ ଲାଗି ମହାପ୍ରଭୁ,
ମନରେ ବୁଝ ହେ ବିଚାରି।



## କର ପାଦଧୂଳି

କର ପାଦଧୂଳି, କର ପାଦଧୂଳି,
ନାହିଁ ମୋର କିଛି କାମନା,
ପାଦଧୂଳି ହୋଇ ପାଦେ ମିଶିଯାଇ
ରହିବି ପାଦରେ, ବାସନା।
କର ପାଦଧୂଳି, କର ପାଦଧୂଳି,
ସେହି ତ ମୋହର ସାଧନା,
ସେ ପାଦ ପବିତ୍ର ହୋଇବ ମୋ ଚିର,
ଲଭିବ କଳୁଷ ମାର୍ଜନା।
ତବ ପଦତଳ ଅଧୀନ କର ହେ
ନାଶିଣ ସକଳ କାମନା,
କର ପାଦଧୂଳି କର ପାଦଧୂଳି,
ପୟରେ ଏତିକ ପ୍ରାର୍ଥନା।



## ଆକାଙ୍‌କ୍ଷା

ଭବ-ମରୁଭୂମି ଛାଡ଼ିବି ମୁଁ କେବେ,
ଯିବି ତବ ପ୍ରେମ-ସଦନେ,
ହୃଦୟ-ଦହନ ଲଭିବ ମୋ' କେବେ
ବୁଡ଼ି ପ୍ରେମାମୃତ-ଜୀବନେ ?
ଚାହିଁ ବସିଅଛି ଆକୁଳ ପିପାସା,
ନିତି ପାଦପଦ୍ମ-ଦରଶନ-ଆଶା,
ପ୍ରାଣ ମୋ ଶମିବ, ପିପାସା ମେଣ୍ଟିବ
ଯୁଗଳ ଚରଣ ଚୁମ୍ବନେ।
ମୁଁ ତ ପ୍ରଭୁ ତବ କିଣା ଅନୁଚର,
ଚରଣକୁ ନିଅ ଚରଣ-କିଙ୍କର,
ପରାଣେ ପରାଣେ ବାନ୍ଧ ହେ ଗୋପନେ
ଦୃଢ଼- ତବ ପ୍ରେମ-ବନ୍ଧନେ।

ସଜନେ, ବିଜନେ ବସି ଦିବାନିଶି
ଭାଳେଁ ପାଦତଳେ ଯିବି ପରା ମିଶି,
ନିଜସ୍ୱ ବିସର୍ଜ୍ଜି ତୁମଠାରେ ହଜି
ହେବି ଶୂନ୍ୟ ସର୍ବ ଅର୍ପଣେ ।
କ୍ଷୁଦ୍ର ଅହଂଭାବ ହୋଇଯିବ ଲୀନ
ତୁମ୍ଭ ପ୍ରେମଜଳେ ବୁଡ଼ି ଆତ୍ମୀମୀନ,
ମୋ ରୂପ ନ ଦେଖି ତୁମକୁ ନିରେଖି
ଲଭିବି ଅମୃତ ଜୀବନେ ।



## ପାଖରେ

ପାଖରେ ବସି ତ କାନ୍ଦୁଛି ବିରସେ,
ପାଖକୁ ନିଅ ମୁଁ କାନ୍ଦୁଛି,
ପାଖରେ ଥାଇମୁଁ ଦେଖି ପାରୁନାହିଁ,
ଅକାରଣେ ଦୁଃଖ ସହୁଛି ।
ଭିତରଟାଯାକ ସବୁ ତ ସୁନ୍ଦର,
ମାଟିବୋଳା ସୁନାପିଣ୍ଡ କି !
ବାହାରଟାଯାକ ସବୁ ତ କର୍କଶ,
ଶିଳାସ୍ତୂପେ ହୀରାଖଣ୍ଡ କି !
ମେଘ ଆଢୁଆଳେ ଲୁଚନ୍ତ ଚନ୍ଦ୍ରମା,
ପତ୍ର ଆଢୁଆଳେ ଫୁଲ କି !
ନାରିକେଳ-ଶସ-ସମ ଶୁଭ୍ର ସ୍ୱଚ୍ଛ,
କିଏ ହେବ ସମତୁଲ କି ?
ଦୂର ବୃତବନ-ସୁବାସ, ଅଥବା
ଅଦିନ କୋକିଳ-କାକଳି,
ଦୂର ତାରକାର ଆଲୋକ, ଅଥବା
ଘନ-ମେଘକୋଳେ ବିଜୁଳି ।
ବସନ୍ତର ପ୍ରଭା, ଶରତର ଶୋଭା
ସବୁ ଠୁଳ ତାହାଠାରେ ଗୋ,
ତାହାକୁ ପାଖରେ ରଖି ମୁଁ ତଥାପି
ମିଛେ ମିଛେ କାନ୍ଦି ମରେ ଗୋ ।



## ଦିଅ

ଜ୍ଞାନ ଯଦି ଦେଲ ଦିଅ ମୋତେ ଭକ୍ତି,
ଦିଅ ହେ ବିଶ୍ୱାସ ପରମ,
ତୁମର ଚରଣ ଶରଣ ଦିଅ ହେ,
ପରଶ ମୋହର ମରମ ।
ବହୁଦିନ ହେଲା ବନେ ବନେ ବୁଲି
ହୋଇଅଛି ପଥ ଭରମ,
ଏଣେ ତେଣେ ଧାଏଁ, ପଥ ତ ନ ପାଏଁ,
ନିନ୍ଦିବୁଲେ ମୋର କରମ ।
ଅଶ୍ରୁ, ତୃଷ୍ଣା ଅଶ୍ରୁ, ବେଦନା, ଆକ୍ଷେପ,
ଏହି କି ଫଳ ମୋ ଚରମ ?
ତୁମ ପାଦପଦ୍ମେ ଆଶ୍ରୟ ଦିଅ ହେ,
ତହିଁ ଏକା ଶାନ୍ତି ଶରମ ।



## ତୁମେ ଅଛ

ଆକାଶରେ ଚାନ୍ଦ ହସେ ମୃଦୁ ମନ୍ଦ,
ତା' ଦେଖି ହସଇ କୁମୁଦ,
ତୁମର ସ୍ୱରୂପ-ବିକାଶ ଦେଖି ମୋ
ପରାଣ ଲଭଇ ସେ ମୁଦ ।
ତୁମେ ଅଛ ବୋଲି ଅଛି ମୁହିଁ ବଞ୍ଚି,
ତୁମେ ନାହଁ ମୁହିଁ ନାହିଁ ଗୋ,
ତୁମର ବ୍ୟକ୍ତିତ୍ୱ ବନ୍ଧା ମୋ' ସ୍ୱରୂପ,
ତୁମ ବିନା ଯିବି କାହିଁ ଗୋ ?
ଧୂଳିଘର ରଚି ବସାଇଛ ତହିଁ
ଖେଳିବି ବୋଲିମୁଁ ଖେଳ କି,
କାନ୍ଦୁଅଛି ସିନା ଅବିଶ୍ୱାସ ଘେନି
ସୁନା ଯାଚି ଦେବ ଭେଳ କି ?
ନାହିଁ, ନାହିଁ, ମାଟି ପରଶି କନକ
କରିଦେବ ସତେ ପଲକେ,
ସେହିଦିନ ସରି ଖେଳିବି ମାଟିରେ
ଉଷାହେ ପରମ ପୁଲକେ ।



# କିଏ ତୁ କୋଇଲି ?

ଜୀବନ-ବସନ୍ତେ କିଏ ତୁ କୋଇଲି
କୁହୁକୁହୁ ଡ଼ାକି ଉଠିଲୁ,
ପାଗଳ ପରାଏ ଆକୁଳ କୋଇଲି,
କି ମଧୁର ରାବ ରଟିଲୁ ?
ଶତ ଫୁଲ ସତେ ଉଠିଲା ମହକି,
ବହିଲା ମଳୟ ସୁଗନ୍ଧ-ବହ କି,
ପଞ୍ଚସ୍ୱରେ ଗୀତ ଗାଇଲୁ କହ କି,
(କହ) କେଉଁ ରାଇଜରୁ ଆଇଲୁ ?
(ମୋର) କଳୁଷ-କଳଙ୍କ-ସନ୍ତାପ ବନ୍ଧନ
ଦଣ୍ଡକରେ ଆସି କାଟିଲୁ ।



# ଖରାଦିନେ

ଖରାଦିନ ଦୁଇପହର ତାତି,
ପିପାସା ଆକୁଳେ ଫାଟଇ ଛାତି,
ଧୀରେ ଯେବେ ନଇଁ ପଡ଼ଇ ଛାଇ,
ଥରେ ଥରେ ପିକ ଉଠଇ ରାଇ,
ଭାସି ଆସେ ଦୂରବନୁଁ
ଗୋପ-ବାଳକର ମଧୁର ମୁରଲୀ
ମୁରଛ ପୁଲକି ତନୁ ।
କାହୁଁ କାହୁଁ ଫୁଲ ସୁରଭିରାଶି
ପବନ-ହିଲ୍ଲୋଳେ ଆସୁଛି ଭାସି,
କୋମଳ ଶିରୀଷ, ପାଟଳି ଫୁଲ,
ସଞ୍ଜୋ ଫୁଟେ ମଲ୍ଲି ଶୋଭା ଅତୁଳ,
ବସି ମୁଁ ଗୁନ୍ଥିବି ମାଳି,
ତବ ପାଦପୂଜା- ନାଗି ମହାପ୍ରଭୁ
ଭରିବି ଅର୍ଚ୍ଚନା-ଥାଳୀ ।



# ଆଷାଢୁଆ ମେଘ

ଗୁରୁ ଗୁରୁ ଡ଼ାକେ ଆଷାଢୁଆ ମେଘ,
ମାଡ଼ି ତ ଆସୁଛି ଅନ୍ଧାର,
ପ୍ରାଣର ଭିତରେ ବାଜି ଉଠୁଛି କି
ତୁମ ମଧୁ ବୀଣା-ଝଙ୍କାର ?
ଦୂର ପରବତେ ଡ଼ାକୁଛି ମୟୂର,
ମରମରେ ବାଜିଯାଏ କି,
କଦମ୍ବ କେଶର ବିକଶି ପବନେ
ଗନ୍ଧ ସୁମଧୁର ବହେ କି ?
ତୁମ ବିଜୁଳି କି ଆକାଶ ଉଜ୍ଜ୍ୱଳି
ଖେଳି ଖେଳି ଲୁଚେ ନୀରଦେ,
ତୁମ ବଜ୍ର ସତେ ତୁମରି ଆଦେଶେ
କମ୍ପାଏ ଅବନୀ ଶରଦେ ?
ତୁମ ପୂଜାଲାଗି କୁଞ୍ଜେ କୁଞ୍ଜେ ପରା
ଫୁଟିଉଠେ ଶୁଭ୍ର ଯୂଥିକା,
ପାଦ ଧୋଇବାକୁ ଅଶ୍ରୁ ବର୍ଷାବାରି
ଢାଳନ୍ତି କି ତରୁବୀଥିକା ?
ଅତରବାସରୁ ବଳିକି ଡିଗିକି-
ସୁରଭି ହରୁଛି ହୃଦୟ,
ତୁମ ପ୍ରେମ-ସଜ-ସୁମନ-ସୁରଭି
ମନ ମୋର କରେ ଅଥୟ ।



# ଉଷାରେ

ଘନ ଅନ୍ଧକାର ଭେଦକି ହସିଲା
ପାହାନ୍ତିଆ ତାରା ଉଜ୍ଜ୍ୱଳ,
ମନେ ପଡ଼ିଗଲା ସତେ ସେ ତୁମର
ମୁଖହାସ ଛବି ବିମଳ !
ଅପସରିଗଲା ଧୀରେ ଅନ୍ଧକାର,
ଉଷାର ସିନ୍ଦୂରା ଫୁଟିଲା,
ତୁମ ଆଗମନେ ପାପୀ ମନେ ସତେ
ପୁଣ୍ୟ ଜ୍ୟୋତି ଫୁଟି ଉଠିଲା !
ଗୋଟି ଗୋଟି ତାରା ଉଭେଇଣ ଗଲେ,
ଅରୁଣ କିରଣ ଦିଶିଲା,
ସଂସାର-ଝଲକ ଛାଡ଼ି ମନେ ସତେ
ବିଭୁ ପ୍ରେମାଲୋକେ ହସିଲା !
ସୁଲୁ ସୁଲୁ ବହେ ପାହାନ୍ତା ପବନ,
ଉତ୍ତମନେ ଶାନ୍ତି ସେ କି ହେ,
ଆନନ୍ଦ ଉପମା-କୁସୁମ ସୁଷମା
ବିକାଶିଲା ମଥା ଟେକି ହେ !

ସୁରଭି ସଞ୍ଚରି ଦିଗ ଦିଗନ୍ତର
ନବପ୍ରାଣ ଆଣି ଦେଲା କି,
ତୁମ ଆଗମନେ ନବୀନ ଜୀବନେ
ଉକ୍ତ ଉଠି ଠିଆ ହେଲା କି !

## ଆସିଛନ୍ତି

ଆସଛନ୍ତି ଆଜି ପ୍ରାଣଈଶ୍ୱର ମୋ'
ଦରିଦ୍ର ଏ ପ୍ରାଣମନ୍ଦିରେ,
ଛତ୍ରିଶ ରାଗିଣୀ ମିଳି ସପ୍ତ ସ୍ୱରେ
ବାଜିଉଠୁଛି କି ସଧୀରେ !
ଆସିଛନ୍ତି ସେ ତ ହସାଇ, ରସାଇ,
ଭସାଇ ପୀରତି-ସଲିଳେ,
ବରଷାଇ ମଧୁ, ହରଷାଇ ମତି,
ମଧୁର ବସନ୍ତ ଅନିଳେ ।
ନିବାରିବେ ସେହି ପ୍ରାଣର କ୍ଷୁଧା ଗୋ,
ନିବାରିବେ ପ୍ରାଣପିପାସା,
ଫୁଟି ତ ଉଠିବ ସଜ ଫୁଲ ସରି
ହୃଦେ ନବ ନବ ସୁଖାଶା ।
ଘୁଞ୍ଚିବ ମୋହର ପାପ-ଦୁଃଖରାଶି,
ଆନନ୍ଦେ ଉଠିବି ହସି ଗୋ,
ହସଇ ଯେସନ ଶାରଦ ଗଗନ
ଉଦୟେ ସୁଧାଂଶୁ ଶଶୀ ଗୋ ।

## "ତୁମେ ଯଦି ପ୍ରଭୁ"

ତୁମେ ଯଦି ପ୍ରଭୁ ଗାଇବ ନାହିଁ,
ବୀଣା ବାଜେ କାହିଁ ପାଇଁ ?
ଲଳିତ, କାମୋଦୀ, ବେହାଗ, ବସନ୍ତେ
ଆଉ ମୋର ଲୋଡ଼ା ନାହିଁ ।
ଥାଉ ମୋର ଥାଉ ସ୍ୱର ଆରାଧନା,
ଥାଉ ମୋର ଆଉ ସଙ୍ଗୀତ ସାଧନା,
ବୀଣା ବଇଁଶୀର ସୁମଧୁର ଗିର
ହକୁ ଚିରଦିନ ପାଇଁ,
ତୁମେ ଯଦି ପ୍ରଭୁ ବସିବ ନାହିଁ,
ହୃଦାସନ କାହା ପାଇଁ ?
ଦରଦର ହସି ମଧୁରେ ବିକଶି
ଆଉ ତ ଫୁଟିବ ନାହିଁ,
ମାନସ-କମଳ-ଦଳ ସୁକୋମଳ,
ମଞ୍ଜୁଳ-ବଞ୍ଜୁଳ-କୁଞ୍ଜ-ପରିମଳ
ନିନ୍ଦି ମକରନ୍ଦ-ବାସ ମୃଦୁ-ମନ୍ଦ
ଆଉ ସେ ସ୍ଫୁରିବ ନାହିଁ ।

## କରିଛ ବାରଣ

(୧)

କରିଛ ବାରଣ ନ ଗାଇବି ଗୀତ,
ନୀରବେ ରହିଛି ତେଣୁ ଗୋ,
(କିନ୍ତୁ) ଭୁବନେ ଭୁବନେ ଶୁଭୁଛି ତୁମ୍ଭର
ଲଳିତ ମଧୁର ବେଣୁ ଗୋ ।
ଆପଣା ମନକୁ ଉଚ୍ଛ୍ୱସି ଉଠୁଛି
କଣ୍ଠରୁ ମୋହର ସ୍ୱର ଗୋ.
ସବଳେ କେତେ ମୁଁ ରସନା ରୋଧୁଛି,
ଚାପୁଅଛି ଓଷ୍ଠାଧର ଗୋ ।

(୨)

କରିଛ ବାରଣ ନ ଚାହିଁବି କେଣେ,
ନୟନ ମୁଦିଛି ବନ୍ଧୁ ହେ,
(କିନ୍ତୁ) ଭୁବନେ ଭୁବନେ ବହିଯାଉଅଛି
ରୂପର ସୁଷମା-ସିନ୍ଧୁ ହେ ।
ଆପଣା ମନକୁ ଫିଟିଉଠୁଅଛି
ମୁଦ୍ରିତ ଯୁଗଳ ଆଖି ଗୋ,
ସବଳେ ନୟନ- ପଲ୍ଲବ ଚାପିଣ
ଅଛଇ ତାରାକୁ ରଖି ଗୋ ।

(୩)

ଅନ୍ଧ ପରି ପରା ଏ ବିଶ୍ୱବଜାରେ
ବାଟ ମୁଁ ହରାଣ୍ଡି ନ ପାଏ,
ଲୋକେ ଦେଖୁଥାନ୍ତି ମୋ ଦୁଃଖ ମଉଜେ,
ମାଡ଼ିଣ ଅଥବା କେ ଯାଏ ।

କେଉଁଦିନ ସଖା    ମୁକ୍ତ ଆବରଣ
କରିବ ନୟନ ଦ୍ୱୟର ?
ଦେଖିବି ତୁମର    ରୂପ ଅନୁପମ,
ଶୁଣିବି ତୁମର ସୁସ୍ୱର ।

(୪)

ସ୍ୱର ଦେଇ ତୁମ    ଲଳିତ ବୀଣାରେ
ଗାଇବି ଗୋଟିଏ ଗୀତ ଗୋ,
ଦୂରେ ଦୂରେ ଥାଇ    ଶୁଣିବ ଲୁଚିଣ
ଅଭିମାନ ତେଜି ମିତ ଗୋ ।
ତୁମରି କୁଞ୍ଜରେ    ପଶି ମୁଁ ତୋଳିବି
ଗୀତର କୁସୁମରାଶି ଗୋ,
ଅଞ୍ଜଳି ଅଞ୍ଜଳି    ଦେଲେ ମୁଁ ଚରଣେ
ଆନନ୍ଦରେ ଯିବି ଭାସି ଗୋ ।
ତୁମେ ବଡ଼ ସିନା    ତୁମରି ନିକଟେ,
ମୋ' ନିକଟେ ପ୍ରାଣସଙ୍ଗାତ,
ତୁମେ ବଡ଼ ସିନା    ଆକାଶ ଊର୍ଦ୍ଧ୍ୱରେ,
ମୋ' ହୃଦୟେ ପ୍ରେମସଖା ତ ।
ତୁମେ ବଡ଼ ସିନା    ତୁମ ମହିମାରେ,
ମୋ' ପ୍ରେମରେ ତୁମେ ରାଜା ଗୋ,
ରୂପା ସୁନା ନୁହେ,    ମନର ଭକ୍ତିରେ
କରେ ମୁଁ ତୁମର ପୂଜା ଗୋ ।



## କେତେ କହୁଥାଅ

କେତେ କହୁଥାଅ ରହିବି ନୀରବେ
ତୁମେ ଯଦି କଥା କହିବ,
କେତେ ଆକୁଳତା ରୋଧିବି ହୃଦରେ
ତୁମେ ଯଦି ଗୀତ ଗାଇବ ?
ବରଷା ଆସାରେ ଅଶ୍ରୁ ବରଷିବ
ତୁମରି କୋମଳ ନୟନୁଁ,
ଚାନ୍ଦ-କଉମୁଦୀ-କିରଣେ ସୁନ୍ଦର
ହାସ ବିକଶିବ ବଦନୁଁ ।
ଲୁଚିଁ ଲୁଚିଁ ଯିବ ଅଲକ୍ଷ୍ୟେ ଆଦରେ

କୋମଳ ମଳୟ ପରଶେ,
ଧୈର୍ଯ୍ୟ ଧରି କେତେ ରହିବି ବସି ଗୋ
ପୁଲକି ଉଠୁଛି ହରଷେ ।



## କୂଟନୀତି

ଭୟ କିପାଁ ଏତେ ଦେଖାଉଛ ମୋତେ
ଆଢୁଆଳେ ମୁଖ ଲୁଚାଇ,
ବାଟ-କଢୁଆଳ ଭବ-କାନ୍ତାରେ ଗୋ
ରହୁଛ କିପାଇଁ ପଛାଇ ?
ତୁମ କୂଟ ନୀତି ବୁଝେ ତ ଭକତ
ନିତି ନିତି ତାର ପୟରେ,
ଅଥୟ ହୃଦୟ କର ଦୟାମୟ
ତୁମରି କରୁଣା ଆଦରେ ।
ହାତ ଧରି ବାଟ ଚାଲିବ ପରା ଗୋ,
ହାତ ଛାଡ଼ି ଚାଲି ଯାଉଛ,
"ଅବାଟରେ ଗଲା, ଅବାଟରେ ଗଲା"
ଅକାରଣେ କିପାଁ କହୁଛ ?
ବାଟ କି ଅବାଟ ତୁମେ ଜାଣ ଭଲେ,
ତୁମ କର୍ମ୍ମ ମୋତେ ଜଗିବା,
ତୁମେ ଛାଡ଼ିଗଲେ ଯିବି ତ ଅବାଟେ
(ତହିଁ) ଅନ୍ୟାୟ ମୋ ଦଣ୍ଡ ଭୋଗିବା ।



## କେତେ ଦୋଷ ଧରି

କେତେ ଦୋଷ ଧରି କରୁଛ ବିଚାର
ଦୁର୍ବଳତା ଜାଣି ସକଳ,
ତୁମରି ଇଚ୍ଛାରେ ହୋଇଛି ଅଧମ,
ତୁମର ଇଚ୍ଛାରେ ବିକଳ ।
ତୁମେ ବଡ଼ ମୁହିଁ ସାନ, ଏହା ତୁମ
ପ୍ରେମର ଭିଆଣ ନାଥ ହେ,
ସାନ ହେଲେ ସିନା ରହିଥିବି ପଡ଼ି
ଧରି ତବ ପଦପ୍ରାନ୍ତ ହେ ।
ତୁମରି ଆଦରେ ଛୋଟ ମୁହିଁ ପ୍ରଭୁ,
ତୁମରି ଆଦରେ ବଡ଼ ଗୋ,

ତୁମରି ଆଦରେ ଭଙ୍ଗା କୁଡ଼ିଆ ମୁଁ,
ତୁମେ କରୁଥାଅ ଦଢ଼ ଗୋ ।
ତୁମରି ଆଦରେ ଛିଣ୍ଡା କନ୍ଥା ମୁହିଁ,
ତୁମେ ସିଇଁ କର ନୂତନ,
ଖାଦ ମିଶା ସୁନା, ଖାଣ୍ଟି କର ତୁମେ,
ଗଢ଼ ଅଳଙ୍କାର ଯତନ ।
ଭଙ୍ଗା ବୀଣା ତାର, ତୁମରି ଅଙ୍ଗୁଳି-
ଚାଳନେ ବଜାଅ ମଧୁରେ,
ନିକଟେ ନିକଟେ ଧାଇଁ ଆସ ତୁମେ
ଥିଲେ ମୁହିଁ ଅତି ସୁଦୂରେ ।



# ଯଦି

ତୁମ ଗୀତ ଯେବେ ଗାଇବାକୁ ଦେଲ
ଦିଅ ମୋତେ ରାଗ ରାଗିଣୀ,
ତୁମରି ଲଳିତ ବେଣୁ ବାଇବାକୁ
ଅଙ୍ଗୁଳିରେ ଦିଅ ମୋହିନୀ ।
ତୁମରି କବିତା ଛନ୍ଦିବାକୁ ଯଦି
କରିଅଛ ମୋତେ ଆଦେଶ,
ନବ ନବ ଛନ୍ଦ ଶିଖାଅ ସରାଗେ,
ସଜାଅ ଉପମା-ସୁବେଶ ।
ତୁମ କଥା ଯଦି କହିବାକୁ ମୋତେ
ଆଜ୍ଞା ହୋଇଅଛି ପ୍ରଭୁ ହେ,
ରସନା-ଜଡ଼ତା ବିନାଶି ସବଳ
କର ତାର ସ୍ନାୟୁ ସବୁ ହେ ।
ତୁମ କର୍ମ୍ମ ଯଦି କରିବ ମୋ' କର
ସୁସ୍ଥ କର ଶିରା ସକଳ,
ତୁମ ପଥେ ଯଦି ଚାଲିବ ଚରଣ
କର ହେ ଚଞ୍ଚଳ ସରଳ ।
ତୁମ କଥା ଚିନ୍ତା କରିବ ମୋ' ମନ,
ହର ତା' କଲୁଷ କଳଙ୍କ,
ତୁମ ପ୍ରେମ ଶକ୍ତି ବିରାଜି ମୋ'ଠାରେ
ହରୁ ମୋ' ଦୁର୍ବଳ ଆତଙ୍କ



# ପାରି କର

ସଞ୍ଜ ହେଲା ଆସି ପାରି କର ମୋତେ
ଦେଇ ନ ପାରିବି କଉଡ଼ି,
ସାରା ଦିନ ଖରା ଖରାରେ ଆସିଛି
କେତେ ଦୂର ପଥ ଦଉଡ଼ି ।
ଗରିବ ବୋଲି ମୁଁ ପାରି ନ କରିବ,
ଯିବି କି ନିରାଶେ ବାହୁଡ଼ି ?
ତୁମ ଅପଯଶ ଘୋଷିବ ତ ବିଶ୍ୱ
କ୍ଷୁଦ୍ର ପ୍ରାଣ ଗଲେ ମୋ' ବୁଡ଼ି ।



# ଭିକାରୀ

ତୁମଠାରୁ ଭିକ ପାଇବା ଆଶାରେ
ଭିକାରୀ ବେଶେ ମୁଁ ବୁଲୁଛି,
ଛିଣ୍ଡା କନ୍ଥା କେତେ ସଜାଡ଼ି ପିନ୍ଧିଣ
ଦୁଆରେ ଦୁଆରେ ଫେରୁଛି ।
କାଳେ ଅବା ତୁମ ଦେଖା ମୁଁ ପାଇବି,
ବୁଲେ ତେଣୁ ପଥ ପଥରେ,
ଏହି ବାଟେ ପରା ଯିବ ତୁମେ ଚାଲି,
ବସେ ତେଣୁ ଛକ ଛକରେ ।
ତୁମ ମୁଖ ଛବି ଦିଶିଯିବ ଅବା,
ଚାହେଁ ତେଣୁ ଚଉଦିଗକୁ,
ବହିଗଲା ଯୁଗ ଯୁଗ, ଦେଖା ତୁମେ
ନ ଦେଲ ମୋ' ଉଦବେଗକୁ ।



# ସେ

ସେ କିଏ, ଯାହାକୁ ଖୋଜି ମୁଁ ବୁଲଇ,
ଥାଇ ଚରାଚରେ ମୋତେ ନ ମିଳଇ,
ଜାହାପାଇଁ ମୋ ଏତେ ଅଶ୍ରୁ ବହେ,
ସେ କିଏସେକହ, କା'ପାଇଁ ମୁଁ ଦହେ ?

(୧)
କୁସୁମେ-କୁସୁମେ, ଭରା ସୁଷମାରେ
ଯାହାର ହସିତ ଆନନେ
ଦେଖିଲେ ମୋହକ ହୁଅଇ ଉନ୍ମାଦ,
ଚିର ଚାରୁମୟ ଭୁବନେ ।
ପ୍ରେମ ଜ୍ୟୋତି, ଶକ୍ତି, ଶାନ୍ତି, ମଧୁରତା
ସତେ ସେ ତ୍ରିଦିବତଟିନୀ,
ବହିଆଣୁଅଛି ନିତି ପ୍ରାଣେ ପ୍ରାଣେ
ଭସାଇ ରସାଇ ଅବନୀ ।
(୨)
ସେ କେଡ଼େ ସୁନ୍ଦର, ସେ କେଡ଼େ ମଧୁର,
(ମୁଁ ତ) କଳିପାରୁନାହିଁ ଅନ୍ତରେ,
ଅବଶ ବିମୁଗ୍ଧ ମାନସନୟନେ
ହେରେଁ ନିତି ପ୍ରେମ-ସୁନ୍ଦରେ ।
ଗୋପନେ ଗୋପନେ କହିଯାଏ କାନେ
କିବା କଥା ପ୍ରେମ-ମନ୍ତରେ,
ନିତି ନବସାଜେ ସାଜି ବହୁରୂପା
ପ୍ରାଣ କି ହରେ ସେ ଛନ୍ଦରେ ।
(୩)
(ସେ ତ) ଆକାଶେ, ପବନେ ରାଜେ ବନେବନେ,
ରାଜେ ସେ ସରିତ-ସଲିଳେ,
(ସେ ତ) ଉଷାର ଉରସେ, ନିଶୀଥ-ଆକାଶେ,
ବିରାଜେ ସାଗରେ, ଶଇଳେ,
(ସେ ତ) ପୁରୁଷ ଆନ, ନାରୀ ଅପଘନେ,
ଶିଶୁର ବଦନକମଳେ,
(ତାର) ମୋହନ, ମଧୁର, ଅବ୍ୟକ୍ତ ମହିମା-
ଜ୍ୟୋତି ହୃଦଧରା ଉଜଳେ ।
(୪)
(ସେ ତ) ବିଜ୍ଞାନେ, ସାହିତ୍ୟେ, ଦର୍ଶନେ, ସଙ୍ଗୀତେ,
(ସେ ତ) ବାଜେ ହୃଦ-ବାଜଣାରେ,
ବିଶ୍ୱ ପ୍ରତି କୋଣେ ଉଚ୍ଚାରେ ତା ବାଣୀ
ବିରାଜି କି ଅଣୁ କଣାରେ !
(୫)
ଏତେ ଅଶ୍ରୁଜଳ, ଏତେ ହତାଶ୍ୱାସ,
ଏତେ ଦୁଃଖକାତରୋକ୍ତି,
ଏତେ ଜରାମୃତ୍ୟୁ- ଯାତନା, ବେଦନା,
(କହ) ତହିଁ କି ସେ ପ୍ରେମ ଭକ୍ତି ?
ବିଧବାର ନେତ୍ର- ଅଶ୍ରୁନୀରେ କି ସେ
ଭିକାରୀ କାତର କଣ୍ଠେ ?
ଚାରିଆଡ଼େ ମୁଁ ତ ଶୁଣେ ତାର ସ୍ୱର,
କାହିଁ ସେ ଦୂର ବୈକୁଣ୍ଠେ ।
(୬)
(ସେ କି) ଚିତାର ଭୀଷଣ ଅନଳ ଶିଖାରେ—
ବିକାଶେ ସ୍ୱରୂପ ତାର,
(ସେ କି) ସମାଧି ମନ୍ଦିରେ ପବିତ୍ର ସନ୍ଧ୍ୟାରେ
ବହାଏ ନୟନୁଁ ଧାର ?
ଶତ ଶୋକେ, କଷ୍ଟେ, ଦୁଃଖ-ନିରାଶାରେ,
ବିକାଶେ କି ପ୍ରେମରାଶି,
ବେଦନା-ବିଧୁର ଚିତ୍ତେ କି ତାହାର
ରୂପପ୍ରଭା ଉଠେ ଭାସି ?
ପ୍ରାଣେ ପ୍ରାଣେ ମୋର ତା' ପ୍ରେମ ମାଧୁରୀ
ଭରି ରଖିଛି ସେ ସଖା,
ହୃଦୟ ଭିତରେ ଶୁଣେ ତା' ସୁସ୍ୱର
ଦୂର କରି ଶତ ଦକା ।
ପ୍ରାଣର ପରମ ଦେବତା ସେ ମୋର,
ଶତ ଦୁଃଖଦୈନ୍ୟରାଶି
ନିମିଷେକେ କାହିଁ ଭାସିଯାଏ ଆହା
ଦେଲେ ଦେଖା ପ୍ରାଣେ ଆସି
ବାହୁରେ ସେ ମୋର୍ ଅସୀମ ଶକତି,
ହୃଦୟେ ଭକତି ସ୍ନେହ,
ଶ୍ରେଷ୍ଠ, ପ୍ରି. ସାର ଜୀବନେ ମୋର ସେ
ପୂର୍ଣ୍ଣ ବ୍ରହ୍ମ ନିରାମୟ ।



## ସ୍ତବ

ନିର୍ମଳ ମଞ୍ଜୁଳ, ଆଲୋକମୟ,
ପାତକ-ବିନାଶକ ଶାନ୍ତିନିଳୟ,
ଯୁଗଳ-ଉଚ୍ଛଳ-ପୟର-ପ୍ରାନ୍ତେ
ନମେ ଆଜି ପାତକି-ଚିତ୍ତ ଏକାନ୍ତେ ।



# ଉଚ୍ଛ୍ୱାସ

ଉତ୍କଳଭାରତୀ

ଶ୍ରୀମତୀ କୁନ୍ତଳା କୁମାରୀ ସାବତ, ଏଲ୍.ଏମ୍.ପି.

# ନିବେଦନ

ଏହି କ୍ଷୁଦ୍ର ପୁସ୍ତକ ଅନ୍ତର୍ଗତ ପଦ୍ୟ ମଧ୍ୟରୁ ଅଧିକାଂଶ "ଉତ୍କଳ ସାହିତ୍ୟ"ରେ ପ୍ରକାଶିତ ହୋଇଥିଲା। ସେ ସମୟରେ ସହୃଦୟ ପାଠକପାଠିକାମାନଙ୍କଠାରୁ ଯଥେଷ୍ଟ ଉତ୍ସାହ ଓ ସାହାନୁଭୂତି ପାଇଥିବାରୁ ପଦ୍ୟଗୁଡ଼ିକ ପୁସ୍ତକାକାରରେ ପ୍ରକାଶ କରିବାକୁ ସାହସୀ ହେଲି। ଆଶାକରେ, ସୁଧୀବୃନ୍ଦ ମୋହର ତ୍ରୁଟି ଥିଲେ ମାର୍ଜନା କରିବେ।

ପରିଶେଷରେ ମୋହର ପରମଶ୍ରଦ୍ଧାସ୍ପଦ କବି ରାୟସାହେବ ଶ୍ରୀଯୁକ୍ତ ନନ୍ଦକିଶୋର ବଳ, ବି.ଏ., ବି.ଟି. ମହାଶୟ "ଉଲ୍ଲାସ"ର କବିତାଗୁଡ଼ିକୁ ପାଠକରି ଯେଉଁ ଉତ୍ସାହଜନକ ମନ୍ତବ୍ୟ ପ୍ରକାଶ କରିଅଛନ୍ତି, ତାହା ପୁସ୍ତକର ଭୂମିକା ଆକାରରେ ପ୍ରକାଶ କଲି ଏବଂ ସେଥିପାଇଁ ମୁଁ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ନିବେଦନ କରୁଅଛି।

କଟକ — । ଇତି ।

୨୫.୭.୧୯୨୪ — **ପୁଣ୍ୟଶେତ୍ରୀ**

# ଭୂମିକା

କୁମାରୀ କୁନ୍ତଳାକୁମାରୀ ସାବତଙ୍କ ପ୍ରଣୀତ ''ଉଚ୍ଛ୍ୱାସ'' ନାମକ କବିତା ପୁସ୍ତକ ପଢ଼ି ମୁଁ ଅତି ଆନନ୍ଦିତ ହୋଇଅଛି । କବିଙ୍କର ଏହି ପ୍ରାଣର ''ଉଚ୍ଛ୍ୱାସ''ରେ ଶେଫାଳୀ ପ୍ରତି, ଚନ୍ଦ୍ର ପ୍ରତି, କାମିନୀ ପ୍ରତି, କମଳ ପ୍ରତି, ତାରା ପ୍ରତି ଓ ସହକାର ପ୍ରତି ଏହି ଛଅଟି କବିତା ତରଙ୍ଗ ଉଚ୍ଛ୍ୱସିତ ହୋଇଅଛି । ପ୍ରକୃତିର ଯେଉଁ ସାମଗ୍ରୀମାନ କବିମାନଙ୍କର ଚିର ସମ୍ୱଳ, ଆମ୍ଭମାନଙ୍କ କବି ତନ୍ମଧ୍ୟରୁ ଶ୍ରେଷ୍ଠ ଛଅଟି ବାଛି ନେଇ ଅତି ମନୋହର ଭାଷାରେ ଏହି କମନୀୟ ହାରଟି ଗୁନ୍ଥି ଉତ୍କଳଭାରତୀଙ୍କ କଣ୍ଠରେ ପିନ୍ଧାଇ ଦେଇଅଛନ୍ତି । କବି କୁନ୍ତଳାକୁମାରୀ ଇତିପୂର୍ବେ ''ମଣିକାଞ୍ଚନ'', ''ବୈଶାଖ'' ପ୍ରଭୃତି ବହୁ ସୁକବିତା ''ଉତ୍କଳ ସାହିତ୍ୟ'' ପତ୍ରିକାରେ ପ୍ରକାଶ କରି ଏବଂ ତଦୀୟ ''ଭ୍ରାନ୍ତି'' ଓ ''ଅଞ୍ଜଳି'' ଗ୍ରନ୍ଥଦ୍ୱୟ ପ୍ରଣୟନ ଓ ପ୍ରକାଶପୂର୍ବକ ଉତ୍କଳର ସାରସ୍ୱତ ଧାମରେ ସ୍ୱାଗତ ସମ୍ଭାଷଣ ସହକାରେ ଗୃହୀତ ହୋଇ ସାରିଅଛନ୍ତି । ବର୍ତ୍ତମାନ ପ୍ରାଣର ଗଭୀରତମ ପ୍ରଦେଶରେ ଭାବତରଙ୍ଗ ସମ୍ୱଳିତ ଏହି ''ଉଚ୍ଛ୍ୱାସ'' ଗ୍ରନ୍ଥ ପ୍ରକାଶ କରିବା ଦ୍ୱାରା ସେ ଉତ୍କଳ ସାହିତ୍ୟ, ତଥା ଉତ୍କଳ ନାରୀସମାଜକୁ ଗୌରବାନ୍ୱିତ କରିଅଛନ୍ତି । ଏତେ ଅଳ୍ପ ବୟସରେ ଏବଂ ସାହିତ୍ୟ-ଚର୍ଚ୍ଚାର ପ୍ରତିକୂଳ ଡାକ୍ତରି ବିଦ୍ୟାନୁଶୀଳନ ମଧ୍ୟରେ ନାରୀ କାହିଁକି, ପୁରୁଷ ଲେଖକ ଓ କବି ମଧ୍ୟରେ ସୁଦ୍ଧା କୁନ୍ତଳାଙ୍କ ପ୍ରତିଦ୍ୱନ୍ଦୀ ଉତ୍କଳରେ ବିରଳ । ତଦୀୟ ନିସର୍ଗଦତ୍ତ ପ୍ରତିଭାହିଁ ତାଙ୍କର ଅଦ୍ଭୁତ ବିକାଶର ହେତୁ ବୋଲି ପ୍ରତୀୟମାନ ହୁଏ ।

ଅମ୍ଭମାନଙ୍କ ନବୀନ କବିଙ୍କର ଗୋଟିଏ ବିଶେଷତ୍ୱ ଏହି ଯେ, ତାଙ୍କର ସବୁ କବିତା ଭଗବତ୍‌ପ୍ରେମ ଦ୍ୱାରା ପବିତ୍ରୀକୃତ ଓ ଧର୍ମଭାବାନୁପ୍ରାଣିତ । ଅୟସ୍କାନ୍ତ ମଣି ଯେପରି ସର୍ବଦା ଓ ସର୍ବତ୍ର ଚୁମ୍ୱକପ୍ରସ୍ତର ପ୍ରତି ଆକୃଷ୍ଟ ହୁଏ, ସେହିପରି ଏହି କବିଙ୍କର ସବୁ କବିତା ଈଶ୍ୱରଭକ୍ତିପୂତ ଓ ପୁଣ୍ୟଭାବବିଧୌତ ଅଟେ । ଜଗତର ଶ୍ରେଷ୍ଠ ଭକ୍ତ ଓ କବିମାନେ ତିନି ରୂପରେ ଈଶ୍ୱରସତ୍ତା ଅନୁଭବ କରି ପାଠକସମାଜ ସମ୍ମୁଖରେ ସମୁପସ୍ଥାପିତ କରିଥାଆନ୍ତି; ଯଥା- ପ୍ରକୃତିରେ ପରମେଶ୍ୱର (God in Nature), ମାନବ ସମାଜ ବା ଇତିହାସରେ ଈଶ୍ୱର (God in Society or God in History) ଏବଂ ମାନବାତ୍ମାରେ ଈଶ୍ୱର (God in the Human Soul) । ଆମ୍ଭମାନଙ୍କ ନବୀନ କବି ଅଳ୍ପ ବୟସରେ ନିସର୍ଗ ଲାବଣ୍ୟ ମଧ୍ୟରେ ବିଶ୍ୱ ସ୍ରଷ୍ଟାଙ୍କର ମହୀୟାନ୍ ସତ୍ତାର ନିଦର୍ଶନ ପାଇ ଏବଂ ଗଭୀରଭାବରେ ତାହା ପ୍ରାଣରେ ଅନୁଭବ କରି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ଆଦିରସ ବହୁଳ ଉତ୍କଳ ସାହିତ୍ୟ ଏପରି ପୁଣ୍ୟସଙ୍ଗୀତ ଦ୍ୱାରା ପୁଣ୍ୟ ଶ୍ରୀମଣ୍ଡିତ ହୋଇଅଛି । ମୁଁ ଆଶା କରେଁ, କବି କୁନ୍ତଳାକୁମାରୀଙ୍କ ଏହି ପବିତ୍ର ସୁନ୍ଦର ଆରତିସଙ୍ଗୀତରେ କାଳେ ଉତ୍କଳ-ସାହିତ୍ୟ-ମନ୍ଦିର ଅଧିକ ପ୍ରତିଧ୍ୱନିତ ହେବ ଏବଂ ତଦୀୟ ଧୂପଧୂନାସୌରଭ ଓ ପୂଜାପୁଷ୍ପଚନ୍ଦନର ପରିମଳ ଦ୍ୱାରା ତାହା ଆମୋଦିତ ହେବ ।

କୁନ୍ତଳା କୁମାରୀଙ୍କର ଅନ୍ୟ ଗୋଟିଏ ବିଶେଷତ୍ୱ ଏହି ଯେ, ତଦୀୟ କବିତାରେ ଗୋଟିଏ ଅପୂର୍ବ ଭାବାବେଶ ଅଛି । ଯେଉଁ ଗୁଣ ଥିବାରୁ ବଙ୍ଗର ନାରୀ କବି କାମିନୀ ସେନଙ୍କର ''ଆଲୋ ଓ ଛାୟା'' ଏଡ଼େ ମଧୁର ଓ ମର୍ମସ୍ପର୍ଶୀ, ''ଉଚ୍ଛ୍ୱାସ''ର ସ୍ଥାନେ ସ୍ଥାନେ ସେହି ଆବେଶର ଆଭାସ ପାଇ ମୁଁ ମୁଗ୍ଧ

ହୋଇଅଛି। ଭଗବାନ୍ ଆଶୀର୍ବାଦ କରନ୍ତୁ, ଏହି ଅକାଳବାର୍ଦ୍ଧକ୍ୟ-ପ୍ରପୀଡ଼ିତ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ଏହି ନବୀନ କବି ଦୀର୍ଘକାଳ ଲେଖନୀ ଚାଳନା କରି ସ୍ୱୀୟ ଅନନ୍ୟସୁଲଭ ପ୍ରତିଭାର ସଦ୍‌ବ୍ୟବହାରପୂର୍ବକ ତାହାର, ତଥା ଉତ୍କଳ ସାହିତ୍ୟର ବିକାଶସାଧନ କରନ୍ତୁ।

ଇତି ମଧ୍ୟରେ କେତେକ ପ୍ରବୀଣ ସାହିତ୍ୟସେବକ ମତ ଦେଇ ସାରିଲେଣି, କୁନ୍ତଳା କୁମାରୀ ରଚନା-ପ୍ରାଚୁର୍ଯ୍ୟ-ଦୋଷଯୁକ୍ତ (Prolific writer)। ସାହିତ୍ୟ ସର୍ଜ୍ଜନାଠାରୁ ସାହିତ୍ୟ ସମାଲୋଚନା ସବୁ ଯୁଗରେ ସହଜତର। କବିଠାରୁ ସମାଲୋଚକ ଚିରଦିନ ବଡ଼ ହୁଏ। ଆଧୁନିକ ଉତ୍କଳ ଯାହା ହେଉ, ଏହା ବହୁ କାବ୍ୟ-କବିତା-ସଙ୍ଗୀତ-ସ୍ରଷ୍ଟା ଉପେନ୍ଦ୍ର ଭଞ୍ଜଙ୍କ କାର୍ଯ୍ୟକ୍ଷେତ୍ର। ନିର୍ଭୀକଭାବରେ କୁନ୍ତଳାକୁମାରୀଙ୍କ ଲେଖନୀ ଅଜସ୍ର ଚାଳିତ ହେଉ।

ଜଗତ୍ ପୂର୍ଣ୍ଣତାର ସ୍ଥାନ ନୁହେ। ଯେଉଁ ଆବେଶମୟୀ ଭାଷା ପ୍ରାଚୀନ ଉତ୍କଳ ସାହିତ୍ୟର କମନୀୟ ପରିଚ୍ଛଦ, ଯେଉଁ "ପାଟପୋତାମ୍ବରୀ" ଭଞ୍ଜ-କବିସୂର୍ଯ୍ୟଙ୍କ ନିସର୍ଗଦତ୍ତ ତୂଳିକାର ଚିର-ସହଚର ଯାହା ରାଧାନାଥ ଧୁରନ୍ଧରରୂପେ ଅନୁକରଣ କରିପାରିଥିଲେ, ସେହି ଶବ୍ଦବିଭବ ଓ ଶବ୍ଦ ସଂଯୋଜନା, "ଉଚ୍ଛ୍ୱାସ"ରେ ଅଧିକ ନ ଥିଲେ ହେଁ ତହିଁରେ ବିଷୟର ଉପଯୋଗୀ ଓ ଆଧୁନିକ ପ୍ରାଞ୍ଜଳ ପଦବିନ୍ୟାସ-ପାଟବର ଅଭାବ ନାହିଁ। କବିଙ୍କର ପ୍ରଥମ କାର୍ଯ୍ୟକ୍ଷେତ୍ର ଅନ୍ୟତ୍ର ଥିଲେ ହେଁ ଆଶା ଅଛି, ବୁଦ୍ଧିମତୀ ଲେଖିକା କାଳକ୍ରମେ ଓଡ଼ିଆ ଭାଷାର ନିଜସ୍ୱକୁ ଆୟତ୍ତ କରି ଅଧିକ ଭାବରେ ପ୍ରୟୋଗ କରିବେ।

ଉଦାର ବିଶ୍ୱଜନୀନ ଭାବ କବିଙ୍କର ଅନ୍ୟତମ ବିଶେଷତ୍ୱ। ତାଙ୍କ କବିତାରେ ଭାରତ ଆସମୁଦ୍ର ପୃଥିବୀ ନୁହେ, ଭାରତ ପୃଥିବୀର ଅଂଶ ମାତ୍ର।

"ସାରଳା ଉପେନ୍ଦ୍ର କାଳିଦାସ ଆଦି
ହୋମର ହାଫେଜ ଭବଭୂତି ସାଦି
ବାଇରନ୍ ଶେଲି ମୁର ଟେନିସନ୍
...                    ... ମିଲ୍ଟନ୍।"
"...  ସୀତା ଦୁର୍ଗାବତୀ ମୀରା
ପୁଣ୍ୟବତୀ ଦେବୀ ରାଣୀ ଭିକ୍ଟୋରିଆ
ଅହଲ୍ୟା ଫ୍ଲରେନ୍‌ସ୍ ମୂର୍ତ୍ତିମତୀ ଦୟା।"
"ନିରଞ୍ଜନାକୂଳେ ମହାବୋଧିମୂଳେ
ଶାକ୍ୟସିଂହ ...
ଘୋର ମରୁଦେଶେ ଋଷି ମହମ୍ମଦ
ଖ୍ରୀଷ୍ଟ ଚୈତନ୍ୟଙ୍କ ମହାପ୍ରେମଧର୍ମ।"
"...    .... ପ୍ରଜାରଞ୍ଜନ ଶ୍ରୀରାମ
ସୂତ୍ରଧରସୁତ କ୍ଷୁଦ୍ର ନାଜରିତ
ବାସସ୍ଥାନ ଯାର ଜଗତେ ବିଦିତ।"

''ଭୀଷଣ ଦାସତ୍ୱ ପ୍ରଥାରେ ଥିଓଡ଼ର''
''ତେଜସ୍ୱୀ ତରୁଣ କାସାବିଏଙ୍କା''
''ବୀର ସିକନ୍ଦର'' ''ନେପୋଲ୍ୟେନ୍ ମହାବୀର''
''ସାଧୁ ଫର୍ଡ଼ିନାଣ୍ଡ୍''
''ତାଜମହଲ'' ''ନୀଳାଚଳ''
''ନରରକ୍ତ ପାୟୀ ବର୍ବର ଆରବ''
''ଆଫ୍ରିକା ପ୍ରାନ୍ତରେ ସଦ୍ୟମାଂସଭୋଜୀ —
କାଫ୍ରି କୁଟୀର''

ଏ ସମସ୍ତଙ୍କ ସ୍ଥାନ ତାଙ୍କ କବିତାକ୍ଷେତ୍ରର ଅନ୍ତର୍ଗତ ।

ନାନା ଉଦ୍ଦେଶ୍ୟରେ ଓ ନାନା କର୍ମକ୍ଷେତ୍ର ଅବଲମ୍ବନ କରି ସାହିତ୍ୟ ସୃଷ୍ଟି ଓ କାବ୍ୟ ରଚନା ହୋଇଥାଏ । ଇଂରେଜ ନାରୀ କବି ଶ୍ରୀମତୀ ହେମାନ୍‌ସ (Mrs Hemans) କେତୋଟି ପାରିବାରିକ ଜୀବନସମ୍ବନ୍ଧୀୟ କବିତା ଓ ବାଳକ ବୀର କାସାବିଏଙ୍କାର ଜ୍ୱଳନ୍ତ କର୍ତ୍ତବ୍ୟ-ପରାୟଣତା ଓ ମହୀୟାନ୍ ମୃତ୍ୟୁର ବିଷାଦଗାଥା ଗାଇ ଇଂରାଜୀ ସାହିତ୍ୟଜଗତରେ ଅମର ହୋଇଅଛନ୍ତି । ଲଙ୍ଗଫେଲୋ କେବଳ ତାଙ୍କର ଜୀବନ-ସଙ୍ଗୀତ (Psalm of Life) ଲେଖି ଏବଂ କବି ଗ୍ରେ ତଦୀୟ ଗ୍ରାମଶ୍ମଶାନ କବିତାଦ୍ୱାରା ଚିରଜୀବିତ । ବଙ୍ଗ କବି କାମିନୀ ସେନ ନିରାଶ ପ୍ରଣୟର ମର୍ମସ୍ପର୍ଶୀ ଗାଥା ଗାଇ ସାହିତ୍ୟରେ ଉଚ୍ଚ ସ୍ଥାନ ଲାଭ କରିଅଛନ୍ତି । ''ବିଭୁଙ୍କର ସମସ୍ତ ବିଧାନ ମଙ୍ଗଳମୟ ଏହା ସମର୍ଥନ କରିବା (To justify the ways of God to man)'' କବିବର ମିଲ୍‌ଟନ୍‌ଙ୍କ ମତରେ କବିତାର ଉଦ୍ଦେଶ୍ୟ । କବିତାର ଏହି ମହତ୍ ଉଦ୍ଦେଶ୍ୟ ସାଧିତ ହୋଇଥିବାରୁ କବୀନ୍ଦ୍ର ରବୀନ୍ଦ୍ରଙ୍କ ''ଗୀତାଞ୍ଜଳି'' ଜଗଦ୍‌ବିଖ୍ୟାତ । ଆମ୍ଭମାନଙ୍କ ଉତ୍କଳର ଏହି ବାଳିକା କବି ପୂଜାକୁସୁମମାଳା ହସ୍ତରେ ଧାରଣ କରି ''ମନ୍ଦିରପଥବର୍ତ୍ତିନୀ'' ରୂପେ ଆଜି ଦଣ୍ଡାୟମାନା । ନାରୀ କବି ପକ୍ଷରେ ଏହାହିଁ ବିଶେଷଭାବରେ ଶୋଭନୀୟ । "ଉଚ୍ଛ୍ୱାସ'' କବିଙ୍କର ଉଦ୍ଦାମ ଉଚ୍ଛ୍ୱାସତରଙ୍ଗସେହି ମଙ୍ଗଳବିଧାତା ମହତୋମହୀୟାନ୍ ବିଶ୍ୱନିୟନ୍ତା ଅଥଚ ଚିରଲୀଳାମୟ ପ୍ରାଣର ଶ୍ରୀହରିଙ୍କ ଶ୍ରୀପାଦପଦ୍ମରେ ସମର୍ପିତ । କବିତାର ଛତ୍ରେ ଛତ୍ରେ ଏହି ଧର୍ମଭାବ, ଈଶ୍ୱରନିର୍ଭରଶୀଳତା, ସେବାଧର୍ମରେ ପ୍ରାଣ ଉତ୍ସର୍ଗ କରିବାର ଆକାଙ୍କ୍ଷା ପରିସ୍ଫୁଟ ହୋଇଅଛି । କବିଙ୍କ ନିଜ ଅମୃତମୟୀ ଭାଷାରେ ତାହା ଆମ୍ଭେମାନେ ଶୁଣିବା ।

(୧)

''ଶେଫାଳି !

ତୋହପରି କ୍ଷୁଦ୍ର ମୁହିଁ ତୋହ ପରି କ୍ଷଣିକ,
ହସେ, ବସେ, ରସେ ମାତ୍ର ଫୁଟି ଅଛି ଘଡ଼ିକ,
ମାଟିରେ ମିଶିବୁ ତୁହି, ମାଟିରେ ମିଶିବି ମୁହିଁ,
ତଥାପି ମୋ ଆତ୍ମାଫୁଲ ନ ଯିବ ତ ମଉଳି,
ତେଣୁ ଆଶା ବହି ଦିନ କାଟେଁ ଗଙ୍ଗଶିଉଳି !''

(୨)

''ଚନ୍ଦ୍ର !

ଅନ୍ତରେ ତାହାର ଶୁଣେ ମଧୁସ୍ୱର,
କର୍ତ୍ତବ୍ୟ କାରଣେ ଡାକେ ନିରନ୍ତର,
କର୍ତ୍ତବ୍ୟରେ ସୁଖ କହେ ନିତି ମୋତେ,
କର୍ତ୍ତବ୍ୟ, କର୍ତ୍ତବ୍ୟ ବୁଝିବି କେମନ୍ତେ ?
ତୁ ବୁଝୁ କର୍ତ୍ତବ୍ୟ ତୋର,
ସ୍ୱସମୟେ ଉଦି ଅସ୍ତରେ ଜଣାଉ—
କର୍ତ୍ତବ୍ୟରେ ସୁଖ ମୋର ।''

(୩)

''କର ଲୋ ତୋ ପରି ମୋତେ କାମିନୀ ସୁନ୍ଦରି !
କର ପୂତ ସୁବାସିତ ମୋ କ୍ଷୁଦ୍ର ହୃଦୟ,
ଢ଼ାଳୁ ପ୍ରତି ପ୍ରାଣେ ପ୍ରେମପୂତ ଶାନ୍ତିବାରି,
ହେଉ ମୋ ଭୂଷଣ ଲଜ୍ଜା, ନମ୍ରତା, ବିନୟ ।''

(୪)

''ସେ କାନ୍ତ କିରଣ ବିନା କାନ୍ଦେ ଅହରହ,
ଜୀବନ-ବସନ୍ତ ମୋର ଏ ମଧୁ-ପ୍ରଭାତେ
ଉଦିବେ ସେ ପ୍ରେମଭାନୁ ହୃଦାକାଶପ୍ରାନ୍ତେ,
ଅବା ଅଜ୍ଞାନତାଘନ କରିଅଛି ସମାଚ୍ଛନ୍ନ
ମୋହର ହୃଦୟ ପୁଣ୍ୟ ପ୍ରେମମୟ ରବି,
କ୍ଷଣେ ଅପସରିଗଲେ ଦିଶିଯିବ ଛବି ।''

(୫)

''ଜାଣେ ମୋର ହେବ ନିଶ୍ଚୟ ପତନ,
ନଭି ଦୁଃଖ କିନ୍ତୁ କରିବି ଯତନ,
ଉଠି ପଡ଼ି ମୁହିଁ ଧାଇଁବି ଏକାଗ୍ରେ,
ପର୍ବତ ସମାନ ବିଘ୍ନ ଆସୁ ଅଗ୍ରେ
ଅବହେଳି ତାହା ଦଳି ପଦତଳେ
ଧାଇଁଯିବି ପ୍ରଭୁ ଶୁଭାଶିଷ ବଳେ
ସମର୍ପି ହୃଦୟ ମନ
ପାଦପଦ୍ମତଳେ ଅନନ୍ତ ବିଶ୍ୱାସେ
ତେଜି ତୁଚ୍ଛ ଅହଂଜ୍ଞାନ ।''

(୬)

''ରେ ରସାଳଦ୍ରୁମ !

ଶିଖାଅ ହେବି ତୋ ସମ

ସୁବିନୀତ ନମ୍ରମନ,

ଅକାତରେ ଭବସେବା ଯାଉଥିବି କରି,

ମୋ କ୍ଷୁଦ୍ର ଆୟାସେ ବହୁ କ୍ଲେଶ ନେବି ହରି ।

ପ୍ରତିଦାନ ବିନା ହିତ କରିବି ତୋ ପରି ।''

ଏହା ଉପରେ କଥା ନାହିଁ । ଏହି ନିଷ୍କାମଧର୍ମହିଁ ମାନବର ଶ୍ରେଷ୍ଠ ଧର୍ମ । ଜ୍ଞାନୀ ହୁଅ, ଧର୍ମବୀର ହୁଅ, କର୍ମବୀର ହୁଅ, ସ୍ୱଦେଶପ୍ରେମିକ ହୁଅ, କବି ହୁଅ, ଏହି ଅପୂର୍ବ ସେବାଧର୍ମର ପ୍ରଚାର ଓ ଆଚାରଦ୍ୱାରା ସ୍ୱଦେଶ, ସ୍ୱଜାତି ତଥା ସାରା ଧରିତ୍ରୀର ମୁଖ ଉଜ୍ଜ୍ୱଳ କରି ସ୍ୱଜୀବନ ଧନ୍ୟ କର ।

ଡେଲାଙ୍ଗ, ପୁରୀ

୨୫ । ୭ । ୧୯୨୪ — *ଶ୍ରୀ ନନ୍ଦକିଶୋର ବଳ*

# ସୂଚୀପତ୍ର








## (ପ୍ରଥମ ତରଙ୍ଗ)

## ଶେଫାଳୀ ପ୍ରତି

ଶେଫାଳି !
　କେଉଁ ଦୂର ତରୁବରେ ଫୁଟିଅଛୁ ଗୋପନେ,
　ଭୁରୁଭୁରୁ ଗନ୍ଧ ତୋର ଭାସି ଆସେ ପବନେ ।
ବାତାୟନ ପାଶେ ବସି　ଚାହେଁ ନବୋଦିତ ଶଶୀ
　ହସି ହସି ସତେ ଉଇଁଆସେ ଦୂର ଗଗନେ,
　ଭାବାବେଶେ ମୁଗ୍ଧ ମୁଁ କି ମଜ୍ଜିଅଛି ସ୍ୱପନେ ।

　ଭାବରାଜ୍ୟେ ବୁଲେଁ ସତେ ହଜିଅଛି ଚେତନା,
　ଅନ୍ତର ଅନନ୍ତ ରାଜ୍ୟେ ପୂରିଅଛି କଳ୍ପନା ।
ବିଶାଳ ଏ ବିଶ୍ୱକ୍ଷେତ୍ରେ　ଅର୍ଦ୍ଧନିମୀଳିତ ନେତ୍ରେ
　ଦେଖେଁ ସତେ ଶୋଭାରାଶି ପଡୁଅଛି ଉଚ୍ଛୁଳି,
　ତହିଁ ସୁଧା ଢାଳୁ କିରେ ଗନ୍ଧେ ଗଗନଶିଉଳି !

　ଶାରଦ ଦିନାନ୍ତେ ବସି ବାତାୟନ ପାଶରେ
　ବୁଡ଼ିଅଛି ମନ ମୋର କିବା ପ୍ରେମରସରେ,
ଆବେଶେ ପୁଲକେ ମୋର　ନୟନରୁ ବହେ ଧାର,
　ହୃଦତନ୍ତ୍ରୀ ବାଜିଉଠେ କି ଅମୃତ ସୁସ୍ୱରେ,
　ନିମିଷେ ଭାବଇଁ ମୁଁ ତ ଅଛି ଅବା ସ୍ୱର୍ଗରେ ।

　ସାରାଦିନ ପରିଶ୍ରମ କ୍ଳେଶ କ୍ଳାନ୍ତି ଅଶେଷ,
　ନାନା ଚିନ୍ତା ରୋଗ ଶୋକ କଷ୍ଟ ହେଲା ବିଶେଷ ।
ଯହୁଁ ରବି ଅସ୍ତାଚଳେ　ଧୀରେ ଧୀରେ ଚଳିଗଲେ,
　ସନ୍ଧ୍ୟାଗାଥା ଗାଇ ପକ୍ଷୀ ଫେରିଲେ ସ୍ୱସଦନେ,
　ତମୋରାଶି ବୋଳିଦେଲା ନିଶା ଧରା ଆନନେ ।

　ନୀଳ ନଭ ମଣ୍ଡି ଧୀରେ ହସି ଦୀପ୍ତଲୋଚନେ
　ଦେଖା ଦେଲେ ଶତ ଶତ ତାରା ଜ୍ୟୋତିବସନେ ।
ଅଙ୍ଗେ ବୋଳି ସୁଧାରାଶି　ଶଶାଙ୍କ ଉଇଁଲା ଆସି
　ଝରି ଝରି ପଡ଼ିଲା କି ଭୁବନରେ ଅମୃତ,
　ସତେ କି ଧରଣୀରାଣୀ ଦୁଃଖ ହେଲା ବିସ୍ମୃତ ।

　ରବି ବିରହରେ ଧନୀ କାନ୍ଦିଥିଲା ମଉନେ
　ଅବସାଦେ ନତ ନେତ୍ରେ ବିଷାଦିତ ବଦନେ,
ଚାନ୍ଦ କି ଆସିଲା ଉଇଁ　ଚାନ୍ଦିନୀ ବୁନ୍ଦିଲା ଭୁଇଁ
　ହସିଲା କି ବସୁମତୀ ଚାରୁ ଶୁଭ୍ର ଦୁକୂଳେ,
　ଫୁଟିଲୁ ଶେଫାଳି ରହି ତୁ କି ପ୍ରେମଆକୁଳେ !

ଶେଫାଳି !
　ମୃଦୁ ମୃଦୁ ଗନ୍ଧ ତୋର ଭାସିଆସେ ପବନେ,
　ଛନ ଛନ ପ୍ରାଣ ମୋର କି ଆକୁଳ ଗୋପନେ !
ସତେ ମୋର ଦୁଃଖରାଶି　କ୍ଷଣେ କାହିଁ ଗଲା ଭାସି,
　କେତେ କି କଳ୍ପନା ମନେ ଆସୁଅଛି ବିଜନେ,
　କ୍ଷଣେ ପହଞ୍ଚିଲି ସତେ ଯାଇଁ ସ୍ୱର୍ଗଭୁବନେ ।

ଶେଫାଳି !
　କ୍ଷୁଦ୍ର ତୋର ତନୁ, ତହିଁ ଭରା ଏତେ ଅମୃତ,
　ବିଧିଲୀଳା କେ ବୁଝିବ, ଜ୍ଞାନାତୀତ ଅଦ୍ଭୁତ !
ଗୋପନେ ଫୁଟିଛୁ ଦୂରେ　ତରୁପତ୍ର ଗହଳରେ,
　ତଥାପି ତୋ ବାସେ ମୋର ପ୍ରାଣ ହୁଏ ଆକୁଳ,
　କହ କେଉଁ ଶିଳ୍ପୀ ତୋତେ ଗଢ଼ିଅଛି ରେ ଫୁଲ !

　କି କୋମଳ କି ଲଳିତ କି ମଧୁର ସୁରଭି,
　କର୍କଶ କୁତ୍ସିତ ପତ୍ରେ ଶୋଭେ କିନ୍ତୁ ଅଟବୀ ।
ରୁକ୍ଷ ପତ୍ରରାଶି କୋଣେ　ଫୁଲ ଫୁଟୁ ଏତେ ଗୁଣେ,
　ଲୁଚି ଲୁଚି ବାସେ ତାର ମୁଗ୍ଧ କରୁ ସଂସାର,
　ନୀଚ ମଧ୍ୟେ ଉଚ୍ଚ ସୃଷ୍ଟି ବିଧାତାର ବିଚାର ।

　ପଙ୍କେ ପଦ୍ମ ଗଢ଼ିଅଛି ବିଧାତା କି ଯତନେ,
　ଶାମୁକା ଗରଭେ ନିହିଅଛି ମୁକ୍ତା ରତନେ,
କଳାମେଘ କନ୍ଦରେ　ସୌଦାମିନୀ ଶୋଭା ଧରେ,
　କଳା କୋକିଳ କଣ୍ଠରେ ପୂରିଅଛି ପୀୟୂଷ,
　ତୁଚ୍ଛ ଭବେ ନୁହେ କିଛି, କ୍ଷୁଦ୍ର ତୋର ସଦୃଶ ।

ଶେଫାଳି !
ମନେ ମନେ ରୂପ ତୋର କଳ୍ପନାରେ ଆସେ କି,
ଭାବି ଭାବି କଥା ତୋର ଉଲ୍ଲାସରେ ଭାସେ କି ?
ଏକ ରାତ୍ରି ପାଇଁ ଫୁଟି ସୁବାସେ ଯାଉଛୁ ଲୋଟି,
କ୍ଷୁଦ୍ର ତୋର ଜୀବନରେ ସୁମହତ ବିକାଶ,
କ୍ଷୁଦ୍ର ବୋଲି ମୁହିଁ କିପାଁ ହୋଇବି ରେ ନିରାଶ ?

ଶେଫାଳି !
କ୍ଷୁଦ୍ର ମୁହିଁ ଦୀନ ମୁହିଁ ରେଣୁକଣା ଜଗତେ,
ଚାହିଁଲେ ବିଶାଳ ବିଶ୍ୱ ଆସୁଛି କି ପରତେ ?
କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ ଅକାରଣେ ଜନ୍ମିନାହିଁ,
ଅନନ୍ତ ବିନାଶ ମୋର ଲେଖାନାହିଁ କପାଳେ,
ଏକ ରାତି ପାଇଁ ଫୁଟି ଝଡ଼ିଯିବି ସକାଳେ !

ଶେଫାଳି !
ନିତି ପ୍ରାତେ ଦେଖେଁ ପଡ଼ିଅଛୁ ତରୁମୂଳରେ,
ଢଳ ଢଳ ହିମବିନ୍ଦୁ ଶୋଭେ ଶୁଭ୍ର ଦଳରେ,
ଫୁଟିଛେ ପ୍ରବାଳ ପରା ଗଠିତ ତୋ ତନୁ ତୋରା,
ମନୋନ୍ମାଦକର ତହିଁ ବୁରିଅଛି ସୁବାସ,
କି କୋମଳ କି ଲଳିତ କି ମୋହନ ବିକାଶ !

କି ଯତନେ ଆହରି ମୁଁ ଗୁନ୍ଥେ ମାଳା ଆଦରେ,
ପୁଲକିତ ପ୍ରେମସ୍ପର୍ଶେ ଦୋଳାଏଁ ମୋ କଣ୍ଠରେ,
ଧୀରେ ପରଶି ଅଧରେ କେତେ ମୁଁ ତୋତେ ଆଦରେ
କି ବୁଝିବୁ ପ୍ରାଣହୀନ, ଆକୁଳତା ମୋହର,
କେତେ ପ୍ରେମ କରେ ତୋତେ ଗୋପନ ମୋ ଅନ୍ତର ?

ଶେଫାଳି !
କହେଁ ତୋ ଆଗରେ ସବୁ, ତୁ କି ବନ୍ଧୁ ଜୀବିତ ?
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ,
ଆପଣା ମନେ ମୁଁ ଭାଷେଁ ତୋତେ ଶୁଣାଇବା ଆଶେ,
ଶୁଣୁ କି ନ ଶୁଣୁ ଏକା ଜାଣୁ ତୁହି ସୁମନ,
ବୁଝୁ କି ନ ବୁଝୁ ମୋର ଶତ ପ୍ରୀତି-ବଚନ।

କହି କହି କିନ୍ତୁ ମୁହିଁ ଲଭେଁ ପ୍ରାଣେ ଆରାମ,
ତୋ ବୁଝିବା ନ ବୁଝିବା ମୋର ପକ୍ଷେ ସମାନ,
କହୁଥିବି ଦିବାରାତି, ପ୍ରାଣେ ତ ଲଭିବି ଶାନ୍ତି,
ଯେ ଉଦ୍ଦେଶେ ଆରେ ଫୁଲ ମୋ ପ୍ରାଣର ଏ ବ୍ୟଥା,
ତୁ ନ ଶୁଣୁ, ଆଉ ଜଣେ ଶୁଣିବ ତ ମୋ କଥା।

ଶେଫାଳି !
ମୋ ଜୀବନ ଶେଷ କାଳେ ପଡ଼ିବି ତ ମୁଁ ଝରି,
ତୋଳିନେବ ନାହିଁ କି ସେ ମୋତେ ଯତ୍ନେ ଆହରି ?
ମୋ ଆତ୍ମାଫୁଲ ଚାରୁ ଚରଣେ ଦଳିବାଠାରୁ
ତାର ପ୍ରିୟ ନିକେତନ ସଜାଇବ ନେଇ ସେ,
ଦେଖିବ ପ୍ରାଣଟି ମୋର କେତେ ପ୍ରେମ ଦେଇ ସେ।

ଶେଫାଳି !
ତୋହ ପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ,
ହସେ ବାସେ ରସେ ମାତ୍ର ଫୁଟିଅଛି ଘଡ଼ିକ;
ମାଟିରେ ମିଶିବୁ ତୁହି, ମାଟିରେ ମିଶିବି ମୁହିଁ
ତଥାପି ମୋ ଆତ୍ମାଫୁଲ ନ ଯିବ ରେ ମଉଳି,
ତେଣୁ ଆଶା ବହି ଦିନ କାଟେଁ ଗଙ୍ଗଶିଉଳି !

ଶେଷ ଗତି ନୁହେ ମୋର ମୃତ୍ୟୁ କେଉଁକାଳରେ,
ମରିବାକୁ ଫୁଟିନାହିଁ ଭବତରୁ ଡ଼ାଳରେ;
ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ।

ଶେଫାଳି !
ମୃଣ୍ମୟ ଶରୀର ତୋର ଏଡ଼େ ଚାରୁ ଶୋଭିତ,
ନ ଜାଣେ ମୋ ଆତ୍ମାଫୁଲ କି ସୌନ୍ଦର୍ଯ୍ୟେ ଚିତ୍ରିତ,
ତୁ ଯେବେ ମୋ ନେତ୍ରେ ପ୍ରିୟ, ତାଙ୍କ ନେତ୍ରେ ହେବି ହେୟ
ମୁଁ କି କେଉଁକାଳେ, ମୋର ନ ହୁଏ ତ ବିଶ୍ୱାସ,
ଫୁଟିବି ମୁଁ ଚିରଦିନ, ନ ହେବ ମୋ ବିନାଶ।



# (ଦ୍ୱିତୀୟ ତରଙ୍ଗ)

## ଚନ୍ଦ୍ର ପ୍ରତି

(୧)

ହସି ହସି ଚାନ୍ଦ ଉଦିଲୁ ଆକାଶେ
ନିର୍ମଳ କୌମୁଦୀ ମୋହନ ବିକାଶେ;
ଅନନ୍ତ ସାଗରରୂପୀ ନୀଳାମ୍ବର
ଶୁଭ୍ର ଅଭ୍ରମାଳା ତୋ କରେ ଭାସ୍ୱର,
ହିମ ପାରାବାର ଉରସେ ବିଶାଳ

ହିମଶଳାସ୍ତୂପ ଭାସେ କି କରାଳ,
ନାବିକ ହୃଦେ ଯା ଜନମାଏ ତ୍ରାସ,
ଏ ତ ଜନମାଏ ହୃଦେ ମହୋଲ୍ଲାସ,
ପରଶି ତୋ ରମ୍ୟ କର
ତୁ କି ଶୋଭାସୃଷ୍ଟିସାର ସୁଧାକର
ସୁଧାମୟ କଳେବର ।

(୨)

କି ସୁନ୍ଦର ତନୁ କି ରୂପ ମୋହନ ।
ଯୁବକ ଭାବୁକ କବି ବିନୋଦନ
ଜୀବନ୍ତ କବିତା, ଜୀବନ୍ତ ସଙ୍ଗୀତ,
ଅବା ଭାବମୟ ରାଗ ସୁଲଳିତ
ବିଶ୍ୱବିମୋହନ, ବିମଳ, ଧବଳ,
ଆକାଶ-ମାନସେ ପ୍ରଫୁଲ୍ଲ କମଳ
କି ରତନେ ଗଢ଼ା ଦେହ ।
ରଜତ, ଲବଣୀ ଚୂର୍ଣ୍ଣ ନୋହୁ ତୁହି,
ସବୁଟା କେବଳ ସ୍ନେହ ।

(୩)

ଅବା ତୁ କି ସୁଧା, ଶୋଭା ଅନୁପମ,
ତୁ କି ମଧୁରତା, କରୁଣା ଜୀବନ,
ତୁ କାହା ହୃଦର ପ୍ରେମ କୋମଳତା,
ତୁ କେଉଁ ଅନ୍ତର ଭାବ-ବ୍ୟାକୁଳତା,
ତୁ କାହା ଲୋଚନ ପ୍ରଶାନ୍ତ ଚାହାଣୀ,
ତୁ କେଉଁ ସୁଦୂର ରାଜ୍ୟର କାହାଣୀ,
ଅନ୍ଧାର ଆଲୋକ ହସୁ,
ସୁପ୍ତ ଚରାଚର ନୀରସ ସଂସାର
ତହିଁ କିପାଁ ଆସି ପଶୁ ।

(୪)

ମୁଁ କହେଁ ସଂସାର କଠୋର ନିର୍ମମ,
ବିରାଟ ଛଳନା ମାୟାର ବନ୍ଧନ,
ଭାବେଁ ମୁଁ ସଂସାର କଠିନ ଶୃଙ୍ଖଳ ।
ଭାଙ୍ଗିବାକୁ ନାହିଁ ମାନବର ବଳ,
ଘୋର ଅତ୍ୟାଚାରପୂରିତ ଏ କାରା,
ଏଥି ନାହିଁ କାହା ହୃଦେ ସ୍ନେହଧାରା,
ନୀରସ ଭୀଷଣ ମରୁ,
ଏ ଭବ-କଷଣୁଁ ପାରି କେ ପାଇବ
ନ ସହି ଏ ଦୁଃଖ ଗରୁ ।

(୫)

ତେବେ କିପାଁ ଚାନ୍ଦ, ଏ ଜ୍ୟୋତ୍ସ୍ନା-ରଜନୀ
ହସଇ ନୀରବେ ଉଲ୍ଲାସି ଅବନୀ,
ପଲକେ ପଲକେ ପୁଲକ ସ୍ପନ୍ଦନ
ଛୁଇଁ ଫୁଲେ ଫୁଲେ କରେ ଆଲିଙ୍ଗନ,
ପତରେ ପତରେ ତୁମ୍ଭେ ଧୀରେ ଧୀରେ,
କାନ୍ଦଇ ନୀରବେ ଲୋତକ-ଶିଶିରେ
ଏତେ ଶୋଭା କାହାପାଇଁ ।
ନିଦ୍ରାଅଚେତନ ସ୍ଥାବର ଜଙ୍ଗମ
କେହି ତ ନିରେଖେ ନାହିଁ ।

(୬)

ସୁପ୍ତ ମାଳ ମାଳ ଦରିଦ୍ର କୁଟୀର,
ନିଶ୍ଚଳେ ସୁତୁଙ୍ଗ ସୌଧ ତୋଳେ ଶିର,
ବିରାଟ, ବିଶାଳ, ଗମ୍ଭୀର ମହାନ,
ଦିଗନ୍ତେ ପ୍ରଶାନ୍ତ ସୋମ ଜ୍ୟୋତିଷ୍ମାନ,
ଅନନ୍ତ, ଅପାର, ନୀଳିମା-ରଞ୍ଜିତ,
ଅମ୍ବରର ତଳେ ତାରକା ଖଚିତ;
ଶବ୍ଦଶୂନ୍ୟ ମହୀ, ନୀରବ, ନିର୍ଜ୍ଜନ,
କ୍ଷଣେ ଅବା ଦୂରୁଁ ଶୁଭେ ଝିଲ୍ଲିସ୍ୱନ,
ନିଶା ଶୁଭେ ସାଇଁ ସାଇଁ,
ଦୂର ବୃକ୍ଷଡ଼ାଳେ ପକ୍ଷ ନିଦ୍ରାଳସେ
ଝାଡ଼େ ବା ବିହଙ୍ଗ କାହିଁ ।

(୭)

ଅଚେତନ ହିଆ ବହି ନିଦ୍ରାଭାର,
ସ୍ୱପନେ ମଗନ ସମଗ୍ର ସଂସାର,
ତେଜି ଆତ୍ମା କ୍ଷଣେ ଜଡ଼ର ବନ୍ଧନ
ଭୁବନଲୋକେ ସୁଖେ କରେ ବିଚରଣ,
ଗତ ଶତ ସଖା ସହଚର ସଙ୍ଗେ
ବିହରେ ତାପିତ ଆତ୍ମା ଅବା ରଙ୍ଗେ,
କାତର ଭୟେ ବା ଅତି
ଶତ ପାପ-କ୍ରୂର-ବିଭୀଷିକା ନେତ୍ରେ
ଦେଖି କା ପିଶାଚ-ମତି ।

(୮)

ଏ କାଳେ ତୁ ଚାନ୍ଦ, ମେଘ ଅନ୍ତରାଳୁଁ
କି ଅମୃତ-ସ୍ନେହ ଧରା ପରେ ଢ଼ାଳୁ,
ଚାନ୍ଦିନୀବୋଳା ତୋ ବିମଳ ଅଧର
ପରଶେ କି କ୍ଷଣେ ଧରା କଳେବର,
ଉଲ୍ଲସି ଉଠଇ ସ୍ୱେଦ ଅପଘନେ,
ଶୀତଳ ଶିଶିର-ଅସାର ଲୋଚନେ,
ଫୁଟେ ଧୀରେ ଫୁଲପନ୍ତି,
ଫୁଲ ନୁହେଁ ସେ ତ ପ୍ରେମର ଲାବଣ୍ୟ
ପବିତ୍ର ମଧୁର ଅତି ।

(୯)

ପତ୍ର ଅନ୍ତରାଳେ ଲୁଚାଇ ଆନନ
ସରମେ ବିକଶେ କାମିନୀ ସୁମନ,
ଚୁମ୍ବ ଦେଇ ଯେବେ କିଶଳୟ ଗଣ୍ଡେ
ଅଟକି ରହଇ ଚନ୍ଦ୍ରକର ଦଣ୍ଡେ,
ଧୀରେ ଧୀରେ ତୋତେ ଚାହିଁଦିଏ ପରା
ଲଭି ତୋ ଚାନ୍ଦିନୀ ଆଦର ପସରା,
କିଏ ତା ନିରେଖୁଥାଏ,
ଚୋରାଇ ସୁବାସ ସମୀରଣ ଯେବେ
ଚଉଦିଗେ ବହିଯାଏ ।

(୧୦)

ଫୁଲସଞ୍ଜବେଳେ ଫୁଟେ ମଲ୍ଲୀଫୁଲ,
ଢଳ ଢଳ ହିଆ ପ୍ରେମରେ ଆକୁଳ,
ନୀରବନ୍ତ ତେବେ ଭ୍ରମର ଗୁଞ୍ଜନ,
ନୀରବ ତ ତେବେ କୋକିଳ-ପଞ୍ଚମ,
ଶୁକସାରୀ ତେବେ ନ ଶୁଣାନ୍ତି ବାଣୀ,
କୋମଳ ମଲ୍ଲିକା ଲଳିତ ଚାହାଣୀ
କେ ନିରେଖେ କହ ତୋ ବିନା ରେ ଇନ୍ଦୁ,
ଝରେ ଯେବେ ତାର ନେତ୍ରୁ ହିମବିନ୍ଦୁ,
ଚିକ୍‌କଣ ପତର କୋଳେ
ରଜନୀ ପବନ ଶୀତ ପରଶେ କି
ଦେହଟି ମୃଦୁଳେ ଦୋଳେ ?

(୧୧)

ଧୀରେ ଯେବେ ଘୋଟି ଆସଇ ଅନ୍ଧାର,
ଫୁଲକେ ଫିଟଇ ରଜନୀଗନ୍ଧାର
ଶ୍ୱେତ ପୂତଦଳ ବିସ୍ତାରି ସୌରଭ
ଅନ୍ଧାରେ କି କହ ପ୍ରେମର ଗୌରବ,
'ନିଶାରାଣୀ' ତେଣୁ ଢାଳଇ ହୃଦୟ
ପ୍ରିୟ ଏବଦନେ ଆକୁଳ ଅଥୟ,
ବିତରେ ଯୂଥିକା ବାସ
ଦର ଦର ଫୁଟା ଗୋଲାପକଢ଼ିର
ହୃଦୁଁ କି ଉଛୁଳେ ହାସ ।

(୧୨)

ଫୁଟେ ଯେବେ କ୍ଷୁଦ୍ର ଶେଫାଳୀ-ସୁମନ
କେ ଅରପେ ତାକୁ ଆଦର ଚୁମ୍ବନ,
ଅପୂର୍ବ-ସୌରଭ-ହୃଦ-ଭରା ପ୍ରେମ
ସରି କି ରେ ତହିଁ ସଙ୍ଗେ ହୀରା ହେମ,
ସ୍ଫଟିକ-ଧବଳ ଦଳରାଜି ତା'ର
ମେଲାଇ କା ପାଦେ ଅର୍ପେ ଉପହାର,
ଦେଖେ କି ନୟନ କେବେ,
ଆକୁଳ ସ୍ପନ୍ଦନେ କ୍ଷୁଦ୍ର ଜହ୍ନିଫୁଲ
ହୃଦ କମ୍ପିଉଠେ ଯେବେ ।

(୧୩)

କ୍ଷଣକେ ମେଲାଇ କୁମୁଦ ଲୋଚନ
ମୁଦେ କି ସହସା ଲଭି ତୋ ଦର୍ଶନ,
ମୁଦେ କି ସମୀର ସ୍ପର୍ଶି ନୀଳ ଜଳ
ତରଙ୍ଗଚଞ୍ଚଳ ସ୍ନେହେ କଳକଳ,
ଢଳ ଢଳ ଦଳ ଶ୍ୟାମଳ ଅଞ୍ଚଳେ
ଲୁଚି ଲୁଚି ଯାଏ କୁମୁଦିନୀ ଭୋଳେ
କଉମୁଦୀସ୍ନାତ ନୀରେ,
ଝରି ଝରି ପଡ଼େ ନୀହାରକଣିକା
ନୟନପଲ୍ଲବୁଁ ଧୀରେ ।

(୧୪)

କି ସୁନ୍ଦର ଶୋଭାଧରିଛି ତଡ଼ାଗ,
ନୀଳରାଗ ସଙ୍ଗେ ମିଶି ଶ୍ୱେତରାଗ
ନାଚେ କି ତୋ ଛବି ନୀରଦର୍ପଣେ,

ନାଚେ କି ତୋ ରୂପ କୁମୁଦ ନୟନେ,
ଠାବେ ଠାବେ ତାରା-ବିମ୍ବ ଜଳପରେ
ହଲି ହଲି ନିଭିଯାଏ କ୍ଷଣକରେ,
ସମୀର ସଞ୍ଚାଳେ ଏକଚନ୍ଦ୍ର ତୋର
ଶତ ଶତ ବିମ୍ବ ଫୁଟେ ମନୋହର,
ଏକଚନ୍ଦ୍ର ଆହା ଆକାଶେ ଉଜ୍ଜ୍ୱଳ,
କୋଟି କୋଟି ଚନ୍ଦ୍ର ସରୋବର ଜଳ-
ହୃଦାକାଶେ ଭାସେ ପରା,
ପ୍ରେମିକ ଯେ ଯାର ସେ କି ତାହା ଭୁଲେ
କୋଟିରୂପେ ଦିଏ ଧରା !

(୧୫)

କୋଟିରୂପେ ସତେ ସ୍ୱରୂପ ମୋହନ
ବିକାଶନ୍ତି ବିଭୁ କରୁଣା-ସଦନ,
ତାରାଲୋକେ କ୍ଷଣେ, କ୍ଷଣେ ଫୁଲହାସେ
ବିମଳ ବଦନ ହାସ ପରକାଶେ,
ଅବା ପରକାଶେ କ୍ଷଣପ୍ରଭା ସମ
ଝଟକାଇ ହୃଦ-ଘନ-ଦୁଃଖ-ଘନ,
ଭକ୍ତ ମନେ ଆଶା ବିଶ୍ୱାସ ପରମ
ଶାନ୍ତି ହର୍ଷ-ସୁଖ କରେ ଆନୟନ
ମଧୁର ଚାନ୍ଦିନୀ ସରି,
ଉଦି ବା ହୃଦୟ-ଅମ୍ବରେ ନାଶନ୍ତି
ଭକ୍ତ-ଦୁଃଖ-ଶରବରୀ ।

(୧୬)

କୋଟିରୂପେ ତେଣୁ ସଜାଇ ସଂସାର
କୋଟି କୋଟି ମନେ କରିଣ ବିହାର
ନିଜ ରୂପଭୋଳେ ନିଜେ କି ମଗନ
ପ୍ରଭୁ ସ୍ୱପ୍ରକାଶ ଭକ୍ତବିନୋଦନ,
ମାନବ ଆତ୍ମାରେ ସ୍ୱରୂପ ବିକାଶ
ନିରେଖି ଲଭନ୍ତି ଅପାର ଉଲ୍ଲାସ,
ତେଣୁ ଆରେ ଶଶଧର,
ସେ ଲଳିତ-ଶୋଭା-ଅମୃତେ ତୋ ତନୁ
ଏଡ଼େ ସ୍ନିଗ୍ଧ ମନୋହର ।

(୧୭)

ଗଗନ-ବିହାରୀ ଧ୍ୱାନ୍ତ-ବିନାଶନ,
ଶୁଭ୍ରକାନ୍ତି ବିଭାବରୀ-ବିଭୂଷଣ,
ମଧ୍ୟମଣି ପ୍ରାୟ ଚାରୁ ହୀରାହାରେ,
ଶୁଭ୍ରାସନେ ଗୁରୁ ସମ ପାଠାଗାରେ,
ଶୋଭିତ ଚୌଦିଗେ ନକ୍ଷତ୍ରନିକର,
ନୃପ ନକ୍ଷତ୍ରେଶ ! ରାଜୁ ତୁ ମଧ୍ୟର;
ଶତ ଶତ ତାରା ହରେ କି ଅନ୍ଧାର
ଏକ ଚନ୍ଦ୍ରେ ମାତ୍ର ଉଜ୍ଜ୍ୱଳ ସଂସାର,
ଏକ ପଦ୍ମେ ଶୋଭେ ସର,
କୋଟି କୋଟି କଇଁ ଫୁଟିଥିଲେ କାହିଁ
ହେବ ତୋ ସମ ସୁନ୍ଦର ।

(୧୮)

ତାରାପତି ଅବା ସଦ୍‌ଗୁଣନିଚୟ,
ଚନ୍ଦ୍ର ତୁହି ତହିଁ ପ୍ରେମ ସୁଧାମୟ,
ଶତ ଗୁଣ ଥିଲେ ହୃଦୟ ମଝର
ପ୍ରେମ ବିନା ସେ ତ ନୀରସ ପ୍ରାନ୍ତର,
ମରୁଭୂମି ଘୋର ଅବା ଅମାରାତି,
ସୌରଭବିହୀନ ଫୁଲ ବର୍ଣ୍ଣ ଭାତି,
ରଙ୍ଗୋଜ୍ଜ୍ୱଳ ଇନ୍ଦ୍ରଧନୁ,
ମୂର୍ଖ ଗୁଣହୀନ, ଦିବ୍ୟ ପଟ୍ଟବାସ-
ଆବୃତ ରୁଚିର ତନୁ ।

(୧୯)

ପ୍ରେମ ବିନା ସତ୍ୟ-ପ୍ରତିଷ୍ଠା କାହିଁରେ,
ସ୍ୱରଗରାଜ୍ୟ କି ସମ୍ଭବେ ମହୀରେ,
ପ୍ରେମ ବିନା କେଉଁ ଆକର୍ଷଣବଳେ
ଆଣିବ ହେ ଟାଣି ଭକତବତ୍ସଳେ,
ପ୍ରେମ ବିନା କହ କେଉଁ ରତ୍ନ ଆନ
ଲଭି ଯା ମାନବ ଆତ୍ମା ମହୀୟାନ,
କି ଦାସତ୍ୱ ପ୍ରେମ ବିନା
ଏଡ଼େ ସୁମଧୁର କହ ଶଶି, କେଉଁ
ମୂଲ୍ୟେ ଆତ୍ମା ହୁଏ କିଣା !

(୨୦)

ପ୍ରେମବଳ ବିନା କେ ଜିଣେ ସଂସାର,
ପ୍ରେମ ବିନା ଧର୍ମ ନିଷ୍ଫଳ ଅସାର,
ହରିପ୍ରେମେ ମତ୍ତ ନିମାଇ ନିତାଇ
ବ୍ରାହ୍ମଣ ଚଣ୍ଡାଳେ କଲେ ଭାଇ ଭାଇ,
ଦୁର୍ବୃତ୍ତ ଦସ୍ୟୁଙ୍କୁ କିଣି ପ୍ରେମବଳେ
ପ୍ରହାରେ ଜର୍ଜର, ଆଲିଙ୍ଗିଲେ କୋଳେ,
ପ୍ରେମନାମ ସଂକୀର୍ତ୍ତନେ
ନିଖିଳ ଭାରତେ ପ୍ରେମବନ୍ୟା ସତେ
ବହାଇଲେ ଶୁଭକ୍ଷଣେ ।

(୨୧)

ଜନମିଥିଲା ଯେ ଶିଶୁ ବେଥଲିମ
କ୍ଷୁଦ୍ର ମେଷଶାଳେ, ଅଗଣିତ ହୀନ,
ସୂତ୍ରଧର ପୁତ୍ର, କ୍ଷୁଦ୍ର ନାଜରିତ
ବାସସ୍ଥାନ ଯାର, ଭୁବନେ ବିଦିତ
ସେ ପୁଣି ଜିଣିଲେ କେଉଁବଳେ କହ
ଦର୍ପୀ ରୋମରାଜ୍ୟ ନୃପ ଭୟାବହ,
ଲୌହଦଣ୍ଡେ ଯେହୁ ସ୍ରାବି ରକ୍ତଧାର
ଅଗଣିତ ରାଜ୍ୟ କଲା ଛାରଖାର,
କେଉଁ ବଳେ ବାନ୍ଧି ହିଆ
ଭୀମ ରଣସ୍ଥଳେ କୁମାରୀ ଫ୍ଲୋରେନ୍ସ
ସେବାବ୍ରତେ ହେଲେ ଠିଆ ।

(୨୨)

ଆଫ୍ରିକା-ପ୍ରାନ୍ତରେ ସଦ୍ୟ ମାଂସଭୋଜୀ
କାଫ୍ରି କୁଟୀରକୁ ଗଲେ ସର୍ବ ତେଜି
କେତେ ଧର୍ମମତି ନରନାରୀଚୟ
ନ ରଖିଣ ଟିକେ ଜୀବନର ଭୟ,
ସାଧୁ ଫର୍ଡ଼ିନାଣ୍ଡ ତେଜି ପ୍ରାଣମାୟା
ନିରତେ ସେବିଲେ କେତେ କୁଷ୍ଠକାୟା,
ଅବଶେଷେ ଭୋଗି ସେ ରୋଗଯନ୍ତ୍ରଣା
ପ୍ରେମର ମହତ୍ତ୍ୱ କରିଲେ ଘୋଷଣା,
ନୀରବ ଜୀବନେ କେତେ
ନିତି ନିତି ଶତ ସ୍ୱାର୍ଥ-ବଳିଦାନ
ଲେଖି କେ ରଖିଛି ଏତେ ।

(୨୩)

ନିଶା ଅର୍ଦ୍ଧଯାମେ ତେଜି ନିକେତନ
କେଉଁ ମହାପ୍ରାଣ କଲେ ପଳାୟନ
ଭୀମ-ଭବ-ତାପ-ମୁକତି ମାନସେ
ଅହରହ ଚିନ୍ତି ଭିକ୍ଷୁକର ବେଶେ
କଠୋର ତପସ୍ୟା ଆଚରି ଅଦ୍ଭୁତ
ଜ୍ଞାନରତ୍ନ ଲଭି ହେଲେ ହର୍ଷପୂତ
ବୋଧି ମହାଦ୍ରୁମ ତଳେ,
ଆକାଶେ ଉଇଁ କି ଦେଖିଅଛୁ ତାଙ୍କୁ
କେବେ ଥରେ କୁହୁହଳେ ?

(୨୪)

ନରରକ୍ତପାୟୀ ବର୍ବର ଆରବେ
କେ ଜିଣିଲା କହ ପ୍ରେମର ଆହବେ,
ଜାଣୁ କିରେ ଚାନ୍ଦ, ଚୋର ରତ୍ନାକର
ହେଲା କିପରି ସେ ମହର୍ଷି-ପ୍ରବର,
କି କାରଣେ ପ୍ରଜା-ରଞ୍ଜନ ଶ୍ରୀରାମ
ତେଜିଲେ ଜାନକୀ ରମଣୀ ଲଲାମ,
ଏତେ ସ୍ୱାର୍ଥତ୍ୟାଗ ମାନବର ବିନା
କେ ପାରିଛି କରି ଜାଣୁ ତୁହି ସିନା,
ତୁ ଦେଖିଛୁ ସ୍ନେହନୀର
ଶତ ଶତ ସତୀ-ପବିତ୍ର-ନୟନେ
ପତରେ ଯଥା ଶିଶିର ।

(୨୫)

ତୁ ଦେଖିଛୁ ଚାନ୍ଦ, ସ୍ୱରୂପ ତୋହର
ନଦୀ-ନୀଳ-ନୀର-ବେଣୀରେ ସୁନ୍ଦର
ଘନ ନୀଳ କେଶେ ଅବା ଚମ୍ପା ଫୁଲ,
ତାରାଦଳ ତହିଁ, ତୁ ମଲ୍ଲୀ ମଞ୍ଜୁଳ,
ଅବା ତାରା-ଶଶି-ହାର ମନୋରମ
ପିନ୍ଧି କଲ୍ଲୋଳିନୀ କରେ କଳସ୍ୱନ,
ତରଙ୍ଗିତ ଜଳ ଫେନିଳ, ଚଞ୍ଚଳ,
ଆବର୍ତ୍ତେ ଘୂର୍ଣ୍ଣିତ ପ୍ରେମେ ଛଳଛଳ
ହୃଦସ୍ପନ୍ଦନ ମୁଁ ମଣେ,
ନଦୀର ହୃଦୟ ରହି ରହି ସତେ
ଉଠେ ପଡ଼େ କ୍ଷଣେ କ୍ଷଣେ ।

(୨୬)

ଉଠେ ପଡ଼େ ଯଥା ଦୁଃଖିନୀ ଅନ୍ତର
ପତିହୀନା-ବାଳା ବୈଧବ୍ୟେ କାତର,
ସମଗ୍ର ସଂସାରେ କହିବାକୁ 'ଆହା'
ଦୁଃଖରେ ତାହାର କେହି ନାହିଁ ସାହା
ନିଜ ମନେ ଦୁଃଖ ମାରି ଅନୁକ୍ଷଣ
ପରହିତ ବ୍ରତେ ସମର୍ପେ ଜୀବନ,
ଯାର ମୁଖ ଦରଶନ
ଶୁଭ କାର୍ଯ୍ୟ କାଳେ ମଣନ୍ତି ଅଶୁଭ
ତାହାରି ଆତ୍ମୀୟ ଜନ।

(୨୭)

କିବା ଏ ସଂସାର କେ ଆସେ କେ ଯାଏ,
ଜୀବନ ତ ଜଳ-ବୁଦ୍‌ବୁଦ ପରାଏ,
ଓଜନ ଉଶ୍ୱାସ ନ ଜାଣେ ଧରଣୀ,
ତେବେ କିପାଁ କହ ବିଧାତା ରମଣୀ
ଯହିଁ ନାହିଁ ତାର ତିଳେ ଅପରାଧ
ତା ଲାଗି ସତତ ଲଭେ ପରମାଦ,
କେ ବୁଝେ ବେଦନା ତାର,
ତା ପୁଣ୍ୟ ସମ୍ପଦେ ଭାରତର ନର
କରୁଥାଏ ଅହଙ୍କାର।

(୨୮)

ଏପରି ତ ଚାନ୍ଦ, ଏ ଜଗତ ଖେଳ,
କିଏ ବା ଆଦରେ ସୁନା ଫିଙ୍ଗି ତେଲ,
ମୁକୁତା ଛାଡ଼ି କେ କାଇଁଚକୁ ରସେ,
ହୀରା ଫିଙ୍ଗି କେହୁ କାଚ ପିନ୍ଧିବସେ,
ମଣିଭ୍ରମେ କେହୁ ଗୋଟାଏ ପାଷାଣ,
ପୁଣ୍ୟଭ୍ରମେ ପାପେ କେ ମଜାଏ ପ୍ରାଣ,
ଛୁଡ଼ି ସତ୍ୟ ନ୍ୟାୟ ପଥ
ଧର୍ମ ଧର୍ମ କହି ଅଧର୍ମରେ ଚିତ୍ତ
ବୁଡ଼େ କା'ର ଅବିରତ।

(୨୯)

ତହିଁରେ ତ ଚାନ୍ଦ, ନାହିଁ ତୋ ଭ୍ରୂକ୍ଷେପ,
ଦୁଃଖେ ସୁଖେ କା'ର ନାହିଁ ତୋ ଆକ୍ଷେପ,
ନିତି ନିତି ଉର୍ଦ୍ଧ୍ୱ ବିମାନ ବିତାନେ
କରିଯାଉ ନିଜ କାର୍ଯ୍ୟ ଏକଧ୍ୟାନେ,
ପାପୀ, ତାପୀ, ଦୁଃଖୀ, ଧାର୍ମିକ, ଦୁଃଶୀଳ
ସରବେ ଅରପୁ ଜ୍ୟୋତ୍ସ୍ନା ଅନାବିଳ,
ଏପରି ହୁଅନ୍ତି ଆହା,
ଆନ କଥା କିଛି ନ ପକାଇ କାନେ
ଧରନ୍ତି କର୍ତ୍ତବ୍ୟ ରାହା।

(୩୦)

ତୁ କି ଚାନ୍ଦ, ରସୁ କେବଳ ସୁମନେ,
ଦେଖୁ ତୋ ସ୍ୱରୂପ ସର-ଦରପଣେ,
ଭୀମ ସ୍ଥଳେ ତୋର ନାହିଁ କି ପ୍ରକାଶ,
ଶ୍ମଶାନର ବିଭୀଷିକାରେ ବିକାଶ
ନ କରୁ କି ତୋର କୌମୁଦୀ କୋମଳ,
ଧକ ଧକ ଯହିଁ ଜଳେ ଚିତାନଳ,
ମାନବ ଅସ୍ତିତ୍ୱ ପୋଛେ ଯହିଁ କାଳ,
ଗଡ଼େ ଯହିଁ ଅସ୍ଥି ପିଞ୍ଜରା କଙ୍କାଳ,
ବୁଲନ୍ତି ବିକଟ ନାଦେ
ଶକୁନି, ଗୃଧ୍ରିନୀ, ଶିବା, ସାରମେୟ
ଭକ୍ଷି ଶବ ମହାହ୍ଲାଦେ।

(୩୧)

ଜ୍ୟୋତ୍ସ୍ନାସ୍ନାତ ନୀଳ ଅଙ୍ଗ ଭୟଙ୍କର
ପୂର୍ଣ୍ଣିମା ନିଶାରେ ଉନ୍ମାଦ ସାଗର,
ଗର୍ଜି ମହାନାଦେ ତରଙ୍ଗ ପ୍ରହାରି
ଫେନପୁଞ୍ଜ ଭୀମ ବଦନେ ଉଦ୍‌ଗାରି,
ମହାଉର୍ମିବାହୁ ବିସ୍ତାରି ଜଳଧି
ଉର୍ଦ୍ଧ୍ୱେ ଉଠି ପରା ଧରେ କଳାନିଧି,
କି ବିଶାଳ ବ୍ୟାକୁଳତା,
ରହି ନ ପାରୁ କି ଅନୁଭବି ପ୍ରାଣେ,
ନୀରେ ତା ମିଶାଉ ସଂଜ୍ଞା।

(୩୨)

ଯେତେ ଦୂରେ ପ୍ରଭୁ ଥାଆନ୍ତୁ ମୋହର
ଉଲ୍ଲସି ଉଠିବ ହୃଦୟ-ସାଗର,
ବିପୁଳ ବିଶାଳ ପ୍ରେମ ବ୍ୟାକୁଳତା
ନ ମାନିବ ବାଧା, ନ ଶୁଣିବ କଥା,
ଆପେ ସେ ଧାଇଁବ ଉଲ୍ଲସି ହୃଦୟ,
କାହିଁ ତାର ସଖା, କାହିଁ ପ୍ରେମମୟ,
ଆପେ ସେ ଖୋଜିବ ନିତି,
ଯେତେ ଲୁଚି ଲୁଚି ରହନ୍ତୁ ଗୋପନେ।
କେବେ ନ ଆସନ୍ତୁ କତି।

(୩୩)
ଚକୋରେ ପରା ତୁ ପ୍ରଦାନୁ ଜୀବନ
ସୁଧାମୟ ବିଭୁ କରୁଣା ଯେସନ,
ବଞ୍ଚେ କି ଅଶନେ ମାନବ କେବଳ,
ବିଭୁପ୍ରେମ ବିନା ଆତ୍ମା ତ ବିକଳ,
ବିନା ସେ ଆହାର, ନୀର,
ମେଘ-ଜଳ-ଆଶୀ ଚାତକ ପରାଏ
ଆତ୍ମା ମୋ ନିତି ଅଧୀର ।

(୩୪)
ତୋ ମଧୁର କରେ ଚିତ୍ତ ପୁଲକିତ,
ଶୋକଦଗ୍ଧ ତୋତେ ଦେଖି ହରଷିତ,
ପ୍ରଫୁଲ୍ଲ ବାଳକ ହେରି ତୋ ବଦନ
କରତାଳି ଦେଇ ନାଚେ ହୃଷ୍ଟମନ,
ଶଶାଙ୍କ ତୁ କ୍ଷୁଦ୍ର ଶିଶୁଚିତ୍ତହାରୀ,
ମାତାକୁ ତୋ କଥା ହୁଏ ସେ ପଚାରି
'ଆରେ ଜହ୍ନମାମୁଁ ଡାକ,
ଶିଶୁ ବଦନରୁ ଶୁଣିଥିବୁ କେତେ
ଚନ୍ଦ୍ର ଚିତ୍ତପ୍ରହ୍ଲାଦକ ।

(୩୫)
ପର୍ବଶର୍ବରୀଶ ! ତୋର ଦରଶନେ
ମଗନ ମାନବ ଉତ୍ସବ ପାର୍ବଣେ,
ମନାସିଣ କେତେ ଉପବାସ ବ୍ରତ
ନାରୀଏ ହୁଅନ୍ତି ଧର୍ମକାର୍ଯ୍ୟେ ରତ,
ତୋ ତିଥି ଗଣନା କରି ପାଞ୍ଜିକାର
ଭବିଷ୍ୟତ ତଥ୍ୟ କରଇ ପ୍ରଚାର,
ଲେଖଇ ସାଦରେ କବି
ଉପମା କାରଣ ଅପୂର୍ବ ସୁନ୍ଦର
ବିମଳ ବଦନଛବି

(୩୬)
ଏଡ଼େ ତୁ ସୁନ୍ଦର ଆରେ କଳାକର,
କଳଙ୍କର ଗାରେ କିପାଁ କଳେବର
ଅଙ୍କିତ ତୋହର, ଅକଳଙ୍କ ଜନ
ଦୁର୍ଲଭ ଧରାରେ କହୁ କି ସୁମନ,*
କ୍ଷୟର ଅଧୀନ ହୋଇ ଶଶଧର
ଶିଖାଉ କି ଭବ ବିଭବ ନଶ୍ୱର,
ଲୁଚି ଅମାରଜନୀରେ
ପ୍ରଚାରୁ କି ନରେ- ଅମର କେହି ତ
ଜନମିନାହିଁ ମହୀରେ ।

(୩୭)
ନିଜଲୋକେ ଅବ୍ଜ,* ନୋହୁ ଜ୍ୟୋତିଷ୍ମାନ,
ସୂର୍ଯ୍ୟାଲୋକେ ଦୀପ୍ତ, ଭାଷଇ ବିଜ୍ଞାନ,
କି ପ୍ରଖର ରଶ୍ମି ମରୀଚିମାଳୀର,
କେତେ ସ୍ନିଗ୍ଧ କାନ୍ତି ଧରେ ତୋ ଶରୀର,
ଦୁର୍ନିରୀକ୍ଷ ରବି ପ୍ରଚଣ୍ଡ ପ୍ରତାପ,
ତା କର ଲଭି ତୁ ହରୁ ଚିତ୍ତତାପ,
ହିମାଂଶୁ ନାମ ତୋ ସାର୍ଥକ ସୁନ୍ଦର,
ହିମ-ବିନ୍ଦୁ-ରାଶି ସିଞ୍ଚୁ ନିରନ୍ତର,
କି ଶୀତଳ ରମଣୀୟ,
ସାରା ନିଶି ତୋତେ ରହିଥିଲେ ଚାହିଁ
କ୍ଲାନ୍ତ ନୁହେଁ ନେତ୍ରଦ୍ୱୟ ।

(୩୮)
ତୋତେ ଦେଖି ଉଦେ ହୃଦୟେ ଆହ୍ଲାଦ,
ହରେ ଶତ ଶାନ୍ତି ବିକାର ବିଷାଦ,
କେତେ ଚିତ୍ତବ୍ୟଥା ଗୋପନେ ତୋ କାନେ
କହିଥାଏଁ, କେତେ ଗୀତ ଦୁଃଖତାନେ
ଗାଇଥାଏଁ, ମୁହିଁ ଢାଳି ନେତ୍ରବିନ୍ଦୁ,
କେ ଦେଖିଛି ତାହା ତୋ ବିନା ରେ ଇନ୍ଦୁ,
ପରାଣବନ୍ଧୁ କି ମୋର,
ଦଣ୍ଡକ ତୋ ସଙ୍ଗେ ଆଳାପେ ମୋହର
ଦୂର କେତେ ଦୁଃଖ ଘୋର ।

(୩୯)
ଅର୍ଦ୍ଧନିମୀଳିତ ଅଳସ ଲୋଚନ
ତୋ ମୋହନ ଶୋଭା କରି ବିଲୋକନ,
ଜକ ଜକ କରପତ୍ର ଅନ୍ତରାଳେ
ଦାମିନୀ ନାଚେ କି ମେଘ ଆଢୁଆଳେ,
ଝଲମଲ ଅବା ତରଳ ରଜତ-
ସ୍ରୋତ ଚଉଦିଗେ ବହେ ଅବିରତ,
କି ଶୁଭ୍ର, କି କମନୀୟ !
ପ୍ରଫୁଲ୍ଲ ପ୍ରସୂନ-ବଦନେ ଚାନ୍ଦିନୀ
ଶୋଭା ସେ କି ମହନୀୟ ।

* ଚନ୍ଦ୍ର

(୪୦)

ମେଘ ସ୍ତରେ ସ୍ତରେ ବୁଲୁ ଭାସି ଭାସି,
ଅନାଇଥାଏଁ ମୁଁ କି ଭାବେ ଉଲ୍ଲସି,
ଦେହେ ତେବେ ମୋର ନ ଥାଏ କି ପ୍ରାଣ,
ସତେ ଉର୍ଦ୍ଧ୍ୱ-ଲୋକେ କରେ ସେ ପ୍ରୟାଣ,
ଏକଧ୍ୟାନେ ଚାହିଁ ଭାବେଁ କାହା କଥା,
କା' ଲାଗି ଅନ୍ତରେ ଘୋର ଆକୁଳତା,
କା' ଲାଗି ମୋର ଏ ପ୍ରେମ,
ରେ ଚାନ୍ଦ, ତୋହର ଚାନ୍ଦିନୀ ସମ ତା,
ସରି ନୁହେ ତହିଁ ହେମ।

(୪୧)

କହରେ କିଏ ସେ ପରମ ସୁନ୍ଦର,
ପ୍ରେମାମୃତ ଉତ୍ସ କାହା ଶ୍ରୀପୟର,
ଏତେ ଶୋଭା ବିଶ୍ୱେ କେ ନିହିଛି କହ,
କହ କେ ସଜାଏ ଫୁଲମାଳେ ଦହ,
କେ ପିନ୍ଧାଏ ଫୁଲଭୂଷା ତରୁଡ଼ାଳେ,
କେ ଫୁଟାଏ ଚାନ୍ଦ ଶୋଭା ନଭୋଭାଳେ,
କରୁଣା-ଶିଶିରେ କାନ୍ଦେ କା ନୟନ,
ତା ପାଶେ ଯିବାକୁ କାହିଁ ରେ ଅୟନ,
କିଏସେ ସେ ମୋର କହ,
ଲୁଚି ରହି କିପାଁ ଯାତନା ହୃଦୟେ
ବଢ଼ାଏ ସେ ଅହରହ।

(୪୨)

ତା ପରି ନିଷ୍ଠୁର ଦେଖିନାହିଁ କାହିଁ,
ତା ପ୍ରେମ ସମାନେ ପ୍ରେମ ପାଇନାହିଁ,
ତା ପରି କାନ୍ଦେ କେ ଦୁଃଖରେ ମୋହର,
ତାପରି ଦୁଃଖ କେ ଦିଏ ନିରନ୍ତର,
ତା ପରି ପୋଛେ କେ ନୟନ ଆସାର,
ତା ପରି ନିର୍ମ୍ମମ କରେ କେ ପ୍ରହାର
ଜରଜରି, କଳେବର,
କ୍ଷଣେ ଆସେ କ୍ଷଣେ ପଳାଇଯାଏ ସେ,
ଆଖି ଝରେ ଦରଦର।

(୪୩)

କେ କହୁ ଜଗତେ ମୁଁ ହୀନ ଘୃଣିତ,
ଅବା ଦେଉ ତୁଚ୍ଛ, ଲୋକେ ଅଗଣିତ,
କେ କହୁ ବାତୁଳ, ମୂର୍ଖ, ଛଦ୍ମବେଶୀ,
ଲେଶମାତ୍ର ଦୁଃଖ ନାହିଁ ତହିଁ ଶଶି,
ମୋ ଆତ୍ମାର ସତ୍ତା ମୋ ଆତ୍ମା-ଶକତି,
ମୋ ପ୍ରାଣର ଆଶା ବ୍ୟାକୁଳ ଭକତି
ମୋ ହୃଦୟ ପ୍ରେମ ଗଭୀର ମହାନ
ନ ଲଭୁ ଆଦର ଅବା ଭବେ ସ୍ଥାନ,
ନାହିଁ ମୋର ତହିଁ ଦୁଃଖ,
ତୃଷାନିବାରଣେ ବାରି ଯେ ଖଞ୍ଜିଛି,
ଖଞ୍ଜିଛି ମୋ ପାଇଁ ସୁଖ।

(୪୪)

କ୍ଷୀର ମାତୃସ୍ତନେ କଲାଯେହୁ ଦାନ,
ବଢ଼ାଇଲା ଯତ୍ନେ ଥିଲି ଯେବେ ସାନ,
ଏବେ କି ବୁଝିବ ନାହିଁ ମୋ ଯାତନା,
ଏବେ କି ଶୁଣିବ ନାହିଁ ମୋ ପ୍ରାର୍ଥନା,
ନ ଦେଖିବ ମୋର ବ୍ୟାକୁଳ ରୋଦନ,
କାନ୍ଦି କାନ୍ଦି ନେତ୍ର କ୍ଷୀଣ ଅନୁକ୍ଷଣ,
ନ ଜାଣୁ କେ ଭବବାସୀ,
ଅଛି ଜଣେ ମୋର ପରାଣଈଶ୍ୱର,
ପ୍ରେମ ଯାର ଅବିନାଶୀ।

(୪୫)

ସେ ତ ନୁହେଁ ମାତ୍ର ଅନ୍ଧ ଶକ୍ତି ସତ୍ତା,
ସେ ତ ମୋର ଦେହ ଆତ୍ମାର କରତା,
ସେ ଯଦି ରୋପିଲା ତରୁ ଆଶାକୁଞ୍ଜେ,
ସେ ଯଦି ଶୋଭିଲା ମଞ୍ଜୁ ଫୁଲ ପୁଞ୍ଜେ,
ସେ ଯଦି ଗାଇଲା ପିକ ପଞ୍ଚତାନେ,
ବସନ୍ତ ସମ ତ ଆସିବ ଏ ପ୍ରାଣେ
ମଳୟମରୁତ ଶ୍ୱାସେ,
ହରିନେବ ମୋର ହୃଦୟର ଦୁଃଖ,
ଚାହିଁଛି ପଥ ବିଶ୍ୱାସେ।

(୪୬)

ଅନ୍ତରେ ତାହାର ଶୁଣେ ମଧୁସ୍ୱର,
କର୍ତ୍ତବ୍ୟକାରଣେ ଡାକେ ନିରନ୍ତର,
କର୍ତ୍ତବ୍ୟରେ ସୁଖ କହେ ନିତି ମୋତେ,
କର୍ତ୍ତବ୍ୟ, କର୍ତ୍ତବ୍ୟ, ବୁଝିବି କେମନ୍ତେ ?
ତୁ ବୁଝୁ କର୍ତ୍ତବ୍ୟ ତୋର,
ସ୍ୱସମୟେ ଉଡି ଅମ୍ବରେ ଜଣାଉ–
କର୍ତ୍ତବ୍ୟରେ ସୁଖ ମୋର ।



## (ତୃତୀୟ ତରଙ୍ଗ)

# କାମିନୀ ପ୍ରତି

ଯେବେ ଧୀରେ ଅସ୍ତାଚଳେ ଢଳିପଡ଼େ ରବି
କନକକିରଣେ ରଞ୍ଜି ପ୍ରତୀଚୀ ବଦନ,
କ୍ଷୁଦ୍ର ଖଣ୍ଡ ମେଘାବଳୀ ନାନାରଙ୍ଗ ଛବି,
ଉଜ୍ଜଳି ଆକାଶତଳ ନୀଳିମା ଶୋଭନ ।
ଧୀରେ ଧୀରେ ବହିଆସେ ସାନ୍ଧ୍ୟ ସମୀରଣ,
ବହିଆଣେ ସୁଧାଭାର କେଉଁ ଦୂର ଦେଶୁଁ,
ଫୁଟନ୍ତି ଅମ୍ବରେ ଧୀରେ ଦୀପ୍ତ ତାରାଗଣ,
ଢୁଲୁଢୁଲୁ ଚାହୁଁଥାନ୍ତି ସେ ଦୂର ଆକାଶୁଁ ।
ଧୀରେ କି ଓହ୍ଲାଇଆସେ ନଭେ ଅନ୍ଧକାର,
ଧୀରେ କି ଆଲିଙ୍ଗେ ଧରା ନିଶା ମନୋହାରୀ,
ଧୀରେ ନଭେକୋଣେ ହସିଉଠେ ଶଶଧର,
ଧୀରେ ନୀଡ଼େ ବାହୁଡ଼ନ୍ତି ପକ୍ଷୀ ଧାଡ଼ି ଧାଡ଼ି ।
ସେକାଳେ ମୋ କୁଞ୍ଜବନେ କି ମନ୍ତ୍ରପରଶେ
ଜାଗିଉଠେ ସୁପ୍ତା ମୋର କାମିନୀ ସୁନ୍ଦରୀ,
ଘନନୀଳ ପତ୍ରକୁଞ୍ଜେ ମୃଦୁମନ୍ଦ ହସେ,
ବସନ-ଆବୃତା ଯୋଷା ହସେ ଯେଉଁପରି,
ଓଢ଼ଣାର ତଳୁଁ ଦିଶେ କ୍ଷୁଦ୍ର ଜବାଧର,
ପବିତ୍ର ଆନନକାନ୍ତି ଚିର ବ୍ରୀଡ଼ାବତୀ,
ଅବନତ ନେତ୍ରେ ହସେ ଆହା କି ସୁନ୍ଦର,
ଲଳିତା, କୋମଳା ବାଳା, ସୁହାସିତା, ସତୀ ।
ହସେ କିଶଳୟ-ବାସ-ଆବୃତ ବଦନେ,
ସୁକ୍ଷୁଦ୍ରା କାମିନୀ, ପୂତା, ଶ୍ୱେତ-ଶୋଭାନ୍ୱିତା,
ଫୁଟି ପତ୍ର ଅନ୍ତରାଳେ ଲୁଚେ ପତ୍ରକୋଣେ,
ପବନ ପରଶେ କ୍ଷଣେ କ୍ଷଣେ ଚମକିତା ।
ଶୀତଳ ମାରୁତେ ବହିଆସେ ଗନ୍ଧରାଶି,
ବହିଆସେ ଗନ୍ଧରାଶି ଆକୁଳି ମୋ ପ୍ରାଣ,
ଶୁଭ୍ର ଫୁଲ ପେନ୍ଥା ପେନ୍ଥା ନୀଳ ପତ୍ରେ ମିଶି
ଲୁଚି କି ଦେଖାଏ ଲଜ୍ଜା ରମଣୀଭୂଷଣ ।
ସ୍ନେହର ଶିଶିରକଣା ଝରେ ଅନମ୍ବରୁ
ସ୍ନେହ-ଅନ୍ଧକାର କୋଳେ ଆଲିଙ୍ଗେ ଯାମିନୀ,
ଜନକ ଜନନୀ ସ୍ନେହ ସମପୂତ, ଚାରୁ,
ଲଭି ଶତଗୁଣେ ତୋରା ଦିଶୁ କି କାମିନୀ ।
ପତ୍ରଗହଳରେ କିନ୍ତୁ ଭେଦି ଅନ୍ଧକାର
ଚାନ୍ଦିନୀ ଚୁମ୍ବନେ ତୋତେ ଚୁମ୍ବେ ଚାରୁ ଚନ୍ଦ୍ର,
ଥରେ ତୋର କ୍ଷୁଦ୍ର ବକ୍ଷ ପ୍ରେମେ ଥର ଥର,
ପଶେ ଚାନ୍ଦିନୀ ଯେବେ ପତ୍ର ପ୍ରତି ରନ୍ଧ୍ର ।
ମୃଦୁବାତବିକମ୍ପିତା, କାମିନୀ, କୋମଳା,
ସତେ କି ପ୍ରଣୟବାର୍ତ୍ତା ଚନ୍ଦ୍ର ସମୀପରୁ
ଆଣି କାନେ କହିଯାଏ, ରମ୍ୟ ଲଜ୍ଜାଶୀଳା,
ତୋତେ ସମୀରଣ, ତେଣୁ ପ୍ରେମାବେଶେ ଥରୁ ।
ଚିରାନନ୍ଦ ତୋ ବଦନ, ନାହିଁ ମୁଖେ କଥା,
ସରଳତା ଜାଣି ତୋର ହରି କି ସମୀର
ତୋହର ସୁରଭିରାଶି, ଜାଣି ଚନ୍ଦ୍ର ବ୍ୟଥା,
ଯାଚିଦିଅଇ ସ୍ନେହ ଶ୍ରଦ୍ଧା ଉପହାର ।
ଜାଣି ତୋତେ ଲଜ୍ଜାବତୀ ତେବେ ମିଛେ ମିଛେ
ପଶଇ ଶଶାଙ୍କ ତୋର ପତ୍ରଆବାସରେ,
ଚାନ୍ଦର ଚାନ୍ଦିନୀ ସ୍ୱଚ୍ଛ, ଆଦରଇ ସ୍ୱଚ୍ଛେ,
ଗୁଣ ଚିହ୍ନେ ଗୁଣୀ, ଏତ ଚଳିତ ଭବରେ ।
ଚନ୍ଦ୍ର ଶ୍ୱେତ ଚିତ୍ତେ ମିଶେ ତୋର ଶ୍ୱେତ ଚିତ୍ତ,
ଚାନ୍ଦିନୀପରଶେ ବାଳା ଦିଶେ ଅପସରା,
କହୁନାହିଁ କଥା, କିନ୍ତୁ ଚିର ମୌନବ୍ରତ
କରେ ତୋର ଶୁଭ୍ର ତନୁ ଶତଗୁଣେ ଗୋରା ।
ଯେତେ ପତ୍ରବାସେ ତୁହି ଆବରୁ ବଦନ,
ତେତେ ତୋ ସୁରଭିରାଶି ଚହଟି ଚୌଦିଗେ,
ଦିଏ ତୋର ପରିଚୟ କାମିନୀ ସୁମନ !
ଭଙ୍ଗେ ତୋଳିବାକୁ କେତେ ଆଦରେ ସୁଆଗେ ।

କେତେ ଥର ଭାବେ ତୋତେ କାମିନୀସୁନ୍ଦରୀ !
ଜଗତରେ ନାରୀତ୍ୱର ତୁହି ନିଦର୍ଶନ,
ନାରୀର ସୌନ୍ଦର୍ଯ୍ୟ ଲଜ୍ଜା, କୋମଳତା ଶିରୀ,
ଶୁଭ୍ର ପବିତ୍ରତା ତା'ର ଜୀବନେ ରତନ ।
ଲୁଚି ପତ୍ରଅନ୍ତରାଳେ ବାସ ବିତରଣେ
ଶିଖାଉ କି ରମଣୀର ଗୃହଧର୍ମନୀତି,
ସଂସାରଆଶ୍ରମେ ନାରୀ କର୍ତ୍ତବ୍ୟ ସାଧନେ
ଲଭଇ କଲ୍ୟାଣ ଚିର ପବିତ୍ର କୀରତି ।
କେତେ ଫୁଲ ପେନ୍ଥା ପେନ୍ଥା ତୋଳେଁ ଫୁଲମନେ,
ସଜାଇବି ବୋଲି ମୋର କ୍ଷୁଦ୍ର ନିକେତନ,
ଫୁଟେ କି କାମିନୀ ଫୁଲ ମୋ କ୍ଷୁଦ୍ର ଜୀବନେ
ପବିତ୍ର କରି ତା ବାସେ କଳୁଷିତ ମନ !
ଯେବେ ନିଶାଯାମେ ବସି ବାତାୟନ ପାଶେ
ପଠନେ ମଗନେ ମୋର ଅବଶ ପରାଣ,
କ୍ଷଣକେ ହୁଅଇ ମୁଗ୍ଧ କାମିନୀ ସୁବାସେ,
ବହି ଆଣେ ସେ ସୁବାସ ନୈଶ ସମୀରଣ ।
ଅନ୍ଧାରେ ଫୁଟି ତୁ କରୁ ବାସ ବିତରଣ,
ଦିବାରେ ଆଲୋକେ ମ୍ଳାନ ହୋଇ ହତଶିରୀ
ପଡ଼ିଥାଉ ତରୁତଳେ, କରେଁ ଆହରଣ
ମଳିନ ସେ ପୁଷ୍ପରାଶି ସ୍ନେହାଞ୍ଜଳି ଭରି ।
ଅନ୍ଧାରେ ମହିମା ତୋର, ଗୋପନେ ତୋ ଶିରୀ
ପତ୍ରକୋଣେ, ଗୃହେ ଯଥା ନାରୀ ଗୁଣବତୀ,
ପ୍ରାଣର ଆଦର ସ୍ନେହ ସୁଗନ୍ଧ ବିତରି
ଢାଳେ ଶତ ପ୍ରାଣେ ଶାନ୍ତି, ପବିତ୍ର ପୀରତି ।
ଚାନ୍ଦିନୀପରଶେ ଫୁଟି ହସୁ ତୁ ଲଳିତା,
ଶିଖାଉ କି ପତି ତୋର ସର୍ବସ୍ୱ ଜୀବନେ,
ପତିର ଆଦର ସ୍ନେହ ଲଭି ପତିବ୍ରତା
ରହେ ପଦେ ଚିରାନତ ପବିତ୍ର ବଦନେ ।
କର ଲୋ ତୋ ପରି ମୋତେ କାମିନୀସୁନ୍ଦରି,
କର ପୂତ, ସୁବାସିତ ମୋ କ୍ଷୁଦ୍ର ହୃଦୟ,
ଢାଳୁ ପ୍ରତି ପ୍ରାଣେ ପ୍ରେମପୂତ ଶାନ୍ତିବାରି,
ହେଉ ମୋ ଭୂଷଣ ଲଜ୍ଜା, ନମ୍ରତା, ବିନୟ ।



## (ଚତୁର୍ଥ ତରଙ୍ଗ)

# କମଳ ପ୍ରତି

କମଳ ରେର !
କିପାଇଁ ଶୋଭିଛୁ ତୁହି ପଙ୍କିଳ ଜଳରେ ?
ଦୂର ଅରଣ୍ୟ ପ୍ରାନ୍ତରେ ବାସନ୍ତୀ ଉଷାରେ,
ସ୍ନାତ ସ୍ନେହ-ପୂତ ଅଶ୍ରୁ ଶିଶିର ଆସାରେ,
ବିଜନେ ଗୋପନେ ଫୁଟି ମୃଦୁମନ୍ଦାନିଳେ ଲୋଟି
ଅତୁଳ ସୌନ୍ଦର୍ଯ୍ୟମୟ ସୁରଙ୍ଗ ଭୂଷାରେ
ମେଲାଇଛୁ ରୂପରାଶି ସୁନୀଳ କାସାରେ ।
ଧୀରେ ଧୀରେ ନବରବି ଆସିଲେଣି ଉଇଁ,
ଧୀରେ ଧୀରେ ହେମକର ବୁଡ଼ିଲାଣି ଗୁଇଁ,
ଧୀରେ ଧୀରେ ଥରି ଥରି ପତରୁ ଶିଶିର ଝରି
କମ୍ପିଲେଣି ତରୁଲତା ସମୀର ପରଶେ,
ଫୁଟିଲେଣି ଫୁଲରାଶି ସତେ କି ହରଷେ ।
ଜକ ଜକ ଝଟକୁଛି ହିମବିନ୍ଦୁଚୟ
କୋମଳ କୁସୁମଦଳେ ଚାରୁ ଶୋଭାମୟ,
ଅଗଣିତ ମୁକ୍ତାରାଶି ବିଞ୍ଚିଦେଲା କିଏ ଆସି
ସୁଶ୍ୟାମଳ ତୃଣଦଳେ ଅବା ସେ ହରିତ
ଧରଣୀ-ରାଣୀ-ଦୁକୂଳେ ମୁକୁତା ଖଚିତ ।
ଧୀରେ ଧୀରେ ଶୁଭିଲାଣି ବିହଙ୍ଗ କାକଳୀ,
ଦିବ୍ୟ ଗାନେ ଝଙ୍କାରିତ କରି ବନସ୍ଥଳୀ
ଗୁଞ୍ଜରି ଭ୍ରମରାବଳୀ ଆସିଲେଣି କରି କଳି,
ଫୁଲେ ଫୁଲେ ଆଶ୍ରିଲେଣି ମଧୁପାନ ଆଶେ,
ମୋହିତ ଅବା ସେ ଫୁଲ-ସୁବିମଳ-ବାସେ ।
ଘନନୀଳ ତନୁରାଜି ରାଜି ଫୁଲପରେ
ରମଣୀ ଅଳକ ଶୋଭା ଜଗାଏ ମନରେ,
ଶ୍ରବଣ କୁସୁମ ଅଙ୍ଗେ କୁଞ୍ଚିତ ବିଚିତ୍ର ଭଙ୍ଗେ
ଚୂର୍ଣ୍ଣିତ କୁନ୍ତଳରାଶି ରମ୍ୟନୀଳ ଶୋଭା,
ଲଳିତ କୋମଳ ପ୍ରିୟ-ଜନ-ମନୋଲୋଭା ।
ନବ କିଶଳୟଦଳେ ପେନ୍ଥା ପେନ୍ଥା ଫୁଲ
ବିଚିତ୍ର ବିବିଧ ବର୍ଣ୍ଣେ ଗ୍ରଥିତ ମଞ୍ଜୁଳ,
ନବ ଶ୍ୟାମଳ ମାଧୁରୀ ଉଜ୍ଜ୍ୱଳ ବିମଳ କରି
ମୃଦୁଳ ବାତହିଲ୍ଲୋଳେ ତରୁଲତା ଅଙ୍ଗେ,
ଢଳି ଢଳି ପଡୁଛନ୍ତି ଶୋଭା ବୀଚିରଙ୍ଗେ ।

ଅନନ୍ତ ପ୍ରଶାନ୍ତ ନୀଳ ଦିଗ୍‌ବଳୟ ପ୍ରାନ୍ତେ
ଉଦିତ ତରୁଣାରୁଣ ବସନ୍ତ ନିଶାନ୍ତେ,
ପାଟଳି ଜୀମୂତାବଳୀ ଉଜ୍ଜ୍ୱଳି ଅମ୍ବରସ୍ଥଳୀ
ପ୍ରାଚୀସୁନ୍ଦରୀ ଶରୀରେ ଆଲୋକ-ବସନ,
ଦିବ୍ୟ କନକ କିରଣେ କରୁଛି ମଣ୍ଡନ।
ସେ ମଞ୍ଜୁ କନକ କର ପଡ଼ିଛି ସଳିଳେ,
ମନ୍ଦେ ମନ୍ଦେ ଥରୁଛି ଯା ମୃଦୁଳ ଅନିଳେ,
ପଦ୍ମପତ୍ର ପରେ ଜଳ ଢଳ ଢଳ ଛଳ ଛଳ,
ତହିଁପରେ ଇନ୍ଦ୍ରଧନୁ ବର୍ଣ୍ଣ କି ବିକାଶେ,
ତହିଁପରେ ଫୁଲରାଣୀ ପଦ୍ମ ହସି ଭାସେ।
ସତେ କି ମରତେ ଫୁଟିଅଛି ସ୍ୱର୍ଗଫୁଲ,
ସତେ କି ସକଳ ଶୋଭା ଏକାଧାରେ ଥୁଳ,
ସୁକୋମଳ ଦଳପନ୍ତି ଚିକ୍‌କଣ ଲଳିତ କାନ୍ତି
ଏକ ପରେ ଆନ ଶୋଭେ କାରୁକର୍ମ ସମ,
ଶତ ଦଳ ନାମ ତୋର ସାର୍ଥକ ସୁମନ।
ଆରେ ଶତଦଳ!
ସତେ କି ସତତ ତୁହି ମଧୁର ଉଜ୍ଜ୍ୱଳ?
ଏଡ଼େ ତୁ ସୁନ୍ଦର ତୋର ପଟାନ୍ତର କାହିଁ,
ଲେଖନୀ ଲଜ୍ଜିତ ମୋର ବର୍ଣ୍ଣି ପାରେନାହିଁ,
ଢଳ ଢଳ ରୂପରାଶି ଝଲୁଅଛି ଜଳେ ଭାସି,
ଦଳେ ଦଳେ ଝରିପଡ଼େ କି ପୁଣ୍ୟ ଅମୃତ,
ନିରେଖି ନିରେଖି ମୋ ନେତ୍ର ହୁଏ ପୂତ।
ନିରେଖି ସତତ ତୋର ଦିବ୍ୟ ଶୋଭାରାଶି
ନୟନ ମୋହର ଜଳେ ଯାଉଛି ତ ଭାସି,
ଚଞ୍ଚଳ ବିମୁଗ୍ଧ ପ୍ରାଣ ବାଜେ ହୃଦତନ୍ତ୍ରୀ ତାନ,
ଛନଛନ ଘନଘନ ତନୁ ରୋମାଞ୍ଚିତ,
ପ୍ରେମାବେଶେ ପୁଲକରେ ଚିତ୍ତ ଉଲ୍ଲସିତ।
ମନେ ହୁଏ ସତେ ତୋଳିଆଣି ଏହିକ୍ଷଣେ
ଆଦର କରନ୍ତି ତୋତେ ମଧୁର ଚୁମ୍ବନେ,
କେଡ଼େ କୋମଳ ତୋ ଦଳ, କେଡ଼େ ସ୍ୱଚ୍ଛ ସୁନିର୍ମଳ,
ପରଶେ ମୋହର ଅବା ହେବ ହତଶିରୀ,
ନଳିନ! ମଳିନ ହେବ ତୋ ପୁଣ୍ୟ ମାଧୁରୀ।

ହସୁଥା ହସୁଥା ପଦ୍ମ, ନାହିଁ ପ୍ରୟୋଜନ,
ଛିନ୍ନ କରିବି ତୋ ବୃନ୍ତ ଅକାଳେ ସୁମନ,
ଦେଖି ତୋ ଶୋଭା ପବିତ୍ର ହେଉ ସାର୍ଥକ ମୋ ନେତ୍ର,
ସୁଷମାପିପାସୁ ଚିର ହେଉ ମୋ ଶମିତ,
ତୋ ପୁଣ୍ୟ ଦର୍ଶନେ ଦୂରେ ଯାଉ ମୋ ଦୁରିତ।
କ୍ଷୀଣ କୋମଳ ମୃଣାଳେ କଣ୍ଟକ ଜଡ଼ିତ,
ଢଳୁଥା କୁସୁମରାଣୀ ସ୍ନିଗ୍ଧ ପୁଲକିତ,
ମନୋହର ମକରନ୍ଦ କ୍ଷରୁ ସଦା ମୃଦୁ ମନ୍ଦ,
ଦଳେ ଦଳେ ମଧୁକରେ ହୋଇ ସମାକୁଳ
ଚାହିଁଥା ରବିଙ୍କି ତୋର, ଉଜ୍ଜ୍ୱଳ ମଞ୍ଜୁଳ।
ଆରେ କୁଶେଶୟ!
ତୁ କି ନିତ୍ୟ ପୁଣ୍ୟମୟ ଅମୃତହୃଦୟ।
ପୁଣ୍ଡରୀକ ପୁଣ୍ୟତୀର୍ଥ ପାପୀ ତାପୀ ପାଇଁ,
ପଙ୍କେ ଜନ୍ମି ଅଙ୍ଗେ ତୋର ପଙ୍କ ଲାଗେ ନାହିଁ,
ବିଧାତା ବିଚିତ୍ର ଲୀଳା, କି ପ୍ରେମେ ତୋତେ ସୃଜିଲା,
ବସି ଭାବୁଅଛି ମନେ ରେ ପଦ୍ମ ସୁନ୍ଦର!
ତୋ ପାଇଁ ଲୋଡ଼ା କି ଏକା ପଙ୍କ ସରୋବର?
ପଙ୍କ ବିନା ପଙ୍କଜ କି ନ ପାରିବୁ ଫୁଟି?
କଣ୍ଟକ ମୃଣାଳ ବିନା ନ ପାରିବୁ ଉଠି?
ଜଳପରେ ହସି ହସି ଦେଖାଇବୁ ରୂପରାଶି,
ପୁଣ୍ୟର ଜନମ ସତେ ଏ ପାପ ମହୀରେ,
ମହତ ଜନମ ସତେ ଦରିଦ୍ର କୁଟୀରେ।
ରେ ବିସ-ପ୍ରସୂନ!
କିପରି ବର୍ଣ୍ଣିବି ତୋର ସୁମହତ ଗୁଣ।
ସୁନ୍ଦର ମଧୁର ପ୍ରିୟ କୋମଳ ଲଳିତ
ତୋ ରମ୍ୟ ବଦନ ସଙ୍ଗେ ଚିର ଉପମିତ,
ସର୍ବ ପଟାନ୍ତର ସାର ତୁଳନା ନାହିଁ ଯାହାର,
ଏପରି କି ଜନ୍ମିଅଛୁ ତୁ ଏ ଭବଧାମେ,
ଲିହିଛି କି ସର୍ବ ଶୋଭା ବିହି ପଦ୍ମ ନାମେ।
ଆରେ ପଦ୍ମଫୁଲ!
ନାହିଁ କି ଜଗତେ କିଛି ତୋର ସମତୁଲ?
ଏକାକୀ ସୌନ୍ଦର୍ଯ୍ୟ ତୋର ତୋହରି ଉପମା,
ନାହିଁ କିଛି ଜିଣିବ ଯା ତୋ ଦିବ୍ୟ ସୁଷମା,
ଅଛି ଅଛି ରେ ରାଜୀବ, ଅଛି ମୋ ଅନ୍ତରେ ଜୀବ,
ତୋଠାରୁ ମହତ ବଳି ତୋଠାରୁ ସୁନ୍ଦର,
ଅତୁଳିତ ରୂପରାଶି ପ୍ରେମେ ସେ ଭାସ୍ୱର।

ଆରେ ତାମରସ !
ଏ ତନୁ-ସରସେ ହସେ ମୋ ଆତ୍ମ-ସାରସ।
ଜଡ଼ତ୍ୱ 'ଦେବତ୍ୱ ମର୍ତ୍ତ୍ୟେ ଅମରତ୍ୱରାଜି,
ତମୋଜ୍ୟୋତି ମିଳି ଅବା ହୁଏ ଛାୟାବାଜି,
ମଳିନ ଅମଳିନ ଯାମେ ଦଗ୍ଧୀଭୂତ ନାନା ତାମେ
ନିତି କାନ୍ଦେ ତଥାପି ଏ ଚାରୁ ଆତ୍ମାଫୁଲ,
ସମସ୍ତ ଜଗତେ କହ କାହିଁ ତାହା ତୁଲ।
ବିଧାତାର ସାର ସୃଷ୍ଟି ଅପୂର୍ବ କୀରତି
ମର ଦେହେ ଅମରାତ୍ମା କରେ ଯା ବସତି,
ଦୁଃଖକଣ୍ଟକେ ଜଡ଼ିତ ମୃଣାଳେ ସେ ପ୍ରସ୍ଫୁଟିତ,
ପାପ-କାଳ-ବ୍ୟାଳ ପୁଣି ମୂଳଦେଶେ ତାର,
ଭୀଷଣ କାନନସ୍ଥଳୀ ପରା ଏ ସଂସାର।
ବିଜନେ ଗୋପନେ ଫୁଟି ଉଠେ ସେ ବିକଶି,
ସେ ପ୍ରେମ ଅରୁଣ ପ୍ରିୟ କିରଣେ ଉଲ୍ଲସି,
ରବି ବିନା ରାଜୀବର ନାହିଁ ଆଉ ଗତ୍ୟନ୍ତର,
ତେସନ ସେ ରବି ବିନା ଏ ଆତ୍ମା-ରାଜୀବ-
ଲପନେ ସୁହାସ ସତେ ଆନ କେ ସୃଜିବ !
ଅଜ୍ଞାନତିମିରେ ବସି କାନ୍ଦେ କେତେ ହାୟ !
ଉଇଁବେ କି ପ୍ରେମମୟ ନବ ରବି ପ୍ରାୟ,
ଶିଶିରଲୋତକ ମୋର ନୟନରୁ କରି ଦୂର
ପ୍ରେମକିରଣେ କୋମଳ ମଧୁର ଚୁମ୍ବନ
କରିବେ ସେ ପ୍ରାଣସଖା ଅଚିରେ ବହନ।
ଆରେ ଅମ୍ଭୋରୁହ !
ସେ କାନ୍ତ କିରଣ ବିନା କାନ୍ଦେ ଅହରହ।
ଜୀବନବସନ୍ତେ ମୋର ଏ ମଧୁ ପ୍ରଭାତେ
ଉଦିବେ ସେ ପ୍ରେମ-ଭାନୁହୃଦାକାଶ ପ୍ରାନ୍ତେ,
ଅବା ଅଜ୍ଞାନତା ଘନ କରିଅଛି ସମାଛନ୍ନ
ମୋହର ହୃଦୟ ପୁଣ୍ୟ ପ୍ରେମମୟରବି,
କ୍ଷଣେ ଅପସରିଲେ ତ ଦିଶିଯିବ ଛବି।
ନଳିନ !
ସେ ସୂର୍ଯ୍ୟକିରଣ ବିନା ମୋ ଆତ୍ମା ମଳିନ।
ପରମ ବିଶ୍ୱାସ ମୋର ପରମଈଶ୍ୱରେ,
ପ୍ରଫୁଲ୍ଲ ହୋଇବି ଦିନେ ଯାହା ପ୍ରେମ-କରେ,
ଯେ କହନ୍ତୁ ଯାହା ପଛେ, ଭ୍ରମୁଥିବି ମୁହିଁ ମିଛେ,
ଶତ ଶାସ୍ତ୍ର ଶତ ତତ୍ତ୍ୱ କରି ଅବହେଳା,
ତା ଉଦ୍ଦେଶେ ଭସାଇବି ମୋ ଜୀବନ-ଭେଳା।

କହନ୍ତୁ ଅସାର ଲୋକେକ ବିର କଳ୍ପନା,
ଉନ୍ମତ୍ତ ପ୍ରଳାପ ଅବା ବୃଥା ଉତ୍ତେଜନା,
ଅବା କେହି ଶ୍ଳେଷ ଗିରେ ନିନ୍ଦୁ, କି ଭୟ ତହିଁରେ,
ସରଳ ବିଶ୍ୱାସ ମୋର ଅନ୍ତରର କଥା,
ସବୁ ବୃଥା, ସବୁ ମିଥ୍ୟା ମୋର ପ୍ରାଣବ୍ୟଥା !
ଆରେ ଶତଦଳ !
ତୋ ପାଇଁ କଳ୍ପିତ ପରା ଏ ରବି ଉଜ୍ଜ୍ୱଳ।
ଯାହା ପ୍ରେମ-କିରଣେ ତୁ ଏତେ ଶୋଭା ଧରୁ,
ନିରେଖି ଯା ପ୍ରେମମୟ ରୂପ ପ୍ରେମେ ଥରୁ,
ମୋର ଶତ ମର୍ମବ୍ୟଥା ମୋର ଶତ ହୃଦକଥା
ବୁଝିବାର ପାଇଁ କେହି ନାହିଁ ଏ ସଂସାରେ,
ଅକାରଣେ ମରେ ମୁହିଁ ତୀବ୍ର ବାସନାରେ।
ଆରେ ସରୋରୁହ !
ଦଣ୍ଡେ ଶୁଣ ମୋ ବଚନ, ବିମୁଖ ନ ହୁଅ।
କହ କିପାଁ ହୃଦେ ମୋର ଏ କର୍ତ୍ତବ୍ୟ-ପ୍ରୀତି,
କିପାଁ ସର୍ବକାର୍ଯ୍ୟେ ମୁହିଁ ଲୋଡ଼େଁ ସତ୍ୟ ନୀତି,
'ସତ୍ୟ' 'ଧର୍ମ' 'ପ୍ରେମ' କହି ବୃଥା ଦିନ ଯାଏ ବହି,
ସତ୍ୟର ଆକର ବିଶ୍ୱେ କେହି ଜଣେ ନାହିଁ,
ବୃଥା ଏ ପ୍ରୟାସ ତେବେ କହ କାହା ପାଇଁ !
ଆରେ ପଦ୍ମଫୁଲ !
ପ୍ରେମଆଶେ ମୋ ହୃଦୟ କିପାଇଁ ଆକୁଳ ?
ଯେତେ କରେଁ ପ୍ରେମ ତେତେ ବଢ଼େ ମନସ୍ତାପ,
ଯେତେ ପ୍ରୀତି ଯେତେ ସ୍ନେହ ବଢ଼େ ତେତେ ତାପ,
ସଂସାରକୁ କରି ପ୍ରେମ ଦେଖେଁ ବୃଥା ପରିଣାମ,
ତଥାପି ନ ଶମେ ମୋର ଦାରୁଣ ପିପାସା,
କିପାଁଇ କହ ରେ ଏତେ ବୃଥା ପ୍ରେମଆଶା।
ଆରେ ପୁଣ୍ଡରୀକ !
ବୋଲିବି କି କରମକୁ ଚିରଦିନ ଧିକ।
କି ଶାନ୍ତି ଲଭିବି ପ୍ରାଣେ ନିନ୍ଦି ମୋ କରମ,
କି କରିଛି, ନ ଜାଣି ମୋ ସଜଳ ଲୋଚନ
ଅକାରଣେ ଦିନରାତି, ଏହି କି କ୍ରୂର ନିୟତି
ବିଧାତାର, ଅଥବା ସେ ପ୍ରୀତିଭରା ପ୍ରାଣେ
ତୋଷିବ ତୃଷିତ ଆତ୍ମା ପ୍ରେମ-ଜଳ ଦାନେ।

ଆରେ କୁଶେଶୟ !
କି ଲୋଡ଼େ ଜଗତେ ମୋର ଏ ଦୀନ ହୃଦୟ ।
ସୂର୍ଯ୍ୟ ସମ ସମୁଜ୍ଜ୍ୱଳ ଅବା ସୋମ ସମ
ନ ଇଚ୍ଛଇଁ ହେବାକୁ ମୁଁ ଦୀପ୍ତ ମନୋରମ,
ଅବା ତାରାଦଳ ସଙ୍ଗେ ବିହାର କରିବି ରଙ୍ଗେ
ନାହିଁ ମୋ ବାସନା ଅବା ସାଗରଗରଭ
ମଣିମୁକ୍ତା ରତ୍ନରାଜି ଅତୁଳ ବିଭବ ।
ଲୋଡୁନାହିଁ ହେବି ମୁହିଁ ତ୍ରିଭୁବନ-ଈଶ,
ସେ ପ୍ରେମଦେବତା ବିନା ଶୂନ୍ୟ ଦଶଦିଶ,
ଏକା ମୁଁ ସରବ ଧରା ଶାସନ କରନ୍ତି ପରା,
କି ସୁଖ ତହିଁରେ ମୋର କି ଆନନ୍ଦ ପ୍ରାଣେ,
କି ଶାନ୍ତି ତହିଁରେ କଞ୍ଜ, ବିନା ଆତ୍ମଦାନେ ।
ଥିବି ମୁହିଁ କ୍ଷୁଦ୍ର ଆହା, ଥିବି ମୁହିଁ ସାନ
ସେ ପ୍ରିୟ ଚରଣେ ମୋର ଆତ୍ମା କରି ଦାନ,
ପ୍ରେମ-ଅଶ୍ରୁଜଳେ ନିତି ପଦତଳ ଯିବ ତିନ୍ତି
ଉଠାଇନେବ ସେ ଧୀରେ ପ୍ରେମଆଲିଙ୍ଗନେ,
ତୁଷ୍ଟ ହେବ ଆତ୍ମା ମୋର ତା ପ୍ରେମବଚନେ ।
ତାର ପ୍ରେମମଧୁ ପାନେ ଶମିବ ପିପାସା,
ଚିରଦିନ ହୃଦୟର ଆକୁଳତା ଆଶା,
ମୋ ହୃଦ-ବୀଣାତନ୍ତ୍ରରେ ଗାଇବ ମଧୁର ସ୍ୱରେ
ଆଲୋଡ଼ିତ ଉଚ୍ଛ୍ୱସିତ କରି ପ୍ରାଣ ମୋର
କରୁଣ ସଙ୍ଗୀତେ ଦୂର କରି ଚିନ୍ତା ଘୋର ।
ପ୍ରତି ନିମେଷର ଶତ ବେଦନା ଯାତନା
ଅନୁଭୂତ ହେବ ତାର ଏ ମୋର କଳ୍ପନା,
ମୋର ଉଷ୍ଣ ଅଶ୍ରୁଧାର ଚରଣ ଧୋଇବ ତାର,
ମୋର ଶତ ଦୀର୍ଘଶ୍ୱାସ ଭେଦିବ ତା ପ୍ରାଣେ,
ଏ କି ମୋର ଉନ୍ମାଦନା, ଆହା କିଏ ଜାଣେ ।
ନିଜର ନିଜସ୍ୱ ମୋର ତାଠାରେ ହଜାଇ
ଯାପିବି ଅନନ୍ତ କାଳ ତା ସ୍ୱରୂପ ଧାଇ,
ସେହି ମୋର ମୋକ୍ଷକାମ, ସେହି ମୋର ଶାନ୍ତିଧାମ,
ତାହାର ବ୍ୟକ୍ତିତ୍ୱେ ମୋର ବ୍ୟକ୍ତିତ୍ୱ ବିକାଶ,
ତାପ୍ରେମେ କେବଳ ମୁହିଁ ଲଭିବି ଉଲ୍ଲାସ ।
ବୃଥା ତର୍କ ବୃଥା ଯୁକ୍ତି ବୃଥା ବିଦ୍ୟାଶ୍ରମ,
ତାକୁ ନ ପାଇଲେ ମୋର ନ ତୁଟିବ ଭ୍ରମ,
ସେ ତ ମୋ ଆତ୍ମାର ଭ୍ରାତା, ସେ ତ ମୋର ଜ୍ଞାନଦାତା,
ଅନ୍ଧ ପରି ମୂକ ପରି ସେବିବି ତାପଦ,
କି ଲାଭ ମୋହର ପାଇ ବିଶ୍ୱର ସମ୍ପଦ !
ତାବିନା ତିଳେହେଁ ମୋର ନାହିଁ ଦେହେ ଶକ୍ତି,
ତାବିନା ତିଳେଟି ମୋର ହୃଦେ ନାହିଁ ଭକ୍ତି,
ମୁହିଁ କ୍ଷୁଦ୍ର ବିନ୍ଦୁପରି, ସେ ମହାଜଳଧି ସରି,
ମୁଁ କ୍ଷୁଦ୍ର ପଙ୍କଜ ସେ ଯେ ସବିତା ସୁନ୍ଦର,
ସତ୍ୟ ଶାନ୍ତି ଜ୍ୟୋତି ଶକ୍ତି ଜୀବନ ମୋହର ।
ଅନ୍ଧ ମୁହିଁ ଜ୍ଞାନହୀନ, ତାଜ୍ଞାନରେ ଜ୍ଞାନୀ,
ଅନ୍ତରେ ଶୁଣୁଛି ସଦା ତାର ପ୍ରେମବାଣୀ,
ତାସଙ୍ଗେ ଆତ୍ମାରେ ମମ ରବି-ପଦ୍ମ ସମାଗମ,
ସାର୍ଥକ ମୋହର ପ୍ରେମ ସାର୍ଥକ ମୋ ଜୀବ,
ତହିଁର ଉପମା ଆହା ତୁହି ରେ ରାଜୀବ ।

## (ପଞ୍ଚମ ତରଙ୍ଗ)

# ତାରା ପ୍ରତି

ଦୂର ଗଗନରେ ଜୁଳୁ ଜୁଳୁ ଚାହିଁ
ହସୁ ତୁହି କ୍ଷୁଦ୍ର ତାରା,
କ୍ଷଣକେ ହୃଦୟେ ପରଶି ମୋହର
କେତେ ଚିନ୍ତା ଆଣୁ ପରା ।
କେଉଁ ଦୂର ଦେଶେ ଅଛୁ ତୁ ତାରକା,
ଭାବି ଯା'ର କଥା ଉପୁଜଇ ଦକା,
ଚିନ୍ତା, ଜ୍ଞାନ ତହିଁ ହୁଏ ମୋର ଥକା,
କ୍ଷଣକେ ହୃଦୟେ ପଶଇ ଛନକା,
ସତେ କେଡ଼େ ତୁଚ୍ଛ ନର ଅହମିକା,
ତୁଚ୍ଛ ଦର୍ପ ମାତ୍ର ତା ଉପଜୀବିକା ।
ଅନନ୍ତ ବିସ୍ତୃତ ନୀଳାକାଶ ତଳେ
ହସୁ ତୁହି କ୍ଷୁଦ୍ର ତାରା,
ସାନ ମୁଁ ମାନବ, ବହେ ତୋ ପରାଣେ
ଅନନ୍ତ ଭାବନା-ଧାରା ।
ନୀରବ ନିଶୀଥେ ନଭସ୍ତଳ ଚାହିଁ
କୋଟି କୋଟି ତାରା କ୍ଷଣକେ ଦେଖଇଁ,
ନୀରବ ଆକାଶ ନୀରବ ଧରଣୀ
ଗମ୍ଭୀରେ ପ୍ରଚାରେ ସତେ ଦିବ୍ୟବାଣୀ,
ନୀରବତା ଭେଦି ଆସି ମୋ ପରାଣେ
ପଶେ ସେହି ସ୍ୱର ବାଜେ ଘନେ ଘନେ.

କହିଯାଏ କାନେ  କେତେ କେତେ କଥା,
ସତେ ମୁଁ ମାନବ ଛାର,
ଆସିଅଛି କାହୁଁ  ଯିବି ମୁଁ କେଣିକି,
କେଉଁ ଦେଶେ ମୋର ଘର ?
କାହିଁ ମୋ ଅସ୍ତିତ୍ୱ ବୁଦ୍‌ବୁଦ ସମାନ,
କ୍ଷଣେ ଫୁଟି କ୍ଷଣେ ଯାହା ହୁଏ ଲୀନ !
କ୍ଷଣକେ ହସଇ ସଜ ଫୁଲ ପରି
ପେଇ ମୋର ରୂପ ପେଇ ମୋର ଶିରୀ,
ପରକ୍ଷଣେ କାହିଁ ଯିବି ମୁଁ ଉଭେଇ,
ପାରିବୁ କି ତାରା, ପାରିବୁ କି କହି ?
କାନ୍ଦି କାନ୍ଦି କିପାଁ  ବୁଲୁଅଛି ଭବେ,
ଜାଣିବାର ଇଚ୍ଛା କେତେ,
କେତେ ଶାସ୍ତ୍ର ପଢ଼ି  କେତେ ତତ୍ତ୍ୱ ଲୋଡ଼ି
ବୁଝି ନ ବୁଝିଲି ସତେ ।
କିପାଁ ମୁଁ ମାନବ ଆସି ଏ ବିଦେଶେ
ଦୁଇଦିନ ପରେ ଫେରିଯିବି ଶେଷେ ?
ଆସିଲି ମୁଁ କାହୁଁ, ଯିବି ମୁଁ କେଣିକି, .
କହ ତାରା ମୁହିଁ ପାରିବି ଜାଣି କି ?
ଜଣାଇପାରୁ କି ନଭୋଦେଶବାସୀ,
କାହିଁ ମୋର ଘର, କିପାଁ ମୁଁ ପ୍ରବାସୀ ?
ଆସିଅଛି କେଉଁ  ଦୂର ରାଇଜରୁ
କହିବୁ କି କ୍ଷୁଦ୍ର ତାରା ?
କ୍ଷୁଦ୍ର ତୋର ହାସ୍ୟ  ଗଗନର ପ୍ରାନ୍ତେ
କେତେ କଥା କହେ ପରା !
କହ ସତେ ମୋର ଅଛି ଜଣେ ମିତ୍ର,
ଅଦୃଶ୍ୟ ଅନନ୍ତ ପ୍ରେମରେ ବିଚିତ୍ର,
ନିମିଷେ ନିମିଷେ ଯା ପରଶ ପ୍ରାଣେ
ନବ ନବ ଆଶା ପ୍ରେମ ଭକ୍ତି ଆଣେ,
କରେ ଆକର୍ଷଣ ଗୋପନେ ଗୋପନେ,
ଦେଖେଁ ମୁଁ ଅଦୃଶ୍ୟ ମୂରତି ସ୍ୱପନେ,
ଲଳିତ ବୀଣାର ତାନେ
ମରମେ ପରଶି  ଗାଏ କେତେ ଗୀତ
ବାଜିଯାଏ ସତେ କାନେ ।
ପାରେ ନାହିଁ ବୁଝି ସେ ଅବ୍ୟକ୍ତ ଭାଷା,
ତଥାପି ପ୍ରାଣରେ ଆକୁଳ ପିପାସା
ଘେନି ମୃଗୁପଥେ ଧାଏଁ ମୁହିଁ ପାନ୍ଥ,
ମରୀଚିକା ଦେଖି କ୍ଷଣେ କ୍ଷଣେ ଭ୍ରାନ୍ତ,
କିପାଁ ସେ ଭୁଲାଏ, କିପାଁ ସେ ପଳାଏ
ସେହି ଜାଣେ କିପାଁ ହସାଏ କନ୍ଦାଏ,
କ୍ଷଣେ ଦେଇ ହୃଦେ ଦେଖା
ଲୁଚିଯାଏ କେଉଁ  ଅଦୃଶ୍ୟ ଆକାଶେ
ହୃଦେ ରଖି ପଦରେଖା ।
ଅନୁସରି ଧାଇଁଯାଏ ପଦଚିହ୍ନ,
ଖୋଜି ବିଶ୍ୱସାରା ହୁଏଁ କ୍ଳାନ୍ତ କ୍ଷୀଣ,
ଗୋପନେ ଆସି ସେ ସ୍ନେହ-କରସ୍ପର୍ଶେ
ହରିନିଏ ଶାନ୍ତି, ପ୍ରେମ ଭକ୍ତି ହର୍ଷେ
ଉଦ୍ଧଳେ ମୋହର ଏ କ୍ଷୁଦ୍ର ପରାଣ,
କିପାଁଇ ବା ତାର ଏ ପ୍ରେମଭିଆଣ
ମୋହ ସଙ୍ଗେ, କହ ତାରା,
ଅଛି କି ତାହାର  ଅଚ୍ଛେଦ୍ୟ ସମ୍ବନ୍ଧ,
କହ ଆଜ କହ ତ୍ୱରା ।
ସବୁ ପରିଶ୍ରମ ହେବ ମୋ ସଫଳ,
ଶୁଖିବ ମୋହର ନୟନର ଜଳ,
ପାଇବି ଯଦି ମୁଁ ଦେଖା ଶ୍ରୀଚରଣ,
ଜୀବନେ ମରଣ କରିବି ବରଣ,
ମରି ମୁଁ ଜୀଇବି ଶୁଭକର୍ମ ଲାଗି
ତା ଶ୍ରୀପଦେ ସର୍ବ ଚିନ୍ତା ଦୁଃଖ ତ୍ୟାଗି,
ଥରେ ଥରେ କିପାଁ  ଦେଖା ଦିଏ ସେହି,
ଉଭେଇଯାଏ ସେ କ୍ଷଣେ,
କେତେ କାନ୍ଦେ ମୁହିଁ  ତାହାର ପଶ୍ଚାତେ
ଶୁଣି କି ସେହି ନ ଶୁଣେ !
ସତ କହ ତାରା, ଏଡ଼େ ସେ ନିଷ୍ଠୁର,
ଶ୍ରୀଚରଣତଳୁ କରିବ ସେ ଦୂର,
ଭକତବତ୍ସଳ ପ୍ରଭୁ ଭଗବାନ
ଯୁଗେ ଯୁଗେ କହିଛନ୍ତି ମହାଜନ,
ଆଜି ସେହି ନିତ୍ୟ ସତ୍ୟ ପୁଣ୍ୟମୟ
ଦେବେ ପଦତଳେ ଅଭୟ ଆଶ୍ରୟ,
ପଦଛାୟା ଲାଗି ସିନା
ବିଜନ ଏ ମରୁ-  ପ୍ରାନ୍ତରେ ବୁଲୁଛି,
ଗତି ନାହିଁ ତାହା ବିନା ।

କୌମୁଦୀଧଉତ ନୀରବ ଆକାଶ
ଧରିଛି ଅଙ୍ଗେ କି ଧରା ଶ୍ୱେତ ବାସ,
ପୁଣ୍ୟ ଶ୍ରୀ ସୁନ୍ଦରୀ ତପସ୍ୱିନୀସମା
ଗମ୍ଭୀରେ ଉଚ୍ଚାରି ଶାନ୍ତି ମନ୍ତ୍ର କ୍ଷମା
ଢାଳେ ପ୍ରତି ପ୍ରାଣେ ଶାନ୍ତିରସଧାରା,
ହସି ହସି ତାହା ଦେଖୁଛୁ କି ତାରା,
ମୋର କ୍ଷୁଦ୍ର ପ୍ରାଣେ ଆଜି
ପରଶୁଛି ସେହି ଶାନ୍ତିସୁଧାରସ
ମର୍ମବୀଣା ଉଠେ ବାଜି।
କେତେ କେତେ କଥା ଜାଗେ ମୋର ମନେ
ଦେଖି କ୍ଷୁଦ୍ର ରୂପ ସୁଦୂର ଗଗନେ,
କେତେ ଉଚ୍ଚେ ତୁହି ଅଛୁ କ୍ଷୁଦ୍ର ତାରା,
କ୍ଷୁଦ୍ର ନୋହୁ ତୁହି କେଡ଼େ ବଡ଼ ପରା,
କ୍ଷୁଦ୍ର ମୁହିଁ, ତେଣୁ ଦିଶେ ମୋ ନୟନେ
କ୍ଷୁଦ୍ର ରୂପ ତୋର, ଭାବେଁ ତେଣୁ ମନେ
କ୍ଷୁଦ୍ର ମୋ ଧରଣୀଠାରୁ
ଝକ ଝକ ତୋରା ମଣିଟି ପରାଏ
ରୂପଟି ଉକୁଟେ ଚାରୁ।
ହସୁ ସିନା ତୁହି ଦୂର ନଭୋଭାଲେ,
ଦେଖୁଛୁ ସବୁ ଯା ଘଟେ କାଳେ କାଳେ,
କ୍ଷୁଦ୍ର ତୋର ତନୁ ଦିଶେ ମୋ ନୟନେ,
ଜାଣୁ ତୁ ଯାହା ମୁଁ ନ ଜାଣଇ କ୍ଷଣେ,
ଜାଣୁ କ୍ଷୁଦ୍ର ତାରା ଭବ-ଇତିହାସ
ନର ସୁଖ ଦୁଃଖ ବ୍ୟସନ-ବିଳାସ
ଦେଖିଛୁ ତୁ ଧରାତଳେ,
ନ୍ୟାୟ ଅନ୍ୟାୟର ଜୟ ପରାଜୟ
ନ ଜାଣେ ଯା ବୁଦ୍ଧିବଳେ।
ଜାଣୁ ତାରା ତୁହି କେମନ୍ତେ ଜଗତ
ସୃଷ୍ଟି ହୋଇଥିଲା, ନ ଜାଣେ ଯା ତତ୍ତ୍ୱ
କ୍ଷୁଦ୍ର ମୋର ବୁଦ୍ଧି, ଭାବେ ମୋର ଧରା
ବଡ଼ ସବୁଠାରୁ, ଚାହିଁ ତାର ପରା,
କୋଟି କୋଟି ଧରା ଅଛିଟି ଯା ସମ
ଦେଖୁ ତୁ, ନ ଜାଣେ ଯାହା ମୁଁ ଅଜ୍ଞାନ,
ଅନନ୍ତ ଆକାଶ ବକ୍ଷ
ବିମଣ୍ଡିତ କରି ଅଛନ୍ତି ଅଦୃଶ୍ୟ
ଗ୍ରହ ତାରା ଲକ୍ଷ ଲକ୍ଷ।

କିପାଁ ସୃଷ୍ଟ ଏତେ, ଭାବେଁ ବସି ମନେ,
କେମନ୍ତେ ରକ୍ଷିତ ଏ ଅନନ୍ତ ଶୂନ୍ୟେ,
ଏଡ଼େ ବଡ଼ ବିଶ୍ୱେ କେଡ଼େ କ୍ଷୁଦ୍ର ସ୍ଥାନ
ଅଟେ ମାତ୍ର ମୋର, ଜାଣେ କି ଅଜ୍ଞାନ,
ବୃଥା ମୁଁ ସ୍ୱପନ ଦେଖୁଅଛି କେତେ,
କେଡ଼େ କ୍ଷୁଦ୍ର ମୁହିଁ ସମସ୍ତ ଜଗତେ,
ଭାବିଲେ କ୍ଷୁଦ୍ରତା ମୋର,
ଆବେଗେ ନୟନୁଁ ବହିଯାଏ ନୀର,
ଜାଗେ ହୃଦେ ଚିନ୍ତା ଘୋର।
ସତେ କି ତାରକା, ଜାଣୁ ମୋର ତତ୍ତ୍ୱ,
କେଉଁ ଦେଶେ ପୂର୍ବେ ଥିଲା ମୋ ଅସ୍ତିତ୍ୱ,
ଅଥବା କେବଳ ଧୂଳି ମାତ୍ର ଜୀବ
ଅଣୁ ପରମାଣୁ ସଂଯୋଗେ ଉଦ୍ଭବ,
ସତେ କି ନିଷ୍ଠୁର ଏ ବିଶ୍ୱନିୟତି,
ଯେତେ ଭାବେଁ ମନେ ନ ହୁଏ ପ୍ରତୀତି,
କହ ମୋତେ କ୍ଷୁଦ୍ର ତାରା,
ଅଣୁକଣା ମାତ୍ର ନୁହେଁ ଏ ଜଗତ,
ଅନନ୍ତ ପ୍ରେମରେ ଭରା।
ଜାଣୁ ତୁ ତ ତାରା ଧରା ବିବରଣ,
ନିଖିଳ ଜଗତ ଦେଖେ ତୋ ନୟନ,
ଦେଖିଅଛୁ ତୁହି ଉତ୍‌ଥାନ ପତନ
ମାନବକୁଳର, ଦେଖୁ ଅନୁକ୍ଷଣ
କେତେ ରାଜ୍ୟ ଜୟ କଲେ କେତେ ଶୂର
କେତେ ରାଜ୍ୟ ନାଶି କେତେ କରି କ୍ରୂର,
ପଶୁପ୍ରାୟେ ବଧି ମାନବପରାଣ
କେତେ ରକ୍ତପାତ କଲେ ଅକାରଣ,
ଦେଖିଛୁ ନିଶ୍ଚଳେ ଥାଇ
କେତେ ଅତ୍ୟାଚାର ନିର୍ଦ୍ଦୋଷ ପୀଡ଼ନ
ଇତିହାସେ ଯାହା ନାହିଁ।
ଦେଖୁ ଯୁଗେ ଯୁଗେ ନର ଅହଙ୍କାର,
ଶିର ଟେକି ଉଚ୍ଚେ କରେ ସେ ଚିତ୍କାର
ପର ଗୁଣ ଦ୍ୱେଷି, ଆତ୍ମପ୍ରଶଂସାରେ
ଦଳି ପଦତଳେ ଦୁର୍ବଳେ ସଂସାରେ
ବୋଲାଏ ମହତ, ଅନ୍ୟାୟ ଶାସନ
ଶୁଣିଅଛୁ କେତେ ପୃଥିବୀ ରୋଦନ,

ଅନ୍ୟାୟର ଭାରେ ମହୀ
କେତେ ଛାରଖାର ହୋଇଛି ଦେଖୁଛୁ
ମୁଖେ ଯା ନୋହିବ କହି।
ଦେଖିଅଛୁ ପୁଣି କେତେ ବୀର ଗୁଣୀ,
କେତେ ମହାରଥୀ କେତେ ଋଷି ମୁନି,
ଶୁଣିଅଛୁ ସେହି ଶାନ୍ତି ଆଶ୍ରମରେ
ରାମାୟଣଗାଥା ବାଲ୍ମୀକି ମୁଖରେ,
ଦେଖିଅଛୁ ରହି ଅନ୍ୟାୟ ଆହବ
ପାଣ୍ଡବଙ୍କ ସଙ୍ଗେ କଲେ ଯା କୌରବ,
ଶୁଣିଛୁ ପୁରାଣଗାଥା,
ବେଦ ବେଦାନ୍ତର ଓଁ କାରନିର୍ଘୋଷ,
ଅନନ୍ତ ନିର୍ବାଣ କଥା।
ନିରଞ୍ଜନାକୂଳେ ମହାଦ୍ରୁମମୂଳେ
ଶାକ୍ୟସିଂହେ ତୁହି ଦେଖିଛୁ ନିଶ୍ଚଳେ,
ସପ୍ତବରଷର କଠୋର ତପସ୍ୟା
ଫେଡ଼ିବାକୁ ନରଦୁଃଖର ସମସ୍ୟା,
"ଅହିଂସା ପରମ ଧର୍ମ" ଏ ଜଗତେ
ପ୍ରଚାରିତ ଯେହୁ କଲେ ଲୋକହିତେ
ଦେଖିଛୁ ସେ ଧର୍ମପ୍ରାଣ,
ଅଶୋକ ନୃପତି- କୀରତିନିଚୟ
ଥିଲେ ଯେହୁ ଦୟାବାନ।
ଦେଖିଅଛୁ ପୁଣି ବୀର ସିକନ୍ଦର
ସମସ୍ତ ଜଗତ କରି ଅଧିକାର
ଏକଛତ୍ର ମହାସାମ୍ରାଜ୍ୟ ସ୍ଥାପନେ
କୃତକାର୍ଯ୍ୟ ନୋହି ମରି ବିଷପାନେ
କହିଯାଇଥିଲେ, "ମୁକ୍ତ ରଖି କର
ଦେଖାଇବ ବୃଥା ନର ଅହଙ୍କାର,
ଯାଇଛି ମୁଁ ଶୂନ୍ୟ କରେ,
କେହି କିଛି ସଙ୍ଗେ ଘେନି ତ ନଯାଏ,
ଅଳୀକ ସବୁ ସଂସାରେ।"
ଦେଖିଅଛୁ ପୁଣି ଘୋର ମରୁଦେଶେ
ଋଷି ମହମ୍ମଦ ବିଭୁଙ୍କ ଆଦେଶେ
ପ୍ରଚାରିଲେ ପୁଣ୍ୟ ଧର୍ମ ଇସଲାମ
ଦୂର କରି ଘୋର ମୂର୍ତ୍ତିପୂଜାତମଃ,
ସମସ୍ତ ଆରବ ମନ୍ତ୍ରମୁଗ୍ଧ ସମ
ଶୁଣିଥିଲେ ଯାର ବାକ୍ୟ ଅନୁପମ
ଦେଖିଅଛୁ କ୍ଷୁଦ୍ର ତାରା,
ଖ୍ରୀଷ୍ଟ ଚୈତନ୍ୟଙ୍କ ମହାପ୍ରେମ-ଧର୍ମ
ପ୍ରଚାରେ ପବିତ୍ର ଧରା।
ଦେଖିଅଛୁ ପୁଣି ଶତ ନରପତି
ରଖିଯାଇଛନ୍ତି ବିଶ୍ୱେ ଯେ କୀରତି,
ଆଜିଯାଏ ଶୋଭେ ଯେ ତାଜମହଲ,
ଆଜିଯାଏ ରାଜେ ରମ୍ୟ ନୀଳାଚଳ,
ଆଜିଯାଏ କ୍ଷୁଦ୍ର ଉତ୍କଳ ବକ୍ଷରେ
ପୂର୍ବ ଶିଳ୍ପ-ଶୋଭା ଦେଖାଇ ଗର୍ବରେ
ରାଜଇ ମନ୍ଦିର ଶତ,
କାହିଁ ଆମ୍ଭେ ଦୀନ ଉତ୍କଳୀୟ ଆଜି
ତୁଚ୍ଛ, ବଳହୀନ, ନତ !
ଶୁଣିଅଛୁ ପୁଣି ଶତ ପୁଣ୍ୟଗାଥା
ଅପୂର୍ବ ସାହସ କର୍ତ୍ତବ୍ୟର କଥା,
ଦେଖିଅଛୁ ସେହି ଜ୍ୱଳନ୍ତ ନାବରେ
ପ୍ରାଣବିସର୍ଜନ କଲା ଅକାତରେ
ତେଜସ୍ୱୀ ତରୁଣ ସେ କାସାବିଏଙ୍କା
ପିତ୍ରାଦେଶେ ତେଜି ଜୀବନର ଶଙ୍କା
ନେପୋଲ୍ୟନ ମହାବୀର
ଅଦ୍ଭୁତ ଉନ୍ନତି ଦେଖିଅଛୁ, ସବୁ
କରିପାରେ ସୁଧୀ ଧୀର।
ଉଆଟର୍ଲୁର ସେ ସମର ଭୀଷଣ,
ଦେଖିଛୁ କେମନ୍ତେ କ୍ଷଣକେ ପତନ,
ବିଶ୍ୱାସଘାତକ, ଯା ପାପର ନାହିଁ
ପ୍ରାୟଶ୍ଚିତ୍ତ ଭବେ, ଦେଖିଲୁ ତୁ ଚାହିଁ,
କୂଟ ରାଜନୀତି ସବୁ ପାରେ କରି
କଳାକୁ ଧଳା ସେ ପଚାରି ବିଚାରି,
ଦେଖିଅଛୁ ତାରା ପୁଣି,
ସ୍ୱାଧୀନତା ଲାଗି କଲେ ପ୍ରାଣପଣ
ଫ୍ରାଙ୍କଲୀନ ବୀର ଗୁଣୀ।
ଦେଖିଅଛୁ କେତେ ଗହନ କାନନେ
ଭ୍ରମିଛନ୍ତି ନର ଧର୍ମଜ୍ୟୋତି ଦାନେ,
ସୁଦୂର ଆଫ୍ରିକା, ୟୁରୋପ ସୁଦୂର,

ଅସୀମ ସାହସେ ଲଙ୍ଘି ପାରାବାର
ଲଙ୍ଘି ଗିରିବନ ନିଗ୍ରୋ କୁଟୀରରେ
ଜାଳିଛନ୍ତି ଧର୍ମଦୀପ କେତେ ନରେ,
ଦେଖିଅଛୁ ପୁଣି ଚାହିଁ,
ସ୍ୱାର୍ଥ ସାଧନାର ଆଶ୍ଚର୍ଯ୍ୟ ବିକାଶ
କଳଙ୍କିତ କଲା ମହୀ ।
ଭୀଷଣ ଦାସତ୍ୱ ପ୍ରଥା ସୃଜି ସୁଖେ
ଲଗାଇଲେ କେତେ କାଳି ଧର୍ମମୁଖେ,
କେତେ ଅତ୍ୟାଚାର, କେତେ ଆର୍ତ୍ତସ୍ୱର
ପହଞ୍ଚିନାହିଁ କି ସେ ତ୍ରିଦିବପୁର ?
ଥିଓଡ଼ର ତହୁଁ ଆସି ଧରାତଳେ
ଦୂର କଲେ ତାହା ଦୟା ବୁଦ୍ଧିବଳେ,
ଦେଖିଅଛୁ ସତେ ତାରା,
ପୁଣ୍ୟମୟୀ କେତେ ରମଣୀର କୀର୍ତ୍ତି
ସୀତା, ଦୁର୍ଗାବତୀ, ମୀରା ।
ପୁଣ୍ୟବତୀ ଦେବୀ ରାଣୀ ଭିକ୍ଟୋରିୟା,
ଅହଲ୍ୟା, ଫ୍ଲରେନ୍‌ସ ମୂର୍ତ୍ତିମତୀ ଦୟା
ଅକାତରେ କେତେ ଦୟାଧର୍ମ ବିହି
ପାଦପଦ୍ମ ସ୍ପର୍ଶେ ପୁଣ୍ୟ କଲେ ମହୀ;
ଦେଖିଅଛୁ ସତେ ଧରା-ଅଳଙ୍କାର
ରମଣୀ ଚରିତ୍ର ସୁଷମାର ସାର,
ଶୁଣିଅଛୁ ତୁହି ତାରା,
କେତେ କବିଙ୍କର ମଧୁବୀଣାତାନ
ଉଚ୍ଛ୍ୱସିତ ପ୍ରେମଧାରା ।
ସାରଳା, ଉପେନ୍ଦ୍ର, କାଳିଦାସ ଆଦି,
ହୋମର, ହାଫେଜ, ଭବଭୂତି, ସାଦି,
ବାଇରନ, ସେଲି, ମୂର, ଟେନିସନ,
ଗାଇଥିଲେ ଯେଉଁ ଗାଥା ମିଲଟନ,
ଶୁଣିଅଛୁ ଶତ ହୃଦୟ-ଉଚ୍ଛ୍ୱାସ,
ଶ୍ରୀ ଚରଣତଳେ ସଙ୍ଗୀତ ବିଳାସ,
ଦେଖିଅଛୁ ପୁଣି ତୁହି
ଭୀଷଣ ସମର ସ୍ୱାର୍ଥସାଧନାରେ
ନାରଖାର କଲା ମହୀ ।
ଜ୍ଞାନବିଜ୍ଞାନର ଅଦ୍ଭୁତ କୌଶଳ,
ଜଳେ, ସ୍ଥଳେ, ନଭେ ତଡ଼ିତର ବଳ
ବିନା ତାରେ ବାର୍ତ୍ତା ପ୍ରେରଇ ପଲକେ,
ସୃଷ୍ଟି ବିପର୍ଯ୍ୟୟ ଘଟାଏ କ୍ଷଣକେ,
ବାଷ୍ପୀୟ ତରଣୀ, ବାଷ୍ପୀୟ ଶକଟ
ନର ବୁଦ୍ଧି ଜ୍ଞାନ କରଇ ପ୍ରକଟ,
ବିହରି ଅମ୍ବର ରାଜ୍ୟେ
କଳ୍ପନାର ବଳ କରେ ପରାଜିତ
ନର ଯାହା ସାଧେ କାର୍ଯ୍ୟେ ।
ପଶୁତ୍ୱ ଦେବତ୍ୱ ରାଜେ ନରଠାରେ,
ଅମର ହୁଏ ସେ ନିଜ କରମରେ,
ସମସ୍ତ ଶାସନ କରିପାରେ ନର,
ସର୍ବନାଶ କିନ୍ତୁ କରେ ଅହଙ୍କାର;
ଅହଂଭାବ ତେଜି ହୋଇ ନମ୍ରଚିତ୍ତ
କରିପାରେ ନର ଜୀବନ ମହତ,
ଉଦାର ବିମଳ ସ୍ନେହେ
ବାନ୍ଧିପାରେ ବିଶ୍ୱ ନିଜ ହୃଦୟରେ,
ମହତ ଜୀବନ କହେ ।
ହେଉ ତାରା ମୋର ସେହି ଦିବ୍ୟ ଜ୍ଞାନ,
କରିବି ଯେସନେ ଏ ଜୀବନ ଦାନ
ବିଶ୍ୱ ସେବା ଲାଗି ହେଲେହେଁ ମୁଁ ହୀନ,
ନୁହେଁ ମାତ୍ର ବିଭୁ ଆଶିଷରେ ଦୀନ,
ନ ଜାଣେ ଯଦିବା ବାହିଁ ମୋର ବାସ
ଅଛି ମାତ୍ର ପ୍ରଭୁ ପୟରେ ବିଶ୍ୱାସ,
ଧରି ରଖିଅଛି ତାହା,
ଅନ୍ଧକାର ଭବ- ବିଷମ ଗହନେ
ସେ ଆଲୋକେ ଦିଶେ ରାହା ।
ନୋହିଲେ ତ ମୁହିଁ ହେବି ପଥହରା,
ଶୂନ୍ୟମୟ ମୋର ହେବ ସର୍ବଧରା,
ବ୍ୟର୍ଥ ଉନ୍ମାଦନା ଜାଗେ କି ପରାଣେ,
ଜନ୍ମ ଲଭିନାହିଁ ନର ଅକାରଣେ,
ମହତ ଉଦ୍ଦେଶ୍ୟ ଅଛି ତା ଜୀବନେ,
ହେବି ତତପର ଯେହ୍ନେ ତା ସାଧନେ,
ନିଉଟନ ସମ ମାତ୍ର
ଜ୍ଞାନ ପାରାବାର ବେଳାଭୂମି ପରେ
ଉପଳେ ଭରଇ ପାତ୍ର ।

ସାରା ଜଗତର ଯେତେ ଜ୍ଞାନରାଶି
କ୍ଷୁଦ୍ର ମୋ ହୃଦୟ ପାରେ କି ବିକାଶି ?
ପାରେ କିନ୍ତୁ କରି ହୃଦୟ ବିକାଶ
ପ୍ରଭୁପଦେ ରଖି ଅଟଳ ବିଶ୍ୱାସ,
ଈଶ ପ୍ରତିମୂର୍ତ୍ତି ମାନବ ଅନ୍ତରେ
ରାଜେ, ଜଣାଇବି ଯେସନେ ସଂସାରେ
ଆସୁ ପ୍ରାଣେ ନବଶକ୍ତି,
ଅଦୃଶ୍ୟ ଚରଣେ ନୟ ରଖି ନିତି
ଉଛୁଳୁ ମୋ ପ୍ରାଣେ ଭକ୍ତି ।
କହ କହ ତାରା, ଆସିଛି କି ଭବେ
ଦୁଇ ଦିନ ପାଇଁ କାନ୍ଦିବି ନୀରବେ;
ହୃଦଭେଦୀ ତପ୍ତ ଶ୍ୱାସେ ଆୟୁ ମୋର
କ୍ଷୟ କରି ମୁହିଁ ତେଜିବି ସଂସାର,
ଆଉ କିଛି କାର୍ଯ୍ୟ ନାହିଁ କି ମୋ'ପାଇଁ,
ମହତ୍ତ୍ୱ ଦେବତ୍ୱ ଦେଖିଯିବି ଧାଇଁ,
ତେବେ କିପାଁ ଏତେ ପ୍ରେମ,
ହୃଦୟେ ଉଚ୍ଛୁଳେ ଆବେଗେ ଗୋପନେ
ବୃଥା ଯଦି ପରିଣାମ ?
ବୃଥା ଯଦି ମୋର ହୃଦୟେ ଉଲ୍ଲାସ,
ବୃଥା ଯଦି ମୋର ଈଶ୍ୱରବିଶ୍ୱାସ,
ଏଡ଼େବଡ଼ ବିଶ୍ୱ ବୃଥାରେ ବୃଥାରେ
କିଏ କଲା ସୃଷ୍ଟି କହିବୁ କି ବାରେ ?
ଧୂଳିରେ ଯଦିଚ ହୁଏ ତନୁ ଲୀନ,
ବିରାଜିତ ଥିବ ଆତ୍ମା ଚିରଦିନ
ରବି କମଳର ପରି,
ଈଶ-ପୁଣ୍ୟ-ପ୍ରେମ କରେ ଆତ୍ମା-ପଦ୍ମ
ଲଭିବ ସ୍ୱର୍ଗୀୟ ଶିରୀ
କହ ତାରା, ଯଦି ଏହି ଜ୍ଞାନ ମୋର
ଭ୍ରାନ୍ତ ବୋଲି କେହି କହେ ସୁଧୀବର,
ବୃଥା ଉନ୍ମାଦନା କହେ ଯେବେ କେହି,
ନାହିଁ ଟିକେ ଲଜ୍ଜା, କ୍ଷୋଭ, ଦୁଃଖ ତହିଁ,
କିପରି ପ୍ରାଣରେ କରିବି ଧାରଣ
ଅନନ୍ତ ଶୂନ୍ୟତା ଜଡ଼ର ପ୍ରମାଣ,
ହେବି ଶେଷେ ଜଡ଼ବତ,
ତା'ଠାରୁ ବରଞ୍ଚ କର୍ତ୍ତବ୍ୟପଥରେ
ଧାଇଁଥିବି ଅବିରତ ।

ଜାଣେ ହେବ ମୋର ନିୟତ ପତନ,
ଲଭି ଦୁଃଖ କିନ୍ତୁ କରିବ ଯତନ,
ଉଠି ପଡ଼ି ମୁହିଁ ଧାଇଁବି ଏକାଗ୍ରେ,
ପର୍ବତ ସମାନ ବିଘ୍ନ ଆସୁ ଅଗ୍ରେ,
ଅବହେଳି ତାହା ଦଳି ପଦତଳେ
ଧାଇଁଯିବି ପ୍ରଭୁ ଶୁଭାଶିଷବଳେ,
ସମର୍ପି ହୃଦୟ ମନ
ପାଦପଦ୍ମ ତଳେ ଅନନ୍ତ ବିଶ୍ୱାସେ
ତେଜି ତୁଚ୍ଛ ଅହଂଜ୍ଞାନ ।
ହେଉ ବିଶ୍ୱସେବା ମୋ ଜୀବନବ୍ରତ,
ଆସୁ ବାଧା, ଆସୁ ଦୁଃଖ ଶତ ଶତ,
ନ ହୁଏ ଯେହ୍ନେ ମୁଁ କ୍ଷଣକେ ନିରାଶ,
ହେଉ କର୍ମ ଲକ୍ଷ୍ୟ, ବିଭୁପଦେ ଆଶ,
କର୍ତ୍ତବ୍ୟ ମହତ, କର୍ତ୍ତବ୍ୟ ଉଚିତ
କଲି ତାରା, ଆଜି ଜୀବନେ ନିହିତ,
ମୋ ଜୀବନ ନୈଶାକାଶେ
ତାରାସମ ସଦା ଜଳୁ ଆଶାଜ୍ୟୋତି,
ମାଗୁଣି ମୋ ବିଭୁପାଶେ ।



## ଷଷ୍ଠ ତରଙ୍ଗ

## ସହକାର ପ୍ରତି

(୧)

ସହକାର !
ସହକାର, ତୁ କାହାର
କରେଁ ମୁଁ ମନେ ବିଚାର,
କିପାଁ ଆଜିତୋ' ଶ୍ରୀଅଙ୍ଗେ ଏ ଶୋଭାସମ୍ଭାର ?
ଆରେ ଚୂତତରୁ !
କାହା ଅଭିମନ ଆଶେ ଏଡ଼େ ଭୂମ ଧରୁ ?
ଫୁଟିଉଠିଲାଣି ନବ ବକୁଳମଞ୍ଜରୀ,
ଚହଟିଗଲାଣି ବାସ ସମୀରେ ସଞ୍ଚରି,
ଆସିଲାଣି ମଧୁକର ଗୁଞ୍ଜରି ଗୁଞ୍ଜରି ।
ଆରେ ତରୁରାଜ !
କିପାଇଁ ତୋହରଏଡ଼େ ସୁମୋହନ ସାଜ ?

ହେଲାଣି ଯେ ଆସି କତି ସୁରଭି ସମୟ,
ବହିଲାଣି ଧୀରେ ସ୍ନିଗ୍ଧ, ମଧୁର ମଳୟ,
ଫୁଟିଲାଣି ଫୁଲମାଳା,
ଗାଇଲାଣି ପିକବାଳା,
ସାଜି ତେଣୁ ଫୁଲବାସେ ପାଦପ ! ଏମନ୍ତେ
ପ୍ରସ୍ତୁତ ଭେଟିବୁ ପରା ବିମଳ ବସନ୍ତେ।
କହ ତରୁବର !
ଭକତ, ସାଧକ, ପ୍ରିୟ ତୁ କି ବସନ୍ତର ?
ସ୍ତରେ ସ୍ତରେ ଫୁଲରାଶି ଝରି ଝରି ପଡ଼େ,
*ସୁରଭି-ସୁରଭି ସତେ ଶବ୍ଦଗୁଣେ ବଢ଼େ।
ଘନଶ୍ୟାମ ପୂର୍ଣ୍ଣଦଳ
ସୁଚିକ୍‌କଣ, ସୁକୋମଳ,
ଫୁଲ ତୋଡ଼ା ଧରି କି ରେ ଅଭ୍ୟର୍ଥନା ଆଶେ
ଚାହିଁଛନ୍ତି ପ୍ରତୀକ୍ଷାରେ ବସନ୍ତ ସକାଶେ ?

(୨)

କି ଉଲ୍ଲାସେ, ହାସେ, ରସେ ପୂରିତା ବସୁଧା,
ରଞ୍ଜିତ କି ଛତ୍ରେ ଛତ୍ରେ ପତ୍ରେ ପତ୍ରେ ସୁଧା,
ନିରେଖି ନୟନେ ଆହା ଶମେ ପ୍ରାଣକ୍ଷୁଧା !
ତହିଁ, ନବବର ସମ
ସଜ୍ଜିତ ବସନ୍ତ ଋତୁ କଲା ଆଗମନ,
ଧରଣୀ-ରମଣୀ ପାଶେ,
ମୁଗ୍ଧ ପୂତ ପ୍ରେମୋଲ୍ଲାସେ,
ମଳୟ ମାରୁତ ମୃଦୁ କମ୍ପିତ ନିଶ୍ୱାସେ ·
ସହସା ଉଠିଲା ଧରା ଫୁଲହାସେ ହସି,
ସରୋବରେ ଶତଦଳ ଉଠିଲା ବିକଶି,
ଉଦିଲା ଉଜ୍ଜ୍ୱଳ ରବି ପ୍ରେମକରେ ରସି।

(୩)

ପଳାଶ, ଅଶୋକ, ପଦ୍ମ, ନିଆଁଳି, କାମିନୀ,
ଏ ଆଦି କୁସୁମଭୂଷା ପିନ୍ଧି ସୁହାସିନୀ
ଉଜ୍ଜ୍ୱଳ କନକକର-
ବାସେ ବର କଳେବର
ଆବରି ବସିଛି ପରା ବସନ୍ତ ଉତ୍ସଙ୍ଗେ,
ଭାସୁଛି କି ଚଉଦିଗ ଆନନ୍ଦ-ତରଙ୍ଗେ !
ନବୀନ କିଶୋରୀସମା
ପ୍ରୀତିମୟୀ, ମନୋରମା
ଉଛଳି ବିମଳ କାନ୍ତି ଧରିଛି କି ଧରା !
ବ୍ରୀଡ଼ାବତୀ ନବବଧୂ
ସମ ଅବା ପ୍ରେମମଧୁ
ବିତରୁଛି ଫୁଲବାସେ ମନ୍ଦାନିଳେ ପରା !
ହରଷେ ବିହଙ୍ଗାବଳୀ
ନିନାଦନ୍ତି ବନସ୍ଥଳୀ,
ଗାଇ ମଧୁକଣ୍ଠେ ସୁଧାଲଳିତ କାକଳୀ;
ସମୀରଣ ସଞ୍ଚରଣେ,
ଅଳିକୁଳ ଗୁଞ୍ଜରଣେ,
ଝଙ୍କାରି ଉଠୁଛି ବୀଣା,, ଅବା ଚରାଚର
ଗାଆନ୍ତି ବିବାହଗୀତି ଧରା-ବସନ୍ତର।
ପାଦପ, ଏକାଳେ !
ତୁ କି ନବ କିଶଳୟ ବକୁଳର ମାଳେ
କନ୍ୟାସଖୀ ସମ ସାଜିଅଛୁ ଡାଳେ ଡାଳେ ?
ଫୁଲତୋଡ଼ା ଧରି ଅବା ହୋଇଅଛୁ ଉଭା,
ଶୁଭବିଭାହ ବାସରେ ବଢ଼ାଇବୁ ଶୋଭା।
ବକୁଳମାଳାରେ ଛନ୍ଦି
ବସନ୍ତ ବରକୁ ବନ୍ଦୀ
କରିବୁ କି ଧରା ପାଶେ ତୋର ଅଭିଳାଷ ?
ଆନ ସୁଖେ ସୁଖୀ ହୋଇ କରୁ ତୁ ଉଲ୍ଲାସ।

(୪)

ମହୀରୁହ !
କାହୁଁ ତୋ' ଉପମା ଆଜି ଆଣିବି ମୁଁ କହ।
କି ସୁନ୍ଦର ଶୋଭାମୟ ଚାରୁପତ୍ରାବଳୀ,
ଖଞ୍ଜେ ଖଞ୍ଜିଅଛି ବିଧି ଶ୍ୟାମରଙ୍ଗେ ଝଳି,
ସ୍ତବକେ ସ୍ତବକେ ଫୁଲଭାର ଶୀର୍ଷେ ତୋଳି,
ତୁ ତୋର ଉପମା ସିନା;
ଦୀନ ଭାରତୀୟ ବିନା
କେ ବୁଝିବ ତୋ ମହିମା ରେ ଚୂତ ଅଟବି !
ତୁ କି ବସନ୍ତର ସତେ ଦୀପ୍ତ ପ୍ରେମଛବି !
ଶତ ଶତ ବୃକ୍ଷରାଜି ଥାଉ ମହୀପରେ,
କେ ଜିଣେ କହ ରେ ତୋତେ ସୁନ୍ଦରପଣରେ,
ଲଳିତ, କୋମଳ, ସ୍ନିଗ୍ଧ, ପୂର୍ଣ୍ଣ ଅମୃତରେ !
ନବୀନ ବସନ୍ତ ପ୍ରାତେ ଚୂତ କାନନରେ
ଶ୍ୟାମ କିଶଳୟକୁଞ୍ଜେ
ବକୁଳ ମୁକୁଳପୁଞ୍ଜେ

* ସୁରଭି - ବସନ୍ତ, ସୁରଭି - ସୁବାସ।

ଝଙ୍କାରେ ଯେ କାଳେ ଅଳି ମୃଦୁ ଗୁଞ୍ଜନରେ,
ଯେକାଳେ କୋକିଳ ଗାଏ ତୋ ଗୁପ୍ତ କୋଟରେ,
ପବନେ ତା ଆସେ ଭାସି,
ଆଚମ୍ବିତେ କର୍ଣ୍ଣେ ପଶି
ଉଛୁଳାଇ ପ୍ରାଣବ୍ୟଥା ବାଜେ କି ମର୍ମରେ
ଦୂରାଗତ ସ୍ୱର, ପ୍ରେମେ ନେତ୍ରଯୁଗ ଝରେ।

(୫)

ଆରେ ସହକାର !
ବୃକ୍ଷମଧ୍ୟେ ଏକା ତୁହି ସର୍ବଶୋଭାଧାର,
ରୂପେ ଗୁଣେ ସମତୁଲ କେ ହେବ ତୋହର ?
ତୋ କୁସୁମ ଫଳ ବେନି ବିଖ ଭାରତରେ,
କି ରସାଳ, କି ମଧୁର, କି ସୁରଙ୍ଗ, କି ସୁନ୍ଦର !
ବିଦେଶୀ ଆପଲ୍, ସେଓ୍ୱ
କେଉଁକାଳେ ସରିହେବ
ତୋ ଅମୃତ ଫଳ ସଙ୍ଗେ; ହୀରକ କରକା
ରୂପେ ଗୁଣେ କେଉଁକାଳେ ହେବେ କହ ଏକା !
ସୁବର୍ଣ୍ଣ ସହିତ କେବେ ପିତଳ କି ସରି,
ମୁକୁତା, ଶିଶିର କେବେ ହେବେ ଏକାପରି !

(୬)

ରେ ବୃତ ଅଟବୀ !
କିପରି ଭୁଲିବି ତୋର ସ୍ନିଗ୍ଧ ଶ୍ୟାମଛବି ?
ନୋହୁ ଅତି ବଡ଼ ତୁହି ନୋହୁ ଅତି ସାନ,
ତଥାପି ଅଗମଗଣେ ତୁ ସର୍ବପ୍ରଧାନ,
କାୟା ନୁହେଁ, ଗୁଣ ମାତ୍ର ଜଗତେ ମହାନ।
ନିଦାଘେ ତୃଷିତ ଶୁଷ୍କ ଧରା ମରୁପରି
ଚାହିଁଲେ ତୋ ଶ୍ୟାମଛବି ଦୁଃଖ ଯାଏ ହରି,
ଘନପତ୍ରରାଶିତଳେ
ମୃଦୁ ବାୟୁଭରେ ଦୋଳେ,
ଗୁଚ୍ଛେ ଗୁଚ୍ଛେ ଫଳରାଜି, ପୁଣି ଡ଼ାଳେ ଡ଼ାଳେ
କରନ୍ତି ବାନର କ୍ରୀଡ଼ା ଛିଣ୍ଡାଇ ଅକାଳେ,
ବନସ୍ଥଳୀ ଶୋଭନୀୟ,
ଫଳରାଜି ଲୋଭନୀୟ,
ଅନୁଯୋଗ ବିନା ସବୁ ସହୁ ଅତ୍ୟାଚାର,
ବୈରୀ ପ୍ରତି ଏ କି ସତ୍ୟ ପ୍ରେମ ବ୍ୟବହାର ?
ଆରେ ତରୁ !
ସହିଷ୍ଣୁତା ଗୁଣେ ତୁ ଯେ ମାନବଙ୍କୁ ବଳୁ,
କର୍ତ୍ତକ ମସ୍ତକେ ନମ୍ରେ ଛାୟା ଦାନକରୁ।
ଏତେ ଶୋଭାରାଶି ଧରି ଅହଂକାର ନାହିଁ,
ଫଳଭାରେ ନତ ରହିଥାଉ ଭୂଇଁ ଚାହିଁ;
ଦର୍ପିତ, ଅନ୍ଧ ମୁଁ ତୋର ସରି ହେବି କାହିଁ !
ଗୁଣୀ ଯେ ପ୍ରକୃତ, ସେହି ସୁଜନ ବିନୟୀ,
ମୁର୍ଖ ମାତ୍ର ହୁଏ ସ୍ଫୀତ ବୃଥା ଗର୍ବ ବହି,
ନୀରବେ ଏ କଥା ସର୍ବେ ଜଣାଇ କି ତୁହି ?
ରେ ରସାଳଦ୍ରୁମ !
ଇଙ୍ଗିତେ ଦେଖାଇଦେଉ ମୋର ଆତ୍ମଭ୍ରମ।
ପ୍ରଚଣ୍ଡ ମାର୍ତ୍ତଣ୍ଡତାପେ ଦଗ୍ଧ, କ୍ଲିଷ୍ଟ, କ୍ଲାନ୍ତ,
ପଥଶ୍ରାନ୍ତ ପାନ୍ଥେ ଦେଉ ଛାୟା ଅବିଶ୍ରାନ୍ତ,
ମହତ ହିତ ବ୍ରତର ଏ କି ତୋ ଦୃଷ୍ଟାନ୍ତ ?
ଶିଖାଅ ହେବି ତୋ ସମ
ସୁବିନୀତ ନମ୍ରମନ,
ଅକାତରେ ଭବସେବା ଯାଉଥିବି କରି,
ମୋ କ୍ଷୁଦ୍ର ଆୟାସେ ବହୁ କ୍ଳେଶ ନେବି ହରି,
ପ୍ରତିଦାନ ବିନା ହିତ କରିବି ତୋ ପରି।

***

# ଅର୍ଚ୍ଚନା

ଶ୍ରୀମତୀ କୁନ୍ତଳା କୁମାରୀ ସାବତ

ଓଁ

ଉତ୍ସର୍ଗ

ଉତ୍କଳର ଜାତୀୟ କବି

ଉତ୍କଳ-ସାହିତ୍ୟରେ ନବଯୁଗର ପ୍ରବର୍ତ୍ତକ

ସ୍ୱନାମଧନ୍ୟ କବିବର

୰ ରାଧାନାଥ ରାୟଙ୍କର

ପବିତ୍ର ନାମରେ ସ୍ମୃତିରେ ଭକ୍ତି-ଚନ୍ଦନ-ପୂତ କ୍ଷୁଦ୍ର

# ବିଲ୍ୱଦଳ

ସାଦରେ ଅର୍ପିତ ହେଲା ।

କଟକ,

ତା ୮ ରିଖ ଫେବୃଏରୀ, ୧୯୨୬ ମସିହା

ଗ୍ରନ୍ଥକର୍ତ୍ତା

କଲିକତା ବିଶ୍ୱ-ବିଦ୍ୟାଳୟର ଅଧ୍ୟାପକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାରଙ୍କ ଲିଖିତ

# ମୁଖପତ୍ର

ଯେତେବେଳେ ମୁଁ କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ଆଧୁନିକ ସୁରଚିତ କାବ୍ୟମାନଙ୍କରୁ ରଚନା ଚୟନ କରୁଥିଲି, ସେତେବେଳେ ଦୈବାତ୍ କୁମାରୀ କୁନ୍ତଳାକୁମାରୀଙ୍କ କେତୋଟି ପଦ୍ୟ ରଚନା ପଢ଼ିବାକୁ ପାଇଥବଲି । ସେତେବେଳେ ଲେଖିକାଙ୍କର କୌଣସି ପରିଚୟ ମତେ ଜଣା ନଥିଲା; ମୁଁ କେବଳ ତାହାଙ୍କ ଭାଷାର ବିଶୁଦ୍ଧତା ଓ ସରଳତା ଏବଂ ଭାବର ମାଧୁରୀ ଓ ପବିତ୍ରତା ଦେଖି ତାହାଙ୍କ ରଚିତ ଯେଉଁ କେତୋଟି କବିତା ପାଇଥିଲି, ତାହା ବିଶ୍ୱ-ବିଦ୍ୟାଳୟ କର୍ତ୍ତୃକ ପ୍ରକାଶିତ ଓଡ଼ିଆ ସାହିତ୍ୟ ପରିଚୟର ତୃତୀୟ ଭାଗରେ ସାଦରେ ମୁଦ୍ରିତ କରିଥିଲି । ଏହି ସାହିତ୍ୟ ପରିଚୟ ଗ୍ରନ୍ଥ ପ୍ରକାଶିତ ହେବାର ଅନେକ ଦିନ ଉତ୍ତାରେ କବିଙ୍କ ରଚିତ କେତେକ ଖଣ୍ଡି ଗ୍ରନ୍ଥର ପରିଚୟ ପାଇଲି ଓ ତାହାଙ୍କ ପ୍ରଣୀତ ଏହି କାବ୍ୟଗ୍ରନ୍ଥ ଖଣ୍ଡିକର ମୁଖପତ୍ର ଲେଖିବାକୁ ଅନୁରୁଦ୍ଧ ହେଲି । ମୁ ସାନନ୍ଦରେ ଏହି କାବ୍ୟଗ୍ରନ୍ଥ ଖଣ୍ଡିକର ମୁଖପତ୍ର ଲେଖିବାକୁ ଅନୁରୁଦ୍ଧ ହେଲି । ମୁ ସାନନ୍ଦରେ ଏହି କାର୍ଯ୍ୟଟି କରିବାକୁ ପ୍ରସ୍ତୁତ ହୋଇଅଛି । ମୋର ପ୍ରଶଂସାବାଣୀ ଉପରେ ଓଡ଼ିଶାରେ କବିଙ୍କ ଯଶର ପ୍ରତିଷ୍ଠା ନିର୍ଭର କରୁନାହିଁ । କାରଣ ମୁଁ ଦେଖୁଛି ଯେ ଓଡ଼ିଶାର ସୁଧୀ ପାଠକମାନେ ଏହି ତରୁଣୀ କବିଙ୍କ ରଚନା ଯଥେଷ୍ଟ ଆଦରରେ ଗ୍ରହଣ କରିଅଛନ୍ତି ଓ ପୁରୀର ଚିର ପ୍ରସିଦ୍ଧ 'ମୁକ୍ତି ମଣ୍ଡପ' ନାମରେ ପଣ୍ଡିତ-ସଂଘ, ଏହାଙ୍କ କାବ୍ୟ-ପ୍ରତିଭାର ପ୍ରଶଂସା କରିଅଛନ୍ତି; ପୁଣି ପୁରୀର 'ମହିଳାବନ୍ଧୁ ସମିତି' ଏହାଙ୍କୁ 'ଉତ୍କଳ-ଭାରତୀ' ଉପାଧି ଦେଇଅଛନ୍ତି । ଗୁଣର ଏହି ଆଦର ଓ ପ୍ରତିଭାର ଏହି ସମ୍ମାନ ଦେଖି ମୁଁ ଆନନ୍ଦିତ ହୋଇଅଛି ।

ଏହି ଗ୍ରନ୍ଥକର୍ତ୍ତ୍ରୀ ଆଜନ୍ମ କବି ଓ ବାଲ୍ୟକାଳରୁ ନିଜର ବୁଦ୍ଧି ଓ ଅଧ୍ୟବସାୟ ବଳରୁ ଉଚ୍ଚଅଙ୍ଗର ଇଂରାଜୀ ସାହିତ୍ୟ ପ୍ରଭୃତି ପଢ଼ି ବିଦୁଷୀ ହୋଇଅଛନ୍ତି । ଅତି ଶୈଶବରେ ଓ ବାଲ୍ୟରେ ଏ ଏହାଙ୍କ ପିତାଙ୍କ କର୍ମସ୍ଥାନ ବ୍ରହ୍ମଦେଶରେ ବାସ କରିବା ସମୟରେ ଆପଣାର ମାତୃଭାଷାରେ ନିଜ ପ୍ରବୃତ୍ତିରେ କବିତା ଲେଖନ୍ତି, କିନ୍ତୁ କାବ୍ୟଚର୍ଚ୍ଚାରେ କେତେବେଳେ ହେଲେ କୌଣସି ପ୍ରକାର ଉତ୍ସାହ ପାଇନାହାନ୍ତି । ନିଜର ଚେଷ୍ଟାରେ ପ୍ରୟୋଜନୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣା ହୋଇ କଟକ ମେଡ଼ିକେଲ ସ୍କୁଲରେ ଡାକ୍ତରି ଶିଖିଥିଲେ ଓ ସେହି ସମୟରେ ପ୍ରତି ଶ୍ରେଣୀର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଅନେକ ପୁରସ୍କାର ଓ ସ୍ୱର୍ଣ୍ଣ-ପଦକ ଅର୍ଜନ କରିଥିଲେ । ଏବେ ଏ କାମ କରନ୍ତି- ଚିକିତ୍ସାବିଭାଗରେ, କିନ୍ତୁ ସାହିତ୍ୟର ଆଲୋଚନା ଓ କବିତା ଲେଖିବା ଜୀବନର ଭୂଷଣ ସ୍ୱରୂପ ରହିଅଛି । ଏକଆଡ଼େ ଦକ୍ଷତା ସହିତ ଚିକିତ୍ସା-ବିଭାଗର କର୍ତ୍ତବ୍ୟ ପାଳନ କରୁଅଛନ୍ତି, ଅନ୍ୟଆଡ଼େ ସ୍ୱଭାବସିଦ୍ଧ ଆକର୍ଷଣରୁ ଅତି ମନୋହର କବିତା ରଚନା କରୁଅଛନ୍ତି । ଏ ପର୍ଯ୍ୟନ୍ତ କବିଙ୍କର ଯେଉଁ କେତେଖଣ୍ଡି ପୁସ୍ତକ ପ୍ରକାଶିତ ହୋଇଅଛି ସେଗୁଡ଼ିକର ନାମ, ଯଥା- ଭ୍ରାନ୍ତି, ଅଞ୍ଜଳି, ଉଚ୍ଛ୍ୱାସ, ପରଶମଣି, କାଳୀବୋହୂ, ନଅହୁଣ୍ଡୀ ଓ ଅର୍ଚ୍ଚନା ।

ଏହାଙ୍କର ଯେଉଁ ସକଳ ଗଦ୍ୟ ରଚନା ଧର୍ମପ୍ରାଣତାର ସୂଚନା କରେ ତହିଁରୁ କେତୋଟି ବଙ୍ଗଭାଷାରେ ପ୍ରକାଶିତ ହୋଇଅଛି । ଏହାଙ୍କର ସାହିତ୍ୟିକ ଭବିଷ୍ୟତ ଅତି ଉଜ୍ଜ୍ୱଳ; ମୁଁ ମନେକରେ, ଏ ନିଜର ବିଶିଷ୍ଟତାରେ ଓଡ଼ିଆ ସାହିତ୍ୟରେ ଗୋଟିଏ ବିଶେଷ ଉଚ୍ଚ ସ୍ଥାନ ଅଧିକାର କରିବେ ଓ ଉତ୍କଳ ଗୌରବରେ ତାହାଙ୍କ ପ୍ରଦତ୍ତ ଅଳଙ୍କାର ଚିରଦିନପାଇଁ ଧାରଣ କରିବ ।

ଆଶୀର୍ବାଦ କରେ, କବି ନିରାମୟ ଦୀର୍ଘ ଜୀବନରେ ଉତ୍କଳବାସୀଙ୍କି ଆନନ୍ଦିତ ଓ ଧନ୍ୟକରି ନିଜେ ଧନ୍ୟ ହୁଅନ୍ତୁ ।

କଲିକତା, ୨୨ ତାରଖ ଫେବୃଆରୀ ୧୯୨୭ { *ଶ୍ରୀ ବିଜୟଚନ୍ଦ୍ର ମଜୁମଦାର*

# ଭୂମିକା

ମୋହର ପଣୀତ ଗଦ୍ୟ ଓ ପଦ୍ୟ ପୁସ୍ତକମାନ ଉତ୍କଳର ସୁଧୀବୃନ୍ଦଙ୍କ ଦ୍ୱାରା ବିଶେଷ ସମାଦୃତ ହେଉଥିବାରୁ ମୁଁ ସାହସୀ ହୋଇ ଏ ପୁସ୍ତକ ଖଣ୍ଡିକ ପ୍ରକାଶ କଲି। ପୁସ୍ତକାନ୍ତର୍ଗତ ଅନେକଗୁଡ଼ିଏ ପଦ୍ୟ ଉତ୍କଳ-ସାହିତ୍ୟ, ମୁକୁର, ପ୍ରଦୀପ ଇତ୍ୟାଦି ପତ୍ରିକାମାନଙ୍କରେ ସମ୍ପାଦକମାନଙ୍କର ଆନୁକୁଲ୍ୟବଶତଃ ସ୍ଥାନ ପାଇ ବିଭିନ୍ନ ପତ୍ରିକାମାନଙ୍କରେ ଏକାଧିକ ଥର ସମାଲୋଚିତ ଓ ପ୍ରଶଂସିତ ହୋଇଅଛି।

ପୁସ୍ତକଟିର ଚାରୋଟି ଅଧ୍ୟାୟ- 'ବିଲ୍ୱଦଳ', 'ଦୂର୍ବାଦଳ', 'ଚମ୍ପାଦଳ', 'ଶତଦଳ'ରେ ବିଭିନ୍ନ ବିଷୟକ ପଦ୍ୟମାନ ସନ୍ନିବିଷ୍ଟ କରି ଅର୍ଚ୍ଚନା ନାମରେ ପ୍ରକାଶ କଲି। ସହୃଦୟ ପାଠକପାଠିକାମାନେ ଦୟା ବହି ଥରେ ଆମୂଳ ପାଠ କଲେ ମୋହର ସମସ୍ତ ଶ୍ରମ ସାର୍ଥକ ଜ୍ଞାନ କରିବି।

ପୂଜନୀୟ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ବି.ଏଲ୍., ଓ.ବି.ଇ. ମହୋଦୟଙ୍କର ଚେଷ୍ଟା ଓ ଯତ୍ନଦ୍ୱାରା ଏଥର କେତେକ କବିତା ସ୍ୱର, ତାଳ ସଂଯୁକ୍ତ ହୋଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଅଛି।

କଟକ — ବନୀତା

ତା୮ିଖ ଫେବୃଏରୀ, ୧୯୨୬ ମସିହା — ପ୍ରଣେତ୍ରୀ

---

ଓଁ

## ଉତ୍ସର୍ଗ

ଉତ୍କଳର ଜାତୀୟ କବି
ଉତ୍କଳ-ସାହିତ୍ୟରେ ନବଯୁଗର ପ୍ରବର୍ତ୍ତକ
ସ୍ୱନାମଧନ୍ୟ କବିବର
୰ ରାଧାନାଥ ରାୟଙ୍କର
ପବିତ୍ର ନାମର ସ୍ମୃତିରେ ଭକ୍ତି-ଚନ୍ଦନ-ପୂତ କ୍ଷୁଦ୍ର

# ବିଲ୍ୱଦଳ

ସାଦରେ ଅର୍ପିତ ହେଲା।

କଟକ

ତା୮ିଖ ଫେବୃଏରୀ, ୧୯୨୬ ମସିହା — ଗ୍ରନ୍ଥକର୍ତ୍ତ୍ରୀ

# ସୂଚୀପତ୍ର





# ପ୍ରାର୍ଥନା

କାହୁଁ ପାଇବି ସେ ମୋହିନୀ,
କି ଘେନି ମୋହିବି ମେଦିନୀ ?
କାହୁଁ ପାଇବି ସେ ଅମୃତ ଭାଷା,
କିଏ ପୂରାଇବ ମୋ'ଦୀନ ଆଶା,
ଝରିବ ଝର୍ଝର ସଙ୍ଗୀତ ନିର୍ଝର,
ଆକୁଳି ସକଳ ଅବନୀ ?
ନୀରବ ନିରାଶ ଲେଖନୀ—
ଅୟସ ମୂନେ ମୋ' ନାହିଁ ସେ ଗୀତ,
ଶୁଣି ତା' ଜଗତ ହେବ ମୋହିତ,
ତବ ଶ୍ରୀ-ଚରଣ-କରୁଣା-ଝରଣା-
କୃପା-କଣାଟିକ କାମନା,
ନ ହେବି ଯେସନେ ବିମନା,
ଶୁଣାନାହିଁ କାହିଁ ଊଣା ଦୟାପଣ,
ତେଣୁ ଜଣାଏ ଏ ପ୍ରାର୍ଥନା



## କବିବର ୰ ରାଧାନାଥ ରାୟ ବାହାଦୁରଙ୍କ ଉଦ୍ଦେଶେ —

(୧)

କ୍ଷୁଦ୍ର ମୁହିଁ, ଦୀନ ମୁହିଁ, ଦେବ ଅରଚନେ
କି ଘେନି ଆସିବି ଭାନେ ବିଷାଦିତ ମନେ।
କେ କେତେ ମୁକ୍ତାମାଳା, ହୀରକ ହିରଣ୍ୟ
ଅଜାଡ଼ି ପୂଜିଲେ ପଦପଙ୍କଜ ବରେଣ୍ୟ।
ଉତ୍କଳର କବିବର ! ସାହିତ୍ୟସମ୍ରାଟ !
ସାହିତ୍ୟ ମନ୍ଦିରେ ଯୁଗେ ଯୁଗେ ଥିବ ଥାଟ।
ଯୁଗେ ଯୁଗେ ଧୂପ ଧୂନା ସରି ଭକ୍ତିଭରେ
ପୂଜିବେ ଉତ୍କଳୀ କବିବରଙ୍କ ଆଦରେ।
ଉତ୍କଳ, ଉତ୍କଳ ବୋଲି କେ ଚିହ୍ନନ୍ତା କାହିଁ,
ଅମର ତୂଳିକା ଯଦି ନ ଥା'ନ୍ତା ରଙ୍ଗାଇ।
ଆମରି ଜନନୀ-ରାଣୀ ଆଲେଖ୍ୟ ଅମୂଲ୍ୟ,
ତିଳୋତ୍ତମା ମନୋରମା, ଅପୂର୍ବ, ଅତୁଲ୍ୟ।
ବିଚିତ୍ର ବିବିଧ ବର୍ଣ୍ଣେ ପୂର୍ଣ୍ଣ ପ୍ରତି ପତ୍ର,
କବିତା କି କାରୁକଳା, ଅବା ଶୋଭା ଛତ୍ର,
କୁବେର-ଭଣ୍ଡାର-ଶିରୀ-ମାଣିକ୍ୟ ମଞ୍ଜୁଷା,
ନନ୍ଦନ-ମନ୍ଦାରମାଳା-ମଞ୍ଜୁ ପୁଷ୍ପଭୂଷା।
ଉତ୍କଳ ଭାରତୀ ପୂତ ଭବନ ଶୋଭନ
ଅମର କବିତା-କୁଞ୍ଜ ଲୀଳା ଉପବନ।
ଶାରଦା ଶ୍ରୀକର-ବୀଣା-ଲଳିତ ରାଗିଣୀ
କଳ-କୋକିଳ କଳିଙ୍ଗ-କାନନ-ଖଞ୍ଜିଣୀ।

(୨)

ଚିଲିକା, ମହେନ୍ଦ୍ର, ମାଲ୍ୟଗିରି, ମେଘାସନ
ତବ ପ୍ରଭାବେ ଲଭିଲେ ଗୌରବ ଆସନ।
ଉତ୍କଳର ଗିରି, ଦରୀ, ନଦୀ, ନିର୍ଝରିଣୀ,
ଦଣ୍ଡ, ପାଟ, ବନ, ବିଲ, ହ୍ରଦ, ପୁଷ୍କରିଣୀ
ଚିହ୍ନିଲେ ସରବେ ତବ କବିତା ପ୍ରସାଦେ,
ପୂର୍ବପୁରୁଷର କୀର୍ତ୍ତି ସ୍ମରିଲେ ଆହ୍ଲାଦେ।
ଶତତୀର୍ଥ ପୁଣ୍ୟପୀଠ ମନ୍ଦିରଦେହଳୀ,
ଅଙ୍କିତ ଆଲେଖ୍ୟ ସରି ନବରଙ୍ଗେ ଝଳି,
ଯା' ଘେନି ଉତ୍କଳ ଗର୍ବ ଗୌରବ ଜଗତେ,
କହ କେ ଚିତ୍ରିଛି ଦେବ ! ସୁନ୍ଦର ଏମନ୍ତେ ?
ଉତ୍କଳର କାଳିଦାସ ! କବିକୁଳମଣି !
ଶୋଷିତେ ସ୍ପନ୍ଦିତ ଯେତେ ଉତ୍କଳ ଧମନୀ,
ଯେତେ ଦେହ ଧରେ ପୂତ ଉତ୍କଳ ଅନ୍ତର,
ସରବେ ପୂଜିବେ ପାଦ ଯୁଗଯୁଗାନ୍ତର।

(୩)

ଉତ୍କଳର ରାଧାନାଥ, କବି-କୀର୍ତ୍ତିମାନ,
ସ୍ୱଦେଶେ ବିଦେଶେ ଚିରପୂଜିତ ମହାନ !
କିପରି ଭରସି ତବ ସିଂହାସନ କତି
ଆଣିବି ମୋ' ଉପହାର ତୁଚ୍ଛ ବେଲପତ୍ରି ?
ମାଣିକ୍ୟ ରତନ ଯହିଁ ଶୋଭଇ ଯତନେ
କ୍ଷୁଦ୍ର 'ବିଲ୍ୱଦଳ' ତହିଁ ଦେବି ମୁଁ କେସନେ ?
ଏତିକି ଭରସା ମହାଦେବ ପୂଜା ଯହିଁ
କବିକୁଳ-ଦେବ ପୂଜା ଯୋଗ୍ୟ କି ନୁହଇ !
ଅଯୋଗ୍ୟ ହେଲେ ହେଁ ଲଭି ଶ୍ରୀପାଦ ପରଶ
ବିରାଜିବ ଚିରଦିନ ସୁନ୍ଦର ସରସ।
ଢାଳିଦିଅ କୃପାବିନ୍ଦୁ ବସି ଦେବାସନେ,
କବିତାଶାମୁକା ଶୋଭୁ ମୁକ୍ତାରତନେ।
ପଙ୍କିଲ ସଲିଳେ ପଦ୍ମ ପିଇ ରବିକର
ପୀୟୁଷ ସୁହାସେ ମୋହ ଯଥା ଚରାଚର,
ଉଚ୍ଚ ଚରଣ ଶରଣେ ନୀଚ କ୍ଷୁଦ୍ର ମମ
ସୁଦୀନ ଲେଖନୀ ଦିନେ ହେବ ସୁଧାସମ।

ଗୁଣମୁଗ୍ଧା
ତା ୮। ୨। ୨୬ କୁନ୍ତଳାକୁମାରୀ

≋✲≋

## ନବବର୍ଷ-୧୯୩୧

(୧)

ସ୍ୱାଗତ !

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ
ତବ ସ୍ନେହ ସମ୍ଭାଷଣ ବୈଶାଖ ପ୍ରଥମେ।
ଡ଼ାକଇ ସିନ୍ଦୂରମୁଣ୍ଡି ସ୍ୱାଗତ ! ସ୍ୱାଗତ !
କାକ, କୋଇଲି, ମଇନା, ହଳଦିବସନ୍ତ;
ଘନ ପଲ୍ଲବିତ ଡାଳେ,

ଚମ୍ପା-ବୃତ ଅନ୍ତରାଳେ,
ପନସ ପୁନାଙ୍ଗ ବନେ, ବଟ ବିଟପିରେ,
କମ୍ପିତ ପଲ୍ଲବ ତରଙ୍ଗିତ କଳଗିରେ ।

(୨)

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ
ଦରିଦ୍ର କୁଟୀରେ ରମ୍ୟରାଜେନ୍ଦ୍ର ସଦନେ,
କାହିଁ ଷୋଡ଼ଶୋପଚାର,
କାହିଁ ତୃଷ୍ଣା ଅଶ୍ରୁସାର,
କାହିଁ ହରଷ-ହିନ୍ଦୋଳେ ସୁହାସ ଲହରେ,
କାହିଁ ଅର୍ଦ୍ଧ ଅନଶନେ ଛିନ୍ନ ବସନରେ,
କାହିଁ ଉତ୍ସବ ଆମୋଦ ମଧୁର ବାଜଣା,
କାହିଁ ଗଭୀର ବିଷାଦ କରୁଣ କାନ୍ଦଣା ।
ପ୍ରାଣଭେଦୀ ଦୀର୍ଘଶ୍ୱାସ,
କାହିଁ ପୂର୍ଣ୍ଣ ପ୍ରେମୋଲ୍ଲାସ,
ଯୁଗଳ ମିଳନେ ଶୁଭ, ନିଷ୍ଠୁର ବିରହେ,
ମିତ୍ର ଆଲିଙ୍ଗନେ ଅବା ଅମିତ୍ର କଳହେ ।

(୩)

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ
ତବ ସ୍ନେହ ସମ୍ଭାଷଣ ବୈଶାଖ ପ୍ରଥମେ,
ଅବହିତ ଅବନୀ କି ତପସ୍ୟା ସାଧନେ
ପାଳିବ ପ୍ରତିଜ୍ଞା କ୍ଲେଶ ଅସହ୍ୟ ସହନେ ।
ରୁକ୍ଷବକ୍ଷ ହେବ ଧରା,
ଦହିବ ପ୍ରଚଣ୍ଡ ଖରା,
ନାଶିବ କଲୁଷରାଶି ସାରା ବରଷର;
ଆଦ୍ୟ ମନ୍ତ୍ର ତପସ୍ୟା କି ନିବୃତ୍ତି ପଥର !

(୪)

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ,
ବାର୍ଷିକ ଅତିଥି ମମ ଦୀନ ନିକେତନେ;
କିବା ଦେବି ଉପହାର,
ନାହିଁ ଷୋଳ ଉପଚାର,
ଦେବି ମାତ୍ର ଯା' ସୁଲଭ ଉତ୍କଳଭୁବନେ,
କୁଟୀରେ, ପ୍ରାସାଦେ, ଗିରି, ବନେ, ଉପବନେ;
ହେଉ ସରସ, ନୀରସ, ନାହିଁ କ୍ଷୋଭ ତହିଁ,
ମୋ ଜନମଭୂମି ଦ୍ରବ୍ୟେ ମୁଁ ସ୍ନେହ ବହଇ;
ତହୁଁ ବଳି ପ୍ରିୟତର,
ସୁପବିତ୍ର ମନୋହର,
ନାହିଁ କିଛି ତ୍ରିସଂସାରେ ମୋ' ଆଖି ଆଗରେ,
ତା' ବିନା କି ଦେବି ତବ ପଙ୍କଜ ପୟରେ ?

(୫)

ଓଡ଼ିଶାର ଘରେ ଘରେ ଆଜି ସେ ଆନନ୍ଦ
ସେ ଶୁଭ ଆନନ୍ଦେ ତବ ବନ୍ଦିବି ଶ୍ରୀପଦ,
ପକ୍ୱ ଶ୍ରୀଫଳ ରସାଳେ,
ପ୍ରଫୁଲ୍ଲ ମଲ୍ଲିକାମାଳେ,
ଟଗର, ତୁଳସୀଦଳେ, କରବୀରହାରେ,
ପାଟଳି, କାମିନୀ, କାଠରଙ୍ଗଣୀ, ମନ୍ଦାରେ ।

(୬)

ପବିତ୍ର ଚଉରାମୂଳେ ପଲ୍ଲୀ-ବାଳାକୁଳ
ସଜାଡ଼ିଦେଲେଣି ଆର୍ଦ୍ରଆତପ ତଣ୍ଡୁଳ,
ପେଡ଼ିରେ ଚନ୍ଦନ ଘଷି
ଥାଳୀରେ ଦେଲେ ପରଷି
ନୈବେଦ୍ୟ ମଧୁର ଶକ୍ତୁ ଶର୍କରା ମିଶ୍ରିତ
ଧୂପପାତ୍ରେ ଧୂମ ଧୂନାଗନ୍ଧେ ସୁରଭିତ ।
ବାଳକ ବାଳିକା ମହା ହରଷେ ମୋହିତ,
ଅଙ୍ଗ ସୁଗନ୍ଧିତ ଚାରୁ ଚନ୍ଦନଚର୍ଚ୍ଚିତ,
ପିଇ ବେଲପଣା ସୁଖେ,
ବୁଲନ୍ତି ପବନ ମୁଖେ,
ଶୁଭ୍ର ମଲ୍ଲୀମାଳ ଗଳେ ମୃଦୁ ଆନ୍ଦୋଳିତ,
ହସିତ ବଦନେ ପୂର୍ଣ୍ଣ ଚନ୍ଦ୍ରମା ବିମ୍ବିତ ।

(୭)

ମଧୁର ମୁରଲୀ ତାନେ ଦୂରେ ଧେନୁଦଳ
ଆଶ୍ରିଲେଣି ଦ୍ୱିପ୍ରହରେ ଗ୍ରାମ ବଟତଳ,
ଗୋପବାଳକ ହରଷେ
ସଙ୍ଗୀ ସଙ୍ଗେ ଖେଳି ବସେ,
କେ ଶିଶୁ ବୁଲଇ ସୁଖେ ପ୍ରଜାପତି ଧରି,
କେ ଉଚ୍ଚେ ତୋଳଇ ସୁଧା-ସୁସ୍ୱର ଲହରୀ ।

(୮)

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ
ତବ ସ୍ନେହ ସମ୍ଭାଷଣ ବୈଶାଖ ପ୍ରଥମେ;
ସ୍ନେହ କହିବି କିପରି
ଆକୁଳ ପିପାସା ଧରି,

କଣ୍ଠାଗ୍ରତ ପ୍ରାଣ ମୋର ତପ୍ତ ଝଞ୍ଜା ବାୟୁ
ଦିଗନ୍ତେ ସଞ୍ଚରି ପରା ହରିନିଏ ଆୟୁ ।
ମାଡ଼ି ମାଡ଼ି ଆସେ ଖରା, ଦିନ ଯାଏ ବଢ଼ି,
ଧୂଳି ଉଡ଼ି ପୂର୍ଣ୍ଣ ଦାଣ୍ଡ, ଶୁଖେ ପୁନକଢ଼ି,
ଶୁଷ୍କ ଆଜି ଝର, ସର,
କୃଶ ନଦୀ କଳେବର,
ଘନ ଘର୍ମବାରି ଝରି ବିକଳ ଶରୀର,
'ଜଳ ଜଳ' କହି ପ୍ରାଣୀ ଆକୁଳ ଅଧୀର ।

(୯)

ଉର୍ଦ୍ଧ୍ୱଶ୍ୱାସେ ମହିଷୀଏ ଧାଇଁଲେ ତ୍ୱରିତ,
ବନାନ୍ତ ବାପୀରେ ବପୁ ବୁଡ଼ିଲା ସ୍ୱେଦିତ,
ସତେ ଖଣ୍ଡ ମେଘଦଳ
ଘୋଡ଼ାଇଲା ନୀଳ ଜଳ !
କାଳ ବଇଶାଖ ନଭେ ଆସିଲା ଗରଜି,
ଅଜାଡ଼ିଲା ଶିଳାବୃଷ୍ଟି ଆତଙ୍କ ସରଜି;
ଧାଇଁ ଧାଇଁ ଖରତର
ପଥଶ୍ରାନ୍ତ ଆର୍ତ୍ତ ନର
ଘନ ଅଶ୍ୱତ୍ଥମୂଳେ ସେ ବସଇ କାତରେ,
ହସଇ ପ୍ରକୃତିରାଣୀ ପୁଣି କ୍ଷଣପରେ ।

(୧୦)

ହସଇ ହରିତ କୁଞ୍ଜ ଶଗଡ଼ବାଟୁଆ,
ଚଷା ଚଷିଲାଣି ଭୂଇଁ ଭାଳି ଧାନଗୁଆ,
ବରଷିଲା ପିଉପାଣି
ଧାନବୁଣା ମନ ଜାଣି-
ଝିଁ ଝିଁ ନାଦେ ନିନାଦିତ କ୍ଷେତ୍ର, ବନଭୂମି,
ଉଡ଼ଇ ଖଣ୍ଡିଆଭୂତ ଭୈରବେ ନିଃସ୍ୱନି ।
ଗଗନ ପବନ ଗ୍ରାସି
ଉଡ଼େ ଧୂଳି ରାଶି ରାଶି,
ଝଡ଼ିପଡ଼େ ଶୁଷ୍କ ପତ୍ର, କୁସୁମ ମଞ୍ଜରୀ,
କର୍ଷିତ ମୃତ୍ତିକା ଗନ୍ଧ ସମୀରେ ସଞ୍ଚରି ।

(୧୧)

ଫଳଭାରେ ନତଲଙ୍କା ଆମ୍ବ, ଜାମ୍ବୁଖାଇ,
କେନ୍ଦୁ ପଲ୍ଲବ ପଙ୍କଜ ରଖିଛି ଫୁଟାଇ,
ଗଇଶ, ଶିରୀଷ ଶୋଭା,
କ୍ଷୀରକୋଳି ମନୋଲୋଭା,
ବଟ ସୁଶୋଭିତ ରଙ୍ଗ ଫଳ ମଣିମାଳେ
ପୀତ ପକ୍ୱଫଳ ଗୁଚ୍ଛା ନରକୋଳି ଡ଼ାଳେ !
ନିମ୍ବ, କପିତ୍ଥ, ତେନ୍ତୁଳି
ଫଳ ପେନ୍ଥା ପଡ଼େ ଝୁଲି,
ଶୋଭାଞ୍ଜନ, ସ୍ୱର୍ଣ୍ଣରମ୍ଭା ମାନସରଞ୍ଜନ,
ସଜାଡ଼ିଛି ନଦୀପଠା ଗୃହସ୍ଥ ବ୍ୟଞ୍ଜନ ।

(୧୨)

ସ୍ୱାଗତ ! ସ୍ୱାଗତ ! ନବବର୍ଷ ଏ ଭୁବନେ,
ତବ ସ୍ନେହସମ୍ଭାଷଣ ବୈଶାଖ ପ୍ରଥମେ,
ସ୍ନେହ କି ଦୁଃଖର ସାଥୀ,
ବଢ଼େ ଦିନ, ଛିଡ଼େ ରାତି,
ବେଳୁଁ ବେଳୁଁ ସୂର୍ଯ୍ୟକର ହେଲାଣି ପ୍ରଖର,
ଘୋର ସନ୍ତାପ ସୂଚନା ଦେଲାଣି ଏଥର ।
ଜଳି ଉଠିଲାଣିଦାବ ଦହନ ଗହନେ,
କାତର ପଶୁଏ ଆଶୁ ପ୍ରାଣ ବିସର୍ଜନେ;
ପାଟ ପନ୍ତ୍ୟଲେ ଶିକାରୀ
ପ୍ରାଣ ହରେ ଶର ମାରି,
ତୃଷା-କାତର କୁରଙ୍ଗ କୋମଳ ଶାବକ,
ଧିକ ତୁ ମାନବ ଗର୍ବେ ଧରଣୀ ଶାସକ ।

(୧୩)

ଜଳେ ବେଣାବନେ ବହ୍ନି କରାଳ ମୂରତି,
ପୂର୍ଣ୍ଣତୋୟା ପୟସ୍ୱିନୀ କରେ ତଳେ ଗତି,
ବକ୍ଷେ ତା' କରୁଣାବାରି
ନ ପାରେ କ୍ଷଣେ ନିବାରି,
ମରମ ବିଦାରି ଭୀମ ମରଣ ଯାତନା,
ଦଗଧ ସହସ୍ର ଜୀବ କ୍ରୁର କର୍କଥନା ।
ଉଠେ ଘୋର ହାହାକାର,
କମ୍ପେ ନରୋ ଦିଗବାର;
ପବନ ପରଶେ ଅଗ୍ନି ବଢ଼େ ଶତଶିଖା,
ଅବନୀର ଏ କି ଦୁଃଖ ଭୀଷଣ ପରୀକ୍ଷା ?

(୧୪)

ଲୋଳଜିହ୍ୱା ଶ୍ୱାନକୁଳ ଗ୍ରାମ ବୃକ୍ଷମୂଳେ
'ଜଳ ଦେ ଜଳ ଦେ' ଡାକେ ଚାତକ ଆକୁଳେ,
ବୃକ୍ଷରୁ ଛିଡ଼ି ବାଦୁଡ଼ି
ସ୍ରୋତଜଳେ ମରେ ବୁଡ଼ି,
ଶୁଖେ ଶ୍ୟାମ ଦୁର୍ବାଦଳ, ଫାଟଇ ଟାଙ୍ଗର,
ପ୍ରାଣସଂହାରୀ ନିଦାଘ କିବା ଭୟଙ୍କର !

(୧୫)

ସ୍ୱାଗତ ! ସ୍ୱାଗତ ! ବନ୍ଧୁ କହିବି କିପରି
ଆସିଲୁ କି କ୍ଷଣେ ରୁଦ୍ର ରୌଦ୍ର ସଙ୍ଗେ ଧରି,
ଚିର ସଙ୍ଗୀମାନବର ଦୁଃଖ କି ଜୀବନେ
ଦୁଃଖ ବିନା ସୁଖ କାହିଁ କହୁ କି ମରନେ,
ଶତ୍ରୁର ଚୁମ୍ବନ ବିଷ,
ମିତ୍ର ପ୍ରହାର ଆଶିଷ,
କ୍ଳେଶ ଶେଷେ ସୁଖରାଶି ଉଦୟ ନିଶ୍ଚୟ,
ଦାରୁଣ ନିଦାଘ ଅନ୍ତେ ବରଷା ସମୟ ।

(୧୬)

ବରଷା ଆଶାରେ ବସି ରହିଛି ଧରଣୀ,
ବିଭୁ-କରୁଣା-ଆସାର ମୋ ଦୀନ ମାଗୁଣି;
ନିଦାଘ ତପତ ଖରା
ନୀରବେ ସହିଣ ଧରା
ହସିବ ଶ୍ୟାମଳ-ସୁଖେ ବରଷା ବାସରେ,
ଶୀତଳିବ ଆତ୍ମା ମୋର ପ୍ରଭୁ ପ୍ରସାଦରେ ।
ଏ ଜୀବନ ଖରା ଶେଷେ
ଆନନ୍ଦ ମଧୁର ବେଶେ
ସ୍ନେହ ମୋହନ ସୁବେଶେ ଶୋଭିବି ସୁନ୍ଦର,
ଲଭିବି କି ପୁରସ୍କାର ଚରଣ-ପୁଷ୍କର !



## ଉତ୍କଳ ବନ୍ଦନା

କୋଟି କୀର୍ତ୍ତି ମୁକ୍ତାମାଳିନୀ,
କାନ୍ତି କମଳା କଳାକୁଶଳା ଶାନ୍ତିଶାଳିନୀ । ଧ୍ରୁବ ।

(୧)

କୋଟିସୁତ ସ୍ନେହଶୀଳା,
କୋଟିତୀର୍ଥ ସ୍ୱର୍ଗ ଲୀଳା-,
ରତ୍ନହାରା ଚିତ୍ରୋତ୍ପଳା,
ସିନ୍ଧୁ ଧୌତ ପୁଣ୍ୟବେଳା,
ନୀଳାଚଳ-ଚିଲିକା-ପ୍ଲାବିନୀ-
— ଶକ୍ତି, ମୁକ୍ତି, ଭକ୍ତିଦାନେ ଭକ୍ତପାଳିନୀ ।

(୨)

ତାଳ-ତମାଳ-ତାଳୀନୀଳା,
ଶତ ତଟିନୀ ପୂତ ସଲିଳା,
କାବ୍ୟକୁଞ୍ଜ-କଳକୋକିଳା,
ପୂଜିତ ପାଦ, ଭଞ୍ଜ, ଶାରଳା,
ଶୁଭଗୀତ-ସୁଧା-ସ୍ୟନ୍ଦିନୀ,
ବିଶ୍ୱବନ୍ଦନ, ଚିତ୍ତମୋହନ, ନୟନ ହ୍ଲାଦିନୀ ।

(୩)

ବିଶାଳ ଶୈଳ ବିପିନ ମାଳୀ,
କେଦାର କାନ୍ତ ପନ୍ନଶାଳୀ,
କାନନ ଫୁଲ୍ଲ ପ୍ରସୂନାଞ୍ଜଳି,
ପୂର୍ଣ୍ଣ ପକ୍ଷୀ କଳ କାକଳି,
ରତ୍ନ ଜ୍ୟୋତି ଉଜ୍ଜ୍ୱଳାନନୀ,
ଚୁଆ ଚନ୍ଦନ କର୍ପୂର ମୃଗମଦ ମୋହିନୀ ।

(୪)

ଅନଙ୍ଗ, ଯଯାତି, ବୀର ଜନନୀ,
ବୀର ରୁଧିର ସିକ୍ତ ଅବନୀ,
ବିଦ୍ୟାଧର୍ମ ମୋକ୍ଷ ମେଦିନୀ,
ଶୁଦ୍ର ବ୍ରାହ୍ମଣେ ସାମ୍ୟ ବାଦିନୀ,
ଜାତିଭେଦ-ବନ୍ଧ ଭଞ୍ଜିନୀ,
ନିଖିଳ ଭାରତ ଭକତ-ଚରଣରେଣୁ ରଞ୍ଜିନୀ ।

(୫)

ଜୟ, ଜୟ, ବୀର ବରେଣ୍ୟେ !
ଜୟ ଭକତ ଚିତ୍ତ-ଶରଣ୍ୟେ !
ଜୟ ଧନ୍ୟେ ! ଜୟ ପୁଣ୍ୟେ !
କୋଟି ସନ୍ତାନ ଅନ୍ନପୂର୍ଣ୍ଣେ !
ସର୍ବଶୁଭଶାନ୍ତି ଦାୟିନୀ,
ଚିତ୍ତେ କାମନା କଳିତ ଲଳିତ ଚରଣମାଳିନୀ ।



କି ଗୀତ ଗାଇବି, କା'ଚିତ୍ତ ମୋହିବି
ଆଜି ଏ ବିଜନେ ବସି,
ସ୍ତବ୍ଧ ରୁଦ୍ଧ କଣ୍ଠ ଜଡ଼ ମୋ ରସନା,
ସ୍ୱର ବିସୋରିଛି ବଂଶୀ । ଧ୍ରୁ-
ମରମେ ମର୍ମ୍ମରି ଉଠେ ତୀବ୍ର ବ୍ୟଥା,
ଲାଜ ନତ ଶିର ସ୍ମରି ଶତ କଥା,
ଭାଇ ଭାଇ ଯହିଁ ଛିନ୍ନଭିନ୍ନ ରହି
ବୋଳିବ୍ଧି କଳିଙ୍ଗ ନାମେ ଘନ ମସୀ । ୧ ।
ନାହିଁ ପୂର୍ବ ତେଜ ଗରିମା, ମହିମା,
ଘେରିଛି ସରବେ ଅମାର କାଳିମା,
ଅଶ୍ରୁ ଭାଚର ଆଖିପତା ଭାର
ଭାଙ୍ଗୁଛି କବାଟ କୋଣେ ଲୁଚିବସି । ୨ ।
ନ ବିଜସେ ଆଉ ଓଡ଼ିଆର ତରୀ
ଘନ ନୀଳ ନୀର ଚିଲିକା ଲହରୀ,
ଧଳା ପାଲ ତୋଳି ନ ଖେଳେ ସେ ଦୋଳି
ନ ଆଣେ ରତନ ପାରାବାରେ ପଶି । ୩ ।
ଜାଭା, ବାଲି, ଲଙ୍କା, ବୋର୍ଣ୍ଣିଓ ବିଜୟ
ଭୁଲି ତ ଗଲାଣି ଓଡ଼ିଆତନୟ,
ହର୍ଷ ହୁଳହୁଳି ବନ୍ଦାପନା ଥାଳୀ
ନ ଦିଏ ସାଧବବୋହୂ ପରଷି । ୪ ।
ଆଜି ଏ ଶ୍ମଶାନ ଶ୍ୱାନ ଶିବା ସ୍ଥାନ,
ନାହିଁ ଦେଶପ୍ରେମ, ଆତ୍ମବଳିଦାନ,
ବିଫଳ ରୋଦନ, ବିଫଳ ଜୀବନ,
କି ଗୀତ ଗାଇବି ତହିଁ ଉଲ୍ଲସି ? ୫ ।



ଦେଖ ବିଶ୍ୱ ଆସ ଆହ୍ୱାନେ ଦ୍ୱାରେ
ରୁଦ୍ର ଗମ୍ଭୀର ବିଶାଳ ମୂର୍ତ୍ତି !
ଉଠ ହେ ଉତ୍କଳ, ଉଠ ହେ ଉତ୍କଳ,
ଜାଗୁ ଜୀବନେ ନବୀନ ସ୍ଫୂର୍ତ୍ତି !
ବାଜେ ଘନ ଘନ ଶୃଙ୍ଗ ବେଣୁ,
ଚମକେ ସ୍ୱନେ ଧରଣୀ-ରେଣୁ,
ପବନେ ପର୍ବତେ, ସମୁଦ୍ର ସୈକତେ
ଶୁଭଇ ସଙ୍ଗୀତ ବୀରେନ୍ଦ୍ର କୀର୍ତ୍ତି ।
ନଦୀ ନୀଳଜଳ ଲହରୀମାଳେ
ନାଚେ ନବୋତ୍ସାହ ତାଳେ ତାଳେ,
ତୀର-ତରୁ-ଶ୍ରେଣୀ କୁସୁମ ବେଣୀ-
ସଉରଭେ ସୌରଭେ ବିଶ୍ୱ-ପ୍ରୀତି ।
ଜଡ଼ତା ଆଳସ୍ୟ ଫିଙ୍ଗ ହେ ଦୂରେ,
ଉଠ ହେ କର୍ମ୍ମୀ, ଉଠ ହେ ଶୂରେ !
ଦେଖ ଅଦୂରେ ଆକାଶ-ବକ୍ଷେ
ଉଜ୍ଜ୍ୱଳ ତବ ଅତୀତ ସ୍ମୃତି ।
ଉଠ ଉଠ ଉତ୍କଳ ! ଜାଗୁ ଜୀବନେ
ନବୀନ ଆନନ୍ଦ, ନବୀନ ଧୃତି



ଇମନ୍ ପୂରବୀ — ଏକତାଳା
ବନ୍ଦି ମାତା ପଦରେ
ଆସ ଭାଇଭଗ୍ନୀ ହୋଇ ଏକ ପ୍ରାଣ,
ଭୁଲ ହିନ୍ଦୁ ଜୈନ ବୌଦ୍ଧ ମୁସଲମାନ,
ଭାରତସନ୍ତାନ ନୋହୁ ଭିନ୍ନ ଭିନ୍ନ,
ମା ଦୁଃଖିନୀ ତବ ଏକ ରେ । ୧ ।
ଏକ ଦେଶେ ବାସ, ଏକ ସ୍ୱାର୍ଥେ ଆଶ,
ଏକ ପ୍ରେମଭକ୍ତି, କରମବିଶ୍ୱାସ,
ଏକ ସୁଖ ଦୁଃଖ, ଏକ ଶାନ୍ତି ମୋକ୍ଷ,
ମା ଦୁଃଖିନୀ ତବ ଏକ ରେ । ୨ ।
ନୀଚ ସ୍ୱାର୍ଥେ କିପାଁ ଦଳି ଭାଇ-ପ୍ରାଣ
କ୍ଷୁଣ୍ଣ କର ତବ ଜନନୀ ସମ୍ମାନ,
କର କଳୁଷିତ ଭାଇର ଶୋଣିତେ,
ମା ଦୁଃଖିନୀ ତବ ଏକ ରେ । ୩ ।
ଏକତା ମଙ୍ଗଳମନ୍ତ୍ର ଉଚ୍ଚେ ଗାଇ
କୋଳେ ଘେନାଘେନି କର ଭାଇ ଭାଇ,
କେ ମିତ୍ର ଅମିତ୍ର, ଏ ଭୂମି ପବିତ୍ର,
ତ୍ରିଂଶ କୋଟି ପରା ଏକ ରେ । ୪ ।



ଭୈରବୀ କଓ୍ୱାଲି
ଜୟ ହେ ଉତ୍କଳରାଣୀ (ମା !)
ବୀରକେଶରୀ-ଶ୍ରେଣୀ-ଲୀଳା-ଜନଭୂମି,

କରାଳ-କୃପାଣ-ପାଣି ।
ଯୁଗେ ଯୁଗେ ତୁ ପରମ ତୀର୍ଥ,
ଭକତ ମନୋରଥ-ବିଧାୟିନୀ ମନୋହାରୀ,
ନୀଳ ଊର୍ମି ଚୁମ୍ବେ ଚରଣତଳ,
ତୋ ନୀଳାଚଳେ ଆସୀନ ଚକ୍ରଧାରୀ ।
କନକକିରୀଟ ଭାରତଭୂମି –
ଜାତି ରତନ ମା ଗୋ !
ଗଙ୍ଗା, ଗୋଦାବରୀ ତୋ' ବସନ ଅଞ୍ଚଳ,
ମହାନଦୀ ମୁକୁତାମାଳି ।
ପ୍ରେମ-ସୁବିଶାଳ କରୁଣାକୋମଳ କୋଳେ
ଧରିଛୁ କୋଟି କୋଟି ପ୍ରାଣୀ.
ଅମୃତ ସ୍ତନ ଦାନେ ପାଳିଛୁ, ସନ୍ତାନେ,
କେତେ କବି, ବୀର, ଗୁଣୀ, ଜ୍ଞାନୀ

≋✽≋

କର୍ମ ମୋହର ପ୍ରେମମନ୍ତ୍ର,
ମର୍ମ ମୋ' ଧର୍ମ ଦୀକ୍ଷା;
କର୍ମ ଲକ୍ଷ୍ୟ, କର୍ମ ମୋକ୍ଷ,
କର୍ମ ପରମ ଶିକ୍ଷା ।
ବସିବି ହରଷେ ଦୀନ ଦୁଆରେ,
କାନ୍ଦିବି ତା' ଦୁଃଖ ଘନ ଅନ୍ଧାରେ,
ଢାଳିବି ପ୍ରାଣ ବିଶ୍ୱସେବାରେ,
ଆସୁ ବିପଦ ପରୀକ୍ଷା,
ପର ଲାଗି ମୋର ଜୀବନ ଦେବାର
ନିତ୍ୟ କରିବି ଶିକ୍ଷା;
ଭିକାରୀ ବେଶେ ମୁଁ ବିଶ୍ୱ ବଜାରେ
ମାଗିବି ଆନର ଭିକ୍ଷା ।
ଆନେ ଦାନେ ମୋର ପରମ ତୃପ୍ତି,
ଆନ ଆନନ୍ଦେ ମୁଁ ଲଭିବି ଶାନ୍ତି,
ଆନର ବନ୍ଧନ- ମୋଚନ ମୋହରି
ଚିରବାଞ୍ଛିତ ମୁକ୍ତି ।

≋✽≋

ଭାରତ ! ଭାରତ ! କିପାଁ ହୋଇଲୁ ଦୀନ,
ଛଅକୋଟି ମାନବଙ୍କୁ କରିଲୁ ହୀନ ।
ଛଅକୋଟି ନରନାରୀ ପଶୁଠୁ ହୀନ ବିଚାରି
ବକ୍ଷେ ଶସ୍ତ୍ର-ଛୁରୀ ମାରି ହେଲୁ ତୁ କ୍ଷୀଣ । ୧ ।
ଦିନେ ମନେ ନ ସୁମରି ପୂରୁବ ଗୌରବଶିରୀ
ବୃଥା ଅହଙ୍କାରେ ପୂରି ଶରୀର ଶୀର୍ଣ୍ଣ । ୨ ।
ଶୋଭା ହରିଲା ଦୋ'ଦେହୁଁ, ଦେଖିଲୁ ସନ୍ତାନ ସ୍ନେହୁଁ,
ନିଜ ପରିବାର ସୁତେ କଲୁ ତୁ ଭିନ୍ନ । ୩ ।
ଘେନ ମୋ ଘେନ ମା ଆଜି ଭେଦଭାବ ଦୂରେ ତେଜି
ତୋହରି ସନ୍ତାନ କୋଳେ ଆମ୍ଭେ କି ହୀନ ? ୪ ।

≋✽≋

ଉଠ ହେ ଓଡ଼ିଆ, ଉଠ ହେ ଓଡ଼ିଆ,
ଉଠ ହେ ଓଡ଼ିଆ ବହନ,
ଗାଏ ମହୋଦଧି, ଗାଏ ମହାନଦୀ,
ଗାଏ କାଠଯୋଡ଼ି-ଜୀବନ ।
ଗଞ୍ଜାମ ଶ୍ରୀକ୍ଷେତ୍ର ବାଲେଶ୍ୱର ସଙ୍ଗେ
ଗଡ଼ଜାତବାସୀ ବସ ଆସି ରଙ୍ଗେ,
ଅଙ୍ଗେ ଆଲିଙ୍ଗନ କର ଭାଇ ଭାଇ
ଭୁଲି ଭେଦଭାବ ବନ୍ଧନ । ୧ ।
କଳା-କାବ୍ୟ-ଶିଳ୍ପଖଣି ଏ ଉତ୍କଳ,
ନିସର୍ଗ କମଳା-ଲୀଳା-ଶତଦଳ,
ଆଜି ସେ ବିକଳ, ଆଜି ହୀନବଳ,
ଅଛି କି ନ ଅଛି ଜୀବନ । ୨ ।
ସିଂହ ଗଜପତି ଯେ ଦେଶ ଭୂପତି,
ଯେ ଦେଶେ ଦେବତା ବିରଜା, ଶ୍ରୀପତି,
ଅତୁଳ କୀରତି, ସେ ତ ବୀର ଜାତି,
କିପାଇଁ ନିର୍ଜୀବ ଭଜନ ? ୩ ।
ବିଖ୍ୟାତ ଭାରତେ ତବ ଦେଶ ଯଶଃ,
ତୁମେ ପୁଣି ଜଡ଼, ଅଜ୍ଞାନ, ଅଳସ,
ନ ଝରେ କି ଲୁହ ନିର୍ଲ୍ଲଜ ଲୋଚନେ,
ହଜିଛି କି ହୃଦସ୍ପନ୍ଦ ? ୪ ।

≋✽≋

ଭମନ୍ — କଓ୍ୱାଲି

କର ଘରେ ଘରେ ପ୍ରଚାର ଗମ୍ଭୀରେ
ଦେଶ ପ୍ରାଣେ (ଆଜି) ନବ ଜାଗରଣ,
ଶ୍ୱେତ ଖଦୀ ପୂତ ବସନ ଶୋଭିତ
ନିଖିଳ ଉତ୍କଳ ନିକେତନ;
ଏକତା ଉତ୍କଳ ମୁକତି-ନିଦାନ
ବୁଝ ଜ୍ଞାନେ, ଧ୍ୟାନେ ଉତ୍କଳ ସନ୍ତାନ,

ଅଳସ ବିଳାସ- ବ୍ୟସନ ଲାଳସା
ଦିଅ ଦିଅ ଦୂରେ ବିସର୍ଜ୍ଜନ । ୧ ।
ନୀଳାଚଳ ଚୂଳେ ଉଡୁ ସେ କେତନ,
ଏକାମ୍ର କାନନେ ଶୁଭୁ ଶଙ୍ଖସ୍ୱନ,
ଚିଲିକା କଲ୍ଲୋଳେ ହୁଳହୁଳି ଛଳେ
ହେଉ ମହାମନ୍ତ୍ରେ ଉଦ୍‌ବୋଧନ । ୨ ।
ଭାରତ କୀରତି ପୁଣ୍ୟ ଗୀତ ଗାଇ
ମୋଟ ଖଦି ପିନ୍ଧି ସାଜ ସାଜ ଭାଇ,
ଉତ୍କଳ କମଳା- ମନ୍ଦିର ଯତନେ
ସାଞ୍ଚ ରତ୍ନମଣି ଆଭରଣ । ୩ ।
ଦେଶ ଦରିଦ୍ରତା ଦୂରେ ଯାଉ ଲୁଚି,
ଆସୁ ଦେଶପ୍ରାଣେ ସୁନୀତି ସୁରୁଚି,
ଜାତିଭେଦ ବନ୍ଧ ଛେଦ ପ୍ରେମାନନ୍ଦେ,
ହେଉ ତ୍ରିଂଶକୋଟି ସମ୍ମିଳନ ।



ଛାମୁରେ ଚିରଦୁଃଖୀ ଜଣାଣ
ନ ଶୁଣିବ କିହେ ଜଗତରାଣ,
ଜୀବନ୍ତ ମରଣେ ମରିଲୁଣି ଆମେ,
କେବେ ଲଭିବୁଁ ଏ ଦୁଃଖରୁ ତ୍ରାଣ ?
କେତେ ସହିବ ଏ ଓଡ଼ିଆ ପ୍ରାଣ;
ବିଶାଳ ବିଶ୍ୱେ ଚିରନିଃସ୍ୱ ଏବେ
ନାହିଁ ପରାଣେ ସେ ପୂରୁବ ଟାଣ ।
ଆମ ଦୁଃଖ ଦେଖି ଫାଟେ ପାଷାଣ । ୧ ।
ଗ୍ରାମ ଗ୍ରାମ ଆସି ହେଲା ଶମଶାନ,
ବସା କଲେ ସର୍ପ ଶୃଗାଳ ଶ୍ୱାନ,
ନଛବଡ଼ି ମାଡ଼ି ଘରଦ୍ୱାର ବୁଡ଼ି
ଛାଡ଼ି ପଳାଇଲେ ମାତା ସନ୍ତାନ । ୨ ।
ଓଡ଼ିଆ ଅଙ୍ଗରୁ ଛାଡ଼ିଲା ଶିରୀ,
ମ୍ୟାଲେରିଆ ଜ୍ୱର ହେଲାଣି ଘାରି,
ତାପ ସନ୍ନିପାତ, ବିକାର ବିଷାଦ
ଜୀବନସଙ୍ଖାଳି କୁଇନାଇନ । ୩ ।
ପଖାଳ ଭାତକୁ ନ ମିଳେ ଲୁଣ,
ଟବଟ ସାଥିକୁ ନାହିଁ ତିଅଣ,
ଗୋରୁ ହେଲେ ହଡ଼ା, ଲୋକେ ହେଲେ ମଡ଼ା,
ସାର, କୁଲିଗିରି ଚାହା ବଗିଚା କାମ ।



କହ ରେ ଧୀର ଦକ୍ଷିଣା ପବନ,
ମଲ୍ଲୀକୁଞ୍ଜେ କୁଞ୍ଜେ ଫୁଲ ପୁଞ୍ଜେ ପୁଞ୍ଜେ
ଗାଉ କି ଗୀତ ମନମୋହନ !
ନବ ଆଶା କଥା ଅଛି କି କିଛି,
ଚିର ଅମାନିଶା ଅବା ସରିଛି,
ନବରବି ଆଶେ ଚାହିଁଛୁ ବିଶ୍ୱାସେ
ନବ ଜାଗରଣ ଦେଖୁ ସ୍ୱପନ ?
ଚାରି ଭିନ୍ନ ଦେଶେ ରହିଛୁ ଛିନ୍ନ,
ଜରାଜୀର୍ଣ୍ଣ ଶୀର୍ଣ୍ଣ ଜଗତେ ହୀନ,
ଧନମାନେ ବଳୀ ପାଦେ ଦେଲେ ଦଳି
ଅଙ୍ଗ ଖଣ୍ଡ ଖଣ୍ଡ ଅସ୍ଥି ଭବନ ।
କୋଣାର୍କ କନକଶିରୀ ସରିଲା,
ଦୁଃଖେ ଚିଲିକାର ବକ୍ଷ ଶୁଖିଲା,
ତନୁ ଚର୍ମସାର କଙ୍କାଳ ମାତର,
ମଉଳିଲା ମାତା ପଦ୍ମ-ବଦନ ।
ବହୁଦିନ ଏବେ ହେଲାଣି ଆସି,
ସହି ନ ପାରୁଁ ଏ କଷଣ ରାଶି,
ବହି ଘରେ ଘରେ ପ୍ରଚାର ଗମ୍ଭୀରେ
''ଉଠ ହେ ଓଡ଼ିଆ, ଉଠ ବହନ ।''



ଆଉ କିପାଁ ଅଛ ଶୋଇ, ଉଠ ହେ ବହନ,
ପୂର୍ବଦିଶେ ଦିଶେ ଛବି ତପନ ମୋହନ !
ଉଠ ହେ ବହନ !
ଦିନେ ଦିନେ ଗଲା ଦିନ, ସମାଜ ସଦା ସୁଦୀନ,
ନିଜେ ତ ରହିଛ କ୍ଷୀଣ, ନାହିଁ କି ଚେତନ ?
ଆଜି ନବ ଜାଗରଣେ ସର୍ବ ଭାରତ ସନ୍ତାନେ
ଉଠିଲେଣି ନବ ପ୍ରାଣେ, ତୁମ୍ଭେ ଅଚେତନ ।
ଉଠ ହେ ଉତ୍କଳବୀରେ, ଉଠ ହେ ସାହସଭରେ,
ବହି ଦୁଃଖଭାର ଶିରେ ସାଧ ଦେଶତ୍ରାଣ ।
ଉଠ ବାଳକ ଯୁବକ, ଉଠ ହେ ପ୍ରବୀଣ ପକ୍ୱ,
ଉଠ ହେ ଯୁବତୀ ବାଳା ଶୁଣି ଏ ଆହ୍ୱାନ ।
ଡ଼ାକୁଛି ଉତ୍କଳ ଆଜି, ହିତେ ତାର ଦେହ ତେଜି
ପ୍ରଭୁଙ୍କ ପୟର ପୂଜି ଲଭ ହେ କଲ୍ୟାଣ ।

ଦେଶର ଦଶର ହିତେ   ବାହାର ହେ ପ୍ରେମଚିତ୍ତେ
ପରମ ସେବକ ବ୍ରତେ ସମର୍ପ ଜୀବନ।



ଜୟ ମା ଜନନୀ,
ଜନମ ଭୂମି!
ଜୟ ମା ଗିରି ଗଗନ ଚୁମ୍ବି!
ଆନନ୍ଦମୟ ତୋ' ହିରଣ୍ୟ କ୍ଷେତ୍ର,
ଫୁଲ୍ଲ ପ୍ରସୂନ-ଶୋଭା ପବିତ୍ର,
ଚିତ୍ର ଉତ୍ପଳ-ବିଳାସିନୀ,
ଚାରୁ ଚିଲିକା-ଊର୍ମିମାଳିକା
ମଲ୍ଲିକାକୁଞ୍ଜବାସିନୀ।
ଶତ ବୀର ଜାତି ଲୀଳାବିହାର
ଶୋଭେ ବାରବାଟୀ, ଚଉଦୁଆର,
ତାମ୍ର ଲିପ୍ତ ବୋଇତ ବାହି
ଚାଲିଥିଲେ ବୀର ଅନୀକିନୀ।
ବୋର୍ଣ୍ଣିଓ, ବାଲି, ଜାଭା, ଲଙ୍କା,
ବାଜିଥିଲା ତହିଁ ସମର ଡ଼ଙ୍କା,
କୀର୍ତ୍ତି-କଳିଙ୍ଗ ଜଗତ ଶଙ୍କା,
ଦେବୀ ସିଂହବାହିନୀ।



ଇମନ କଲ୍ୟାଣ—ଏକତାଳ

କି ବାଣୀ ସମୀର   କରୁଛି ପ୍ରଚାର
କମ୍ପାଇ କୁସୁମରାଜି?
ଝରେ ଝର ଝର   ସଙ୍ଗୀତ ନିର୍ଝର
ଗଗନେ ପବନେ ବାଜି।
କାନେ କାନେ କିଏ କହିଗଲା କଥା
କିପାଁ ବୀର ଜାତି ପୋତିଅଛ ମଥା,
କିପାଁ ଏ ଭୀରୁତା   କିପାଁ ଏ ଜଡ଼ତା?
ବାହାର ହେ ବିଶ୍ୱେ ଆଜି।
ପ୍ରାଚୀପଟେ ଫୁଟେ ନବୀନ କିରଣ,
ନବୀନ ଉତ୍କଳେ ନବଜାଗରଣ,
ଜୀବନ ଚେତନା   ବାଜେ ରୁଣୁ ଝୁଣୁ
ଶୁଣ ଶୁଣ କର୍ଣ୍ଣେ ଆଜି।

ଅମ୍ବରୁ ଅମୀୟ ଆନନ୍ଦ ବଦନେ
ଓହ୍ଲାଏ କିଶନ୍ତି ସବିତା ବାହାନେ,
ଦେଖ ଜଳେ ସ୍ଥଳେ   ଶକ୍ତି ଲୀଳା ଖେଳା
ଉଠ ଉଠ ନିଦ୍ରା ଭାଙ୍ଗି।
ଉଠ ହେ ଉତ୍କଳ କୁମାର କୁମାରୀ
ତୁମ ଲାଗି ବିଶ୍ୱ ଗଲାଣି ହକାରି,
ଅଛି ପ୍ରତିଧ୍ୱନି   ଆକାଶେ ବତାସେ,
ଉଠ ଉଠ କର୍ମ୍ମେ ସାଜି।



ମାଲ୍ୟବନ୍ତ-ମେଘାସନ-ମହେନ୍ଦ୍ରଭୂଷା
କନକରବି ଚୁମ୍ବନେ ଆଲିଙ୍ଗେ ଉଷା
କୋଟି କୁସୁମ ସୁବାସ ଶିରୋଧାରିଣୀ,
ଶତ-ସରିତ-ଅମୃତେ ତୃଷାବାରିଣୀ,
କବି ବୀର ଭକ୍ତ ବୁଧ ସାଧୁ ଜନନୀ,
ଯତନେ ରତନରାଜି ସଞ୍ଚା ମଞ୍ଜୁଷା।
ମଞ୍ଜୁଳ ମନ୍ଦିରମାଳେ ମହୀମୋହନା,
ଧରମ, କରମ ଜ୍ଞାନେ ଶିଳ୍ପେ ଶୋଭନା,
ଜନମିଥିଲେ ତୋ କୋଳେ ବୀର ଲଳନା,
ପୂତ ପାଦପଦ୍ମ ପ୍ରେମ ହେମ ପୀୟୁଷା।



ଆଜି ନବ ଜୀବନେ!
ଜାଗିଛି ଅବଶ ତନୁ ନବଶକ୍ତି ସାଧନେ।
ଉଠିଛି ଆଜି କି ଫୁଟି ଆଶାବନେ ଫୁଲ କୋଟି,
ପଞ୍ଚମେ କୋକିଳ ରଟି ଗାଉଛି ନବ ତାନେ।
ଲୋତକ ଆସାର ଭରା କାସାରେ ଫୁଟିଛି ତୋରା
ନବ ତାମରସ ହେରି ନବରବି ଗଗନେ।
ଭୁଜେ ଭୁଜେ ନବ ଶକ୍ତି, ହୃଦେ ହୃଦେ ନବଭକ୍ତି,
ପ୍ରାଣେ ପ୍ରାଣେ ନବପ୍ରୀତି ଜାଗିଛି ଏସୁକ୍ଷଣେ।
ପ୍ରେମର ମିଳନ ଧର୍ମ୍ମ, ଶାନ୍ତି ପ୍ରୀତି ପୂତ ମର୍ମ୍ମ,
ପ୍ରେମ ଭକ୍ତି କର୍ମ୍ମ ଶକ୍ତି ଜାଗେ ଆଜି ପରାଣେ।
ଆସ ତେବେ ଭାଇ ଭାଇ ଭେଦଭାବ ଭୁଲିଯାଇ,
ଉଚ୍ଚ ନୀଚ ମିଳିବା ହେ ପ୍ରେମପୂତ ମିଳନେ।



ଆଜି ଗାଇବି, ଆଜି ଗାଇବି
କଳିଙ୍ଗ ମାତାର ଜୟ ।
ଆଜି ଉଠିବି, ଆଜି ଉଠିବି
ତେଜି ମୋ' ଜଡ଼ତା ଭୟ ।
ନୁହେଁ ମୁହିଁ ହୀନ, ନୁହେଁ ମୁହିଁ ଦୀନ,
ନୁହେଁ ଆଧୁନିକ, ନୁହେଁ ଅର୍ବାଚୀନ,
ଶୋଣିତେ ବୀରତ୍ୱ ବହେ ଯୁଗେ ଯୁଗେ,
ପାଇନାହିଁ ତାହା ଲୟ ।
ଗିରି ଗୁହାମାନ ମୂକ ସାକ୍ଷୀ ମୋର,
ମୁଁ ଆର୍ଯ୍ୟ ସନ୍ତାନ, ନୁହେଁ ମୁଁ ବର୍ବର,
ଯାଉ ଅବସାଦ, ଯାଉ ମୋ' ବିଷାଦ
ଉଠିବି ଗାଇ ମୁଁ ଜୟ,
ମାତା କଳିଙ୍ଗର ଜୟ ।
ଐର, ଖାରବେଳ, ସିଂହ, ଗଜପତି,
ନବକୋଟି କର୍ଣ୍ଣାଟେଶ୍ୱର ଯା' ଭୂପତି,
ସେତ ମୋର ଜାତି, ମୁଁ କି ହୀନ ଅଛି,
ମୁଁ ଯେ ଶୂର ତେଜୋମୟ,
ଉଠିବି ଗାଇ ମୁଁ ଜୟ,
ମାତା କଳିଙ୍ଗର ଜୟ ।

≋❦≋

ବିଶ୍ୱବାସୀ-ଅଙ୍ଗନେ
ରଙ୍ଗେ ଭଙ୍ଗେ ଆସେ ଉତ୍କଳ-
ଲକ୍ଷ୍ମୀ-ଚାରୁ-ଚରଣେ ।
ଦିଶେ ଦିଶେ ତାର ବିମଳ ଶୋଭା,
ବସନେ ଭୂଷଣେ ମୋହନ ପ୍ରଭା,
ବର୍ଷେ ନୟନେ ନନ୍ଦନ-ହର୍ଷ
ପୁଣ୍ୟ ପ୍ରତିଭା-ସ୍ଫୁରଣେ ।
ଅଙ୍ଗେ ଅଙ୍ଗେ ଲାବଣ୍ୟଲୀଳା,
କର୍ମ୍ମ, ଶକ୍ତି, ଭକ୍ତି ଖେଳା,
ମୁକ୍ତି ଦପାପଦ୍ମ ତଳେ
ଯୁକ୍ତ-ଦିବ୍ୟ-ଚୁମ୍ବନେ ।
ବରାଭୟବର କରଯୁଗଳେ
ବକ୍ଷେ ସ୍ନେହ-ପ୍ରୀତି-ସୁଧା ଉଚ୍ଛଳେ,
ଆନନ୍ଦ ବାଣୀ ରମ୍ୟାଧରେ ଜାଗେ ଜୀବନ ଜୀବନେ ।

≋❦≋

(ମୁଁ) ନ ଜାଣେ ଧରମ କରମ କିଛି ହେ,
ଜାଣେ ମାତ୍ର ତୋର ସେବା,
ଜାଣେ ମାତ୍ର ତୋର ପୟରପଙ୍କଜେ
ପ୍ରାଣ ଆତ୍ମା ବଳି ଦେବା ।
ମୋର ଦେହ ଘେନି ରଚିବି ତୋ'ପୂଜା,
ତୁ ମୋହରି ଲକ୍ଷ୍ମୀ, ଦୁର୍ଗା ଦଶଭୁଜା,
ତୁ ପଦ୍ମଆସନା-ବାଣୀ-ବୀଣାପାଣି,
ଗଙ୍ଗା ଗୋଦାବରୀ ଯମୁନା ରେବା ।
ତୁ ମୋ ଗଣ୍ଠିଧନ ଗଜମୋତିହାର,
ତୁ ନନ୍ଦନବନ ମୋହନ ମନ୍ଦାର,
ତୁ ମଳୟ ଶୈଳ ସୁରଭି ଚନ୍ଦନ,
ମୋ' ଗର୍ବ ତୋ ପଦ କିଙ୍କର ହେବା ।

≋❦≋

କେବେ ଆସିବ ହେ ଜୀବନ ଚେତନା
ଉତ୍କଳ, ତୋ' ସ୍ପନ୍ଦ-ରହିତ ହୃଦେ ?
କେବେ ଏକ କୋଟି ଏକ କଣ୍ଠ ସ୍ୱରେ
ଗାଇବେ ତୋ ସ୍ତବ ସଙ୍ଗୀତ ମୁଦେ ?
ପ୍ରାଣେ ପ୍ରାଣେ ଭ୍ରାତୃଭାବ ବିରାଜିବ,
ଦ୍ୱନ୍ଦ୍ୱ ହିଂସା ଦ୍ୱେଷ ଅତୀତେ ହଜିବ,
ପରସ୍ପର ପାଇଁ ବେଦନା ବାଜିବ
କେବେ ପରସ୍ପର ଅନ୍ତରେ ?
ଏକ ପ୍ରେମଡ଼ୋରେ ବନ୍ଧା ହେବ ସବୁ,
ଏକ ପୂଜାବେଦୀ, ଏକ ହେବେ ପ୍ରଭୁ,
ଏକର ଆନନ୍ଦେ ଆନମହାସୁଖୀ,
ଯୁକତ ଏକତା ମନ୍ତରେ ।

≋❦≋

ଉଠ ଉଠ ହେ ଉତ୍କଳ ! ଉଠ ହେ ବୀର !
ଉଠ ହେ ଦେଶସେବକ ! ହେ ଜ୍ଞାନୀ ଧୀର !
ଉଠ ହେ ମାତୃଭୂମି ନାମ ମହାମନ୍ତ୍ରେ,
ସ୍ୱଦେଶ ହିତ ବାଜୁ ହୃଦ-ତନ୍ତ୍ରେତନ୍ତ୍ରେ,
ଉଠ ହେ ଗରବେ ଉଠ ହେ ଆଜି,
ଉଠ ହେ ଧର୍ମ-ବର୍ମ୍ମେ ସାଜି,
କର୍ମ ତବ ମୁକ୍ତି ମୋକ୍ଷ,
ଶକ୍ତି ସାଧନ ଲକ୍ଷ୍ୟ ହେ !
ଉତ୍କଳମାତା ତବ ପୁଣ୍ୟତୀର୍ଥ,
ତବ ପୁଣ୍ୟ ସଦ୍ମ ତାର ବିଶାଳ ବକ୍ଷ,
ତାର ପାଦପଦ୍ମ ତଳେ ତବ ଆଶ,

ତାର ଭାଷା ତବ ପ୍ରଣୟ ପାଶ,
ତାର ସନ୍ତାନ ତବ ସହୋଦର,
ହେଉ ସେ ରାଜା, ହେଉ ଫକୀର ।



ମା ମୋର କାହିଁ ଗୋ ମା ମୋର କାହିଁ,
କେଉଁ କୋଣେ ବସି କାନ୍ଦଇ ଗୋ ?
କାନ୍ଦୁଛି ବିଷାଦେ ଜନନୀରାଣୀ,
ବିକଳେ ତେଣୁ ମୋ' ନେତ୍ରୁ ବହେ ପାଣି,
ମା ଦୁଃଖ ଦର୍ଶନେ ନ କାନ୍ଦିବ କେହି
ଏପରି ସନ୍ତାନ ନାହିଁ ହେ । ୧ ।
ଖାଇବାକୁ ନାହିଁ ଘରେ ମୋଟ ଦାନା,
ପିନ୍ଧିବାକୁ ଖଣ୍ଡେ ନାହିଁ ଛିଣ୍ଡା କନା,
ସରୁଛି ଆମର ଦିବସ ରଜନୀ
ପର ଦୁଆରକୁ ଚାହିଁ ହେ । ୨ ।
ମିଳୁନାହିଁ ଆଉ ମୂଳିଆକୁ ମୂଲ,
ପେଟଭୋକେ ପ୍ରାଣ ହେଲାଣି ଆକୁଳ,
କେତେ କଲବଲ ସହିବୁଁ ଜୀବନେ
କହ ଭାଇ କାହାପାଇଁ ହେ ? ୩ ।
ଆସ ଅଣ୍ଟା ଭିଡ଼ି ଲାଗିବା କରମେ,
ବସିବା କିପାଇଁ ମଉନେ ସରମେ ?
ଭୋଗିବା କପାଳେ ଯା' ଥିବ ଅନ୍ତିମେ,
ଯା ଦେବେ ଜଗତସାଇଁ ହେ । ୪ ।



ବିତର ବିତର ଶ୍ରୀମହାପ୍ରସାଦ
ବିଶ୍ୱ-ସଭା ଅଙ୍ଗନେ,
ଆଣ ଆଣ ଟାଣି ବ୍ରାହ୍ମଣ ଚଣ୍ଡାଳେ
ପବିତ୍ର ପ୍ରେମାଲିଙ୍ଗନେ । ଧ୍ରୁବ ।
ଉତ୍କଳ ତୁ ପରା ହରି ଶିରୀକ୍ଷେତ୍ର,
ଜାତିଭେଦ-ଭଞ୍ଜୀ ତୁ ମହାପବିତ୍ର
ତୋ'ସ୍ନେହ ଅଞ୍ଚଳେ ନାହିଁ ବ୍ୟବଧାନ,
ବିସ୍ତାରିତ ବିଶ୍ୱ-ଧାରଣେ ।
ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ,
ନାହିଁ ଭିନ୍ନ ଭାବ, ନାହିଁ ସ୍ନେହେ ଦୈନ୍ୟ,
ସରବେ ସନ୍ତାନ ତୋ' ଆଦରେ ମାତ,
ତୋହରି ଯତନେ ପାଳନେ । ୧ ।
ତୋର ଅନ୍ନ ଜଳ, ତୋର ଫୁଲ ଫଳ,
ତୋ' ଶ୍ୟାମଳ କୋଳ ସବୁରି ସମ୍ବଳ,
ତୋର ନଦୀନୀରେ ତୋର ସିନ୍ଧୁତୀରେ,
ତୋର ଗିରି, ତୋର କାନନେ ।
ହାତ ଧରାଧରି ପ୍ରେମେ କୋଳାକୋଳି,
ବସିବେ ତୋହରି ସନ୍ତାନମଣ୍ଡଳୀ,
ଆଣି ସ୍ୱର୍ଣ୍ଣଥାଳୀ ଦେବୁ କି ଗୋ ଢାଳି
ମାତୃସ୍ନେହ ଅନ୍ନ-ବ୍ୟଞ୍ଜନେ । ୨ ।
ବ୍ୟଜନିବ ଆସି ମଳୟ ମାରୁତ,
ଉଚ୍ଛୁଳିବ ବନେ ବନେ ପିକରୁତ,
ଭକ୍ତି ପ୍ରୀତି- ଶୁଭ ଶରତ-ବସନ୍ତ
ଓହ୍ଲାଇବେ ତୋର ଗଗନେ ।
ତୋ' ଗୋଲାପଗନ୍ଧେ, ଶେଫାଳୀ ସୌରଭେ
କରମ, ଶକତି ମିଶିବ ଗୌରବେ,
ବିଶ୍ୱ-ସଭାଜନେ ଦେଖି ମୁଗ୍ଧ ମନେ
ନମିବେ କି ପଦବନ୍ଦନେ ?



କିପାଇଁ କାନ୍ଦିବି ଆକୁଳେ ଜନନୀ
କରି ନ ପାରିଲି ସେବା ଗୋ,
କିପାଇଁ ନିନ୍ଦିବି କରମକୁ ମୋର
ହୋଇବି ମୁଁ ଯାହା ହେବା ଗୋ ।
ଊଣା ନୁହେ ମୋର ଶକତି ଭକତି,
ତୋ ଲାଗି ବନ୍ଧନ ସେ ମୋର ମୁକତି;
ବସି ତୋ ପୟରେ ପୂଜିବି ଆଦରେ
ବହିବି ଯା ବହିନେବା ଗୋ ।
ପର ପୀଡ଼ା ଦୁଃଖ ବହିବି ମୁଁ ଶିରେ,
ସହିବି ଗ୍ରୀଷମ ବରଷା ଶିଶିରେ,
ପୋଡୁ ପ୍ରାଣ ମୋର, ଆସୁ ଦୁଃଖ ଘୋର,
ଦେବି ଜଗତେ ଯା ଦେବା ଗୋ ।



ଭାଇ ଭାଇ ବୋଲି କେବେ ମୁଁ ଡ଼ାକିବି
ତୋହରି ସକଳ ସନ୍ତାନେ,
ବନ୍ଧୁ ବୋଲି ମୋର କୋଳେ ଆଲିଙ୍ଗିବି
ଦୁର୍ବଳ ଅଧମ ଅଜ୍ଞାନେ।
ଭଣା ଯେ ମୋ'ଠାରୁ ନୁହେ ସେ ତ ସାନ,
ନଥାଉ ତାହାର ଧନ ସନମାନ,
ହେଉ ସେ ଚଣ୍ଡାଳ, ଜଗତ ଜଞ୍ଜାଳ,
ଜାଗିବ ସ୍ନେହ ମୋ ପରାଣେ।
ସେ ତ ତୋ ସନ୍ତାନ, ତୋ' ଶୋଣିତ ବିନ୍ଦୁ,
ହେଉ ମୁସଲ୍ମାନ, ଶିଖ, ଜୈନ, ହିନ୍ଦୁ,
ସେ ମୋହରି ଭାଇ, ଜାତି ତାର ନାହିଁ,
ସେ ମୋହରି ପ୍ରିୟ ଭୁବନେ।



ଇମନ୍ କଲ୍ୟାଣ-ଏକତାଲା

ଏ ଶୁଭ ଯୋଗରେ ଏ ପୁଣ୍ୟବାସରେ
ଦେଶସୁସନ୍ତାନ ବୀର,
ଉଠ ହେ ସରବେ ବରଜି ବିଳାସ,
ହେ ଦେଶସେବକ ଜ୍ଞାନୀ ଧୀର।
ମନ୍ଦିରେ ତବ ମୋହନ ଛନ୍ଦେ ପୁଣ୍ୟ ମନ୍ତ୍ର ଝଙ୍କାର
ଉଠ ଉତ୍କଳ ଉଠ ଉତ୍କଳ ପାହିଲା ଅନ୍ଧାର। ୧।
ପ୍ରଫୁଲ୍ଲ ଆନନ୍ଦେ, ଉତ୍କଳ-ପଦ୍ମ-
ବଦନ ତପନ ଦର୍ଶନେ,
ସିକ୍ତ-କୁସୁମ ହର୍ଷେ ଉଲ୍ଲାସେ ଶୁଭ୍ର
ଶିଶିର ସୁଧା ବର୍ଷଣେ,
ଗମ୍ଭୀରେ ଘୋଷେ ସାଗର ଊର୍ମି ପୁଣ୍ୟମନ୍ତ୍ର ଝଙ୍କାର,
ଉଠ ଉତ୍କଳ ଉଠ ଉତ୍କଳ ପାହିଲା ଅନ୍ଧାର। ୨।
ଘେନ ନରନାରୀ ଅରଟ ସର୍ବେ
ମୁକ୍ତିମନ୍ତ୍ର ସୁମହାନ,
ପବିତ୍ର ହସ୍ତରଚିତ ବସନେ ବିଶ୍ୱେ
ଲଭ ହେ ଉନ୍ନତ ସ୍ଥାନ।
ଦୈନ୍ୟ ଦୁଃଖ ହରିବ ହେଳେ ପୁଣ୍ୟମନ୍ତ୍ର ଝଙ୍କାର,
ଉଠ ଉତ୍କଳ ଉଠ ଉତ୍କଳ ପାହିଲା ଅନ୍ଧାର। ୩।



ଭୈରବୀ—କଓ୍ୱାଲି

ଉତ୍କଳ ରାଣୀ ! ଭାରତ-ମଣି !
କୋଟି କଳିତ-କଳା ଲଳିତ ଖଣି।
କଞ୍ଜ ସୁହାସିନୀ, ସୁମଧୁର ଭାଷିନୀ,
ଜନମନ ତୋଷିନୀ ମୋହିନୀ ରେ,
ସାଗରଚୁମ୍ବିତ ପୁଷ୍ପ-କରମ୍ବିତ,
କୋଣାର୍କ-କାରୁ-ଚାରୁ ଅଙ୍ଗିନୀରେ।
ଗୁଞ୍ଜିତ ଭ୍ରମର, କୁଞ୍ଜ ସୁରଙ୍ଗିଣୀ
ଚିତ୍ରିତ ଚିଲିକା ତରଙ୍ଗିଣୀ ରେ।
ଭବଦୁଃଖବାରିଣୀ ତାପ-ତ୍ରୟ-ତାରିଣୀ,
ଶୋଭିତା ବ୍ରାହ୍ମଣୀ-ବୈତରଣୀ ରେ।
କବିତା-ବିଳାସିନୀ ଏକାମ୍ର-ଆମୋଦିନୀ
ଉଜ୍ଜ୍ୱଳ ମଞ୍ଜୁଳ ବେଶିନୀ ରେ।
ଚୂତ-ତମାଳିନୀ ଶୈଳେଶ ମାଳିନୀ,
ଗହନ ଘନ ମୋହନ କେଶିନୀ ରେ।



କାହାକୁ ଡ଼ାକୁଛୁ ଆକୁଳେ ଜନନୀ,
କିଏସେ ତୋ' ବୀର ସନ୍ତାନ
ହୋଇ ଆଗୁସାର ପ୍ରାଣ ବିନିମୟେ
ବଞ୍ଚାଇବ ତୋର ପରାଣ ?
ତେଜିବ ତୋ'ଲାଗି ସବୁ ସୁଖ ଆଶା,
ତୋ' ପଦ-ପଙ୍କଜ ଚିର ପ୍ରତିଆଶା,
ତୁ ମୁକ୍ତି ତାହାର ଅର୍ଘ୍ୟ ଉକ୍ତିହାର
ତୁ ସାଧନ ଧନ ମହାନ।
ଜପି ନାମ ତୋର ଯାପିବ ଜୀବନ,
ମୋଟ କନ୍ଥା ତୋର କୋମଳ ବସନ,
ତୋର ମୋଟ ଭାତ, ଦୁଃଖଦୈନ୍ୟାଘାତ
ମଣିବ ସୁଖ ସେ ପ୍ରଧାନ।
କାହିଁ ସେ ସନ୍ତାନ ସୁଶୀଳ ଚରିତ୍ର,
କାହିଁ ସେ ଉତ୍କଳୀ ମହତ ପବିତ୍ର,
ହେବୁଁ କେଉଁଦିନ ତୋ' ସେବାଭାଜନ,
ଆମେ ତ ଅଳସ ଅଜ୍ଞାନ।
ଯଯାତି, ଅନଙ୍ଗ, ପୁରୁଷ ଉତ୍ତମ,

ଦେଶେ ଜନ୍ମି ଆଜି ହେଲୁଁ ନରାଧମ,
ଦେଖି ତୋ' ବିକଳ ବସିଛୁଁ ଅଚଳ,
ଏହି କି ବିଧାତା ବିଧାନ ?



ବନ୍ଦି ମାତା ଚରଣେ

ଉଠ ହେ ଭଗିନୀ ଭାଇ ଉଠ ନବପରାଣେ ।
ଆସିଛି ଆହ୍ୱାନ ଆଜି, କିପାଁ ରୁଦ୍ଧ କାନ ବୁଜି,
ବିଳାସ ଲାଳସେ ମଜି କିପାଁ ଅଛ ଶୟନେ ?
ବହେ ଓଡ଼ିଆ ଶୋଣିତ ତବ ଧମନୀରେ ଭ୍ରାତ,
ସ୍ମର ତୁମ୍ଭେ ଆର୍ଯ୍ୟସୁତ, ଉଠ ଉଠ ବହନେ ।
ଉଠ ଶିକ୍ଷିତ ସମାଜ, ଦେଶହିତେ ପ୍ରାଣ ତେଜ,
ଉଠାଅ ଦୁର୍ବଳେ ଆଜ, ଉଦାର ଦେଶପ୍ରେମେ ।
ଉଚ୍ଚନୀଚ ଭେଦଜ୍ଞାନ ଭୁଲ ହିନ୍ଦୁ ମୁସଲ୍ମାନ,
ଉତ୍କଳି ! ସରବେ ଲାଗ ଦେଶହିତ ସାଧନେ ।



ଜନ୍ମ ଜନ୍ମ ଉତ୍କଳେ !

ନାହିଁ କି ହିତୈଷୀ ଜଣେ ପ୍ରାଣ ଦେବ ସେ ହେଳେ ?
ସ୍ୱଦେଶ ଦୀନ ସୁଚିର, ନୟନରୁ ବହେ ନୀର,
ନାହିଁ କାହିଁ କର୍ମ୍ମବୀର, ବାକ୍ୟବୀର ସକଳେ ।
ହେଲୁ କି ଓଡ଼ିଆ ହୀନ, ଭୁଲିଲୁ କି ଦେଶପ୍ରେମ,
ସ୍ୱାର୍ଥ ଅର୍ଥ ଚିନ୍ତା ଘେନି ବୁଡ଼ିଗଲୁ କି ଭୋଳେ ?
ଭୁଲିଲ ପୂରୁବ କୀର୍ତ୍ତି, ପୂର୍ବପୁରୁଷର ଖ୍ୟାତି,
ଭାରତେ ଆଜି ସୁଦୀନ, କି ଦୁଃଖ ଏଥୁଁ ବଳେ !
ଧନେ ମାନେ ଜ୍ଞାନେ ପୁଣି ଥିଲା ଉତ୍କଳ ଅଗ୍ରଣୀ,
ଶିଳ୍ପ-କଳା ଏ ଭାରତେ ବିଖ୍ୟାତ ସର୍ବ କାଳେ ।
ଗଲାଣି ଯିବାର ଯାହା, କାନ୍ଦିଲେ କି ହେବ ଆହା,
ଉଠିବ ନାହିଁ କି ମାତା ଉତ୍କଳ ନବ ବଳେ ?
ଜାଗିବ ହେ କେଉଁ ଦିନ ପ୍ରାଣେ ଦେଶପ୍ରେମ,
ଭାଇଭଗ୍ନୀ ଦେଶ-କାର୍ଯ୍ୟେ ମିଳିବେ କୁତୂହଳେ ?
ପରିବାରେ ପରିବାରେ ଦେଶପ୍ରେମୀ କର୍ମ୍ମବୀରେ
ଜନମିବେ ଶତ ଶତ ଧନ୍ୟ କରି ଉତ୍କଳେ ।



ଆଜି ନବ ଜୀବନେ ଜାଗ ବହନ,
ଆଉ କି ଆସିବ ବଳି ଶୁଭଦିନ !
ନ ବସ ଅଳସେ ଆଉ ଆଜିକର ପାଇଁ,
ବାଞ୍ଛିତ ଶୁଭ ଦିବସ ଆସେ କେବେ ଭାଇ ?
ବାଜୁ ପ୍ରେମତନ୍ତ୍ରେ ପ୍ରତି ପ୍ରାଣଯନ୍ତ୍ରେ
ଆଶାପୂର୍ଣ୍ଣ ତବ ଗୀତି ମନ୍ତ୍ର ତାନ । ୧ ।
ନାହିଁ ଶକ୍ତି, ନାହିଁ ଶୌର୍ଯ୍ୟ, ନାହିଁ ଧନ ମାନ,
ମଳିନ ଆନନ ଜ୍ୟୋତି, ହୃଦ ତବ ମ୍ଳାନ,
ଆସ ତେବେ ଭାଇ ! ଆସ ଏକ ହୋଇ
ତେଜ ଲାଜ, ଗର୍ବ, ଦମ୍ଭ, ଅଭିମାନ । ୨ ।
ନାହିଁ ଯେବେ କିଛି, ଅଛି ଦେହ ପ୍ରାଣ ଦୁଇ,
ଜନ୍ମଭୂମି ମାତୃପଦେ ଆଜି ବଳି ଦେଇ
ହୃଦ ଉଦ୍ଦୀପନା ନୀରବ ସାଧନା
ଜାଗିଉଠୁ ପ୍ରାଣେ ପ୍ରାଣେ ଦେଶପ୍ରେମ । ୩ ।
ଆସ ଆସ ଭାଇଭଗ୍ନୀ ଆସ ପ୍ରେମାନନ୍ଦେ,
ଆସ ଆଜି ବନ୍ଦି ବିଭୁପାଦ-ଅରବିନ୍ଦେ,
ଦେବେ ସେହି ଭକ୍ତି, କ୍ଷୁଦ୍ର ପ୍ରାଣେ ଶକ୍ତି,
ମରମେ ମରମେ ଶୁଭ କର୍ମ୍ମ, ଜ୍ଞାନ । ୪ ।

ଉତ୍କଳ, ସାରଳା ଲୀଳା ବିଳାସିନୀ
ବାଣୀ ବିନୋଦିନୀ, ରସାଳିନୀ,
କୋଟି-ଜମ କଞ୍ଜ କୁଞ୍ଜ-କାନନ
ମଞ୍ଜୁ ମଲ୍ଲିକା-ମାଳିନୀ ।
ନବୀନ ବାସନ୍ତୀ-କାନ୍ତି-ମାଳି
ନବ ବିକଶିତ ଚୂତ ନିଆଳି,
ପୂତ-ପର୍ଣ୍ଣ-ପୂର୍ଣ୍ଣ-ଶୋଭା,
ତୁଳସୀ-ପଳାଶ-ମୃଣାଳିନୀ ।
ଜଳ-କୋକିଳ-କାକଳି-ଭୋଳେ,
ଘନ ବନ ବୀଥି ନିତି ଉଲ୍ଲେ,
ଅମୀୟ-ଅରୁଣ ବ୍ୟୋମ ଉଲ୍ଲେ
ଗାଏ ତାନେ ତାନେ କଲ୍ଲୋଳିନୀ ।



ଉତ୍କଳ, ଶାରଦ ଶୋଭା ସୁହାସିନୀ,
ଲଳିତ ଶେଫାଳି-ସୁବାସିନୀ ;
ପୂର୍ଣ୍ଣ-ଥାଳୀ-ପକ୍ୱ-ଶାଳି ସମ୍ଭାରେ
କାଶ-ହାସେ ମଉ-କାଶିନୀ ।

ଶୁଭ୍ର-ଅଭ୍ର-ଚାନ୍ଦିନୀବୋଳା,
ଖେଳେ ତାରାମାଳୀ ବିମାନ ଦୋଳା,
ଉଜ୍ଜଳ-ବିମ୍ବ ଚୁମ୍ବ ନୀଳାମ୍ବୁ
ସ୍ୱରଗଶିରୀ ବିକାଶିନୀ ।
ସବ୍ଦେ ସବ୍ଦେ ଶକ୍ତିପୂଜା,
ଦୈତ୍ୟ-ଦଳିନୀ ଦଶଭୂଜା,
ଘରେ ଘରେ ଉମା ଆନନ୍ଦମୟୀ,
ଭକତି-ମୁକତି-ବିଳାସିନୀ



ଜନନୀ ତୋହରି ଅଧମ ସନ୍ତାନେ
ପାଳୁଛୁ ତୁ ସ୍ନେହଡୋଳେ,
ଦୁର୍ବଳ ତୋର କ୍ଷୁଦ୍ର ଶିଶୁଙ୍କୁ ରଖିଛୁ ତୁ ସ୍ନେହକୋଳେ ।
ତେଣୁ ଗୋ ତୋହରି ଚରଣତଳେ
ଆଜି ମୁଁ ଆଶିଷ ମାଗେ,
ଜନନୀ ଜନନୀ ପ୍ରାଣେ ମୋହର, ସତତ ଯେହ୍ନେ ଜାଗେ
ଜନନୀ ଜନନୀ ଉତ୍କଳ ଜନନୀ !
ବିଶ୍ୱେ ତୁ ବରଣୀୟା,
ଜନନୀ ଜନନୀ ଉତ୍କଳ ଜନନୀ !
ହୃଦେ ତୁ ଆଦରଣୀୟା । ଧ୍ରୁ—
ଜନନୀ ତୋହର ମଧୁର ଆସ୍ୟେ
ମଧୁର ହାସ୍ୟରାଶି,
ସୁନୀଳ ତୋହର ବିମଳ ଅମ୍ବରେ ଉଜ୍ଜଳ ତାରାଶଶୀ;
ମୋହନ ତୋହରି ଫୁଲ ଉପବନେ
ସୁରଭି ସୁମନରାଜି,
ରଖିଛୁ କା'ପାଇଁ ସାଜି ମାଆ ଗୋ, ରଖିଛୁ କା'ପାଇଁ ସାଜି ?
ଜନନୀ ତୋହର କ୍ଷେତ୍ରେ କ୍ଷେତ୍ରେ
ପୀତ ଶସ୍ୟ-ଶୋଭା,
ଦୁର୍ବାଦଳେ ତୋ' ଅଙ୍ଗ-କୋମଳ ମଞ୍ଜୁଳ ଶ୍ୟାମ ଆଭା;
ପବିତ୍ର ତୋହର ଅମଳ କମଳ
ଚରଣେ ଫେନିଳ ସିନ୍ଧୁ,
ମାଆ ଗୋ ପୟରେ ମାଗେ ତୋହରି ଆଶିଷ ଅମୀୟ ବିନ୍ଦୁ ।
ଜନନୀ ! ତୋହରି ଚାରୁ ଚିତ୍ରୋପଳା,
ପୁଣ୍ୟତୋୟା କାଠଯୋଡ଼ୀ,
ଭୁବନେଶ୍ୱରେ ତୋ' ଏକାମ୍ରକାନନ, ସୁନ୍ଦର କଟକ ପୁରୀ;
ରମ୍ୟ ତୋହର ଶତ ଗିରିବନ
ତୋହରି ଆଶିଷ ମାଗେ,
ଦିଅ ଗୋ ଜନନୀ ! ଦିଅ ଗୋ ଆଜି ଐକ୍ୟ କର୍ମଯୋଗେ ।



ଆଜି ହେ ଶାରଦ-ଲକ୍ଷ୍ମୀ ତୋହରି
ପୟର ପୂଜିବି ମାତଃ,
ତରୁମୂଳ ଝରା ଶେଫାଳୀ-ମାଳାରେ
ସଦ୍ୟ-ଶିଶିର ସ୍ନାତ ।
କାଶ-କୁସୁମ ଶୁଭ୍ର ଚନ୍ଦନ,
ଶୀତ ଚାନ୍ଦିନୀ ନେତ୍ରନନ୍ଦନ,
ବିଶ୍ୱବନ୍ଦନ-ପଦ-କୋକନଦେ
ଦେବି ଅର୍ଘ୍ୟ ସନ୍ଧ୍ୟା ପ୍ରାତଃ ।
ମାନସେ ପୀୟୁଷ ହରଷ ଭରି
ଅଦୃଶ୍ୟ ସୋମ-ସୁମନ ସରି,
ନଦୀ-ନିର୍ମ୍ମଳ-ଜଳ ମୁକୁତା ଧାରେ,
ଶ୍ରୀପଦ ପୁଣ୍ୟ ଶରଧାସାରେ,
ଆଦରେ ଧୋଇବି,
ଶସ୍ୟ ଶ୍ୟାମଳ ଆସ୍ତରଣେ
ଆସନ ଥୋଇବି,
ବ୍ୟଜନିବ ଆସି ସେବକ ସମ
ସ୍ନିଗ୍ଧ ମୃଦୁଳ ବାତ !



ଆସ ଆସ ଭାଇ ଭଉଣୀର ଡାକେ
ଆଉ ନ ରହିବା ଅଳସେ,
ଲାଞ୍ଛନା-ବେଦନା- ଦୈନ୍ୟ ଅବହେଳି
କରିବା କରମ ହରଷେ ।
ନୁହେ ଏ ଜୀବନ ଅସାର ଖେଳନା,
ଏ ଜୀବନ ପରା ଆନନ୍ଦ-ଚେତନା,
ଶକତି ସାଧନା ଶକତି ବନ୍ଦନା-
ସଙ୍ଗୀତେ ଜୀବନ ବିଳସେ ।
ଶକ୍ତି ରଙ୍ଗମଞ୍ଚେ ଆସ ଆସ ଧାଇଁ,
ହେବା ବଡ଼ ବିଶ୍ୱେ ଶକତି ଦେଖାଇ,

ଶକ୍ତି ପୂଜା ଧର୍ମ ଶକ୍ତି ପୂଜା କର୍ମ,
କିପାଇଁ ବସିଛ ବିରସେ ?
ଉଠ ବୀର ଭାଇ, ଉଠ ହେ ସାଧକ,
ଉଠ ଆତ୍ମତ୍ୟାଗୀ, ବିଶ୍ୱର ସେବକ,
ଗଲା ବହି ଦିନ, ଗଲା ବହି ଦିନ,
ନାଚେ କିପାଁ ବସ ଅବଶେ ?



ବହୁଥାଉ ବହୁଥାଉ ଦିବସ ରଜନୀ
ଝର ଝର ମର୍ମଭେଦୀ ନୟନ-ଝରଣା,
ମଉନେ ମରିବି, କିଛି ନ କହିବି,
ଦେବି ତୋ' ଦୁଆରେ ଧାରଣା ।
ସରିଛି ସର୍ବସ୍ୱ, ମୁଁ ଆଜି ସୁଦୀନ,
ତୋ' ଚିନ୍ତାରେ ମୋର ତନୁ ହେଲା କ୍ଷୀଣ,
ତୋ' ମାଟିରେ ମିଶି ହେବି ଶେଷେ ଲୀନ,
ଊଣା ନ ହେବ ମୋ' କାନ୍ଦଣା
ଖଣ୍ଡ ଖଣ୍ଡ ତୋର ସୁକୋମଳ ଅଙ୍ଗ,
ଭାଇ ଭାଇ ଛିନ୍ନଭିନ୍ନ ଏ କଳିଙ୍ଗ,
କେ ରହିଲେ କାହିଁ କେହି ଲୋଡ଼େ ନାହିଁ,
ସହୁଥୁଁ କେବଳ ଯନ୍ତ୍ରଣା ।
ଦେଖି ତା' ଦୁର୍ଦ୍ଦଶା ଉଡ଼େ ମୋ ହଂସା,
ମୁଖେ ନାହିଁ ଭାଷା, ନାହିଁ ମୋ' ଭରସା,
ଏଡ଼େ ବଡ଼ ଜାତି ଆଲିଙ୍ଗିଲେ କ୍ଷିତି,
ପ୍ରାଣ କେ ଧରିବ କହନା !



ଜନନୀ ତୋହର ମୋହନ ମୂରତି
ମୋ' ପରାଣ-ପ୍ରୀତିଚନ୍ଦନ,
ଜନନୀ ତୋହର ଘନ ଗିରିବନ
ମୋ' ପାରିଜାତକ ନନ୍ଦନ ।
ମଞ୍ଜୁଳ ମନ୍ଦାର ତୋର ବନଫୁଲ,
ତୋ' ଶ୍ୟାମ-ସରସେ ସୁଧାନନ୍ଦ ଠୂଳ,
ତୋର ମହାନଦୀ ଭବ ବିଷ୍ଣୁପଦୀ,
ତୋ' ସିନ୍ଧୁ ଇନ୍ଦିରା-ସଦନ ।
ତୋ' ମନ୍ଦିରମାଳା ମୋ' ନେତ୍ରସଙ୍ଖାଳି,
ପୁଣ୍ୟ ତୋର ପୁରୀ ଚକ୍ରତୀର୍ଥ ବାଲି,
ଦୁର୍ଗ ବାରବାଟୀ ବୀରସ୍ପୃଷ୍ଟ ମାଟି
କପାଳ-ତିଳକ-ରଚନ ।
ବେଦନାରେ ତୋର ପ୍ରାଣ ମା କାତର,
ଝରେ କି ଗୋ ମାତ, ତୋ' ଅଶ୍ରୁ ନିର୍ଝର,
ପଦେ ପ୍ରାଣ ବାନ୍ଧି ତୋ' ସଙ୍ଗେ ମୁଁ କାନ୍ଦି
ସାରିବି ସଂସାର ଜୀବନ ।



ବିଶ୍ୱ-ବନ୍ଦନୀୟା ବାଣି ! ତୋର ଚରଣେ
ଆଣିଛି ବରଣ-ଡାଲା ସଜ ସୁମନେ ।
ହାତରେ ପିନ୍ଧାଇ ତୋର
ଲଭିବି ତୃପ୍ତି ଅପାର,
ଶୋଭିବ ପ୍ରେମମନ୍ଦାର ଚାରୁ ଚରଣେ ।
ପ୍ରେମମଲ୍ଲୀମାଳେ ଗଳା
ଗୁଳିବ ମୁକୁତାମାଳା,
ଯିବ ଏ ଜୀବନ ମୋର ପାଦ ଅର୍ଚ୍ଚନେ ।
ମାଳତୀମୁକୁଟ ଗୁନ୍ଥି
ସଜାଇବି କେଶପନ୍ତି,
ବସାଇବି ରାଣୀ ମୋର ହୃଦଆସନେ ।
କେତକୀ ବକୁଳ ଗନ୍ଧେ
ଗୋଲାପ ପଦ୍ମ ଆନନ୍ଦେ
ଛନ୍ଦିବି ଶ୍ରୀଅଙ୍ଗ ଚମ୍ପାବୃତ ବନ୍ଧନେ ।
ତରାଟ ତୁଳସୀ ମାଳି,
କୁନ୍ଦ ଶେଫାଳୀ ନିଆଳି
ସଜାଇବି ଅର୍ଘ୍ୟଥାଳୀ ଚୂଆ ଚନ୍ଦନେ ।



ହେଲେ ମୁଁ ଦୀନ ଉତ୍କଳ ! ଦୀନ ଉତ୍କଳ !
ମୋ ଭରସା ସିନା (୩)
ଓଡ଼ିଆ ବଳ ।
ଓଡ଼ିଆର ଦେହେ ଯେ ଶୋଣିତ ବହେ,
ଓଡ଼ିଆ ପରାଣେ ଯେ ପ୍ରୀତି ଶୋହେ,
ସେ ତ ମୋ' ସମ୍ବଳ (୩)
ପୂର୍ଣ୍ଣ ସମ୍ବଳ !

କିପାଁ ଦୁର୍ବଳ ମୁଁ କିପାଁ ଦୁର୍ବଳ !
ହେଲେ ମୁଁ ଦୀନ ଉକ୍ରଳ । ୧ ।
ହେଲେ ମୁଁ ହୀନ ଓଡ଼ିଶା ! ହୀନ ଓଡ଼ିଶା !
ମୋ' ଭରସା ସିନା (୩)
ଓଡ଼ିଆ ଭାଷା;
ଓଡ଼ିଆ ବଦନେ ଓଡ଼ିଆ ସଦନେ,
ରଚନେ ପଠନେ, ଯେ ବାଣି ସ୍ୱନେ,
ସେ ତ ମୋ' ସାଧନ (୩)
ପୂର୍ଣ୍ଣ ସାଧନ;
କିପାଁ ନିର୍ଦ୍ଧନ ମୁଁ କିପାଁ ନିର୍ଦ୍ଧନ,
ହେଲେ ମୁଁ ହୀନ ଓଡଶା ।



# ନବବର୍ଷେ

ନିଶାନ୍ତ ସମୀର ବହିଗଲା ଧୀରେ,
କୁଆତାରା ହୀରା-ହସ ଲିଭିଲା,
ପୂର୍ବାଶା ସିନ୍ଦୂର ଦୁଆର ମୁକୁଳି
ଉଛୁଳିଲା ପ୍ରେମ-ପ୍ରବାଳ-ଲୀଳା ।
ନବ ବରଷର ନବୀନ ଅତିଥି
ଉଭା ଗଗନରେ ମୋହନ ବେଶେ,
କଳିଙ୍ଗ କୁଟୀରେ ଜାଗିଲା ମଧୁରେ
ପ୍ରଭାତ ସଙ୍ଗୀତ ହର୍ଷ ଆବେଶେ ।
ମନ୍ଦିରେ ଶୁଭିଲା ଶୁଭ ଶଙ୍ଖ ସ୍ୱନ
ପାହାନ୍ତା ପବନ ମୃଦୁହିଲ୍ଲୋଳେ ।
ଘନବନବାଥି ପଡ଼ିଲା ଉଛୁଳି
ତରଙ୍ଗ କାକଳି କୋମଳ ରୋଳେ ।
ସାରା ସୃଷ୍ଟି ଆଜି ହରଷ ଅଧୀର
ନବବର୍ଷ ଶୁଭ ପର୍ବ ପାଳନେ,
ବସିଲା ବିଶାଳ ଆନନ୍ଦ ବଜାର
ବିଶ୍ୱରାଜ ସଭା-ଶୋଭା-ସଦନେ ।
ଅପସରା ପରା ଖେଳିଲେ ଅବିର
ଜ୍ୟୋତିଃ-ସୀମନ୍ତିନୀ ଉଷା ଅଙ୍ଗନେ,
ଚମ୍ପାଗୋରା ତୋରା ତରୁଣ ତପନ
ବସିଲା ଅର୍ଣ୍ଣବ ସ୍ୱର୍ଣ୍ଣ ଆସନେ ।
ଅମଳ ଆନନ୍ଦ- ସିନ୍ଧୁ-ସୁଧା ସ୍ନାନ
ସାରି ଶୋଭେ ରବି ରୁଚିର ହାସ,
ଜନକ-କାରଣ- ବାସ କଉଷେୟ
ପାଦେ ପଦ୍ମ-କାନ୍ତି ଉଷା ବିଳାସ ।
ଜୀବନ ସ୍ପନ୍ଦନ ଜାଗିଲା ମୋହନ,
ନନ୍ଦିଲା ଆନନ୍ଦେ ନିଖିଳ ଧରା,
ବନ୍ଦିଲା ବହନେ ନବ ରବି ଛବି
ଅତୁଳ ଅମଳ ଜ୍ୟୋତି-ପସରା ।
ଗାଇଲେ କଳିତ କଣ୍ଠେ ସୁଲଳିତ
ଜ୍ୟୋତି ଜନ୍ମତିଥି ନବୀନ ଗାନ,
ଉଭା-ଶୋଭା-ଫୁଲ- ଗଭା ହେମପ୍ରଭା
ଅମରୀଏ ତୋଳି ଅମୀୟ ତାନ ।
ଉଷା ସୁଷମାରେ ଶୋଭିଲା ସ୍ୱରଗ
ପ୍ରେମ ହେମ କମ-କମଳ କାନ୍ତି,
ଚକିତ ଚଞ୍ଚଳ ଚିର ଚରାଚର
ନିରେଖିଲେ ନବ ମଙ୍ଗଳ ଶାନ୍ତି ।
ଲୁହଝରା ଜ୍ୟୋତି- ମୋତି ହିମପନ୍ତି
ସରମ ସୁନ୍ଦରସ୍ନେହ କୋମଳ,
ସରସ-ଶ୍ୟାମଳ- ଘନ ଦୁର୍ବାଦଳ
ପାତିଲା ପୃଥିବୀ ପଥେ ଅଞ୍ଚଳ ।
ଅମ୍ବୁଜ-ବରଣ- ଗୁରୁ ବୃନ୍ଦନର
ଆଶେ ବିଳସିଲେ କୁଞ୍ଜ କିଶୋରୀ,
ରଚିଲେ ରଭସେ ଫୁଟା ଫୁଲ-ପାଶ
ମନ୍ଦାର, ମଲ୍ଲିକା, କେତକୀ ଗୋରୀ ।
ଢଳ ଢଳ ହିଆ ନବ ଅରବିନ୍ଦ,
ଅଶ୍ରୁ ଟଳ ମଳ ସଜ ଗୋଲାପ,
ବିପିନ-ବରଜ ବର୍ଷରାଜ ସ୍ତୁତି
ଭୃଙ୍ଗ-ମୃଦଙ୍ଗରେ କଲେ ଆଳାପ ।
ନିବିଡ଼ ଉଲ୍ଲାସେ ପଳାଶ, ଶାଲ୍ମଳୀ,
ଛୁରୀଜ, ଅଶୋକ, ନାଗକେଶର,
ରଙ୍ଗ ଚରଣର ଲାଳସୀ ରଙ୍ଗଣୀ
ଢାଳିଲେ ବାସନାସିକ୍ତ ଅନ୍ତର ।
ବିଶ୍ୱ ବୀଣା ତାନେ ବାଜିଲା ସହସା
ଚମ୍ପା ଚୂତ କୁଞ୍ଜେ ପଞ୍ଚ ଲହରୀ,

ମରମେ ମର୍ମରି ମୃଦୁଳ ମଳୟ
ମୃଦେ ନିମିଷକେ ଗଲା ସଞ୍ଚରି ।
ନବ ବରଷର ନବୀନ ହରଷେ
ସଜାଡ଼ିଲେ ସର୍ବେ ଅର୍ଚ୍ଚନାଥାଳୀ,
କି ଦେବୁ ଲୋ ପାଦେ ଆଜି ତୁ ଉତ୍କଳ,
ଚିତ୍ତ ଚିର ରକ୍ତ ପକା ଲୋ ଢାଳି ।
ଦୁଃଖା ସଜବାଢ ନ ପିନ୍ଧ ଲୋ ଲୋକେ
ଛିନ୍ନ ପୁରାତନ ମଳିନ ଶାଢ଼ୀ,
ପଡ଼ିଥା ପତର- କୁଡ଼ିଆ କୋଣରେ
କେଶ ବେଶ ହାସ ହରଷ ଛାଡ଼ି ।
ପରଦେଶୀଯାର ବସନ ଭୂଷଣେ
ବିଳାସିନୀ ବେଶେ ନ ହୁଅ ବାଇ,
ପକା ମନେ ତୋର ପୁରୁବର ଶିରୀ
କି ଥିଲୁ କି ହେଉ ତୁଂ କାହିଁପାଇଁ ?
କାହିଁ କୃଶ କରେ କନକ କଙ୍କଣ
କାଚ ଚୂଡ଼ୀ ପଟେ ଏଡ଼େ ଆଦର,
କୁଙ୍କୁମ କସ୍ତୁରୀ କେତକୀ କର୍ପୂର
ଛାଡ଼ିଲୁ ରସିଣ ପର ଅତର ।
ଦୁଟିଛି ତୋହର ଫୁଟା ପଦ୍ମ ଶୋଭା
କିମ୍ପା ସାବୁନରେ ଘଷୁ ତୋ ମୁଖ,
ନ ବୋଳ ଅଳତା ଦୁର୍ବଳ ଚରଣେ,
ରୋଗଶେଯେ ପଡ଼ି ରହିଥା ମୂକ ।
ଜରାଜୀର୍ଣ୍ଣ ଶୀର୍ଣ୍ଣ- ଶିରୀ ତୁ ଦୁଃଖିନୀ,
ନିଃସ୍ୱ ନିଃସମ୍ବଳ ନିତି ଲାଞ୍ଛିତା,
ବାଞ୍ଛିତେ ବଞ୍ଚିତା ପର ପଦାନତା
ମଉନେ କବାଟ କୋଣେ ପଡ଼ିଥା ।
ଥାଉ ଥାଉ ତୋର ଚନ୍ଦନ-ରଚନା
ନ ସଜାଡ଼ି ଆଉ ବନ୍ଦନ ଦେବୀ,
ଦୀର୍ଘଶ୍ୱାସ ଉଠୁ ଦୀର୍ଘ ମନ୍ଦିରେ
କାଣ୍ଡ ପ୍ରତିମା ପଞ୍ଜରାଭେଦି ।

ନ ଖଞ୍ଜ ଆୟାସେ ରୁକ୍ଷ କର୍କଶ
ଭଙ୍ଗା ଖଞ୍ଜଣୀରେ ବିକଳ ସ୍ୱର,
ନୀରବ ନିର୍ଜନ ଦେଉଳ ମୂଳରୁ
କରୁ ହାହାକାର ଫଟା ପଥର ।
କାନ୍ଦୁ କଲ୍ଲୋଳିନୀ ସିକତା ଶୟନେ
ଜଳୁ ବେଣା-ବନେ ଅନଳ ଶିଖା,
ଦରଶୁଷ୍କ ସରେ କାନ୍ଦୁ ଲୋ ସଫରୀ,
କାନ୍ଦୁ ହତଶିରୀ କ୍ଷୀଣ ଚିଲିକା ।
ଯା ନୀଳ ବେଣୀରେ ନ ଶୋଭେ ତରଣୀ
ଚମ୍ପାଫୁଲ ଶ୍ରେଣୀ ସୁଷମା କିଣି,
ଆଉ ତ ଓଡ଼ିଆ ଦୂର ବିଦେଶରୁ
ନ ଆଣେ କୁବେର ଭଣ୍ଡାର କିଣି ।
ଶିବ ଶିରୀପତି ସରଳା ପାର୍ବତୀ
ପୟର ପରଶେ ପୂତ ବିମଳ,
ତରଙ୍ଗ ତରଳା ଚାରୁ ଚିତ୍ରୋତ୍ପଳ
ନୀଳା ଶତଦଳ ରମ୍ୟ ଉତ୍କଳ ।
କୋଳେ ଯା' ଜନମ ବୀର ଅରିନ୍ଦମ
ପୁରୁଷ ଉତ୍ତମ, ଭୀମ, ଯଯାତି,
କେଶରୀ କରୀ ଯା' ବାହନ ଆଜି ସେ
ତପନର ତଳେ ଅଧମ ଜାତି ।
ଶିଳାଶିଳ୍ପ ଛଳେ ଛନ୍ଦି କାବ୍ୟକଳା
କବିତାରେ ରଚି କୌଶଳ କାରୁ
ପାରାବାର ପର- ପାରେ ଯା' ସଭ୍ୟତା
ଶୋଭିଲା ମନ୍ଦିର ମଣ୍ଡପେ ଚାରୁ,
ଆଜି ସେ ବର୍ବର, ଆଜି ସେ କିଙ୍କର,
କା' ପ୍ରାଣ ପାଷାଣ ସହିବ ଆଉ ?
ଅଳସ ବିଳାସୀ ଆମେ ଲୋ ସରବେ,
କୋଟିକଣ୍ଠ ନିକି ଅଙ୍ଗେ ନିଭାଉ !
ଗଲା ଧର୍ମ କର୍ମ ସାଧନ ଭଜନ,
ନେଲେଣି ମେଲାଣି ଶିରୀଶାରଦା,

ଅନ୍ନପୂର୍ଣ୍ଣା ମାତା ଅନ୍ନ ଅଭାବରେ
ବସି ଶମଶାନେ ବାହୁନେ ସଦା ।
ଶୈଳମାଳ ତେଜି ଜ୍ୱର ମେଲେରିଆ
କମଳ ପ୍ରଫୁଲ୍ଲ ପଲ୍ଲେ ପଶି
ପଲ୍ଲବ-ପାଟଳ ପଲ୍ଲୀସୁଷମା
ସାରିଲାଣି ସବୁ, ଦେଖୁଛୁ ବସି ।
ଲକ୍ଷେ ରାଜାଙ୍କର ମଉଡ଼ମଣିର
ରାଇଜର ଲୋକେ ମଶାଣିମଡ଼ା,
ଦୁର୍ଭିକ୍ଷ ବନ୍ୟା- ବିପତ୍ତି କଲାଣି
ଲକ୍ଷେ ପରଜାଙ୍କୁ ରାଇଜଛଡ଼ା ।
ପୋଡ଼ ବେଲପଣା, ଗଜାମୁଗ କନ୍ଦ,
ଚକଟା ଛତୁରେ ନ ବଳେ ମନ,
ତଳସୀର ତଳେ ମନ୍ତ୍ର ବିସୋରି
ଛିନ୍ନ ଚିତ୍ତେଁ ଉଠେ ଘନ ରୋଦନ ।
କୃପା-ସିଂହାସନ ଟଳିବ କି ହେଲେ,
କାଳେ ଚାହିଁବେ ସେ ଶ୍ରୀହରି ଥରେ ?
ଓଡ଼ିଆର ଦଶା ଓଡ଼ିଆର ଆଶା
ହେବ କି ସଫଳ ଏ ଜଗତରେ ?
ଚରଣେ ମାଗୁଣି ଏତିକି ହେ ହରି,
ନବ ବରଷର ଶୁଭ ଆଶିଷେ,
(ଯେଝ୍ନେ) ଛିନ୍ନ ସୁଷମା ଭିନ୍ନ କଳିଙ୍ଗ
ଅଚିରେ ଆନନ୍ଦେ ଏକାଠି ମିଶେ ।

(ବୈଶାଖ ୧୩୩୨)



ଓଁ

ଉତ୍କଳର ଶ୍ରେଷ୍ଠ ପଲ୍ଲୀକବି

ଜାତୀୟ କବିତାର ସ୍ୱଚ୍ଛ ପ୍ରସ୍ରବଣ

ନିସର୍ଗ କମଳାର ବରପୁତ୍ର

ସାହିତ୍ୟଜଗତରେ ମୋହର ପିତୃପ୍ରତିମ

ରାୟସାହେବ **ଶ୍ରୀଯୁକ୍ତ** ନନ୍ଦକିଶୋର ବଳଙ୍କର

ପବିତ୍ର ଚରଣ କମଳରେ ଏହି ନବୀନ କବିତା-ଗୁଚ୍ଛ

# ଦୂର୍ବାଦଳ

ଭକ୍ତି ଓ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଉତ୍ସୃଷ୍ଟ ହେଲା ।

କଟକ

ତା ୮ । ୨ । ୧୯୨୬ ମସାହା — ଗ୍ରନ୍ଥକର୍ତ୍ତ୍ରୀ

# ଶ୍ରୀଯୁକ୍ତ ରାୟସାହେବ ନନ୍ଦକିଶୋର ବଳଙ୍କ ପ୍ରତି

(୧)

କି ଭାବନା ଜାଗେ ପ୍ରାଣେ କବି ଦରଶନେ,
ପୂର୍ଣ୍ଣେନ୍ଦୁ ଅର୍ଣ୍ଣବ ହେରି ଅର୍ଣ୍ଣୋଦଆସନେ
ବିସ୍ତାରି ବିଶାଳ ବାହୁ ଉର୍ମ୍ମିଲୀଳାଚ୍ଛଳେ
ବ୍ୟାକୁଳେ ଆକୁଳ ପ୍ରାଣ ଆନନ୍ଦେ ଉଛୁଳେ ।
ଫୁଟିଆସେ ଧୀରେ ଯଥା ନବ ଅରବିନ୍ଦ
ମନ୍ଦ ମଳୟ ମାରୁତ ଚୁମ୍ବନେ ମୋହନ,
ଧାଇଁଆସେ ଫୁଲ୍ଲ ମଲ୍ଲୀମାଳେ କି ମିଳିନ୍ଦ,
ଚହଟିଯାଏ କି କାନ୍ତ କେତକୀ କାନନ !
ଉଷା ଅରୁଣିମାତଳେ ଝଳେ ନବ ରବି,
ଅନାଇ ଉଲ୍ଲାସେ ହସେ ସୁମନ ସୁନ୍ଦରୀ,
ଶ୍ୟାମଳ କୋମଳ ଦଳେ ହିମ ବିନ୍ଦୁଛବି
ଝଲକେ ଆଲୋକେ ବର୍ଣ୍ଣେ ଇନ୍ଦ୍ରଧନୁ ସରି ।
ନନ୍ଦିତ ନିଷ୍ପନ୍ଦ ହିଆ ବନ୍ଦି କବିପଦେ
ଲଭିଲି ଅକ୍ଷୟ ମହା ଗୌରବସମ୍ପଦେ ।

(୨)

ତାଳ-ନାରୀକେଳମାଳ-ସରସ ଶ୍ୟାମଳ
ବିରୂପା ଲହରୀଲୀଳା-ଲୋଳିତ ଅଞ୍ଚଳ,
ବନ ବିହଙ୍ଗ କଳିତ ଲଳିତ କାକଳି
ପଲ୍ଲବ-ପାଟଳ ପଲ୍ଲୀ କୁଶପୁର ଝଳି ।
ତହିଁ ତବ ନିକେତନେ ହେ କବି ବଳେନ୍ଦ୍ର,
ପଡ଼ିଲା ମୋ' ପଦଯୁଗ କି ଯୋଗେ ମାହେନ୍ଦ୍ର;
କି ଛଳେ ବିଧାତା ଛଳି ଆଣିଲା ସେ ଟାଣି,
କବି ଯେଣୁ କବିପ୍ରିୟ ବର-ବୀଣାପାଣି !
ପର୍ଣ୍ଣ ମୋ ଚନ୍ଦନବନ ଦର୍ଶନ ବାସନା,
ନନ୍ଦନ ମନ୍ଦାର କୁଞ୍ଜେ ଶୁଭ ଅଭ୍ୟର୍ଥନା,
ଲୋଟେ ଯହିଁ "ନିର୍ଝରିଣୀ" ସ୍ୱର୍ଣ୍ଣ ଶିଳାତଳେ,
"ବସନ୍ତ କୋକିଳ" ଗାଏ ରସାଳ ଗହଳେ ।
ନେତ୍ରମୋହି "ପଲ୍ଲୀଚିତ୍ର" ପବିତ୍ର ଗରିମା
ଉତ୍କଳ ପ୍ରାଣର ଜନ୍ମଭୂମି ଶ୍ରୀ ମହିମା,
ତହିଁ ଅଭିନବ ଶୋଭା ମଣିକାଞ୍ଚନର
"ନାନାବାୟା" ଶିଶୁଗୀତେ ଉଛୁଳେ ଅନ୍ତର ।
ଯହିଁ ପୁଷ୍କରିଣୀତୀରେ ଜଳକୁମ୍ଭ କରେ
ପୁଷ୍ପିତା "କନକଲତା" ମୃଦୁ ପାଦଭରେ,
ଓଢ଼ଣାର ଆଢୁଆଳେ "ଶର୍ମ୍ମିଷ୍ଠା" ସୁନ୍ଦରୀ
ଶୋଭେ ନବନୀରଦରେ ସୌଦାମିନୀ ସରି;
ତହିଁ ଏକାଦଶଦିନ ତବ ଶାନ୍ତିବାସେ
ପରମ ଆଦର ସ୍ନେହେ ଯାପିଲି ଉଲ୍ଲାସେ,
ଶୁଣି କଲ୍ପଳ ପତ୍ରୀର "ପ୍ରଭାତ ସଙ୍ଗୀତ",
ହେରି "ସାନ୍ଧ୍ୟତାରା" ଶିରୀ ବିମାନେ ବିସ୍ମିତ ।
ହେ କବି, ହେ କବି-ବନ-ନନ୍ଦନ ବରେଣ୍ୟ,
ଧନ୍ୟ ମୋ ଜୀବନ ତବ ନିମନ୍ତ୍ରଣେ ଧନ୍ୟ ।
ନାହିଁ ମୋର ହୀରାହାର, କନକମୁକୁତା,
ଦିଓଟି ଏ ଦୂର୍ବାଦଳ ଭକ୍ତିସୂତ୍ରେ ଗୁନ୍ଥା ।
ତୁଚ୍ଛ ଘାସ-ଗୁଚ୍ଛ କବି ! ନ ଭାବିବ ମନେ,
ପବିତ୍ର ସୁନ୍ଦର ଏହା ଦେବ ଅରଚନେ,
ଅଯୋଗ୍ୟ ଏ ଉପହାର ଅର୍ପିଲି ପୟରେ,
ଯେନ ଗୁଣାକର ନିଜ ଗୁଣେ ସମାଜରେ ।

୧୧ । ୫ । ୨୫

ସ୍ନେହାଧୀନା କନ୍ୟା
କୁନ୍ତଳାକୁମାରୀ





ନନ୍ଦନ ମନ୍ଦାରେ କାହୁଁ ବା ପୂଜିବି,
ଅଛି, ଯୋଡ଼ିଏ ତୁଳସୀ ପତର,
ସୁନା, କୁନ୍ଦୁରୁ ମୁଁ କାହୁଁ ଆଣିବି ଗୋ,
ନାହିଁ ମୋ' ଚନ୍ଦନ, ଅତର ।
ଦୁବ, କୋଳିପତ୍ର, ଆତପ ତଣ୍ଡୁଳେ
ସଜାଡ଼ିଛି ପୂଜାସମ୍ଭାର,
ହୀରା ମୁକୁତା ମୁଁ କାହୁଁ ପାଇବି ଗୋ,
ଗୁନ୍ଥିଛି ସୁମନ ସୁହାର ।
ପନୀରେ କାହୁଁ ବା ସିଞ୍ଚିବି, ଲୋଚନ-
ସଲିଳେ ରଖିଛି ତିନ୍ତାଇ,
ଜଣାନାହିଁ ବଡ଼-ପଣିଆ ମୋତେ ଗୋ,
ଅଛି ନିର୍ମଳ ପ୍ରୀତି ବଢ଼ାଇ



ହୃଦୟ ମନ୍ଦିରେ ଆଜି ଆନନ୍ଦରେ
ଆସିଲ କି ଦେବ ସୁମନ ?
କେ ତୁମେ ହେ ବନ୍ଧୁ, କେ ତୁମେ ଅତିଥି,
କେ ତୁମେ ମୋ' ପ୍ରିୟ ସୁଜନ !
ମୁଖ ଚିହ୍ନା ଚିହ୍ନା, ତଥାପି ଅଜଣା,
କ୍ଷଣେ ମନକିଣା ତହିଁ କି ବେଦନା,
ସାରା ଜୀବନର ଯାତନା ମଧୁର
କଲାଣି ମରମ ଦହନ ।
ମହାନ ମୋହନ ମୂରତି ନୟନେ,
ଥକା ମୋ' ଚରଣ, ନ ଚାଲେ ଅୟନେ,
ଶୟନେ, ସ୍ୱପନେ, ଗୋପନେ ଗୋପନେ
ଜପିଥିଲି ସାରା ଜୀବନ !
ଅଧବାଟେ କାହୁଁ ଆସି ମିଳିଗଲ,
ଲୋଚନୁଁ ଆନନ୍ଦ ଅଶ୍ରୁ ବୁହାଇଲ,
ହରିଲ ନିମିଷେ ପ୍ରଣୟ ପରଶେ
ପରାଣ-ପାତକ ବନ୍ଧନ !
ମୋ'ସ୍ନେହରତନ ଆଦରେ ଯତନେ
ଦେଲି ମୁଁ ମଉନେ ଶ୍ରୀପଦ-ବନ୍ଦନେ,
ପ୍ରୀତିର ବନ୍ଧନେ ବାନ୍ଧ ନିଶିଦିନେ
ହେ ମନନୟନ-ନନ୍ଦନ !



ବେହାଗ ଖମ୍ବାଜ – ତେଓରା

ମୋର ନିଭୃତ ଗୋପନ ମରମେ
ଆସଇ କେ ଆସଇ,
ପ୍ରେମ ମୋହନ ମଧୁର ପରଶେ
ରସଇ କେ ରସଇ !
ଏହି ଅପାର ସୁନ୍ଦର ସଂସାରେ,
ପୟର ସଧୀର ସଞ୍ଚାରେ
ଆସଇ କେ ଆସଇ !
ଚାରୁ ତାରକା-କୁସୁମ-ସୁହାସେ
ହସଇ କେ ହସଇ,
ସୁଧା ବସନ୍ତ ଅନିଳ ହିଲ୍ଲୋଳେ,
ସାଗର ସୁନୀଳ କଲ୍ଲୋଳେ
ଭାସଇ କେ ଭାସଇ !
ମୋର ଅସ୍ଫୁଟ ଗୋପନ ରୋଦନେ,
ଆସଇ କେ ଆସଇ !



ବେହାଗ ଖାମ୍ବାଜ – କାଓ୍ୱାଲି

ତବ ପ୍ରେମ ପାଇଁ ତୃଷିତ ହେ ବନ୍ଧୁ,
ତୃଷିତ ମୋ'ସାରା ପରାଣ,
ଶକତି, ମୁକତି, ବିଭ ବିଭୂତିରେ
ନ ହେବ ଏ ଦୁଃଖ ବାରଣ ।
ସପତ ସ୍ୱରଗ ଭୋଗଲାଗି ପ୍ରଭୁ
ନାହିଁ ମୋ' ତିଳେକ ବାସନା,
ବିନା ତବ ଧ୍ରୁବ-ଶିବ ପଦପ୍ରାନ୍ତ
ନାହିଁ ମୋର ଆନ ସାଧନା ।
ନ ଚାହେଁ ମୁଁ ରମ୍ୟ ରତନ କନକ,
କି ହେବ ଅସାର ମୁକୁତା ମାଣିକ,
ବିନା ପାଦୋଦକ ନ ମେଣ୍ଟିବ ଦକ,
ଶୁଷ୍କ ମୋ' କଣ୍ଠ-ରସନା !



ବାହାର – ଏକତାଲା

ଆସ ମୋର ପ୍ରାଣେ ହେ ଶାନ୍ତି ମୋହର
ଜ୍ୟୋତିର୍ମୟ ଶ୍ୟାମସୁନ୍ଦର,

ନିବିଡ଼ ଜଳଦ-ମାଳାରେ ବରଷି
ବିଜୁଳି ଆଲୋକ-ଝଲକରେ ହସି
ଜଳଧି ପ୍ରବଳ ପୁଲକେ ଉଲ୍ଲସି
ବ୍ୟାପ ମୋ' ହୃଦୟ-ଅବନୀ-ଅମ୍ବର ।
କନକ-କିରଣେ ରବି-ତାରକାର
ହର ମୋ' ଅନ୍ତର ଗର୍ବ ଅନ୍ଧକାର,
ଭାଙ୍ଗିଯାଉ ଲଭି ଚରଣ-ପ୍ରହାର
ତୁଚ୍ଛ ଅହଂକାର-ଉନ୍ନତ ଶିଖର ।
ତବ ଶ୍ରୀମହିମା ନଭୋନୀଳିମାରେ
ଫୁଟିଉଠୁ ମୋର ଅନ୍ତରେ ବାହାରେ,
ନାଚ ଅପମାନ ଲଭୁ ଅବସାନ,
ହୃଦପଦ୍ମେ ପାର ଆସନ ସୁନ୍ଦର ।



ସିନ୍ଧୁ-ଖାମ୍ବାଜ-କାଓ୍ୱାଲି

କେବେ କରିଥିଲି ମନା
ହୃଦପଦ୍ମେ ଆସନ,
ମୋ' ନିଜ କର-ରଚନା
ବସିବେ ମୋ' ପ୍ରିୟତମ !
ବିଶାଳ ବିଶ୍ୱର ରାଜା,
ଘେନିବେ ମୋ' ତୁଚ୍ଛ ପୂଜା,
ଏ ତ ମୋର ଅହଂକାର
ଦେବମାନବ-ବନ୍ଦନ !
ପଦ ଧରି ଡାକେ ହରି,
ହୀନ ମନେ ନ ବିଚାରି
ଆସ ମୋ' ଦୀନ କୁଟୀରେ,
ଆସ ମୋ' ମନମୋହନ !
ନୁହେଁ ଯଦି ମୁଁ ସୁନ୍ଦର,
ଦରିଦ୍ର ଛାର ଇତର,
ବିତର କରୁଣା କର,
ତବ ପ୍ରୀତି ପୁଣ୍ୟଧନ ।



ମିଶ୍ର-କାନାଡ଼ା – ଏକତାଲା

ପ୍ରେମ କରେଁ କିପାଁ କହିବି ଗରବେ,
ପ୍ରେମ କରିବା ମୋ' କରଣୀ,
ପ୍ରେମ ଅଧିକାର ଦେଲ ବୋଲି ସଖା
କୃତାର୍ଥ ମୁଁ ଦୀନ ପରାଣୀ ।
ପାରକଉଡ଼ି ମୋ' ନାହିଁ ବୋଲି ବନ୍ଧୁ,
କଲି ଯା ଆରତେ ମାଗୁଣି,
ସେ ନୁହେଁ ମୋ' ଟାଣ ମୋ' ଗରବପଣ
ଦେଲ ଯଦି ପଦ-ତରଣୀ ।
ଭବ-ବିପିନେ ମୁଁ ବୁଲି ମନୋଭ୍ରମେ
କାନ୍ଦିଲି ତିନ୍ତାଇ ଧରଣୀ,
ସେତିକି ନୁହେ ମୋ' ବଡ଼ିମାପଣିଆ
ଦେଖାଇଦେଲ ଯେ ସରଣୀ ।
କିଙ୍କର ବୋଲି କି ଦରପ ମୋହର
ବଢ଼ାଇ ଶ୍ରୀମୁଖ ଖଟଣି,
''ଆପଣାର ଲୋକ'' ବୋଲି ଯା' କହିଲ,
ଢରିନେଲ କର-ସାରଣୀ ।



ମିଶ୍ରକାନାଡ଼ା – ଏକତାଲା

ଅକୂଳ ସାଗରେ ଉସାଇଲି ତରୀ
ଶ୍ରୀପଦ ସୁମରି ହେ !
ମଲେ ତ ମରିବି, ତାରିଲେ ତରିବି,
ଯାହା ଇଚ୍ଛା କର ହରି ହେ !

(୧)

ଚଉଦିଗେ ଦେଖ ବିଶାଳ ବିସ୍ତାର,
ଭୀଷଣ ଏ ଭବ ମହାପାରାବାର,
ଦୁଃଖ-ଝଞ୍ଜାଘନେ କମ୍ପେ ଅପଘନ,
କେହି ନାହିଁ ସାହା ମୋହରି ହେ ।

(୨)

ପ୍ରେମ-ନାଉରି ! କର ମୋତେ ପାରି
ଦୀନନାଥ ନାମ ସାର୍ଥକ ବିଚାରି,
ମୋ'ପରି ସୁଦୀନ ଭବେ କେହି ଆନ
ଅଛି କି କରୁଣା ବିତରି ହେ ?

(୩)

ଅକୂଳ ଅତଳେ ନାବ ଟଳମଳ,
କାତରେ ପରାଣ ଅନ୍ତରେ ବିକଳ,
ଶେଷ ଆଶା ମୋର ସୁଦୟା ତୁମ୍ଭର
ନୋହିଲେ ଗ୍ରାସିବ ଲହରୀ ହେ ।



କାନାଡ଼ – ଏକତାଲା

ଦୁଃଖ ଦେଉ ମୋତେ ଦୁଃଖଗ୍ନ ଯେସନେ
ଲଭିବି ମୁଁ ଚିର ତରାଣ,
ସଂଶୟ-ଡ଼ୋରେ ଗୁନ୍ଥି ଅବିଶ୍ୱାସ,
ଧରୁ ମୋର ମୀନ-ପରାଣ । ଧ୍ରୁ –
ଭବ-ମାୟାଜଳେ ରହିଛି ମୁଁ ବୁଡ଼ି,
ମୋ' ଚିର-ସମ୍ପଦ ପ୍ରେମାନନ୍ଦେ ଛୁଡ଼ି,
ନେଉ ମୋତେ ଧରି, ମୋ' ହୃଦୟ ଚିରି
ଦଳି କାଢୁ ତପ୍ତ ଶୋଷିତ ବିଷାଣ । ୧ ।
ମରି ମୁଁ ଜୀଇବି ତୋ' ପ୍ରେମଲାଗି,
ପାଇବି ସରବ ସରବ ତ୍ୟାଗି,
ହଜିବ ଯା' ମୋର, ହରିବ ଯା' ଚୋର,
ପୂରଣ କରିବୁ ହେ ଜଗତରାଣ । ୨ ।



ଆସିଲି ବିକି ଗୋ ପାଦରେ ତୁମର
ପ୍ରେମମୟ ମୋର ହୃଦୟ,
ନ ମୂଲାଇ ତୁମେ ଛଡ଼ାଇନେଲ ଗୋ
କାହିଁ ମୁଁ ହେଉଛି ଅଥୟ ।
ଆସିଲି ପୂଜି ମୁଁ ପୟର ତୁମର
ସୁନ୍ଦର ମୋ' ମନୋକମଳେ,
ଘେନା କରିବା ତ ଦୂରେ ଥାଉ, ତୁମେ
ପାଦରେ ଦଳିଲ ସବଳେ ।
ଗାଇଲି ବସି ମୁଁ ଦୁଆରେ ତୁମର
ଦିବାନିଶି ଦୁଃଖରାଗିଣୀ,
ଶୁଣିବା କଥା ତ ଦୂରେ ଥାଉ, ତୁମେ
ଭାଙ୍ଗିଦେଲ ମୋ ଖଞ୍ଜଣୀ ।
ଘୁଞ୍ଚିଆସିଲି ମୁଁ ଯେତେ କତି କତି
ତେତିକି କରିଲ ପର ଗୋ,
ଯେତେ ବନ୍ଧୁପଣ ଭିଆଣ କରିଲି
ତେତିକି କରିଲ ଦୂର ଗୋ ।
ତେବେ କିନ୍ତୁ ସଖା ନଯିବି ବାହୁଡ଼ି,
ଜାଣିଛି ମୁଁ ତୁମ ଛଳନା,
ଉପର କଠୋର ବେଭାରେ ଭିତର
ପ୍ରୀତିଟି କରିଛି କଳନା
କଟୁ ବଚନର ଅନ୍ତରାଳେ ଲୁଚି
ରହି ନ ପାରୁଛି ହସଟି,
ମନର ପରଖ ମନ ସିନା ସଖା,
ସୁନାର ପରଖ କଷଟି ।



ଭୈରବୀ – ଏକତାଲା

ଆଦର ସୁଧାରେ ଡାକିଲି ପ୍ରଭୁ ହେ,
ଆଦର ତ ହେଲା ମଳିନ,
ଝରିଗଲା କେତେ ଅଶ୍ରୁ ଶିଶିର,
ଶୁଖିଲା ତ ଚିର-ନଳିନ ।
ଦ୍ୱାରେ ଦ୍ୱାରେ ବୁଲି ଏ ଭିକାରୀ ଦଶା,
କାନ୍ଦି କାନ୍ଦି ଲାଜେ ହେଲାଣି ବିବଶା,
ନ ଶମିଲା ତୃଷା, ନ ପୂରିଲା ଆଶା,
ଅନାଇ ତପତ ପୁଲିନ ।
ଧୂଳି ମୁଠା ଘେନି ଥିଲ କି ହେ ଗଢ଼ି,
କିପାଁ ଫୁଟାଇଲ ହୃଦ କୁନ୍ଦକଢ଼ି,
ଝଡ଼ିଲା ଅକାଳେ, ସଢ଼ିଲା ଜଞ୍ଜାଳେ,
ଧୂଳିରେ ତ ହେଲା ବିଲୀନ ।



ବଡ଼ ଆଶା କରି ଆସିଥିଲି ପ୍ରଭୁ,
ପଦଟିଏ କଥା ଶୁଣିବି,
ବଡ଼ ଆଶା କରି ବସିଲି ଦୁଆରେ
ନୟନ ପୂରାଇ ଚାହିଁବି
ତୁମ ଦାସ-ଦଳେ ମୁଁ ସବୁଠୁ ଊଣା,
ତେଣୁ କି ବାଞ୍ଛିତ ନ ହେଲା କରୁଣା ?
ଆସିଥିଲି ମନେ ଘେନି ଯା'ପୁରୁଣା,
(ଏବେ) ନିରାଶେ ନେଉଟି ଚାଲିବି ।
ଥାଉ ଥାଉ ତବ ପ୍ରେମିକପଣିଆ,
ମୁଁ ଥିବି ସଂସାର ଜଞ୍ଜାଳ ଅଳିଆ,
ମୋ' ନୀଚପଣରେ ଥିବି ମଉନରେ
(ତହିଁ) ଜୀବନ ସଫଳ ମଣିବି ।



ପାଏ ଯଦି ପ୍ରଭୁ ଟାଖଣ୍ଡକ ଭୂଇଁ
ଶ୍ରୀଚରଣ-ପଦ୍ମ ଛାୟାରେ,
ଆଉ ନ ଭୁଲିବି, ଦୂରେ ପଳାଇବି,
ଅସାର ସଂସାରମାୟାରେ ।

( ୧ )
ମଣିବି ଜୀବନ ଚରମ ସାର୍ଥକ,
ହୃଦୟୁଁ ତୁଟିବ ବୃଥା ଭୟ ଦକ,
ପିଇ ପାଦୋଦକ ଭୁଲିବି ମୋ ଶୋକ,
ନଭିଛି ନିତି ଯା କାୟାରେ ।
( ୨ )
ବହି କେତେ କ୍ଳେଶ କେତେ ପଥ ଚାଳି
କେତେ ମରୁଭୂମି ଦୁଃଖ-ତପ୍ତ ବାଳି,
କେତେ ଭୀମ ବାରି ନଦୀ ସିନ୍ଧୁ ପାରି
ପାଇଛି ତୋହରି ଦୟାରେ ।
(୩)
ଏବେ ତୋ' ଚରଣେ ସେବକର ସ୍ଥାନ,
ଅକୁଣ୍ଠିତେ ପ୍ରଭୁ କର ମୋତେ ଦାନ,
ସେ ମୋ ମହାମାନ, ସେ ରାଜସମ୍ମାନ,
ସେତିକି ଆଶା ମୋ' ହିଆରେ ।



ନିବିଡ଼ ଘନତାମସୀ ରାତ୍ରି,
ହୁଅ ସଙ୍ଗୀ ମୋର ଦୁର୍ବଳ ଯାତ୍ରୀ ।
ଆକାଶେ କଳା ନୀରଦ ଭାସେ,
ଦିଗ୍‌ବଳୟ କୋଳେ ବିଜୁଳି ହସେ,
ନିରାଶ ପ୍ରାଣ, କମ୍ପିତ ତନୁ,
ବୁଡ଼ିବ ତରୀ ଭାବନା ଭାରେ
ଗଭୀର ଏ ଭୀମ ସାଗର ତଳେ ।
ହୁଅ ସଙ୍ଗୀ ମୋର ଭବଭୟହର,
ଦୁର୍ବଳ ମୁହିଁ ଯାତ୍ରୀ,
କ୍ଷୁବ୍‌ଧ ସାଗର, କ୍ଷୁଦ୍ର ତରଣୀ,
ଝଞ୍ଜା-ଭୀଷଣ ରାତ୍ରି ।



ଚତୁର ବଣିଆ ପରାଭବ-ବଜାରେ,
ମଉଛେ ମାତିଛ ମନ କିଣାବିକାରେ ।
କାହିଁ ଲାଭ କାହିଁ ତୁଟି,
କାହିଁ ହସ ଉଠେ ଫୁଟି,
କାହିଁ ବିଷାଦ ଭ୍ରୁକୁଟୀ,
କାହିଁ ବା ସର୍ବସ୍ୱ ହାରେ । ୧ ।
ଆସନ୍ତି ଖାତକ ଛଳେ
ଦାଣ୍ଡେ କେତେ ଦଳେ ଦଳେ,
ଅସଲ ଜଣକ ଚିହ୍ନା
ନ ପଡ଼େ ଏଡ଼େ ଧନ୍ଦାରେ । ୨ ।
ତା ମୁଖ ଦେଖିବା ଲାଗି
ଆଖି ମୋ ରହିଛି ଜାଗି,
ହେବି ମୁଁ ସର୍ବସ୍ୱତ୍ୟାଗୀ
ଦେଖିଲେ ବଦନ ବାରେ । ୩ ।
ଛାଡ଼ି ଏ ଭବପସରା
ଧାଇଁଯିବି ପଛେ ତ୍ୱରା
ସକଳ ଅନର୍ଥ-ସରା
ସେ ପ୍ରେମ-ମନ୍ଦିର-ଦ୍ୱାରେ । ୪ ।
ଲୁଟିଖାଉ କେ ମୋ' ଧନ,
ତହିଁ ନ ହେବି ଉଛନ୍ନ,
ସେ ହେବ ମୋ' ଜ୍ଞାନ ଧ୍ୟାନ
ମୋ ସରବ ସଂସାରେ । ୫ ।



ଖଟ୍ ଭୈରବୀ – ଏକତାଳା
ସେ ତ ଆଦରର ଧନମଣି,
ମୋ' ପ୍ରାଣରତନ, ହୃଦୟମୋହନ,
ପୂର୍ଣ୍ଣ ପ୍ରେମ-ସୁଧା-ଖଣି । ଧ୍ରୁବ ।
ପରମସୁନ୍ଦର ପ୍ରେମ-ପ୍ରଭାକର
ମୋ' ଆତ୍ମାକମଳ, ବନ୍ଧୁ ସୁବିମଳ,
ମୋର ସର୍ବସାର ଶକତି ଆଧାର
ପୁଣ୍ୟମୟ ଗୁଣମଣି । ୧ ।
ପବନେ ଉଛୁଳେ ତା' ସ୍ୱରଲହରୀ,
ଫୁଲେ ଫୁଲେ ଫୁଟେ ତା' ରୂପମାଧୁରୀ;
ବାତୁଳ କଲା କି ଅତୁଳ ଆନନ୍ଦେ
ମନ ମୋର ନେଲା କିଣି ? ୨ ।
କି କହିବି ଆଉ ନ ଆସଇ କଥା,
ଚରାଚରେ ପରା ବାଜଇ ମୋ'ବ୍ୟଥା,
ପୁଲକ ଆକୁଳେ ଭାସେ ନେତ୍ରଜଳେ
ଦିବାନିଶି ଗୁଣ ଗୁଣି । ୩ ।
ଅସାର ସଂସାରେ ନାହିଁ ମୋର ଆଶ,
ମାଗେଁ ଶୀତଛାୟା ଶ୍ରୀପଦ ସାରସ,
ସେ ଏକା ମୋ ଧନ, ସେ ଏକା ମୋ' ଧ୍ୟାନ
ତିରେ ପ୍ରେମଚିନ୍ତାମଣି !



ସିନ୍ଧୁ ଖାମ୍ବାଜ୍ – ଜଲଦ ଏକତାଲା

ସୁନ୍ଦରେ ସୁନ୍ଦରେ ହୃଦୟ ମୋହର
ହେଉ ନାଥ ଚିରସୁନ୍ଦର !
ମଧୁରେ ମଧୁରେ ହୃଦୟ ମୋହର
ହେଉ ନାଥ ଚିରମଧୁର । ଧ୍ରୁ୧

(୧)

କ୍ଷୁଦ୍ର ମୁହିଁ ପ୍ରଭୁ ଯଦି ବଳହୀନ,
ନୁହେଁ ତୁ କୃପା କରଣେ ନିଉନ,
ମଉନେ ବସିବି ଚରଣ ନଳିନ-ତଳେ
ଚିର ତବ କିଙ୍କର ।

(୨)

ଭୁଲାଇବ ମୋତେ କି ଦେଇ ହେ ପ୍ରଭୁ,
ତୃଣ ତୁଲ୍ୟ ମଣେ ତୁମ ବିନା ସବୁ,
ହେ ଭୁବନେଶ୍ୱର ତୁମେ ମୋ' ଈଶ୍ୱର,
ମୋ ଚରମ ଶାନ୍ତିସାଗର ।

(୩)

ଚାହେଁ ନାହିଁ ନାଥ ମାନ ଗଉରବ,
ଚାହେ ନାହିଁ ସୁଖସମ୍ପଦ-ଗରବ,
ସବୁ ତ ସରିବ ତବ ଅସରନ୍ତି ଦିଅ ପ୍ରେମସୁଧା ନିର୍ଝର ।



ବେହାଗ ଖାମ୍ବାଜ – କଓ୍ୱାଲି

ସକାଳରୁ ସଞ୍ଜେ ତୁମରି ଲାଗି ମୁଁ
ଅନାଇ ବସିଛି ପଥେ,
ଛାତି ଥରଥରେ ଆଖି ଝରଝରେ
ଆସିଲ ଆସିଲ ସତେ । ଧ୍ରୁ ।
ସାରା ପରାଣଟା ତୃଷାରେ ପୂରି
ସାରା ମରମଟା ହେଉଛି ଝୁରି,
ଶିରାରେ ଶିରାରେ ଚମକେ ବିଜୁଳି
ଛଳିକୁ ଛଳିଲ ପରା,
ଝିମି ଝିମି ଦେହ- ଗୋଟାକ ମୋହରି,
ଅବିଶ୍ୱାସ ଘେରେ ତ୍ୱରା ।
ତୁଚ୍ଛାକୁ ତୁଚ୍ଛାକୁ କାନ୍ଦିବସେ ମାନେ
ଜୀବନ ରହିବ ସତେ,
ଏତେ ଦୁଃଖ ଯଦି ଦେବ ଭାଳିଥିଲ,
ବେଳୁ ନ କହିଲ ମୋତେ !



ସିନ୍ଧୁ – ଆଡ଼ାଠେକା

କହ ରେ ମନ ଥରେ,
ମନେ ସେ କି ନ ପଡ଼େ ରେ ?
ହେରି ଅରୁଣ ଛବି ସ୍ମରୁ ଜିରେ ମୁଖରବି,
ଲୋଚନୁ ପଡ଼େ ସ୍ରବି,
ଦ୍ରବି ଅନ୍ତର ଅଶ୍ରୁରେ ।
ପଥେ ହେଉ ପଥହରା,
ଖୋଜିବୁଲୁ ବିଶ୍ୱସାରା,
ନ ଲଭି ପ୍ରାଣପ୍ରିୟ
ପଥପ୍ରାନ୍ତେ ତୁ ବସୁ ରେ ।
ନୀଳ ଗଗନ ଚାହିଁ
କାହିଁ ଯାଉ ମନ ଧାଇଁ,
କିଏ ତୋ ହୃଦସାଇଁ,
କାହା ପାଦେ ତୁ ରସୁ ରେ ?
ତୃଣ ତୁ କଷୁ ଜ୍ଞାନ,
ସରବସଂସାର ମାନ,
ସେ ତୋର ଜ୍ଞାନ ଧ୍ୟାନ,
କାହା ଶରଣ ପଶୁ ରେ ? .



ବେହାଗ ଖାମ୍ବାଜ – କଓ୍ୱାଲି

ଆସିଲା କେ ଏ ନିଶୀଥେ ମୋହରି କୁଟୀରଦ୍ୱାରେ,
କି ଘେନି ପୂଜିବି ପାଦ ମାଗିବି ମୁଁ କାହାଠାରେ ?
ମଳିନ ହୃଦୟଭୂଇଁ, ପୀଡ଼ିତ କାତର ମୁହିଁ,
ଆସନଟି ସୁଦ୍ଧା ନାହିଁ ଏ ଭଗନ କୁଡ଼ିଆରେ ।
ଦୀନେ ଅତି ଦୀନତମ ଜାଣିଛ କି ପ୍ରିୟତମ,
ଅଛି ମୋ ମନ-ସୁମନ ନୟନଭରା ଆସାରେ ?
ଦେବି ମୁଁ ଚରଣେ ଢାଳି, ଯାହା ଜୀବନ ସଞ୍ଚାଳି,
ଦୀନତା ହୀନତା ମୋର ହଜିବ ହେ ପୂର୍ଣ୍ଣତାରେ ।



ଗହ କୋକିଳ, କି ଗାନ ଗାଉ ହରଷେ ?
ଆକୁଳ ବ୍ୟାକୁଳ ହିଆ,
ନିମିଷେ ପରାଣନିଆ,
ନାଚେ ମନ ଥେଯା ଥେଯା
ଭାବଉଲ୍ଲାସେ;

କହ ତୋ' ପଞ୍ଚମ ତାନେ,
କି ସୁଧା ବରଷେ କାନେ,
ଉଭା କି ବସନ୍ତ ପ୍ରାଣେ
ମୋହନ ବେଶେ ? ୧ ।
ଦିଶେ ଦିଶେ ଫୁଲରାଶି,
ଦିଶେ ଦିଶେ ବାଜେ ବଂଶୀ
ଉନ୍ମତ୍ତ ପରାଣ ମୋର
ପ୍ରେମ ଆବେଶେ ;
ଯିବି କି ରହିବି ଘରେ,
ତନୁ ଥରେ, ଆଖି ଝରେ,
ଚଞ୍ଚଳେ ଚମକେ ଚିତ୍ତ
ଲାଜ ପରଶେ । ୨ ।



ଆସ ଆସ ବୁଲି ଦକ୍ଷିଣା ପବନ,
ବୁମ୍ବି ଧୀରେ ଫୁଲଶିରେ ମହକି ମୋ ହୃଦବନ ।
ଫୁଟିଉଠୁ ଶଶୀ-ହାସ,
ଝରିପଡୁ ଫୁଲବାସ,
ଗଗନେ ଗହନେ ରସି ପରଶ ମୋ' ପ୍ରାଣମନ,
ଜାଗୁ ଜୀବନେ ମୋହନ ମୂରତିଟି ଘନ ଘନ ।
ବାଜୁ ମରମେ ସେ ବୀଣା,
ଚଉଦ ଭୁବନକିଣା,
ଆକୁଳ ଅଧୀର ହିଆ ଲଭୁ ଆନନ୍ଦ-ବନ୍ଧନ,
ଅରପୁ ପୟରପଦ୍ମେ ଆତ୍ମା ମୋ' ସର୍ବସ୍ୱ ଧନ ।



କହ ମନ କାହା କଥା ଭାବୁ ବିରଳେ ?
କିଏ ସେ ତୋ' ପ୍ରାଣସଖା,
କା' ପାଦେ ତୋ ଚିତ୍ତ ଯୋଖା,
ଚମକେ ପୁଲକେ ଚିତ୍ତେ ପ୍ରେମ ଉଛୁଳେ ।
କାହାର ସେ ରୂପ ତୋରା,
କୋଟି ଭୁବନ-ପାସୋରା,
ରବି ଶଶୀ ତାରକାରେ ଛବି ଉନ୍ମଳେ ।
ନୀରବେ ନୟନାସାରେ
ଗୁନ୍ଥୁକି ମୁକୁତାହାରେ,
ଅରପି ଗଳାରେବାରେ ଚାହିଁବୁ ଭୋଳେ ?

ନୁହେ ଦିନକର ପ୍ରୀତି,
ଜନ୍ମ ଜନ୍ମ ଗଲା ବିତି,
ତୁ ତାହାର ସେ ତୋହର ଯୁଗ ଯୁଗଲେ ।



ଆହା ! ଶୁଣିଲି ସତେ କି ଗାନ,
ସ୍ୱରଟି ରହିଛା ମରମରେ ଜାଗି, ଭୁଲିଗଲି କଥାମାନ ।
କେଉଁ ଦୂରବନେ ବାଜିଲା ବୀଣା,
କାନେ ନ ପଶୁଣୁ ମରମକିଣା,
କେତେ ଯେ ବିଷାଦ, କେତେ ଅବସାଦ,
ଶୁଣି ସେ ଲଳିତ ତାନା । ୧ ।
ମୋ' ଜୀବନକୁଞ୍ଜେ ରାଗିଣୀ ତା'ର,
ଗଗନେ ପବନେ ଶୁଣେ ସେ ସ୍ୱର,
ଭ୍ରମର ଗୁଞ୍ଜନେ କୋକିଳ ପଞ୍ଚମେ
ତା' ସୁକଣ୍ଠ କରେ ଜ୍ଞାନ । ୨ ।
ଜାଗ୍ରତେ ସ୍ୱପନେ କରମ ଧାନେ,
ଶୁଣେ କି ତା'ସ୍ୱର ବାଜୁଛି କାନେ,
ନୀର ଝର ଝରେ, ପତର ମର୍ମ୍ମରେ
ଚମକିଉଠେ ମୋ' ପ୍ରାଣ । ୩ ।
ଅଦୃଶ୍ୟ ସେ କା'ର ଅଙ୍ଗୁଳି ସ୍ପର୍ଶେ,
ବାଜିଉଠେ ହୃଦ-ତନ୍ତ୍ରୀ କି ହର୍ଷେ ?
ସ୍ୱର ଦେଇ ତହିଁ ଗାଏ କେ ଗୋପନେ,
କରି ନବ ଜୀବ ଦାନ । ୪ ।



ଦୁଆରେ ଆସି ତୁମେ ଡ଼ାକିଗଲ ବାରମ୍ବାର,
ଶୁଣି ନ ଶୁଣିଲା ପରି ରହିଲି ମଉନେ,
ଯାଚିଦେଲ ହାତେ ଆଣି ଆନନ୍ଦସମ୍ଭାର,
ଚାହିଁ ନ ଦେଖିଲି, ମଥା ରହିଲା ନିଉନେ ;
ତଳେ ନିବେଶିଲି ଆଖି ମାୟାଭୋଳେ,
ଶୁଣି ନ ପାରିଲି ଡାକ ଭବଗୋଳେ,
ଡାକିଲ ନେବାକୁ କୋଳେ,
ଫେରି ନ ଚାହିଁଲି ଡ଼ୋଳେ,
ଏବେ ବଞ୍ଚିବି କହ କିପରି ତୁମ ବିହୁନେ ? ୧ ।
ଏବେ ମନ ମାୟା ଭ୍ରମ ହେଲା ଛିନ୍ନ
ଖୋଜିବୁଲେ ଚରାଚରେ ପଦଚିହ୍ନ ;
ଏବେ ମୋ' ଝରୁଛି ଲୁହ,
ବକ୍ଷ ବିଦାରୁଛି କୋହ,
ଏବେ ଆସ ସଖା ହୃଦେ, ଆସ ଡାକେ କରୁଣେ ।



ପାର ଯଦି କଳି ମୋର ହୃଦୟର ଆକୁଳତା,
ସରମେ ଚରଣତଳେ କହିବି ମରମ କଥା ।
ପୋଛିଦେବ ଯଦି ମୋର ନୟନର ଅଶ୍ରୁଜଳ,
ଲିଭାଇବ ଯଦି ମୋର ଅନ୍ତରର ଦାବାନଳ,
ତେବେ ନାଥ ଚରଣରେ ଜୀବନରେ ମରଣରେ
ଥିବି ବନ୍ଧା, ଥିବି ନିତି ତରୁପଦେ ଲତା ଯଥା ।
ସିଞ୍ଚିଦେବ ଯଦି ପ୍ରାଣେ ସଞ୍ଜିବନୀ ସୁଧାଧାର,
ଫୁଟାଇବ ହୃଦ-ବନେ ନବ ଆଶା-ଫୁଲହାର,
ତେବେ ନାଥ ଚରଣରେ, ଜୀବନରେ ମରଣରେ
ରହିବି ଚିର ଆଶ୍ରିତ ତେଜି ଜଗତ ମମତା ।



ମୋର ବ୍ୟର୍ଥ ନୟନଧାରା
କଠିନ ତୋହରି ପାଷାଣ ପରାଣେ
ବାଜି ନ ବାଜଇ ପରା,
ହସେ ନିଜ ମନେ, କାନ୍ଦେ ନିଜ ମନେ
ନିଜ ଗାନେ ଆତ୍ମହରା ।
ନିଜର ବେଦନା ନିଜେ ମୁଁ ସହେ,
ନିଜ କରମରେ ମରେଁ ବା ବଞ୍ଚେ,
ବୁଲେ ମିଛେ ମିଛେ ଦୁଆରେ ଦୁଆରେ
ସହି କେତେ ଶୀତ ଖରା ।
ତେବେ ତବ ଦୟା ନୋହିଲା ତିଳେକ,
କେତେ ସହିବ ଏ ଅଧମ ସେବକ,
କେତେ ବହିବି ମୁଁ ଏ ବିଶ୍ୱ-ବଜାରେ
ଲାଜର ମଳିନ ପସରା ?



ଯାହା ଥିଲା ମୋର ଶୁଝିଲି ତୋ ଦେଣା
ପାଉଣା କାହିଁ ମୋ' କହ ରେ,
ମୋ'ଠାରୁ ମୋହର ସକଳ ଘେନିଣ
ଛଳନା କି ପାଇଁ କହ ରେ !
ଶୁଝିଲି ତୋ' ରଣ କରୁଣା ଆଶାରେ,
ବୁଡ଼ାଇ ମାରୁ ତୁ କିପାଁ ନିରାଶାରେ ?
ବସିବି ଦୁଆରେ କେତେ ଦିନ ଆଉ,
ଝରୁଛି ମୋ ଆଖି ଲୁହ ରେ !
ମଧୁର ବଚନେ ହରିଲୁ ମୋ ମନ,
ଏବେ ନିଜରୂପ କରୁ ତୁ ଗୋପନ,
ଅନାଇଁ ଅନାଇଁ ହୁଏଁ ମୁଁ ଉଛନ୍ନ,
ଚିନ୍ତାତାପେ କିପାଁ ଦହ ରେ ?



ହରଷେ ପୂରିଛି ବିଶ୍ୱ,
ପୂରିଛି ସାରା ପରାଣ,
ଦେଖେଁ ସେ ଦିନେ ଯେ ଦିନେ
ତମସ୍ତୁଁ ଲଭେ ତରାଣ ।
ଯାହାକୁ ମଣେ ମୁଁ ଦୁଃଖ,
ସେ ତ ମୋ ପରମ ସୁଖ,
ପିତା ପାଣି ପାନେ ପରା
ଛାଡ଼େପୀଡ଼ା ଅଙ୍ଗମାନ ।
ଥିଲି ଅବା ସୁନାଖଣ୍ଡ,
ଅନଳେ ଦେଲି କି ଦଣ୍ଡ,
ଖାଦ-କଳଙ୍କ ଛଡ଼ାଇ
ଦେଲ କି ରମ୍ୟ ରସାଣ ?



ସ୍ତବ୍ଧ ଗଭୀର ମଧ୍ୟ ନିଶାରେ ଡାକିଲେ
ପ୍ରଭୁ ଆସିବ କି,
ପର୍ଣ୍ଣ କୁଟୀରେ ମାଟିରେ ଲୋଟି କାନ୍ଦିଲେ
ପ୍ରଭୁ ଶୁଣିବ କି ?
ତୁଙ୍ଗ-ଶିଖରୀ-ଉଚ୍ଚ ଶିଖରେ,
କ୍ଷୁବ୍ଧ-ତରଙ୍ଗ-ଭୀମ ସାଗରେ,
ଘନ ବିପିନେ ଡାକିଲେ ଦିନେ ଆସିବ କି ?
ଅଶ୍ରୁ-କାତର ମ୍ଳାନ ମୁଖେ ଧାଇଁଲେ ଦୁଃଖ ନାଶିବ କି ?
ରୋଗେ ଶୋକେ ସୁଖେ ହରଷେ,
କୁଟୀରେ, ହର୍ମ୍ମ୍ୟେ, ଦେଶେ, ବିଦେଶେ,
ଆସିବ ପ୍ରାଣେ ଶାନ୍ତି-ବେଶେ,
ସରବ ଶ୍ରାନ୍ତି ହରିବ କି.
ଭବ-ବିଜନ-କଣ୍ଟକ ବନେ
ଚାଲିଲେ ହାତ ଧରିବ କି ?
ପ୍ରେମ ପରଶେ କଳୁଷ ନାଶି
ଵିଳ ଆତ୍ମା ତୋଷିବ କି,
ସର୍ବେ ତ୍ୟାଗ କରିବେ ଯେ ଦିନେ
ସେ ଦିନେ ପାଶେ ବସିବ କି ?



ବରଷ ବରଷ ପଥ ପରିଶ୍ରମି
ହରଷେ ପୟରେ ମିଳିଲି,
ନଦୀ ସିନ୍ଧୁ ସଙ୍ଗେ ମିଶିଲା ପରାଏ
ସକଳ ଦୁଃଖ ମୁଁ ଭୁଲିଲି ।

ଶତଦଳ ଦଳେ କନକ କିରଣ,
କୁମୁଦେ ଚାନ୍ଦିନୀ-ସୁଧା ବରଷଣ,
ଫୁଲ କୋଳେ ଅବା ହିମବିନ୍ଦୁ ଶୋଭା,
ତବ ପ୍ରେମ ହୃଦେ ଲଭିଲି । ୧ ।

ତବ ପ୍ରେମ ସାର, ସରି କି ଭୁବନେ,
ସାଗର ଶୋଭିତ ସେ କେଉଁ ରତନେ ?
ଖଣିକି ମଣିରେ କିଣେ ପ୍ରେମଜ୍ୟୋତି,
ଉପମା କାହିଁ ନ ପାଇଲି । ୨ ।

ସଫଳ ଆନନ୍ଦ, ସଫଳ ଜୀବନ,
ଦେବତା ସଙ୍ଗେ ଏ ମଙ୍ଗଳ ମିଳନ,
ଭକତି,ମୁକତି, ମିଶି ମୋକ୍ଷ, ଶାନ୍ତି,
ପଦତଳ ଧୂଳି ହୋଇଲି । ୩ ।



ଦଗଧ ମରୁପ୍ରାନ୍ତରେ, ତାପିତ ତୃଷିତ ଅନ୍ତରେ
ମାୟା-ମରୀଚି-ଭ୍ରାନ୍ତ, କ୍ଷୀଣ କ୍ଷୁଦ୍ର ପାନ୍ଥ,
ଚାଲି ଚାଲି ତତଲା ବାଲିରେ
ପୟର ଯୋଡ଼ିକ ଶ୍ରାନ୍ତ,
ବଡ଼ ଦୀନ ଦୁର୍ବଳ,
ଶେଷ ପଥ-ସମ୍ବଳ,
ଆରତି ଏଥି ଶୁଣିବ କେହି
(ଏତ) ନିର୍ଜ୍ଜନ ଏକାନ୍ତ !
ତବ କୃପା ଦୁଆର,
କରୁଛି ଜୁହାର !
କହ ଆଉକେତେ ଦୂର
(ପ୍ରଭୁ) ଅନାଥନାଥ !



ଜୀବ ଯଦି ଯିବ ଛାଡ଼ି
କୃପା କରି କି ହେବ ହେ !
ଚାହୁଁ ଚାହୁଁ ନ ପାଇବି, ନ ଚାହିଁଲେ କି ଦେବ ହେ ?
ବଞ୍ଚିଥିବି ଯେତେ ଦିନ,
ନିତି କଷଣେ ମୁଁ କ୍ଷୀଣ,
ଧୂଳିରେ ହେଲେ ବିଲୀନ,
ଦୟା ଢ଼ାଳି କି ହେବ ହେ ?
ଅବା ଆଶିଷ-ଆସାର
ହରିବ ଅଗ୍ନି ଚିତାର,
ହେବି ଯହିଁ ଭସ୍ମସାର
ତହିଁ କି ଲାଭ ହେବ ହେ ?
କଡ଼ାକର ମୂଳ ନାହିଁ ମୋର
କି ଦେଇ ମୂଳାଇବ,
ଚିର ଅପୂର୍ଣ୍ଣ ମୁଁ ପ୍ରଭୁ
କି ଦେଇ ତୁଳାଇବ ?
ସବୁ ମୋର ଅଧାଅଧି,
ମାୟାମୋହେ ଛନ୍ଦାଛନ୍ଦି,
ତିଳେ ପ୍ରୀତି ନାହିଁ ପ୍ରାଣେ
କି ଦେଖି ଭୁଲାଇବ ?
ଶିରେ ମୋ ସହସ୍ର ଧନ୍ଦା,
କରଚରଣ ମୋ ବନ୍ଧା,
କଠିନ ଭାବ-ନିଗଡ଼େ
କି ବାଟେ ବୁଲାଇବ ?



ଦୂର ପଥ ଧାଇଁ ଆସିଛି ହେ ବନ୍ଧୁ
ବ୍ୟଗ୍ର ଚଞ୍ଚଳ ଚରଣେ,
ତବ ସ୍ନେହାଞ୍ଚଳେ ମୁଞ୍ଛିବି ଲୋଚନ-
ବେନି ମୋ' ଭରସା ପରାଣେ ।
ସଞ୍ଚୁଛି ସୁହାଗେ ଅନୁରାଗରାଶି,
ବଞ୍ଚୁଛି ତୁମ୍ଭରି ଆଦର ପ୍ରତ୍ୟାଶି,
କେତେ ଯାଏ ଫେରି କେତେ ଆସି ଆସି
ଲାଜ-ବିଜଡ଼ିତ ଚରଣେ ।
ସାରା ସଞ୍ଜେ ବସି ବିଫଳ ରୋଦନ,
ଆକାଶେ ଭାଷିଲି ହୃଦୟ ବେଦନ,
ସମୀରେ ସରାଗେ କଲି ନିବେଦନ,
ନିରାଶା-ଦଗଧ ପରାଣେ ।
ସହି ନ ପାରିଲି ଆଉ ଏ ଯାତନା,
ଧାଇଁଲି ତୋ ପାଶେ ଆକୁଳ ଉନ୍ମନା,
ଏବେ ଯା' ବିହିତ କର ତୁ ଦଇତ
ବରିବି ମରଣେ ମରଣେ ।



ହେଲେ ମୁଁ କ୍ଷୁଦ୍ର କମଳ, କ୍ଷୁଦ୍ର କମଳ ହେ,
ହେ ପ୍ରେମ-ମଞ୍ଜୁଳ, ହେ ରବି ଉଜ୍ଜ୍ୱଳ,
ମୋ' ଭରସା ସିନା ଚରଣତଳ,
ହେ ପ୍ରେମ-ବିମଳ !
ଦୀନ ଶତଦଳ, ହସ ଢଳ ଢଳ, ପୂର୍ଣ୍ଣ ପରିମଳ
ପ୍ରେମ ପ୍ରଫୁଲ୍ଲ,
ଭରସା ସିନା ହେ ଚରଣତଳ,
ମୋ' ରବି ଉଜ୍ଜ୍ୱଳ
ହେ ପ୍ରେମ-ନିର୍ମଳ !
ପଙ୍କଖାତେ ଲୋଟି ଉଠିବି ତ ଫୁଟି,
ରବିକର ଲଭି, ମୋହନ ଛବି
ଭରସା ସିନା ହେ ଅମୃତ-କର,
ହେ ରବି ସୁନ୍ଦର,
ହେ ପ୍ରେମ-ସୁନ୍ଦର !
ହେଲେ ମୁଁ କ୍ଷୁଦ୍ର ପୁଷ୍କର,
ହେ ପ୍ରେମମଧୁର, ହେପ୍ରେମଉଦାର,
ମୋ' ଭରସା ସିନା ଅମୃତ କର ହେ,
ହେ ପ୍ରିୟ ସୁନ୍ଦର !



ତୁମରି ଅରୁଣ ହିରଣ-ହରଷ
ହିଲ୍ଲୋଳେ ମାନସ-ମୃଣାଳେ
ହସିବ ଉଜ୍ଜ୍ୱଳ ସ୍ନେହେ ଢଳ ଢଳ
ଭକତି କମଳ କି ନୋଳେ !
ଏତିକି କରୁଣା ନୋହୁ ଊଣା ବନ୍ଧୁ,
ଝରିପଡୁ ତୋର ଅଶ୍ରୁ ହିମବିନ୍ଦୁ,
ଶୋଭିବ ସୁନ୍ଦର ମନୋଇନ୍ଦୀବର
ରବି-ଖର-କରମାଳେ ।
ଦଳେ ଦଳେ ତାର ସୁଷମା-ଲହରୀ
ନୀଳ ଜଳ କୋଳେ ପ୍ରେମାବେଶେ ଥରି
ଶତ ପ୍ରତିବିମ୍ବ ସରାମ୍ବୁ ଚୁମ୍ବନେ
ସରଜିବ ଇନ୍ଦ୍ରଜାଳେ ।



ମିଛେ ଅଭିମାନେ ମନର ଗୁମାନେ
କାନ୍ଦେ ହୃଦେ କର ହାଣି,
ନିଶିଦିନ ମୋତେ ରଖିଛ ମନରେ
ଭୁଲେ ତାହା ଜାଣି ଜାଣି ।

ଦୁନିଆଯାକର ଜଞ୍ଜାଳରାଶି
ଗୋଟାଏଁ ମୁଁ ରୋଷେ ମୋ ସୁଖ ନାଶି,
କେତେ କଦର୍ଥନା ଦାରୁଣ ଯନ୍ତ୍ରଣା
ଗଦାଏଁ ପରାଣେ ଆଣି । ୧ ।
ତବ ସ୍ୱଚ୍ଛ ପ୍ରେମେ ବୋଳେ କେତେ କାଳି,
ମନୋବଳ ଦୁଃଖ-ଦାବାନଳେ ଜାଳି
ଦିଏଁ କେତେ ଗାଳି, ମଗେଁ କେତେ ଡାଳି,
ଅବିଶ୍ୱାସ ଆଣେ ଟାଣି । ୨ ।
ତଥାପି ତୁମରି ନାମ ଜପାମାଳି,
ତବ ଶ୍ରୀଚରଣ ଜୀବନସଙ୍ଖାଳି,
ଚାହେଁ ଆଶା ପଥ ହୋଇ ମୁଁ ଉଷତ
ବୁହାଇ ତପତ ପାଣି । ୩ ।



ଫୁଟିଉଠୁ ପ୍ରଭୁ ପରାଣ-ବେଦନା
କନକ କେତକୀ-କୁସୁମେ,
କଣ୍ଟା କୋଣେ କୋଣେ ସୁବାସ ବିତରି
ରହୁ ଅନ୍ତରାଳେ ମଉନେ ।
ନୟନ କାହାରି ନ ଦେଖୁ ତା ଶିରା,
ମଧୁ ଚୋରି ଭୃଙ୍ଗ ନ କରୁ ଗୁଞ୍ଜରି,
ଦୂରେ ଦୂରେ ଯାଉ ସମୀର ସଞ୍ଚରି
କମ୍ପାଇ କୋମଳ ବଦନେ ।
ହୃଦୟ ତାହାର ଲାଜ-ଆବରଣେ
ହେବ ନିବେଦିତ ଦେବତା ଚରଣେ,
ଝରି ସ୍ୱର୍ଣ୍ଣ-ରେଣୁ ପଦରେଣୁ ସଙ୍ଗେ
ମିଶିବ ପ୍ରେମାଲିଙ୍ଗନେ ।



ସତକୁ ଲୁଚାଇ ନିଜକୁ ବଞ୍ଚାଇ
ମିଛର ପସରା ଧରିଛି,
କୁରୂପ ଯତନେ ଲୁଚାଇ ରତନେ
ଆନ ବେଶ ଅଙ୍ଗେ ବହିଛି ।
ଛଦ୍ମ ଛଳନା ଚିର ବ୍ୟବସାୟ,
ହୀନତା ଢାକିବା ନିତି ଅଭିପ୍ରାୟ,
ଆନ ସ୍ୱରେ କଥା କହି ସୁଗମ୍ଭୀରେ
ନିଜର ମହତ୍ତ୍ୱ ବହିଛି । ୧ ।

ନୁହେ ଯେଡ଼େ ଉଚ୍ଚ ତାହୁଁ ବଡ଼ ମାନ,
ସାରା ବିଶ୍ୱେ ଲୋଡ଼େ ନୃପେଶ ସମ୍ମାନ,
ଉଠାଇ ଗଗନେ ଅହମିକା-ଶିଖା
ସରବେ ଚରଣେ ଦଳିଛି । ୨ ।
ତୁମରି ଆଗରେ ପଡ଼ିଲି କି ଧରା,
ଚହଟ ଚିକ୍‌କଣ ପୋଛିଗଲା ତ୍ୱରା,
ଲାଗେ ଥକାମରା, ନ ଚାଲେ ଚରଣ,
କହ ମୁଁ କିପରି ବଞ୍ଚିବି ? ୩ ।
ତୁମରି ଦୟାର ଏବେ ମୁଁ ଭିକାରୀ,
ନ ଦିଅ ଘଉଡ଼ି କର୍କଶେ ଧିକ୍‌କାରି,
ଚାଳି ବିଷଛୁରୀ ହୃଦୟ କଦୁରି
ବଡ଼ପଣ ମୋର ହଜିଛି । ୪ ।



ପ୍ରାଣ-ପଲ୍ଲବେ ପ୍ରଭୁ ! ଆଉ ତ ନ ଫୁଟେ
କମ କମଳକଳିକା,
କି ଘେନି ଥୋଇବି, ପୂଜା ସଜାଡ଼ିବି,
ରଚିବି ରମ୍ୟ ମାଳିକା । ଧ୍ରୁ ।
ନନ୍ଦ-ନନ୍ଦନ ଗନ୍ଧ ହିଲ୍ଲୋଳେ,
ନ ରଞ୍ଜେ ଉଜ୍ଜ୍ୱଳ କାଞ୍ଚନ-ମଞ୍ଜୁଳ,
ରବି ରୁଚିର କର-ତୂଳିକା ।
ଉଡ଼ି ପଳାଇଛି ଆନନ୍ଦ-ଅଳି,
ନାହିଁ ସେ ଝଳି, ନାହିଁ କାକଳି,
ଶୂନ୍ୟ କୋକିଳ କାନନସ୍ଥଳୁ,
ଶୁଖିଛି ପ୍ରୀତି ମଲ୍ଲିକା ।



ସଫଳ ମୋହର ବିଜୟଗର୍ବେ ଭାଗ ବସାଇବ ଆସି କି,
ସଂଯତ ଏବେ ନ କର କିମ୍ପା ମୋ ତାନ୍ଦ୍ର ବାସନାରାଶି କି ?
ବହୁଦୂର ପଥ ଚାଲିବି ଆୟାସେ,
ପ୍ରତି ପଦକ୍ଷେପେ କଣ୍ଟକ ପରାସେ,
ଛିଣ୍ଡିବ ଅଙ୍ଗ-ବସନ ଖଣ୍ଡିକ
କଣ୍ଟାବାଡ଼େ ବାଜି କି ?
ଖାଇବି କେତେ ମୁଁ ବରଷା ଖରା,
ଲୁହେ ଯିବ ତିନ୍ତି ତପତ ଧରା,
ଦୂରେ ଦୂରେ ଥିବ, କଥା ନ କହିବ
ଛଳି ମୋ' ଯାତନାରାଜିକି ?

ଶେଷେ ପହୁଞ୍ଚିବି ବାଞ୍ଛିତ ବନ୍ଦରେ,
ଧରିବ ସଙ୍ଗ କି ପ୍ରେମହୁନ୍ଦରେ,
ପକାଇ ପାଦେ, କପଟ ଛନ୍ଦେ,
ପଦତଳେ ଦେବ ବାନ୍ଧି କି ?
ଚିର ଜୀବନ ମୋ ଅଶ୍ରୁ-ଅର୍ଜ୍ଜିତ,
ଫଳେ ଶେଷେ ହେବି ବଞ୍ଚିତ ବର୍ଜ୍ଜିତ,
ଥିବ ଯା ସଞ୍ଚିତ କଞ୍ଜଚରଣେ
ଦେବି ମୁଁ ଆନନ୍ଦେ କାନ୍ଦି କି ।
ଲୋଡ଼ା ନାହିଁ ମୋର ମଣିଭୂଷଣ ଗୋ,
ସୁବାସେ ନୋହିବି ସଜ,
ଲୋଡ଼ା ନାହିଁ ମୋର ବିଶ୍ୱ ଐଶ୍ୱର୍ଯ୍ୟ,
ମାଗେଁ ମାତ୍ର ପାଦରଜ ।
ଲୋଡ଼ା ନାହିଁ ମୋର କୀରତି-କେତନ
ଉଚ୍ଚ ସ୍ତବସ୍ତୁତି ଦାଣ୍ଡରେ,
ମାଗେଁ ମାତ୍ର ତବ କରତାପଣିଆ
ମୋର ହୃଦ-ଧରାଖଣ୍ଡରେ ।



ସଖା ! ପୋଛିଦେବୁ ଅଶ୍ରୁଧାର,
କୁଟୀରଦୁଆରେ ଅତିଥି ତୋହରି
କରିବୁ ମୋତେ କି ଦୂର,
ସଖା, ହେବୁ କି ଏଡ଼େ ନିଷ୍ଠୁର ?
ଆସିଅଛି ସଖା ମୁଁ ଦୀନ ବେଶେ,
ବିରସ ବଦନେ ଦୁଃଖ ଆବେଶେ,
ଯୁଗ ଯୁଗ ମୋର ଆଖି ଝର ଝର,
ମର୍ମ୍ମବ୍ୟଥା ହାହାକାର,
ଦେଖି ପାରିବୁ କି କରି ଦୂର ?
ଯେତେ ପଳାଇବୁ ଯିବି ଗୋଡ଼ାଇ,
ନିରମଳ ପ୍ରୀତି ଦେବି ବଢ଼ାଇ,
ପାଦେ ଲୋଟିଯାଇ କରିବି ଗୁହାରି
''ତାରପ୍ରଭୁ ମୋତେ ତାର !''
ତେବେ, ପାରିବୁ କି କରି ଦୂର ?
କାନ୍ଦିବ ଗୋପନେ ତୋ କୋମଳ ଆଖି,
ବହିବ କରୁଣା ସାର ।



ଯେତେ କରୁଥିବ　　ମନା ମୁଁ ଆସିବି
　　ତୁମରି ଦୁଆର କତିକି,
ତୁମ ଗାଳିମାଡ଼　　ସହିବା କାରଣେ
　　ଦୃଢ଼ କରିଥିବି ଛାତିକି ।
ଫୁଲ ଚାନ୍ଦ ବେନି　　ହସନ୍ତି କାନ୍ଦନ୍ତି,
　　ଫୁଲ ଚାନ୍ଦ ସରି ହୋଇବି,
ତୁମ ଗଞ୍ଜଣାକୁ,　　ତୁମ ଲାଞ୍ଛନାକୁ
　　ପିଠି ପତାଇଣ ସହିବି ।
ମୃତ୍ୟୁରୂପେ ଯଦି　　ଆସିବ କତିକି
　　ସୁଖେ ମୁଁ ଘେନିବି କୋଳରେ,
ଆଦରେ ମରଣ　　ବରଣ କରି ଗୋ
　　ମରିବି ଚରଣ ତଳରେ ।



କରିବି କିପରି ସେବା
　　ନ ଜାଣେ କେଉଁ ଧରଣ,
କାହୁଁ ଆଣିବି ମୁଁ ଅନ୍ନ
　　କରିବି ପରିବେଷଣ ?
ଆଣିବି ଅବା ମୁଁ ଜଳ
ବିଦାରି ମୋ ମର୍ମ୍ମସ୍ଥଳ,
ବହିବ ରୁଧିର ଧାର,
　　ତହିଁ ଧୋଇବ ଚରଣ । ୧ ।
ମୋ ଆଶା କାମନାରାଶି
ପ୍ରେମ-ଥାଳୀରେ ପରଷି
ଦୂରେ ଠିଆ ହୋଇ ହସି
　　ଦେଖିବି ତୃପ୍ତ ଭୋଜନ । ୨ ।
ଅଞ୍ଚଳେ ପୋଛିବ ହାତ,
ଧରିବି ପୟର ପ୍ରାନ୍ତ,
ବସିବି ବାଟ ଓଗାଳି
　　କରି ଗମନ ବାରଣ । ୩ ।



　　ମୋର ବହିଯାଉ ଅଶ୍ରୁଧାର,
ଅଭିମାନେ ଲଡ଼ି　　ପଡ଼ିଥିବି ପାଦେ,
　　ଅଛି ସ୍ନେହ ଅଧିକାର ।
ମରମେ ମରି ମୁଁ ଗାଇବି ଗାନ
ପରଶି କାହାର ହୃଦତନ୍ତ୍ରୀମାନ,
ନିଜେ ସେ ଆକୁଳ　　ହୋଇବ ବ୍ୟାକୁଳ
　　ବୁହାଇ ନୟନାସାର । ୧ ।
　　କେତେ ଟାଣପଣ କରିବ ସଖା,
　　ଦୂରେ ଦୂରେ ଘୁଞ୍ଚି ବଢ଼ିବ ଦଳା,
ଏତେ ପ୍ରେମ ସହି,　　ନ ପାରି ମୂରୁଛି
　　ବଢ଼ିବ ହୃଦୟ-ଭାର । ୨ ।
　　ସରମେ ମରି ମୁଁ ଚରଣ-ତଳେ
　　ଭାସେ ଆଜି ସଖା ନୟନ-ଜଳେ,
ମରମର କଥା,　　ପରାଣର ବ୍ୟଥା
　　ତୁମେ ସିନା ବୁଝିପାର । ୩ ।



କିପରି କହିବି ପ୍ରଭୁ,
　　ଆନନ୍ଦ ରାଜେ ଭୁବନେ,
ଆନନ୍ଦ ନ ପାଏ କାହିଁ
　　ପାଇଛି ପରା ସ୍ୱପନେ ।
ନିତି ବହି ଦୁଃଖଭାର
ଭାଙ୍ଗେ ମଝିପିଠି ହାଡ଼,
ନିତି ମୋ ଖଟଣି ସାର,
　　ନିତି ଲୋତକ ଲୋଚନେ ।
ନିତି ଆକାଶ ଅନ୍ଧାରି,
କରାଳ ବିଜୁଳି ମାରି,
ଭୀଷଣ ବଜ୍ର ପ୍ରହାରି
　　ଘୋଟେ ମହାମେଘ କ୍ଷଣେ ।
ଶତ ରୋଗ, ଶୋକ, ଜରା
କରେ ପ୍ରାଣ ଦରମରା,
ବହି ବେଦନାପସରା
　　ଜଳେଁ ମୁଁ ଶତ ଦହନେ ।



ନାହିଁ ଯଦି ପ୍ରଭୁ ଭିକ୍ଷୁକ ସ୍ଥାନ
　　ତବ ଦିବ୍ୟ ସ୍ୱର୍ଗସଭାରେ,
ଏତିକି କରୁଣା କର ତେବେ ବାରେ
　　ବସିବି ବାହାରେ ।
　　ନାହିଁ ମୋର ଜ୍ୟୋତିର୍ମୟ ସାଜ,
　　ସମ୍ବଳ ମୋର ମଳିନ ଲାଜ,
ନତ ମସ୍ତକେ ଦୂରେ ଦୂରେ ଦୀନ,
　　ଜଗିବି ଦୁଆରେ । ୧ ।

ନାହିଁ ମୋର ଉଚ୍ଚପଦମାନ,
ତୁଚ୍ଛ ଅତି ମୁଁ, ସବୁଠୁଁ ସାନ,
ନତ ନୟନେ କବାଟ କୋଣେ
ରହିବି ଅନ୍ଧାରେ । ୨ ।



ତୁମରି ଆଦେଶେ ନେଳି ମୁହିଁ ବହି
ଦୁଆରେ ଦୁଆରେ କହିବି,
ଆନ କରମର ଆଶା ନ ରଖିଣ
ତୁମରି ସେବକ ରହିବି ।
ସତାନ ଯଦି ନ ମଣ ଅଧମେ,
ଦୁଆରେ ବସିବି ମଳିନ ସରମେ,
ସଖା ହେବା ମୋର ନାହିଁ ଅହଙ୍କାର,
କିଙ୍କର ନାମ ବହିବି ।
କର ଯେତେ ଘୃଣା, ନ ଦିଅ ବେତନ,
ବଢ଼ାଇବି ସେବା କରି ମୁଁ ଯତନ,
ତବ କଥାପଦ ମୋ ରାଜସମ୍ପଦ,
ମୁଖ ଦେଖି ସବୁ ସହିବି ।



ତୁମେ ମୋର ବନ୍ଧୁ,
ତୁମ ବିନା କେ ଦେବ ହେ ଭକ୍ତି-ପ୍ରେମ ମଧୁ ?
ତୁମେ ମୋର ସଖା,
ତୁମ ବିନା ପୁଛିବ କି ମୋ ଜଣାଣ ଦକା ?
ତୁମେ ମୋର ପ୍ରିୟ,
ତୁମ ବିନା ପାଇବି କି କରୁଣା ଅମୀୟ ?
ତୁମେ ମୋର ପତି,
ତୁମ ବିନା ତ୍ରିଭୁବନେ ନାହିଁ ଅନ୍ୟ ଗତି ।
ତୁମେ ମୋର ନାଥ,
ତୁମ ବିନା ଦୁର୍ବଳର କେ ଧରିବ ହାତ ?
ତୁମେ ମୋର ରାଜା,
ତୁମ ବିନା କେ ପାଇବ ମୋ ପରାଣପୂଜା ?
ତୁମେ କର୍ଣ୍ଣଧାର,
ତୁମ ବିନା କେ ତାରିବ ଭବ-ପାରାବାର ?



ହେ ଭବସାଗର ମାଝି,
ଜୂଳେ ଲଗା ତୋ ନାହା,
ନାହିଁଟି ପାର କଉଡ଼ି,
ନେ' ଅଛି ଯାହା ।
ଆସୁଛି ମାଡ଼ି ଅନ୍ଧାର,
ଜଳ ଥଳ ଏକାକାର,
ଜଳିଉଠୁଛି ବିଜୁଳି, କୁଅ ତୁ ସାହା ।
ମୁଁ ଦୀନ ବାଟୋଇ ଜଣେ,
ଭ୍ରମେ ପଶିଲି ଏ ବଣେ,
କାହିଁ ଯିବି, କି କରିବି, ନ ଦିଶେ ରାହା ।
ପଛକୁ ଚାହିଁଲେ ବଣ,
ଆଗେ ସାଗର ଭୀଷଣ,
ଆକାଶେ ମେଘ ଅନ୍ଧାର, ଥରୁଛି କାୟା,
ବିସର୍ଜି ଦେଲିଣି ଆଜି ପରାଣମାୟା ।



ଆହେ ଅପାର କୃପାସାଗର,
ପରମ-ମୁକ୍ତି ମୋହର,
ମଳିନ, ଚରଣ- ନଳିନତଳେ
ଆସିଛି ସାହସ ବହି,
ମୁଁ ଅତି ପାତକୀ କଳୁଷ କଳଙ୍କୀ
(ମୋତେ) ଅନାଥ ହେ ଦୟା ବହି ।
ଦୋଷ ଘେନି ଯଦି କରିବ ବିଚାର
ହୋଇପାରିବି କି ଛିଡ଼ା,
କାହୁଁ ନିବାରିବି ଦେବ ଯଦି ଦେବ !
ଲକ୍ଷ ଯାତନା ପୀଡ଼ା ?
ଯାହା ଭଲ ଦିଶେ କର,
ହେ କୋଟି ଭୁବନେଶ୍ୱର !
ମୁଁ ହୀନ, ମୁଁ ଦୀନ ରହିବି ମଉନେ
ତବ ଦଣ୍ଡ-ପ୍ରହାର ସହି ।
ଶେଷେ ତବ ଦୟା ପ୍ରେମ ଝରଝର,
ଶୀତଳିବ ମୋର ତୃଷିତ ଅନ୍ତର,
ସଫଳ ଜୀବନ ହେବ ଶ୍ରୀଚରଣ-
ମଙ୍ଗଳ ମିଳନେ ରହି ।



ପ୍ରେମ-ପୀୟୂଷ କାନ୍ତି ହେ,
ମୋର ପରମ ଶାନ୍ତି ହେ,
ଦୟା ବହି ଦୀନ ହୃଦୟ ନାଶ ସରବ ଭ୍ରାନ୍ତି ହେ ।
ନିତି ଯାଅ ଏହି ପଥେ,
ନିତି ନତନେତ୍ରେ ମୋତେ
ଦେଖପ୍ରାସାଦ ଦୁଆରେ, ବସିଛି ଭିକ୍ଷା ଆଶାରେ
କ୍ଷୀଣଅଙ୍ଗେ ବହି ଅଶେଷ ଶ୍ରାନ୍ତି ହେ ।
ତବ ମଧୁର ବଚନ ପଦେ
ଶୁଣିବା ଶରଧା ପୂରିଛି ହୃଦେ,
ଲାଜେ ନ ଫିଟେ ଅଧର, ଅପାର ଦୟାସାଗର,
ବୁଝ ମୋ ମଉନ ମିନତି କ୍ଳାନ୍ତି ହେ ।



ସୁନ୍ଦର ବିଶ୍ୱେଶ୍ୱର ବାରେ ଅନାଅ,
ମୋ ମନ ସୁଦୀନ ଦୁଃଖେ ବାରେ କି ଚାହଁ ।
ମୁଁ ସିନା ମାନବ ଦୀନ, ତୁମେ ତ ମହାମହିମ,
ନପାରିଲେ ଉଚ୍ଚେ ଉଠି ତୁମେ ଓହ୍ଲାଅ ।
ସହସ୍ର ସୂର୍ଯ୍ୟକିରଣ ଯଦି ସ୍ୱର୍ଣ୍ଣ ସିଂହାସନ,
ମୋ ହୃଦ-କାରାରେ ବନ୍ଦି ଦଣ୍ଡେକ ରହ ।
ସରବ କ୍ଷିତି-ସମ୍ପତ୍ତି,
ଲଭି ତୃପ୍ତ ନୁହେ ମତି,
ବିନା ପାଦପଦ୍ମ ପ୍ରଭୁ ଚିର ଅଥୟ ।



ଦିବାନିଶି ପ୍ରଭୁ ଚିନ୍ତେ ମୁଁ ଚରଣ,
(ତୁମେ) ଭୁଲେ କ୍ଷଣେ ଭାଳି ବସ କି ?
ପ୍ରାଣାନ୍ତ କରି ମୁଁ ପ୍ରେମ କରେଁ,
(ତୁମେ) କ୍ଷଣମାତ୍ର ସ୍ନେହ ବହ କି ?
ଦିବାନିଶି ମୁଁ ତ ତୁମରି ପ୍ରୟାସୀ,
ଦିବାନିଶି ମୁଁ ତ ବୁଲଇ ଉଦାସୀ,
ହୃଦପୂର୍ଣ୍ଣ ଆଶା, ଆକୁଳ ପିପାସା,
ବୁଝି ହେ ବୁଝି ନ ପାର କି ? ୧ ।
ବୃଥା କିପାଁ ତେବେ ପ୍ରେମ ଆଡ଼ମ୍ବର,
ତପନ ତାରକା ବେଶ ମନୋହର,
ଶଶୀ-ହାସେ ହସି, ଫୁଲବାସେ ମିଶି,
ବିଜୁଳିରେ ଉଠ ଝଟକି ? ୨ ।
କହ କିପାଁ ଆସି ଲୁଚି ଦେଖିଯାଅ,
ଧରିଲାବେଳକୁ କେଣିକି ପଳାଅ,
ଏ ପ୍ରେମଚାତୁରୀ, ମୋ ହୃଦକତୁରୀ,
ରକ୍ତ ଝରଝରେ ବୁଝ କି ? ୩ ।



ପ୍ରଭୁ ପ୍ରଭୁ କରି କଳି ମୁଁ ଗୁହାରି,
ନ ଶୁଣିଲ ଦୟା କରି ଗୋ,
ଶ୍ରୀଚରଣ ଧରି ଦୁଃଖ ଜଣାଇଲି,
ନ ଶୁଣିଲ ଦୁଃଖହାରୀ ଗୋ ।
ନେଇଥିଲ ଟେକି କୋଳେ କୃପା କରି,
(ଯେବେ) ପଡ଼ିଥିଲି ପାଦ ଧରି ଗୋ,
ମରମରେ ମରି ସରମରେ ସରି
ପ୍ରେମର ଭିକାରୀ ପରି ଗୋ ।
ଏବେ ମୁଁ ତୁମରି ସେ ଚରଣ ଧରି
ବୁହାଉଛି ଅଶ୍ରୁବାରି ଗୋ,
ପୂରୁବର ପରି କିପାଁ କୃପା କରି
ନ ଶୁଣୁଛ କୃପାକାରୀ ଗୋ ?
ଦିଅ ପ୍ରାଣସରି ପ୍ରେମାମୃତ ଭରି
ଡ଼ାକେ ଯଦି ଅନୁସରି ଗୋ,
କେଉଁ ଦୋଷ ଧରି ନ ଚାହୁଁଛ ଫେରି,
ଚିନ୍ତେ ଦିବା-ବିଭାବରୀ ଗୋ ।



ନେଉଟାଇ ନିଅ ନେଉଟାଇ ନିଅ
ତବ ଯାତନାର ଦାନ,
ସରବ କଷଣ ଦୂରେ ଯାଉ ମୋର,
ଦୁଃଖ ଲଭୁ ଅବସାନ । ଧ୍ରୁ ।
ବିତ୍ତ ବିଭବରେ ନ ବଳାଏଁ ମତି,
ସୁନ୍ଦରସଂସାରେ ନାହିଁ ଆସକ୍ତି,
ମାଗେଁ ନିତି ପରା ପାଦତଳ ଧୂଳି,
ସେତିକି ଚାହେଁ ମୋ ପ୍ରାଣ । ୧ ।
ନା ଜାଣେଁ ମୁଁ ଧର୍ମ କରମ ସାଧନା,
ଜପ ତପ ଜ୍ଞାନ ଧ୍ୟାନ ଧାରଣା,
ତବ ନାମ ଘୋଷି ତୋଷ ମୋ ମାନସ,
ସେତିକି ମୋ ପୂଜା ଗାନ ।

ଯେତେ ପଥ ଦେବ ଚାଲିବି ଧୀରେ,
ଦେବ ଯେତେ ଭାର ବହିବି ଶିରେ,
ହସ ହସ ମୁଖ ହୋଇବ ମୋହର
ଲଭି ତବ ଦାସ ସ୍ଥାନ ।



ହେ ମଙ୍ଗଳ ଇଚ୍ଛା, ମଙ୍ଗଳମୟ ଛାନ୍ଦନେ କର ହେ ପୂର୍ଣ୍ଣ,
ଦିଅ ଯାତନା, ବହିବି. —
ଦିଅ ବେଦନା, ସହିବି —
ଗର୍ବ କର ହେ ଚୂର୍ଣ୍ଣ ।
ପାଦଧୂଳି ତଳେ ରଖ ହେ ଚାପି,
ନତ ଶିରେ ମୋର ଆସନ ସ୍ଥାପି,
ବିଶ୍ୱଜନେ ବିତର ସୁଖସମ୍ଭାର,
ମୋତେ ଦୁଃଖେ କର ହେ ପୂର୍ଣ୍ଣ,
ଅହମିକା କରି ଚୂର୍ଣ୍ଣ । ୧ ।
ରାଜସିଂହାସନେ ବସାଅ ଆନେ,
ରଖ ମୋତେ ପ୍ରଭୁ ସେବକ ସ୍ଥାନେ,
କର ମୋର ଅନ୍ତର ଜର୍ଜ୍ଜର,
ମୋତେ ଆଘାତେ କର ହେ ଚୂର୍ଣ୍ଣ,
ପ୍ରେମପୀୟୁଷେ ପୂର୍ଣ୍ଣ । ୨ ।



ଦୋଷ ଧରି ଯଦି କରିବୁ ବିଚାର
କର ତୁ ବିହିତ ଶାସନ ।
ଯେତେ ଦେବୁ ମୋତେ ଦାରୁଣ ଯନ୍ତ୍ରଣା,
ବଢ଼ିବ ତେତିକି ମୋପ୍ରତି କରୁଣା,
ଫାଟି ମୋ ଶରୀର ଝରିଲେ ରୁଧିର
ଝରିବ ତୋହରି ଲୋଚନ । ୧ ।
ଯେତେ ଭାର ଦେବୁ ବହିବି ସବୁ,
ବ୍ୟଥାରେ କଥା ନ କହିବି ପ୍ରଭୁ,
ଆଦରେ ଆଉଁସି- ଦେବୁ ମୋର ପିଠି
ଦେଖି ମୋ କାତର ବଦନ । ୨ ।
ଯେତେ ଦେଉଥିବୁ ମରମେ ପୀଡ଼ା,
ତେବେ ପାଦତଳେ ହୋଇବି ଛିଡ଼ା,
ମଉନେ ଘେନିବି ତୋ ବଚନ ଶିରେ
କୋଳେ ଟାଣିନେବୁ ବନ୍ଧନ । ୩ ।



ଭୈରବୀ – ଏକତାଳ
ସରବ ଭ୍ରାନ୍ତି ପରପାରେ ଘେନି
ସରସ ଶ୍ରାନ୍ତି ନିବାର,
ଶାନ୍ତ କିରଣେ ଧ୍ୱାନ୍ତ ବିନାଶି
ପରମ-କାନ୍ତି ବିସ୍ତାର ।
ଦୂରେ ଯାଉ ମୋର ମଳିନ ବାସ,
ଘୁଞ୍ଚୁ ବେଦନା, ଛଳନା ତ୍ରାସ,
ହର ଅବସାଦ ହୃଦ-ବିଷାଦ,
ଶୁଭ ଶକତି ସଞ୍ଚାର । ୧ ।
ଫିଟାଇ ନିଅ ମୋ' ମୋହ ଆବରଣ,
ବିନାଶ ସରବ ଅନ୍ୟ ଶରଣ,
(କର) ଧନ୍ୟ ଜୀବନ ନିତ୍ୟ ନବୀନ,
ସିଞ୍ଚ ସ୍ୱରଗ ଆସାର । ୨ ।



ବନ୍ଧୁ ସାଧନାର ପରେ ଯଦି ପ୍ରଭୁ
ଆସିଛ ହୃଦ-ସଦନେ,
ବସ ବସ ବନ୍ଧୁ ମୋ ହାତ ରଚିତ
ପ୍ରେମ-ଚନ୍ଦନ ଚର୍ଚ୍ଚିତ ଆସନେ ।
ଘେନ ହାତଗୁନ୍ଥା ମଲ୍ଲୀଫୁଲ ହାର,
ତିନ୍ତିଛି ଯା' ଝରି ଲୋଚନ ଆସାର,
ସୁପ୍ରୀତି-ତୁଳସୀ ଭକତି-ଥାଳିରେ
ଘେନ ହୃଦୟଟି ଉପହାର । ୧ ।
ଆସ ମୋ ପ୍ରାଣର ପରମ ସୁନ୍ଦର,
ଘୁଞ୍ଚିଯାଉ ଦୁଃଖ, ଦୈନ୍ୟ ଅନ୍ଧାର,
ଉଦ ମୋ ଗଗନେ ପ୍ରେମ ନବଭାନୁ
ବିନାଶି ବିଷାଦ ଅବସାଦ ମନୁ,
ହୁଏଁ ମୁଁ ଉନ୍ନତ, ଚିର କର୍ମରତ
ପବିତ୍ର ପୟର ଦର୍ଶନେ ।



ବିଶ୍ୱ ଆଜିବନ୍ଦେ ଚରଣ ଜନ-ମନ-ମୋହନ ।
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା,
ବନ ଉପବନ ନୟନ କାରା,
ଶୁଭ୍ର ସ୍ୱଚ୍ଛ ସରିତ ଧାରା ପାଦ ପୂଜନେ ନିମଗନ ।

ଗାଏ କୋକିଳ, ଗାଏ ଅଳି,
ଗାଏ ସାଗର ଲହରୀ ତୋଳି,
ଗାଏ ଗିରି ଶିଖର ଲତା-ମର୍ମ୍ମରେ,
ଗାଏ ମୃଦୁଳ ପବନ।
ମୋ ହୃଦୟ ଆନନ୍ଦେ, ଗାଏ ପୁଲକଛନ୍ଦେ
ପାଦ-ପଦ୍ମ ଗନ୍ଧ କୋଟି ବିଶ୍ୱରନ୍ଧ୍ର
ପୂର୍ଣ୍ଣ ଆଜି, ଛିନ୍ନ ଆଜି
ମାୟା ମୋହ ବନ୍ଧନ।
ନିବୃତ୍ତ ଚିତ୍ତ କ୍ରନ୍ଦନ, ହର୍ଷେ ହୃଦ ସ୍ପନ୍ଦନ
ମିଶେ ନନ୍ଦ-ନନ୍ଦନ
ମୁରଲୀ ତାନେ ମୋହନ।



ଇମନ୍ କଲ୍ୟାଣ – ତେଓରା

ହୃଦୟମନ୍ଦିରେ ଚିର ସୁନ୍ଦର, ରାଜ ଚିର ରାଜ ହେ।
ପରାଣଛନ୍ଦେ ଗାଅ ଆନନ୍ଦେ,
ମାନସ-ମୁରଜେ ବାଜ ହେ। ଧ୍ରୁ।
ନୀଳ ପୟୋଧି ଲୋଳ କଲ୍ଲୋଳେ,
ମନ୍ଦ ମାରୁତ ଗନ୍ଧ-ହିଲ୍ଲୋଳେ,
ପିକ ପଞ୍ଚମେ, ଅଳି ଗୁଞ୍ଜନେ,
ବୀଣା ବଂଶୀରେ ବାଜ ହେ। ୧।
ନୈଶ ଅମ୍ବର ତାରକା-ଶଶୀ,
ପ୍ରଫୁଲ୍ଲ ପୁଷ୍ପ-ସୁଷମାରାଶି,
ଶତ ନିର୍ଝର ଗିରିପ୍ରାନ୍ତର-
ଶୋଭା-ବିଭାରେ ରାଜ ହେ। ୨।
ତବ ମଙ୍ଗଳ ପୁଣ୍ୟସ୍ପର୍ଶେ
ଜାଗୁ ଅନ୍ତର ଅମଳ ହର୍ଷେ,
ହନ୍ତୁ ସନ୍ତାନ ଦୁଃଖଦୈନ୍ୟ ତାନ୍ତ୍ର ସାଧନ ଭାଜ ହେ। ୩।



ତବ ବିନା ବନ୍ଧୁ ନାହିଁ ଆନ ଭବେ
ହେ ଭବସିନ୍ଧୁତାରଣ!
ତବ ବିନା ଶୁଭ-ବରାଭୟ ଧାମ
ନାହିଁ ମୋ'ଅନ୍ୟ ଶରଣ।
ଗତି କି ହେବ ମୋର ମୁଁ ଅତି ପାତକୀ,
ତବ ଦୟାସନ ତଳେ ତନୁ ବିକି,
ମୋର ମାଗୁଣି ଏତିକି,
ମତି ନିତି ମୋର ଥାଉ ଅନୁସରି
କମଳକାନ୍ତି ଚରଣ। ୧।
ହର ମୋ ଦୁରିତ, ହରଷ ଏ ଚିତ୍ତ,
ଲଭୁ ଦୀପ୍ତି, ଶକ୍ତି, ମୁକ୍ତି, ଶାନ୍ତି ବିତ୍ତ,
ମୋର ଏ ଦୀନ ଜୀବନ
ପରମ କୃତାର୍ଥ ପିଇ ପଦସୁଧା
ହେବ ମରଣ ବାରଣ।



ଅପରାଧୀ ବୋଲି ପ୍ରିୟତମ ତବ
ଯଦି ନ ପାଇବି କ୍ଷମା,
କଠିନ କରପରଶେ ପ୍ରଭୁ,
କର ମୋରେ ମାର୍ଜନା।
ପାପ କଳଙ୍କରେ କଳଙ୍କିତ ଦେହ
ହେରି ଊଣା ଯଦି ହୁଏ ତବ ସ୍ନେହ,
ପୂତ ପ୍ରେମବାରି ଢାଳି ଦିଅ ଧୋଇ,
କର ଦୂର ହୃଦ ଆବର୍ଜନା। ୧।
ଯଦି ମୁଁ ଅଧମ ଅସ୍ପୃଶ୍ୟତର,
ଯୋଗ୍ୟ ନୁହେଁ ତବ ଅଙ୍କ ଆସନର,
ନିଜ ଦୟାଗୁଣେ ହେ କରୁଣାକର
କର କଣ୍ଟାଶ୍ରୀଚରଣୁଁ ବର୍ଜନା।



କହି ଦେ କହି ଦେ ଆଜି
କେଉଁ ବାଟେ ଯିବି ହରି,
ବହି ନେ ବହି ନେ ମୋର
ବୋଝ ଭାରି ଏ ଗଣ୍ଠିରି।
ପଥଶ୍ରାନ୍ତ ପାନ୍ଥ ପରା,
ଘେରିଲାଣି ଦୁଃଖ-ଜରା,
ଚାଲି ଚାଲି ଦରମରା, ବସେ ମୁଁ ବାଟ ଅଧରେ
ନିରାଶେ ପଡ଼ି।
ଭାଙ୍ଗିଲାଣି ଆଶାବାଡ଼ି,
ଅନ୍ଧାର ଆସଇ ମାଡ଼ି,
କି କରିବି କି କରିବି, କାନ୍ଦେ ନୟନ ଆବରି
ହତାଶେ ରଡ଼ି।

ନାହିଁ ଆଉ ଆଶା ଆନ,
ଆକୁଳେ ଡ଼ାକୁଛି ପ୍ରାଣ,
ଏ ବିପଦେ ଶ୍ରୀପଦେ, ନ ରଖିଲେ ଯିବି ମରି,
ଶୁଣ ହେ ହରି ।



ମୋତେ ଯଦି ଆପଣାର କରିବ ଏଥର
ଖର୍ବ କର ମୋର ସର୍ବ ଗର୍ବ-ଆଡ଼ମ୍ବର । ଧ୍ରୁ ।

(୧)

ତୁମ ନାମ କାହିଁ କହିବି କାହାକୁ,
ନିଜ ନାମ ଗାଇ ବୁଲଇ ତୁଚ୍ଛାକୁ,
ନିଜ ଦଂମଣ ପ୍ରଚାରି ପ୍ରଚାରି ସାରିଛି ଆୟୁଷ ମୋହର ।

(୨)

କାହିଁ ଦେଖିବି ଶ୍ରୀପାଦ-ପଦ୍ମ ଶୋଭା,
ନିଜ ରୂପ ମୋର ହେଲା ମନୋଲୋଭା,
ମୋ ଶୋଭାପସରା ଘେନି ଦ୍ୱାରେ ଦ୍ୱାରେ
ବୁଲଇ ଯାମିନୀ-ବାସର ।



କୂଳେ ଲଗାଅ !
ଭାସିଗଲି ଭବାର୍ଣ୍ଣବେ କଟାକ୍ଷେ ଚାହଁ । ଧ୍ରୁ ।
ଜୀର୍ଣ୍ଣ ତରୀ ଆଶ୍ରାକରି,
ହେଉଥିଲି ଭବ ପାରି,
ମଝି ସାଗରେ ବୁଡୁଛି, ନାହିଁ ସହାୟ । ୧ ।
ଏ ଦୁଃଖ ସମୟେ କି ହରି,
ରହିବ ହେ ଧୈର୍ଯ୍ୟ ଧରି ?
ଭାସିଲି, ଭାସିଲି ଡ଼ାକେ, ପ୍ରାଣ ବଞ୍ଚାଅ । ୨ ।
ତରୀରେ ଭରା ପାତକ,
ବୋଝ ଯେ ମୋର ଅନେକ,
କି କରିବି, କି ମରିବି, ବାରେ ଅନାଥ । ୩ ।
(କୂଳେ ଲଗାଅ !) ?



ତୁମେ ଯଦି ଦେଖା ନ ଦେବ ଜୀବନେ
ଯିବି ମୁଁ ମରଣେ ହଜି,
ତୁମେ ଯଦି କଥା ନ କୁହ ମରମେ
ସରମେ ଯିବିଟି ମଜି ।

ତୁମ ପରିବାରେ ମୁଁ ସବୁଠୁଁ ସାନ,
ତଥାପି ତୁମରି କୋଳର ସନ୍ତାନ,
ରାଜସିଂହାସନ ନ ଥିଲେ କରମେ
ଲଭିବି ତ ପାଦେ ସ୍ଥାନ ।
ନ ପୂରିବ ଯଦି ମୋର ଆଶାରାଶି,
ମୋ କାମନା ମୋତେ ପକାଇବ ଗ୍ରାସି,
ମୋ ଆତ୍ମନିଗ୍ରହ ହରି ତବ ଶାନ୍ତି
ରଚିବ ଭବେ ଶ୍ମଶାନ ।
ରଖ ଯଦି ମୋତେ ବନ୍ଦୀକାରାଗାରେ,
ତିନ୍ତିବ ନିଜର ଉଷ୍ଣ ଅଶ୍ରୁଧାରେ,
ପଙ୍ଗୁ ମୋ ଜୀବନ ଭାଙ୍ଗିବ ତୁମରି
ସ୍ୱାଧୀନତା ଅଭିମାନ ।
ସାରା ବିଶ୍ୱ ଯଦି ତୋଷିବ କୃପାରେ,
ମରୁଥିବି ମୁହିଁ ତୃଷାରେ ଦୁଆରେ,
ଆତ୍ମତୋଷ କେଭେ ନ ଜାଣିବ ପ୍ରଭୁ,
ବ୍ୟର୍ଥ ହେବ ସୃଷ୍ଟିମାନ ।
ଏଣିକି ବିଚାର କର ଦୟାମୟ,
ଦୟା ନୁହେଁ,ଦିଅ ତୁମରି ଅଭୟ,
ମୋ ମରଣେ ତବ ନାହିଁ ତ ଗୌରବ,
ସନାତନ ଅପମାନ ।
ସମ୍ଭର ସମ୍ଭର ଲୀଳା ଲୀଳାମୟ,
ଅଶ୍ରୁରେ କିପାଇଁ ହେଉଛି ଅଥୟ ?
ମୋ ପ୍ରହାରକ୍ଲେଶେ ବେଦନାଜର୍ଜ୍ଜର
କାନ୍ଦୁଛି ତୁମରି ପ୍ରାଣ ।
ଯଦିବା ସହୁଛି ମୋ ନିଜ ବେଦନା,
ଦେଖି ନ ପାରିବି ତବ ଏ ଯାତନା,
କି ଦେବି ହେ କୁହ, ମୋତେ କିପାଁ ଚାହଁ,
କିପାଁ ନିମ୍ନେ ଅଭିଯାନ ?
ମୋ ଲାଗି କିପାଇଁ ଏତେ ଦୀର୍ଘଶ୍ୱାସ
ଫୁଲେ ଫୁଲେ ବାଜେ ପ୍ରାଣର ପରାସ,
ନୀଳାକାଶ ଛଳେ ନୀଳେନ୍ଦୀନୟନେ
ଘନୁଁ ଝରେ ଅଶ୍ରୁଦାମ ।

ଚଉଦଭୁବନ ଥିଲେ ହେଁ ତୁମର,
ମୋ ବିନା ପୂରିବ କାହିଁ କଳେବର,
କଣିକାଏ ଊଣା ହେଲେ କି ହେ ପ୍ରଭୁ,
ହେବ ପୂର୍ଣ୍ଣ ଭଗବାନ ?



କିଏ ବା ପୂଜଇ ମଣିମୁକୁତାରେ
ହୀରକ କନକ ହାରେ,
ଅଶ୍ରୁଫୁଲ ମୁଠା ଘେନି ମୁଁ ଘୁରୁଛି
ତୁମ ରାଜସଭାଦ୍ୱାରେ ।
ବହୁକାଳରୁ ମୁଁ ରହିଛି ଧାରୁଆ,
କି ଘେନି ଶୁଝିବି, ଶୂନ୍ୟ ମୋ ପରୁଆ,
କରଚରଣ ମୋ କରଷିବ ତବ
କେଦାର ଶୀତ ଖରାରେ । ୧ ।
ଚିର ଦରିଦ୍ର ମୁଁ, ନାହିଁ ତହିଁ ଲାଜ,
ପିନ୍ଧାଅ ମୋ ଦେହେ ସେବକର ସାଜ,
ରାତି ପାହାନ୍ତିରୁ ଲାଗିବି, କରମେ,
ସେବିବି ରୁଧିର ଧାରେ । ୨ ।
ଏତିକି ମାଗୁଣି, ବରଷାଅ ପାଣି,
ଦୟାଧାରାରୂପେ ପିଏଁ ମୁଁ ତା' ଛାଣି,
ବହି ତବ ବାୟୁ ପରଶୁ ମୋ ତନୁ
ଶୀତଳି ଦୀର୍ଘ ଦିବାରେ । ୩ ।
କୋଟି କଣ୍ଟା ପଛେ ବିନ୍ଧୁ ମୋ' ଶରୀରେ,
ଚିନ୍ଦୁ ପଛେ ବାଘ ତପତ ରୁଧିରେ,
ଅମୃତ ଶ୍ରୀକରେ ଛୁଇଁଯାଅ ବାରେ,
ହେବି ଅମର ଧରାରେ । ୪ ।



ରାତି ଅଧରେ,
ଯଦି ବାଜେ ଅଧରେ,
ତବ ସ୍ୱରସୁଧା ମଧୁରେ ଧୀରେ,
ଉଠିବି ଶେଯ ଛାଡ଼ି,
ଗାଇବି ଗୀତ ଧାଡ଼ି –
ପୁରୁଣା ବୀଣାରେ ମୋର କ୍ଷୀଣ ଅଙ୍ଗୁଳିରେ
ପରଶିବ ନାଥ ତବ ମରମ ମଝିରେ । ୧ ।
ରାତି ଅଧରେ
ଯଦି ଡ଼ାକ ଦୁଆରେ,
ହାତ ମାରି ସଖା ମଧୁରେ ଧୀରେ,
ଉଠିବି ଶେଯ ଛାଡ଼ି
କବାଟ କୀଳା କାଢ଼ି,
ଚାହିଁବି ସରାଗେ ପଥେ ନୀରବ ନିଶିରେ,
ଆସବି ମିଶିଯିବ ପ୍ରାଣେ ପଲକ ମଝିରେ । ୨ ।



ଓଁ

ମୋହର

ଆରାଧ୍ୟ ଗୁରୁ, ଜୀବନର ଆଦର୍ଶ

ଋଷିପ୍ରତିମ ଭକ୍ତକବି

୰ ମଧୁସୂଦନ ରାଓଙ୍କ

ନାମରେ

ମଧୁର ଓ ପବିତ୍ର ସ୍ମୃତିରେ

କ୍ଷୁଦ୍ର

**ଚମ୍ପାଦଳ**

ଆନ୍ତରିକ ଭକ୍ତିର ନିଦର୍ଶନ ସ୍ୱରୂପ ଅର୍ପିତ ହେଲା ।

କଟକ

ତା ୮ । ୨ । ୧୯୨୬ ମସିହା

ଗ୍ରନ୍ଥକର୍ତ୍ତ୍ରୀ

# ଭକ୍ତକବି ଶ୍ରୀଯୁକ୍ତ ମଧୁସୂଦନ ରାଓ ବାହାଦୁରଙ୍କ ଉଦ୍ଦେଶ୍ୟେ–

(୧)

କହିବି କହିବି କଥା ନ ଆସଇ କଣ୍ଠେ,
ଶୁଣିବ କି ମର୍ମବାଣୀ ସୁଦୂର ବୈକୁଣ୍ଠେ ?
କୁଣ୍ଠିତ ଅନ୍ତରେ କେତେ ଉଦେ ଭାବରାଶି,
ପ୍ରକାଶି ନ ପାରି ଝୁରେ ପତ୍ର, ଲେଖ, ମସୀ ।
ଅତି ଶୈଶବରୁ ତବ ଆଦର୍ଶେ ମୋହର
ଚିତ୍ରିତ, ବିମ୍ବିତ କ୍ଷୁଦ୍ର ଜୀବନମୁକୁର ।
ପଢ଼ି କ୍ଷୁଦ୍ର ''ଛାନ୍ଦମାଳା'' ଶିଶୁମନୋହାରୀ
ଅମୃତ ଆନନ୍ଦେ ମୋର ଦିନ ନିଏ ହରି ।
ତବ ''ବୋଧୋଦୟେ'' ସୀତା ଶ୍ରୀରାମ ଚରିତ୍ର
ହୃଦୟେ ଆଦର୍ଶ ମମ ରଚିଲା ପବିତ୍ର ।
'ସର୍ବଗୁଣ ଅଳଙ୍କୃତା' ଜାନକୀ ସୁନ୍ଦରୀ
ଧୀର କର୍ମବୀର ରାମ ଦିବ୍ୟ ଶୋଭା ଧରି
ଉଦିଲେ ମୋ ଆଖିପଥେ ଆଦର୍ଶେ ମହାନ,
ସେ ଶୁଭ ପ୍ରେରଣା ଲଭି ଜାଗିଲା ପରାଣ ।
'ବାଲ୍ୟକାଳୁ ଧର୍ମଧନ କରିବି ସଞ୍ଚୟ'
ଏ ଅମର ବାଣୀ ତବ ଦେଲା ପରିଚୟ ।
ମଧୁର କବିତା-ମଧୁ କବି-ଅରବିନ୍ଦ !
ନିରତେ ରତ କି ପାନେ ମୋ ମନ-ମିଳିନ୍ଦ !
ପଙ୍କେ ପଦ୍ମ ସରି ଆତ୍ମା ଫୁଟିଲା ଆନନ୍ଦେ,
ବାଜିଲା ମାନସ-ବୀଣା ନବ ନବ ଛନ୍ଦେ ।

(୨)

କେ ଆସେ କେ ଯାଏ ତାହା ଧରଣୀ ନ ଜାଣେ,
ଜାଗେ କିନ୍ତୁ ତବ ନାମ ସହସ୍ର ପରାଣେ ।
ତରୁଣ ଉତ୍କଳ ଯଦି ଧର୍ମ କର୍ମ ଲଭେ,
ସେ ତବ ପ୍ରସାଦେ ଦେବ ! ତୁମରି ଗୌରବେ ।
ଘରେ ଘରେ ଶିଶୁ ତବ ପଞ୍ଚାମୃତ ସରି
କାବ୍ୟ, କବିତା, ସାହିତ୍ୟ ପିଅନ୍ତି ଆଦରି ।
ଜ୍ୱଳନ୍ତ ଜୀବନ୍ତ ଏକ ପ୍ରମାଣ ଏ ତବ,
ମୋ କାବ୍ୟ-କବିତାମାଳି ତୁମରି ବିଭବ ।
ମୋ' ହାତ ରଚିତ କ୍ଷୁଦ୍ର ଚମ୍ପାଫୁଲମାଳା
ଘେନି ମୁଁ ଅଇଲି ତେଣୁ କ୍ଷୁଦ୍ର ପୂଜାଡ଼ାଲା
ଉଦ୍ଦେଶେ ପ୍ରଣମି ତବ ଶ୍ରୀ ପାଦସୁନ୍ଦରେ
ଶରଧାର ଉପହାର ଦେଲି ଭକ୍ତିଭରେ ।
ଉର୍ଦ୍ଧ୍ବୁ ଝାଡ଼ିଦିଅ ଧୂଳି, ହେବି ମୁଁ କୃତାର୍ଥ,
ଗୁରୁଦେବ ପଦ ସେବି ଲଭି ପରମାର୍ଥ ।

(୩)

ଆବାଲ୍ୟ ଦର୍ଶନ ଆଶା ନ ପୂରିଲା, ନାହିଁ,
ଯାପିବି ଜଗତେ ଦିନ ଆଦର୍ଶ ଧିଆଇ ।
ଅମର କବିତା ତବ ମୋ' କୋମଳ ମନେ
ଆଙ୍କିଦେଲା କି ଆଦର୍ଶ କହିବି କେସନେ ?
ଆଜି କବିତାରେତେଣୁ କଲି ସମ୍ବୋଧନ,
କବିକୁଳେ ''ଗୁରୁ'' ମମ ହେ ମଧୁସୂଦନ !
ସୁଦୂର ସ୍ୱରଗୁଁ ଦେବ, ଶୁଭାଶିଷ ଝରି
ସାର୍ଥକ କରୁ ଏ କ୍ଷୁଦ୍ର ଲେଖନୀ ମୋହରି ।

ସେବିକା
କୁନ୍ତଳାକୁମାରୀ



## ଚମ୍ପାଦଳ

ଜାଗେ ଆଜ ମୋର ନବୀନ ପରାଣେ
ନବ ଜୀବନ ମୂର୍ଚ୍ଛନା,
ଅନନ୍ତ ଉଦାର ଆକାଶେ ଅନାଇ
ପ୍ରାଣେ ଚମକେ ଚେତନା।
ଶିରା ଶିରାରେ ଖେଳେ ବିଜୁଳି,
ନେତ୍ରେ କର୍ମକ୍ଷେତ୍ର ଉଠେ ଉଜ୍ଜ୍ୱଳି,
ଶୁଭେ ଶଙ୍ଖସ୍ୱନ କର୍ଣ୍ଣରସାୟନ,
ଜାଗେ ଶୁଭ କର୍ମ ପ୍ରେରଣା।
ସେ କି ଆଲୋକ! ସେ କି ଝଲକ!
ଜ୍ୱଳିଉଠେ ପରା ବ୍ୟୋମ ଭୂଲୋକ;
ଟାଣେ ମୋ' ପ୍ରାଣ, ବୁଡ଼େ ମୋ ଜ୍ଞାନ,
ଶୁଭଇ କେବଳ "ସାଧନା"।



କିଏ କହେ ବିଶ୍ୱ ବିରାଟ ଛଳନା,
ବୃଥା ମାୟାର ବନ୍ଧନ,
ମୁଁ ଦେଖେଁ ସୁନ୍ଦର ଏ ବିଶ୍ୱ ଉଦାର,
ଅନନ୍ତ ପ୍ରେମନନ୍ଦନ।
ବିଶ୍ୱ ମୋର ଶୁଭକରମ ଭୁବନ,
କରମ ଲାଗି ମୁଁ ଲଭିଛି ଜନମ,
ମରଣ ନୁହେ ମୋ ଚିର ଅବସାନ,
ଆରମ୍ଭ ନବୀନ ଜୀବନ।
ଏ ତ ନୁହେ ଶେଷ, ଏ ତ ନୁହେ କ୍ଲେଶ,
ଏ ନୁହେ ବିଦେଶ, ଏ ମୋ' ପୁଣ୍ୟ ଦେଶ,
ହୋଇ କର୍ମରତ ହେବି ମୁଁ ଉନ୍ନତ,
ଏ ନୁହେ ଅସାର ସ୍ୱପନ।



ଜୀବନ ନୁହେ ମୋ ସ୍ୱପନ ଛଳନା,
ଜୀବନ ଆନନ୍ଦମୟ ହେ!
କରମଲାଗି ଜନମ ଲଭିଛି,
କରମେ ଲଭିବି ଜୟ ହେ। ଧ୍ରୁ।
ମିଛେ ମିଛେ ମୋର ଚାରୁ ସଜବାଜ,
ଘୋଡ଼ାଏ କପଟେ ମଳିନତା ଲାଜ;
ହୃଦରାଜ ବିନା ଶୂନ୍ୟ ମୋ ମନ୍ଦିର,
କାହା ପଥ ତେବେ ଚାହିଁଛି? ୧।
ମିଛେ ମିଛେ ମୋର ସୁନାମ ସଂସାର,
ଆକାଶ ପରଶି ଅହମିକାଭାର,
ତବ ପ୍ରେମ ବିନା ଚିର ମୁଁ ଦରିଦ୍ର,
ଅସାର କୁହୁକେ ମଜ୍ଜିଛି। ୨।
ମିଛେ ମିଛେ ମୋର ଜ୍ଞାନ ଅଭିମାନ,
ତୁମ ନାମ ଯଦି ନ କଲି ଧିଆନ,
ମିଛେ ବାଜେ ବୀଣା ମୋ' ମନମନ୍ଦିରେ,
ଦେବତା ମୋ' କାହିଁ ରହିଛି? ୩।
ଆସ ଆସ ଆଜି ପ୍ରାଣପ୍ରିୟତମ,
ପ୍ରେମଜ୍ୟୋତି ଦାନେ ହର ହୃଦତମଃ,
ପାଉ ପ୍ରେମାସନ ମାନସ-ସୁମନେ,
ଘେନ ଯା' ଭକତି ସଞ୍ଚିଛି। ୪।



କୀର୍ତ୍ତନ – ଏକତାଳୀ
ଆସ ମୋ ଦେବତା,
ମୋ ଚିରସବିତା,
ଉଦ ମୋ ହୃଦୟେ ଆଜି;
ହର ମାନସ-ମହୀର କଲୁଷ-ତିମିର,
ଫୁଟୁ ପ୍ରେମଫୁଲରାଜି।
ନୀଚ କ୍ଷୁଦ୍ର ଯାହା ଦେଖ ମୋ ଜୀବନେ
ହେଉ ଉଚ୍ଚ ସ୍ୱଚ୍ଛ କର-ମାର୍ଜନେ,
ଯାଉ ଦୂରେ ଯାଉ ଦୁରିତ ଯନ୍ତ୍ରଣା,
ଆସୁ ପ୍ରାଣେ ଆସୁ ଆନନ୍ଦ ପ୍ରେରଣା,
ଉଠୁ ମାନସ- ମନ୍ଦିରେ ଧୀରେ
ମଧୁର ବାଜଣା ବାଜି।
ତବ ଆନନ୍ଦ ମଞ୍ଜୁଳ ଜାଗେ,
ମୋର ପୁଲକ-ପ୍ରଫୁଲ୍ଲ ଆଖିଆଗେ।

ଫୁଲ୍ଲ ପ୍ରସୂନ ଶୋଭାରେ,
ପୂର୍ଣ୍ଣଚନ୍ଦ୍ର ବିଭାରେ,
ତବ ପୁଣ୍ୟ ପରଶ ଲାଗେ;
ନୃତ୍ୟ କରେ ମୋ ସର୍ବ ହୃଦୟ
ଦୀପ୍ତ ଅନୁରାଗେ ।
ପ୍ରାଣେ ତବ ହେ ପରମ ଶାନ୍ତି,
ଅଙ୍ଗେ ତବ ହେ ପୁଲକ କାନ୍ତି,
ବିଶ୍ୱ-ଭୁବନ ହର୍ଷ ଉଚ୍ଛ୍ୱଳେ
ନିତ୍ୟ ନୂତନ ରାଗେ ।



ପାରି ଦେ ମା ଧରଣୀରେ ତୋ ଶ୍ୟାମ ଅଞ୍ଚଳ,
ଓହ୍ଲାଇ ଆସ ମା ରବି-କିରଣେ ଚଞ୍ଚଳ !
ତୋ ନୂପୁର-ଶିଞ୍ଜିନୀରେ
ଉଠୁ ବାଜି ଅବନୀରେ
ନବ ସଞ୍ଜୀବନୀ ମନ୍ତ୍ରେ
ଶତ ପ୍ରାଣ-ବୀଣା-ବେଣୁ;
ଶତ ହୃଦ-ସଦ୍ମ ଉଲ୍ଲସିଉଠୁ
ଲଭି ତୋ ଚରଣ-ରେଣୁ ।
ମରଣ ହରଣ ଅମଳ ହସେ ତୋ
ଜାଗୁ ଜୀବନେ ହର୍ଷ ଉଜ୍ଜ୍ୱଳ ।



ଇମନ୍ କଲ୍ୟାଣ – ଏକତାଳା
ଆଜି ହେ ଚରଣେ କରୁଣାମୟ !
ଅରପିଛି ସର୍ବ ମାନ,
ତପ୍ତ ଅଶ୍ରୁସିକ୍ତ ବଦନ ଲୁପ୍ତ ଅଭିମାନ ।
କ୍ଷୁଦ୍ର ହୃଦୟେ, କ୍ଷୁଦ୍ର ପ୍ରେମ,
କ୍ଷୁଦ୍ର ମୋର ଭକ୍ତି,
ଅର୍ପେ ପୟରେ, ଅର୍ପେ ଆଦରେ,
ଦେଇ ସର୍ବ ଶକ୍ତି ।
ଧ୍ରୁ – ଗର୍ବ ଖର୍ବ କର ହେ ମୋର,
ଦର୍ପ ଦଳ ହେ ପାଦେ,
ଲୋଭ, ମୋହ, କ୍ରୋଧ, କାମନା,
ଜଡ଼ତା, ଅବସାଦେ ।
ଘୁଞ୍ଚୁ ଚିରସଞ୍ଚିତ ଦୈନ୍ୟ ପାପ ଅଭିଶାପ,
ଶାନ୍ତିସୁଧା ଶିଶିର ସିଞ୍ଚି ମୁଞ୍ଚ ଶୋକ ତାପ ।

ପୂର୍ଣ୍ଣ ପ୍ରେମେ, ପୂର୍ଣ୍ଣ ଆନନ୍ଦେ,
ଆସ ହେ ପ୍ରାଣେ ମୋର,
ଆସ ହେ ପ୍ରିୟ ! ଆସ ହେ ଦେବ !
କୋଟି ଭୁବନେଶ୍ୱର !
ଧ୍ରୁ – ସର୍ବ ହୃଦୟେ ହର୍ଷେ ଶର୍ମେ
ଅର୍ଚ୍ଚିବି ପାଦ ବେନି,
ନେତ୍ର-ନୀର-ସିକ୍ତ ଶୁଭ୍ର
ପ୍ରୀତି-ପ୍ରସୂନ ଘେନି ।



ହେ ନବଘନକାନ୍ତି ସୁନ୍ଦର,
ହେ ନନ୍ଦ-ନନ୍ଦନ ସୁମନ-ସୁହାର !
ହେ ଅନନ୍ତ ବସନ୍ତ, ଶରତ-ଶୋଭା,
ଚାନ୍ଦିନୀ ଚନ୍ଦନ, ତପନ ପ୍ରଭା,
କୋଟି-କାଞ୍ଚନ ତାରା-ହାର ଭାସ୍ୱର !
ହେ ଚିର-ଚିନ୍ମୟ ଦେବ,
ପରମ ପ୍ରେମମୟ ଶୁଭ,
ତବ ପୁଣ୍ୟ ଅମୃତମାଧୁରୀ,
ଜୀବନେ ଉଠୁ ଲହରୀ,
ହେ ସୁଧାନନ୍ଦ ସାଗର !



ଭୈରବୀ – ଏକତାଳା
ଆଜି କି ମୃଦୁଳେ ମଳୟ ଖେଳୁଛି
ଦୋଳାଇ ପ୍ରସୂନରାଜି,
ହୃଦକୁଞ୍ଜବନେ କା' ମଞ୍ଜୁ ମୁରଲୀ
ଆକୁଳେ ଉଠଇ ବାଜି ?
ସାରା ମରମର ବେଦନା ମଧୁର
ନିତି ଲୁହଝରା ବିରହବିଧୁର,
ଠୁଳେ ଗଲା ସରି କିଏ ଅପସରି,
ନେଲା ସତେ ଛାୟାବାଜି !
ନ ଆସେ ପରତେ ପାହିଲା କି ସତେ,
ମୋ ଦୁଃଖଯାମିନୀ ଫୁଟିଲା ଉଷତେ,
ମାନସ-ସାରସ ପ୍ରେମେ ହସ ହସ
ରବି କରେ ମୁଖ ମାଜି ।



ମନୋକମଳ କମନୀୟ କାନନେ,
ବସିବେ ସେ ମହନୀୟ ମନୋଆସନେ ! ଧ୍ରୁ
ନବୀନ ନିର୍ମ୍ମଳ ବସନ୍ତ ପ୍ରାତେ,
ମଲ୍ଲୀବାସିତ ମଳୟ ବାତେ,
ଗଗନ-ଅଙ୍ଗନେ ହସିବ ତପନ
ରମ୍ୟ ରକତ କାଞ୍ଚନେ ।
ନିବେଦିବି ମୋର ପରାଣଡଳା
ଭକତି ପ୍ରୀତି ବେଦନାବୋଳା,
ଅଶ୍ରୁ ଆକାରେ ମୁକ୍ତା ମାଣିକ
ଝରିବ ପୟର ଚୁମ୍ବନେ ।
ବାଜିବ ବିଶ୍ୱ ବଂଶୀ ସ୍ୱରେ,
ମରମେ ମରମେ ଗୀତ ଲହରେ,
ଝରିବ ଆକାଶୁଁ ସ୍ୱରଗ ସୁଧା,
ନିଶାନ୍ତ-ନୀହାର ସିଞ୍ଚନେ ।



ମିଶ୍ର ଝିଞ୍ଝିଟ୍ – କାଓ୍ୱାଲି
ଆଜି ରାଜେ ନବ ସାଜେ, ସୁନ୍ଦର ସୁଧା-ଆନନ୍ଦେ,
ଉଜ୍ଜ୍ୱଳ ଆଜି ସୂର୍ଯ୍ୟ ଚନ୍ଦ୍ର ତାରା,
ନିର୍ମ୍ମଳ ଆଜି ପୁଲକିତ ଧରା,
ଚଞ୍ଚଳ ଆଜି ନଦୀ ବନରାଜି
ଫୁଲ୍ଲ କୁସୁମ ସଉରଭେ ସାଜି,
ବନ୍ଦେ କାହାର ପଦାରବିନ୍ଦେ ସୁଧା-ଆନନ୍ଦେ । ୧ ।
ଡୋଳେ କୋକିଳ ପଞ୍ଚମେ ତାନ,
ଦୋଳେ ସଧୀରେ ଲତା ବିତାନ,
ଗୁଞ୍ଜରେ ଅଳି ଫୁଲେ ଫୁଲେ ଢଳି,
ସୁଧାକର ଧାରା ଢାଳେ କରମାଳି,
ସଞ୍ଚରେ ସମୀର ମନ୍ଦେ ମନ୍ଦେ, ସୁଧା-ଆନନ୍ଦେ । ୨ ।



କି ଦେଖେ ! ଏ ବିଶ୍ୱ କାହାର ରଚନା,
ପରମ ସୁନ୍ଦର କିଏ ସେ ?
ଫୁଲେ ଫୁଲେ ଝରିପଡ଼ଇ ମାଧୁରୀ
କା ପ୍ରେମ ମୋହନ ବିଳାସେ ? ଧ୍ରୁ ।
ତରୁତୃଣଲତା ପ୍ରେମବ୍ୟାକୁଳତା,
ଉଚ୍ଛଳିତ ନଦୀ ପ୍ରୀତି ତରଳତା,
ଶିଶିରେ ଝରେ କି ସ୍ନେହ ଅଶ୍ରୁରାଜି,
ହୃଦତାପ ସୂଚେ ମଳୟ ନିଃଶ୍ୱାସ ।

ଶଶୀ ସ୍ନିଗ୍ଧ ହାସେ ହସେ କି ଆନନ୍ଦ,
ଝରଣା ପ୍ରଣୟ ପୁଲକିତ ଛନ୍ଦ,
ମଧୁ ମକରନ୍ଦ ପ୍ରେମପଦ୍ମ ଗନ୍ଧ
ଉଜ୍ଜ୍ୱଳେ ହରଷ ବିଜୁଳି ବିକାଶେ ।



ସଖା ! ତୋହରି ମାନସବୀଣା
କହ କେଉଁକ୍ଷଣେ ବାଜିଲା ପରାଣେ,
ନିମିଷେ ହୋଇଲି କିଣା । ଧ୍ରୁ ।
ନିମିଷେ ହୋଇଲି ବଶ ତୋହରି,
ଦିଶେ ଦିଶେ ଦିଶେ ରୂପମାଧୁରୀ ;
ତାରକା ତପନେ, ଗିରି-ଅପଘନେ
ଶଶୀ ସୁମନେଶ ଶୋଭାରେ,
ପଲ୍ଲବପାଟଳ ପ୍ରଭାରେ,
ସରିତ୍‌ବକ୍ଷେ ଦିଗନ୍ତକକ୍ଷେ, ଧରଣୀ ଶ୍ୟାମଳ ବିଭାରେ,
ଠାବେ ଠାବେ ଦେଖେଁ ମୂରତି,
ପରାଣେ ଉଛୁଳେ ପୀରତି,
ଦେବତା ମୋର ସର୍ବସୁଖାକର
ମନୋଜୀବନ କିଣା ।



ତୋ ବିନା ମୋ ମନ କାହିଁରେ ତୋଷିବ,
ନୀରଦ ବିନା କି ନୀରେ ଚାତକ ରସିବ ?
ଶଶୀ ବିନା ହସିବ କି କୁମୁଦ କି ନୀରେ,
ରବି ବିନା ରାଜୀବ କି ବିକଶେ କାସାରେ ?
ବିଭାବରୀ ବିନା ତାରା ନଭେ କି ଫୁଟିବ,
(ତୋ ବିନା ମୋ ମନ କି ଉଲ୍ଲସି ଉଠିବ ?)
ନ ବହିଲେ ମୃଦୁଳେ ମଳୟ ମାରୁତ
କୋକିଳ ଗାଇବ କାହୁଁ ଲଳିତ ସଙ୍ଗୀତ ?
ଶୀତେ ପାଦପ ବପୁ କି ପଲ୍ଲବେ ଶୋଭିବ,
(ତୋ ବିନା ମୋ ମନ କି ଉଲ୍ଲସି ଉଠିବ ?)
ପିପାସା ଶମିବ କି ମରୀଚିକା ନୀରେ,
ତମସ ବିନାଶ କାହିଁ ଖଦ୍ୟୋତ ଜ୍ୟୋତିରେ,
ପ୍ରାଣବନ୍ଧୁ ବିନା ପ୍ରାଣ ଆଶା କି ପୂରିବ ?



ଶାନ୍ତ ସୁନ୍ଦର ଛନ୍ଦେ
ନନ୍ଦେ, ନନ୍ଦେ, ନନ୍ଦେ,
ନିଖିଳ ବିଶ୍ୱ ନିବିଡ଼ ଆନନ୍ଦେ
ଚରଣ ବନ୍ଦେ ବନ୍ଦେ । ଧ୍ରୁ ।

ଶତ ଚିତ୍ତ ତରଙ୍ଗିତ ସଙ୍ଗୀତ,
ଶତ ଶୁଭ୍ର ସୁମନ ସୁବାସିତ,
ଶତ ସରିତ ନୀର ଅମୃତ
ବରଷେ ଶ୍ରୀପଦ ଅରବିନ୍ଦେ । ୧ ।
କୋଟି କନକତାରାମାଳି,
କାନ୍ତି କଳାକର ଭାସ୍କର ଥାଳୀ,
ପୂଜା ଅଞ୍ଜଳି ପୟରେ ଢାଳି
ସ୍ତବ୍ଧ ହୃଦ ନିଷ୍ପନ୍ଦେ । ୨ ।
କାନନ ଗହନ ଗିରିଶ୍ରେଣୀ
ନୀଳ ନୀରଧି ତରଙ୍ଗବେଣୀ
ନୀଳ ନୀରଦ ନୀର ସମ୍ପଦ-
ମୁଗ୍ଧ ପରମ ଆନନ୍ଦେ । ୩ ।



ଆଲେୟା – ଏକତାଲା

ଶରତ ଚାନ୍ଦିନୀ ଗଗନେ ହସୁଛି
ହରଷେ ମଗନ ମନ,
ପ୍ରେମକୁସୁମ କୁଞ୍ଜେ ମୋହନ
ଫୁଟିଛି ପୁଣ୍ୟ ସୁମନ ।
ଗାଏ କୋମଳ ଗୀତ ବିହଙ୍ଗ,
ଦୋଳେ ମୃଦୁଳେ କୁମୁଦ ଅଙ୍ଗ,
ପ୍ରୀତି-ସୁଗନ୍ଧେ ନନ୍ଦିତ
ଗଗନ ଗଗନ, ପବନ ।
ବାଏ କେ ରମ୍ୟ ଲଳିତ ବେଣୁ,
ପୁଲକେ ସ୍ତବ୍ଧ ଧରଣୀ ରେଣୁ,
ଅଣୁ ପରମାଣୁ ନିଷ୍ପନ୍ଦ,
ହଜିଛି ସର୍ବ ଚେତନ ।



ତବ ପୂର୍ଣ୍ଣ ମଙ୍ଗଳ ଅଙ୍ଗୁଳି ଚାଳନା
ତବ କରୁଣାକର ବିଧାନ,
ତବ ମହାନ ମଧୁର ରଚନା
ନିତ୍ୟ ବିଶ୍ୱେ ପ୍ରମାଣ ।
ଆକାଶେ ଶଶୀ, ସୂର୍ଯ୍ୟ, ତାରା,
ତବ ବିଶାଳ ଆନନ୍ଦଧାରା,
ତବ ଦୟାସାଗର ଉଲ୍ଲାସେ
ପ୍ରେମ ସରିତେ ବିକାଶେ,
ଶାନ୍ତି ହସେ ସୁମନେ ପ୍ରୀତିବାସ ବିତରେ ଚନ୍ଦନେ,
ମୁକ୍ତି ଗାଏ ପବନେ,
ଭକ୍ତି ପିକ-ପଞ୍ଚମେ,
ମହା ମହିମାରେ ଶୋଭେ ଅନନ୍ତ ବିମାନ ।



ହୃଦ-ହିରଣ୍ମୟ-ଆସନେ ବିରାଜ ବ୍ରହ୍ମ ନିଷ୍କଳମ୍,
ନୀଳ ଗଗନେ ଆଲୋକ ମେଳା,
ନୀଳ ନୀରଦେ ଚପଳା ଖେଳା,
ଊର୍ମି-ଉଚ୍ଛଳିତ ଅର୍ଣ୍ଣବ-ବେଳା,
ତହିଁ ରାଜେ ରୂପ ଚିର ସୁନ୍ଦରମ୍ । ୧ ।
ତାରାମାନେ ତବ ଜୀବନ-ଜ୍ୟୋତି,
ସୂର୍ଯ୍ୟ ଶଶାଙ୍କେ ଆନନ୍ଦ-ଦ୍ୟୋତି,
ଶ୍ୟାମ ଦୂର୍ବାଦଳେ ଶିଶିର-ମୋତି,
ତହିଁ ଭାତେ ପ୍ରେମ ଶାନ୍ତମନନ୍ତମ୍ । ୨ ।
ମନୋମନ୍ଦିରେ ରମ୍ୟ ମୂରତି,
ଚିତ୍ତ-ପୁଲକିତ ମୋହନ ପ୍ରୀତି,
ବିଶ୍ୱ-ବିନୋଦ ବୀଣାର ଗୀତି
ନିତି ବାଜେ ସତ୍ୟମ୍ ଶିବମ୍ ଅଦ୍ୱୈତମ୍ । ୩ ।
ବ୍ୟଥିତ ଚିତ୍ତ ବେଦନାଭାରେ
ଅବସାଦର ଘନ ଅନ୍ଧାରେ
ବହ୍ନି ବିପୁଳ-ଜ୍ୱାଳାମାଳାରେ
ଅଙ୍କିତ ଶୁଦ୍ଧମ୍ ଅପାପବିଦ୍ଧମ୍ । ୪ ।



ଆସ ମା ଜନନୀ, ମୋ'ଦୁଃଖରଜନୀ
ଜଲ୍ଦ ଅବସାନ ଅଚିରେ
ଶ୍ରୀମୁଖ କରୁଣା-କନକ-ରବି କିରଣେ ରଚିଧେ ।
ଅନ୍ଧାର ଅବସାଦେ ଏ ଚିତ୍ତ
ଅବଶ ଶରୀର, ପୀଡ଼ିତ, ବ୍ୟଥିତ,
ଆସ ବରାଭୟଦାୟିନୀ,
ଶାନ୍ତି-ଶର୍ମ୍ମ-ବାହିନୀ,
କାନ୍ଦେ କାତରେ ସନ୍ତାନ ତବ
ଶିର ଅବନତ ମହୀରେ ।



(୧)
ଆସ ଦୁଆରେ ଆସ ଦୁଆରେ
ଆସ ଚଞ୍ଚଳେ ମା ଗୋ,
ଘେନ ଆଦରେ ଘେନ ଆଦରେ
ରିକ୍ତ ଅଞ୍ଚଳେ ମା ଗୋ।
ଆସ ଚମ୍ପାଚହଟ ବରଣେ,
ରଙ୍ଗ କମଳ ଚରଣେ,
ତବ ସୁନ୍ଦର ସୂର୍ଯ୍ୟ କନକ କିରଣେ,
ଉଜ୍ଜଳୁ ନୟନ ଅନଳେ।
ଭାଷ ସାଦରେ, ଭାଷ ସାଦରେ
ଅମୃତଭାଷା କର୍ଣ୍ଣରେ ମୋର
ମୋହନ ମଧୁର କୋମଳେ।
(୨)
ତବ ଶିରୀସମ୍ପଦେ ଆନନ୍ଦମୟୀ ଗୋ,
ନବ ବେଶେ ନବ ହସେ ଭୁବନ ରସଇ,
ଜାଗେ ଜୀବନ ନବ ସ୍ପନ୍ଦନ,
ନବ ଚେତନା ହୃଦୟେ ମୋହର,
ଖେଳେ ନବ ଜ୍ୟୋତି ଆଶା କମଳେ।
ପ୍ରାଣଫୁଲ ମୋର ଉଠଇ ଫୁଟି,
ପାଦତଳେ ତନୁ ପଡ଼ଇ ଲୋଟି,
ଘେନ କୋଳେ ଘେନ କୋଳେ,
ଡ଼ାକଇ ଆକୁଳେ ମା ଗୋ।



ଆଉ ନ ଧରେଟିଫୁଲ ମନ-ମାଳତୀ-ଲତିକା,
ଆଉ ନ ଗାଏ କୋକିଳ, ମୂକ ସାରିକା। ଧ୍ରୁ।
କାହିଁ ସେ ଚୋରାଧୀର ଦକ୍ଷିଣା ପବନ,
ସଞ୍ଚୋ ଫୁଟନ୍ତା ମଲ୍ଲୀ ମୋହନ,
ବୁଡ଼ିଛି ରବି, କୁସୁମଛବି
ପଡ଼ିଛି ଝଡ଼ି ଝଡ଼ିକା।
ବସେ ଦୀନ ଦୁଆରେ,
ଅନ୍ଧ-ନୟନ-ଅନ୍ଧାରେ,
କେହି ନ ଚାହାନ୍ତି ଫେରି, କେହି ନ ଯାଏ ପଚାରି,
ବସେ ମୁଖ ପୋତି ମଉନେ
ଲାଜେ ମରି ମରିକା।



ଆଗୋ କି ଗୀତ ଗାଇଲୁ ପିକ
ଚୂତକୁଞ୍ଜେ କଳରୋଳେ,
ଉଚ୍ଛୁଳିଲା ମନେ ଅପାର ଆନନ୍ଦ,
ତହିଁ ବଳି ଦୁଃଖଶୋକ,
ଦୁଃଖ ବାତାହତ ଦୋଳେ।
(ଆଗୋ) ନବ ବସନ୍ତ ରସିକ!
ଭାସେ ମୁଁ ନୟନଜଳେ।
କା' ମନୋବସନ୍ତ ସୁରଭିଧାମେ
ଗାଥାନ୍ତି ମୁଁ ଗାନ ପଞ୍ଚମତାନେ,
ତା' ପ୍ରେମ-କୋମଳ-ବକୁଳ-ମୁକୁଳେ
ନବୀନ ରସାଳ କୁଞ୍ଜେ,
ବାନ୍ଧିଥାନ୍ତା ଆଗୋ ଛନ୍ଦିଥାନ୍ତା ମୋତେ
ତା ଚିତ୍ତ-ସଙ୍ଗୀତ ପୁଞ୍ଜେ;
ନିତି ନବ ନବ ଲୀଳା ଉଚ୍ଛୁଳି
ପଞ୍ଚପ୍ରାଣ ଘେନି ପ୍ରୀତିବାତୁଳୀ
ଚୁମ୍ବି ତା କମଳଚରଣର ଧୂଳି
ତାହାରି କୋମଳ କୋଳେ
ବାନ୍ଧି ମୁଁ ପୁତୁଳି ଥୁଅନ୍ତି ଆକୁଳେ,
କାନ୍ଦଇ ତେଣୁ ନିରୋଳେ।



ବସନ୍ତବାହାର – ଏକତାଳା
ସତେ କି ବସନ୍ତ-ସମୀର ବହୁଛି, ସତେ କି ଫୁଟିଛି ଫୁଲ,
ସତେ କି ଚୂତ କୁସୁମକୁଞ୍ଜେ ଗୁଞ୍ଜେ ମିଳତ୍ରତ ମଧୁକୁଳ!
ଆକାଶରେ ଆଜି ନବ ଜ୍ୟୋତିଧାରା,
ନବୀନ ତପନ, ନବ ଚନ୍ଦ୍ରତାରା,
ବନେ ବନେ ଆଜି ନବ ଫୁଲରାଜି,
ସୁଧାସୁଖାମୋଦେ ଆକୁଳ। ୧।
ନୀଳ ଗଗନ ତଳେ
ନୀଳ ସରସୀ-ଜଳେ
ଆନନ୍ଦର ଶତ ସ୍ରୋତ ଯାଏ ବହି,
ସବୁ ସୁଖଭରା ଦିଶଇ କି ମହୀ,
ହୃଦବୀଣାରେ ନବ ସ୍ୱର ଦେଇ
ଗାଇ କେ କରେ ଉତ୍‌ଫୁଲ୍ଲ? ୩।



ପ୍ରେମ-ହେମ ଘେନି ବେନି ପ୍ରିୟ ପଦ୍ମପୟରେ
ଦେବି ମୁଁ ଦିବସ ନିଶି ଆଶାନନ୍ଦ ହୃଦରେ ।
ସତ୍ୟ, ଶାନ୍ତି, କ୍ଷେମ, କ୍ଷମା,
ଶୁଭ ସ୍ୱରଗ-ସୁଷମା,
ଜାଗିବ ଜୀବନେ ପ୍ରୀତି ଜଗତଜିଣା,
ବାଜିବ ବ୍ୟାକୁଳେ ବିଶ୍ୱ-ବିନ୍ଧାଣି ବୀଣା;
ଉଠିବ ନାଚି ଚିତ୍ତ-ଚେତନା,
ବ୍ୟର୍ଥେ ବୁଡ଼ିବ ହୃଦବେଦନା,
ନବ ନିର୍ମଳପୁଣ୍ୟ ପ୍ରେମଛନ୍ଦେ
ବନ୍ଦିବି ଭୁବନେଶ୍ୱରେ ।
କୋଟିକନକ କିରଣେ ରବି
ଫୁଟାଇବ ଫୁଲ ପ୍ରଫୁଲ୍ଲ ଛବି,
ଅନନ୍ତ-ବସନ୍ତ-ଲଳିତ-କାନ୍ତି,
ହସିବ ହୃଦୟଦେଶରେ,
ମଧୁର ମୋହନ ବେଶରେ,
ଶତ ଶରତ-ଶଶାଙ୍କ ଶୋଭା
ଚୁମ୍ବିବ ଶେଫାଳୀ କୁଞ୍ଜରେ ।



କାହିଁକି ରେ ଝୁରୁ ମନ ସେହି ସୁନ୍ଦର ଲାଗି ?
କୋଟିକନକ ତାରା ରୂପେ ଆଖି ରହିଛି ଜାଗି । ଧ୍ରୁ ।
ପଥେ ବସାଇ ଯେ ଯାଉଛି,
ଗୋପନେ ପ୍ରେମେ ସେ ଚାହିଁଛି,
ଦିବସ ନିଶି ତୋ ଅଶ୍ରୁ ଝରୁଛି
ସେହି ସୁନ୍ଦର ଲାଗି;
କାନ୍ତି କମଳ ସୌରଭରୂପେ ପ୍ରେମ ରହିଛି ଜାଗି । ୧ ।
ଧୂଳିଧୂସର ତନୁଗୋଟି,
ପାଦତଳେ ଯିବୁଟି ଲୋଟି,
ଚରଣସ୍ପର୍ଶେ ନିବିଡ଼ ହର୍ଷେ ହେବୁ ସରବତ୍ୟାଗୀ,
ମଙ୍ଗଳ ଶାନ୍ତି ହରିବ ଶାନ୍ତି ଚିର ଆନନ୍ଦଭାଗୀ । ୨ ।
ପରମ ପ୍ରେମେ ଯିବୁ ମିଶି,
ଗାଇ ଗୀତି ଦିବସନିଶି
ଅନନ୍ତ ମିଳନେ ପ୍ରେମ ନନ୍ଦନେ ଭକ୍ତି ରହିବ ଜାଗି,
ମନେନବୀଣାରେ ମଧୁ ଝଙ୍କାରେ ସ୍ୱର ରହିବ ଜାଗି । ୩ ।



ମୋହର ବୋଲି ମୁଁ କିଛି ନ ଜାଣଇ,
ମୋହର କେ ଅଛି କାହିଁ ଗୋ ?
କେଉଁ ଦୂରାକାଶ କ୍ଷୀଣ ତାରକାଟି
ଅନ୍ଧାରେ ତ ଦେଖିନାହିଁ ଗୋ ।
ଅବା ସେହି ମାନ ବଙ୍କିମ ଚନ୍ଦ୍ରମା,
ତାମସ ତଳେ ତା ବଢ଼ଇ ସୁଷମା,
ଦେଖିବି ଦେଖିବି ଖୋଜି ନ ପାଉଛି
ସୁଦୂର ଅମ୍ବର ଚାହିଁ ଗୋ । ୧ ।
ପ୍ରଭୁ ବୋଲି ମୁହିଁ ଡାକି ନ ପାରିଲି,
ସେ କିନ୍ତୁ ମୋହରି ପ୍ରଭୁ ହେ,
ସଖା ବୋଲି ଆହା କହି ନ ପାରିଲି,
ସେ କିନ୍ତୁ ମୋହରି ସବୁ ହେ !
କେତେ ଧନ ତା'ର ଅଛି ଗନ୍ତାଘରେ,
ସେ ଏକମାଣିକ ମୋ କୋଠଭଣ୍ଡାରେ,
ସେ ରତନଦୀପ ମୋ' ହୃଦମନ୍ଦିରେ,
ସେ ମୋହରି ଚିତ୍ତସାଇଁ ହେ । ୨ ।



ଅକାରଣେ ବସେ ଅନାଇଁ ଅନାଇଁ
କାହାର ଆସିବା ଆଶାରେ
ଯୁଗଯୁଗାନ୍ତର ଗଲାଣି ଆକୁଳେ
ଜଗିଛି ମୁଁ ଦିବାନିଶାରେ ।
ହେଲିଣି ମୁଁ ଥକା, ବଢ଼େ ମୋର ଦକା,
ଆସିବ ନାହିଁ କି ମୋ ହୃଦୟସଖା ?
କଣ୍ଠ କରି ବସି ତଣ୍ଟି ଶୁଖିଲାଣି,
ବିଷମବାସନା ତୃଷାରେ ।
ସତ୍ୟ, ଶିବ, ନିତ୍ୟ, ସୁନ୍ଦର, ଉଦାର,
ତାର କି ଏସନ ପ୍ରେମ ବ୍ୟବହାର ?
ପରାଣେ ଜାଳି ସେ ପ୍ରଣୟ ଅନଳ
ନିଭାଇବ ଦୁଃଖ-ଆସାରେ ?
ଛି ଛି, ଏତ ମୋର ମିଛ ଅବିଶ୍ୱାସ,
ପ୍ରଭୁ କି ପରାଣ କରିବେ ନିରାଶ ?
ତା ଦଉ ଜୀବନେ ନାହିଁ ତା କରୁଣା,
ବଞ୍ଚିବ ତେବେ କେ ସଂସାରେ ?



ଜନନୀ ମୋହର କାହିଁ ?
ଦୁର୍ବଳ ପୀଡ଼ିତ ସନ୍ତାନର ଡ଼ାକ
କାନେ କି ପଶିବ ନାହିଁ ? ଧ୍ରୁ ।
ମୋ ନାମ ବହି ତୁ ହେବୁ କି କଠୋର,
କରୁଣା ଊଣା କି ହେବ ମୋ ଉପର ?
ପାପକଳଙ୍କରେ କଳଙ୍କିତ ବୋଲି
ଯିବ କି ଜୀବନ ମୋହର,
ବଞ୍ଚିବି କହ ମୁଁ କା ପଦ୍ମ-ପ୍ରସୂନ-
ପ୍ରସନ୍ନବଦନ ଚାହିଁ ? ୧ ।
ସାରା ଶରୀରଟି ଧୂଳିରେ ମଳିନ,
ପୋଛିବ କି ହେଲେ ଶ୍ରୀକର-ନଳିନ ?
ଘୃଣା କରିବୁ କି ଛୁଇଁବାକୁ ମାତଃ,
ଚିତେ ଦୋ ଦହିବ ଦହନ ।
ତୋ କୋଳେ ମା ଆଗୋ ନାହିଁ ଯଦି ସ୍ଥାନ
ଦେବୁ ତୋ ଚରଣ ଛାଇ । ୨ ।



କାହୁଁ ପାଇବି କନକଦୀପ, ଜୀବନଦୀପ ଜାଳିଛି,
କାହୁଁ ମାଗବି ଅରଘ ଚନ୍ଦନ, ଅଶ୍ରୁ ଶୋଣିତ ଢାଳିଛି ।
ନଜାଣେ ତନ୍ତ୍ର ମନ୍ତ୍ର କଥା,
ଗାଇଯିବି ମୋର ଜୀବନ ବ୍ୟଥା,
ସାରା ଦିନରାତି ଯେ ହୃଦ ଆରତି,
ଯେତେ ମୁଁ ଗୋପନେ ଜାଳିଛି ।
କେତେ ପଦଦଳା ସହିଛି ନୀରବେ,
କେତେ ଚାହିଁଛନ୍ତି ଅବଜ୍ଞା ଗରବେ,
କହିବି ତା'ଆଗେ, ଶୁଣିବ ସରାଗେ,
ମୋ' କାନ୍ଦଣା ମନେ ଭାଳିଛି ।



ବହୁ ବରଷ ଭିକାରୀ ବେଶ
ବସିଛି ଦୁଆର ପାଶେ,
ଆକୁଳେ ବ୍ୟାକୁଳେ ଗଣେ ଦିନରାତି
ତାହାରି ମିଳନ ଆଶେ ।
ହେବ ବା ନ ହେବ ଦେଖା ଏ ଜନମେ,
କାନ୍ଦି ଚାଲିଯିବି ମରମେ ମରମେ,
ନ ଜାଣେ ମୁଁ କିଛି, ମିଛେ ପ୍ରେମ ସଞ୍ଚି
ଫୁଟାଏ ପାଷାଣ ନିଃଶ୍ୱାସେ ।

ନାନା ମୁନିଙ୍କର ନାନା ମତ କଥା,
ନାନା ପଣ୍ଡିତଙ୍କ ନବ ନବ ପନ୍ଥା,
ମୁଁ ଯିବି କାହିଁରେ ସେ ରାଜା ନାହିଁ ରେ,
ବୁଢ଼େଁ ମୁଁ ଭୀଷଣ ନିରାଶେ ।
ଚାହିଁନାବେଳକୁ ଅନ୍ତର ଭିତରେ,
ଅସ୍ପଷ୍ଟ ଆକାର କା'ରୂପ ସୁନ୍ଦର,
କ୍ଷଣେ ପ୍ରତିପଳେ ନେତ୍ର ବେନି ଝଳେ,
ଚମକେ ମୋ ଚିତ୍ତ ଉଲ୍ଲାସେ
ସେ କି ଏକା ମୋର ପରାଣର ଧନ,
ହରିବେ କି ମୋର ବ୍ୟଥିତ ରୋଦନ,
କହିବି କିପରି, ରହିଚି ମୁଁ ମରି,
ବଞ୍ଚିଛି କେବଳ ବିଶ୍ୱାସେ ।



କିପାଁ କାନ୍ଦେ ଅବିଶ୍ୱାସେ
ଦିନ ଯାମିନୀ,
ଲୋତକ-କଳଙ୍କେ ଲେପି
ପରମ ପୁଣ୍ୟ ମେଦିନୀ ?
ସଫଳ ନ ହେଲା ମୋର ବାସନାରାଶି,
ମୋ ତୀବ୍ର କାମନା ମୋତେ ପକାଏ ଗ୍ରାସି,
ପାଞ୍ଚେ ଯାହା ମନେ ମନେ
ନ ପାଏ ତା' କ୍ଷଣେ କ୍ଷଣେ,
କହେ କି ନିଷ୍ଠୁର ଏଡ଼େ ବିଶ୍ୱବିନ୍ଧାଣି !
ତିଳେକ ବହିଣ ଜ୍ଞାନ
ସରବେ ମଣେଁ ମୁଁ ସାନ,
ସାରେ ମୋତେ ମୋ' ଗୁମାନ,
ନ ବୁଝେଁ ମୁଁ କ୍ଷୁଦ୍ର ପ୍ରାଣୀ ।



ଅଭିଯୋଗ ବିନା ନାହିଁ କି ଚରଣେ
ଆଉ କିଛି ଆନ କଥା ହେ,
ବିପୁଳ କରୁଣା ଊଣା ନ ହେଉଣୁ
ଉଛୁଳି ପଡ଼ିଲା ବ୍ୟଥା ହେ !
ଖାଲି ନୟନରୁ ବୁହାଇଲି ଧାରା,
କଳଙ୍କେ ଲେପିଲି ନିରମଳ ଧରା;
କାନ୍ଦି ମିଛେ ମିଛେ ସଞ୍ଚିଲି ଯାତନା,
ଭୁଲିଲି ଆନନ୍ଦ ସୁନ୍ଦର ସାଧନା,

ଦୁଃଖ ମୁଁ ରଖିଲି ଗଢ଼ି,
ସୁଖକୁ ଦୂରରୁ ଜୁହାର କରିଣ
ହୃଦାନଳେ ଦହୁଅଛି ।



ଏ ତ ନ ଥିଲା ଆଗରୁ ଜଣା,
କୃପାରେ କଠୋର ହୁଏନାହିଁ କେହି,
ଶରଧାରେ ଦିଏ ଯନ୍ତ୍ରଣା । ଧ୍ରୁ ।
କତି କତି ଆସି କେ ପଳାଏ ଦୂରେ,
କନ୍ଦାଏ ପରାଣ ପ୍ରଣୟବିଧୁରେ,
ବିଷ ପୀୟୂଷରେ ପରଶେ କେ କାହିଁ
ବଢ଼ାଇ ମରଣ ଯାତନା ? ୧ ।
ଯେତେ ପଛେ ପଛେ ଧାଇଁଗଲେ ତା'ର,
ଲଙ୍ଘିଲେ କାନନ ଗିରି ପାରାବାର,
ଯୁଗ ଯୁଗାନ୍ତର ଲୋକଲୋକାନ୍ତର,
କରୁଥିଲେ ଶତ ସାଧନା । ୨ ।
ମିଶି ପ୍ରାଣେ ପ୍ରାଣେ ନ ଦିଏ ସେ ଧରା,
କ୍ଷଣେ ଅତି କତି, କ୍ଷଣେ ଦୂରେ ପରା,
କ୍ଷଣେ ମୃଦୁଭାଷେ ହୃଦୟ ଆଶ୍ୱାସେ,
ପରକ୍ଷଣେ ଦିଏ ବେଦନା । ୩ ।



ଗଜମୁକୁତା ଲଭି କେ
ପକାଏ କାଇଁଚ ଭ୍ରମେ,
ପିତଳ ଆଦରି କେ'ବା
ନ ରସେ ଦିବ୍ୟ କାଞ୍ଚନେ ?
ଲଭି ମୁଁ ମାଣିକ ସାରେ
ଦେବି କି ଫିଙ୍ଗି ବାହାରେ,
କାନ୍ଦିବି ବସି ଦୁଆରେ
ହଜାଇ ମଣି-ରତନେ ?
ବେଳ ଥାଉଁ ଥାଉଁ ସଞ୍ଚି
ଯତନେ ପକାଇ କୁଞ୍ଚି
ରଖିବି ମୋ' ପୁଞ୍ଜିଧନ
ସଞ୍ଚାଳି ଚିର ଜୀବନେ ।



ଶୁଖିଗଲା, ଶୁଖିଯାଉ ମନଫୁଲଟି !
ଅମୃତ-ଉଦ୍ୟାନେ ଦିନେ ସେ ଫୁଟିବଟି ।
ଯାତନା ଦୁଃଖ ଦହନ. ହରିଛି ବାସ ମୋହନ,
ଚିତ୍ତ-ତାପ-ତପନେ ଶୁଖିଛି ଦଳଟି.
ସତେଜ ହେବ ସେ ଦିନେ ସୁଧା ସଲିଳ ସିଞ୍ଚନେ,
ତା ମଞ୍ଜୁ ନିକୁଞ୍ଜବନେ ହସିବ ଫୁଟି,
ବାସେ ଚହଟି ।
ଶୁଖିଗଲା, ଶୁଖିଯାଉ ହୃଦ-ପଦ୍ମଟି.
ପୀୟୂଷ କାସାରେ ଦିନେ ସେ ଫୁଟିବଟି,
ନିବିଡ଼ ଲାଜ-କୁହୁଡ଼ି- ଅନ୍ଧାରେ ମରିଛି ବୁଡ଼ି,
ଅପମାନ-ହିମେ ହେଲା ହତଶିରୀଟି;
ହସିବ ସୁଆଗେ ଦିନେ ତା ରମ୍ୟ ରବି କିରଣେ
ତା ପ୍ରୀତି-ପଙ୍କଜବନେ ଶୋଭିବ ଫୁଟି,
ସୁବାସେ ଲୋଟି ।



ପିଲୁବାରୋଆଁ – ଏକତାଲା
କେବେ ହେବ ମମ ସଫଳ ଜୀବନ
ମଧୁର ମଙ୍ଗଳ ମିଳନେ,
ଭବାର୍ଣ୍ଣବ ତୀରେ ବସିଛି ଉଦାସୀ
(ଚାହିଁ) ସାନ୍ଧ୍ୟ ଧୂସର ଗଗନେ । ଧ୍ରୁ ।
ସେ ପାରିରେ କେବେ ଶୁଭ ନବ ପ୍ରାତ
ହରିବ ଅନ୍ତରବ୍ୟଥା ମୋ ଅନନ୍ତ,
ନବ ଜଗତେ ମୁଁ ନବକର୍ମ୍ମେ ଜାତ
ତେଜିବି ମଳିନ ବସନେ । ୧ ।
ନବ ସ୍ୱରେ ଗୀତ ଗାଇବ ରସନା,
ଆସିବ ଆନନ୍ଦ, ନବ ଉନ୍ମାଦନା,
ବୁଡ଼ିବ ବାସନା, ଛଳନା, ବେଦନା
ସୁଧା ପ୍ରେମସିନ୍ଧୁ ମଗନେ । ୨ ।



ପିଲୁବାରୋଆଁ – ଏକତାଲା
କେଉଁ ଦୂରାନ୍ତର ରାଇଜେ ମୋ ଘର
ମୁଁ ପରା ସୁଦୂର ପିପାସୀ,
ଜୀବନ-ସଞ୍ଜେ ନବୀନ ପ୍ରଭାତ
ହସିବ ସୁରସେ ଉଲ୍ଲାସି । ଧ୍ରୁ ।
ପରାଣେ ବାଜିବ ମଧୁର ବାଜଣା,
ଜୀବ ଅପସରି ଭବ-ଛଳନା,
ତନୁ ତେଜି ନବ ତେଜେ ସଞ୍ଜୀବିତ
ହୃଦ କୋକନଦ ବିକାଶି । ୧ ।

ଏ ପାଗିର କେତେ କ୍ଷୁଦ୍ର ଦିନ !
କିପାଁ କାନ୍ଦି ହେବ ଏ ଦେହ କ୍ଷୀଣ ?
କରିବି କରମ, କରମେ ମୁକତି,
କରମେ ମୋ' ଦୁଃଖ ବିନାଶି । ୨ ।
ଜାଣିଛି ଯେ ମୋର ଜୀବନଜ୍ୟୋତି,
ଦିନୁ ଦିନୁ ତାର ବଢ଼ାଇବ ଦ୍ୟୋତି,
ସରିବ ସଂସାର, ଉଠିବି ଉଚ୍ଚେ ମୁଁ
ଅନନ୍ତେ ଅନନ୍ତ ବିଳାସୀ । ୩ ।

ରାଜେ ଶ୍ରୁତିରେ,
ଭବବାରିଧି ପରପାର ତୀରେ,
ପରମ ପବିତ୍ର ପୁରୀ ପ୍ରେମ ଭାତିରେ !
ଜିଣି ଜ୍ୟୋତି-କୋଟିକନକ ତାରା,
ଜିଣି ନିର୍ମ୍ମଳ ରଜତ ଧାରା,
ଶତ ଅମୃତ ଝରଣା–
ଝରେ ଜୀବନ ମନୋମୋହନ
ଶ୍ରୁତ-ସୁବାସ-କୁସୁମ କାନ୍ତିରେ !
ବାଜେ ଶତ ମୁରଲୀ ମଧୁରେ
ଜିଣି କୋଟି କୋକିଳ କଳଗିରେ,
ଉଚ୍ଛଳେ ଗୀତ ଲଳିତ,
ବହେ ପୁଲକ ନଭୋଭୂଲୋକ
ଭାସେ ମଙ୍ଗଳ ଆନନ୍ଦ ଶାନ୍ତିରେ

କାହିଁ ଗଲେ ହେବ ଯାତନାର ଶେଷ,
କାହିଁ ସେ ଆନନ୍ଦଧାମ,
ଅଶ୍ରୁ, ତୃଷ୍ଣା ଅଶ୍ରୁ ଝରେ ଝର ଝର
ମର୍ମ୍ମ ଦହି ଅବିରାମ !
ନିତି ଭ୍ରମି ଭ୍ରମି ଆଶାଦଗ୍ଧ ପ୍ରାଣେ
ଭୁଲେ ମୁଁ ବିଷାଦେ ପରମ ପ୍ରମାଣେ,
ଅନ୍ଧ ମୋ' ନୟନ, ଜଡ଼ ମୋ' ଜୀବନ,
ନୀତି ତୀବ୍ର ଅଭିମାନ । ୧ ।
କିମ୍ପା ଏ ଯନ୍ତ୍ରଣା, କିମ୍ପା ଏ କାନ୍ଦଣା,
ଜୀବନ କି ମୋର ଅସାର ଖେଳନା ?
ଧୂଳିଗଢ଼ା ପିଣ୍ଡ ହେବ ଖଣ୍ଡ ଖଣ୍ଡ,
ପଞ୍ଚଭୂତେ ଅବସାନ । ୨ ।

ଶିଖାଅ ହେ ମୋତେ ତବ ପୁଣ୍ୟାଦେଶ,
ତବ ପ୍ରେମପଥ କର ହେ ନିର୍ଦ୍ଦେଶ,
କେବେ ପୁଣ୍ୟପଦ ହୃଦ-କୋକନଦେ
ସ୍ଥାପି ଲଭିବି ବିଶ୍ରାମ । ୩ ।

ମିଳିବା ସକଳେ ଆନନ୍ଦ ମନେ
ସେହି ଉଜ୍ଜ୍ୱଳ ଭୁବନେ ।
ସକଳ ଭଗିନୀ, ସକଳ ଭ୍ରାତା
ପ୍ରେମାଲୋକେ ଆମେ କରୁଛୁଁ ଯାତ୍ରା
ନିତ୍ୟ ମଙ୍ଗଳ-ସଦନେ ।
ମାତିବା ଯହିଁ ମଙ୍ଗଳ ଗାନେ,
ନବୀନ ଜୀବନ ମୋହନ ତାନେ
ଅନନ୍ତ ଅମୃତ ଯୌବନେ ।
ଫୁଟିବ ମାନସକୁସୁମ-କଳି
ଆଲୋକେ, ପୁଲକେ, ଝଲକେ ଝଳି
ସେହି ଆନନ୍ଦ-ନନ୍ଦନେ ।

ଆଜି ଆସିଛନ୍ତି ପ୍ରାଣସାଇଁ,
ହୃଦୟେ ମୋହର ଆକୁଳ ପିଆସା
କେହି କେବେ ବୁଝିନାହିଁ । ଧ୍ରୁ ।
କେତେ ଦେଶେ ଦେଶେ ବୁଲି ଖୋଜି,
ପରାଣର ଧନ ଗଲେ କି ହଜି,
କି ସୁଖରେ ମଜ୍ଜି ଦେଲି କି ଗୋ ତେଜି,
ଏବେ ବସି ଭାବୁଥାଇଁ । ୧ ।
କେତେ ନୟନୁଁ ବହିଛି ଧାର,
କେତେ ହୃଦୟେପଡ଼ିଛି ଗାର,
ବଡ଼ ଉଦାସେ ବୁଲେ ସାରାବିଶ୍ୱେ,
ସେ ଧନ ମିଳଇ ନା । ୨ ।
ଏତେ ଦିନେ ଆଜି ପ୍ରସନ୍ନ ବେଶେ
ଆସିଛି କୁଟୀର ଦୁଆରେ ଶେଷେ,
ପାଦ ଧରି ଡ଼ାକେ, ଆସ ଦୟାମୟ,
ବସିଛି ମୁଁ ପଥ ଚାହିଁ । ୩ ।

ପ୍ରଭୁ, ମୋର ବୁଡ଼ିଲା ଭେଳା,
ନ କର ହେଳା ।
ଆରତେ ଡ଼ାକୁଛି ପାଦେ, ନାହିଁ ତ ବେଳା । ଧ୍ରୁ ।
ନିଜ ବୁଦ୍ଧିରେ ଭରସି,
ଦଦରା ବୋଇତେ ବସି,
ନିଜ ଅଦମିକା ଘେନି ଯାଉଛି ସରି;
କୃପା କର କୃପାକାରୀ, ଶୁଣ ଆରତ ଗୁହାରି,
ନ ଶୁଣିଲେ ଗ୍ରାସିବ ଏ ତରଙ୍ଗମେଳା ।
ହେ ଭବସିନ୍ଧୁ କାଣ୍ଡାରି
ଦିଅ ତବ ପାଦତରୀ,
ହେଉ ଏ ଅଧମ ପାରି, ଜୀବନ ଧରି;
ଯଦି ସାଗରେ ବୁଡ଼ିଲି, କିମ୍ବା ଛାମୁରେ ଡ଼ାକିଲି,
ଜାଣେ ଦୟାମୟ ହରି, ତାର ଏ ବେଳା । ୨ ।
ଆରତ ଅନାଥ ନାଥ,
ଭକତବତ୍ସଳ ତାତ,
ଉଦ୍ଧାର ଉଦ୍ଧାର ପ୍ରଭୁ, ବଢ଼ାଇ ହାତ,
ମୁଁ ହୀନ, ଦୋଷ ନ ଧର, ଅଧମେ ରୋଷ ନ କର,
ମୁଁ ପରା ଛାମୁ କିଙ୍କର ମାଟିର ଢେଲା ।



କେଡ଼େ ସୁଧାମୟ ଭକତ-ହୃଦୟ-
ରଞ୍ଜନ ସେ ପ୍ରଭୁ ନାମ,
ଡାକି ପ୍ରେମମୟେ ଆକୁଳ ହୃଦୟେ
ପୂର୍ଣ୍ଣ ମୋର ମନସ୍କାମ ।
ଶୁଣିଲେ ସେ ନାମ ବାଜିଉଠେ ମମ
ହୃଦୟର ତନ୍ତ୍ରୀ ତାନ,
ଭୁଲିଯାଏ ଦୁଃଖ, ଭୁଲିଯାଏ ଶୋକ,
ଲଭେ ଶାନ୍ତି ମନପ୍ରାଣ । ୧ ।
ସଂସାରକାରାରେ ପଡ଼ି ମୋ' ଅନ୍ତରେ
ନିତି ଜଳେ ହୁତାଶନ,
ଶୁଣିଲେ ସେ ନାମ ଦଗଧ ପରାଣ-
ଦାହ ହୁଏ ଉପଶମ । ୨ ।
ପ୍ରେମ ଛଳ ଛଳ ଲୋଚନଯୁଗଳ
ଅଶ୍ରୁ କରେ ବରଷଣ,
ଅଧର ମୋହର ଭୁଲିଯାଏ ଗିର,
ସ୍ତବଧ ହୃଦ-ସ୍ପନ୍ଦନ । ୩ ।

ଶରୀରେ ଶିରାରେ ସଅରେ ଶକତି,
ବିକଶିତ ହୁଏ ଜ୍ଞାନ,
ଦେଖେଁ ସାରା ସୃଷ୍ଟି ମଙ୍ଗଳମୟର
ଜୟ କରୁଛନ୍ତି ଗାନ । ୪ ।



ହେ ମନୋମୋହନ ଚିରବିନୋଦନ
ପ୍ରେମ ଘନଶ୍ୟାମ ହେ,
ମଙ୍ଗଳ ମୁରଲୀ ବାଜୁ ଅବିରଳ ହୃଦଅଭିରାମ ହେ ।
(ରାଙ୍ଗେ ପାଦତଳେ —)
ବିଶ୍ୱ ଶତଦଳ ଅରୁଣ ଉଜ୍ଜ୍ୱଳ –
ହେମରଶ୍ମି ଦାମ ହେ,
ସତ୍ୟ ସନାତନ ଶାନ୍ତି ନିକେତନ ମନ୍ଦ୍ରମୁଗ୍ଧ ନାମ ହେ । ୧ ।
(ବାଜେ ବଂଶୀସ୍ୱରେ—)
ଚିର ଶିବ ଚିର ସୁନ୍ଦର ମଧୁରବୁଦ୍ଧ ଶୁଦ୍ଧ ଜ୍ଞାନ ହେ,
କୋଟି ବିଶ୍ୱ-ବାସୀ ହୃଦ ଅଭିଳାଷ
ପୂର୍ଣ୍ଣ ପ୍ରାଣାରାମ ହେ । ୨ ।
(ସାଜେ ଶୋଭାମୟ)
ମାନସ-ତିମିର ପବିତ୍ର ମିହିର
ଶୁଭ ପ୍ରଭାବାନ ହେ,
ଚିର ପ୍ରିୟତମ ସୁହୃଦ ସୁଜନ କ୍ଷେମ-କ୍ଷମାଧାମ ହେ ।
(ରାଜେ ଭବଭୟ)
ନିଖିଳରଞ୍ଜନ କଲୁଷଭଞ୍ଜନ କରୁଣାନିଧାନ ହେ,
ଶୁଭ୍ର ନିରଞ୍ଜନ ହୃଦୟବନ୍ଦନ
ନନ୍ଦନମହାନ ହେ । ୪ ।



ବାଜ ବାଜ ବିଶ୍ୱବୀଣା ଅମୃତ ଗୀତବାହିନୀ,
ରାଜରାଜ ହୃଦପଦ୍ମେ ବିଦ୍ୟାନନ୍ଦ ଦାୟିନୀ,
ଜନମନମୋହିନୀ
ଜନନୀ, ଜନନୀ । ଧ୍ରୁ ।
ବାଣୀ ବୀଣାପାଣି ଶୁଭସ୍ୟନ୍ଦିନୀ,
ଆସ ଶୁଭମନ୍ତ୍ର ପ୍ରଦାୟିନୀ –
ଜନନୀ, ଜନନୀ । ୧ ।

ଆସ କ୍ଷେମ କ୍ଷମା ଶାନ୍ତି ସୁଷମା,
ସ୍ନେହଶୋଭନା ଶ୍ୱେତବସନା,
ପ୍ରେମପୂତ ଛନ୍ଦେ ବିଶ୍ୱନନ୍ଦେ-
ଜନନୀ ଜନନୀ । ୨ ।
ବିଶ୍ୱସୁଖ-ସାଧିନୀ ଜନନୀ, ଜନନୀ !



ପ୍ରଭୁ ପ୍ରାଣବଲ୍ଲଭ ପ୍ରିୟ ହେ
ଶୁଭ ଆନନ୍ଦମୟ,
(ପ୍ରଭୁ ହେ)
ରସିଛି ଶ୍ରୀପଦେ ନବ ଅନୁରାଗେ
ଢାଳି ଦେହ ଆତ୍ମା ହୃଦୟ ହେ,
ଚିର ମଙ୍ଗଳମୟ,
ପରାଣ-ପଲ୍ଲବେ ପ୍ରେମଫୁଲାସବେ
ମିଶାଇଛି ଅଶ୍ରୁ ଅମୀୟ ହେ ।
ଘେନ କରୁଣାମୟ
ତବ ମନୋହର ପୟରପୁଷ୍କର
ପୂଜେ ଆଜି ପ୍ରେମଆଳୟ ହେ ।



ହେ ସୁନ୍ଦର ମନୋହର
ପରମେଶ୍ୱର !
ହୃଦୟ ମନ୍ଦିରେ ମମ
ପାର ତବ ପ୍ରେମାସନ,
ବିରାଜ ଦିବସନିଶି ହେ ପ୍ରେମାକର । ୧ ।
ତୁମେ ମୋ ପରମପଦ,
ତୁମେ ମୋ' ବିଶ୍ୱସମ୍ପଦ,
ତୁମେ ମୋ' ସାଧନ ଧନ, ମୁକ୍ତି ମୋହର,
ତୁମେ ମୋ' ଶାନ୍ତି ଶକତି,
ହରଷ, ବିଶ୍ୱାସ, ଆଶା ପୂର୍ଣ୍ଣ ସାଗର ।



(ପିଲୁ ପୋସ୍ତା)
ଆସୁ ଦୁଃଖ ଦୈନ୍ୟରାଶି ତୁମରି ନାମ ପ୍ରଚାରେ,
ସହିବ ଆନନ୍ଦେ ତାହା ସେବକ ତବ ସଂସାରେ ।
ଆସୁ ବିପଦ, ଲାଞ୍ଛନା, ଗଞ୍ଜନା, ମର୍ମ୍ମଯାତନା,
କୋଟି କ୍ଲେଶ, ଶ୍ଳେଷ, ଶାସ୍ତି, କାହଣା ନିତି ଅନ୍ଧାରେ ।
ତେଜନ୍ତୁ ସର୍ବ ଆତ୍ମୀୟ, ଜଡିରେ ଗୃହ ହେ ପ୍ରିୟ,
ତୋଷ ଦେଇ ପ୍ରେମସୁଧା, ସିଞ୍ଚ କରୁଣା ଆସାରେ ।
ଛଳିବ ଯେତେ ମୋ' ହିଆ, ହୋଇବ ଯେତିକି ଠିଆ-
ଦୁର୍ବଳ ଚରଣ ମୋର, ତବ ଅପାର କୃପାରେ
ତୁମ ନାମ ଧର୍ମ୍ମ ଲାଗି ହେବି ମୁଁ ସର୍ବସ୍ୱତ୍ୟାଗୀ,
ଅନ୍ତିମେ ହୋଇବି ଭାଗୀ ତୁମରି ପ୍ରେମ ଦୟାରେ ।



ଇମନ୍ କଲ୍ୟାଣ – କାଓ୍ୱାଲି
ପରାଣବୀଣାରେ ଜାଗେ ଆଜି ସ୍ୱର
କାହାର ଅଭୟବାଣୀ,
ଲୁହ ଝର ଝର ଆଖିପତା ଭାର
ସମାଳି ନ ପାରେ ପାଣି । ଧ୍ରୁ ।
(ଅସ୍ଥାୟୀ)
ଆନନ୍ଦ ମୂର୍ଚ୍ଛନା ଆନନ୍ଦ ସଙ୍ଗୀତ,
ଶୁଣେ ଆଜି ମୁଗ୍‌ଧ ସ୍ତବ୍‌ଧ ଭୀତ ଚିତ୍ତ,
ଦୂରେ ଯିବ ପାପ ଜଞ୍ଜାଳ ଯନ୍ତ୍ରଣା
ଶୁଣ ଶୁଣ ସର୍ବପ୍ରାଣୀ । ୧ ।
ମଙ୍ଗଳମୟର ମଙ୍ଗଳ ପରଶେ
ନାଚିବ ଏ ବିଶ୍ୱ ଅନ୍ତର ହରଷେ,
ଯିବ ଅବସାଦ, ଘୁଞ୍ଚିବ ବିଷାଦ,
ପାପ ତାପ ଦୁଃଖ ଗ୍ଲାନି । ୨ ।
ଅମୃତ ଉତ୍ସବେ ଆସ ନରନାରୀ,
ଦୁଃଖ ଦୈନ୍ୟ ଜ୍ୱାଳା ନ ରହୁ କାହାରି,
ଶୁଭେ ଶଙ୍ଖସ୍ୱନ ବିଶ୍ୱସମ୍ମିଳନ
ନବ ଆଶା ଦିଏ ଆଣି । ୩ ।
ଆଉ ନ ରହିବ ଜଡ଼ତା ଆଳସ୍ୟ,
କ୍ରୋଧ ହିଂସା ଦ୍ୱେଷ ଦୁଃଖ ନୈରାଶ୍ୟ,
ଏକ ପିତା ତବ ହେ ବିଶ୍ୱମାନବ,
ପାରିବ ଅନ୍ତରେ ଜାଣି । ୪ ।



ଅସାର ନୁହେ ସଂସାର
ମିଛ ମାୟାର ଛାୟାବାଜି,
ଅଛି ପରମ କାରଣ
ଅଣୁରେ ଅଣୁରେ ବିରାଜି ।

ନୁହେ ଏ ଛଳନା ପ୍ରବଞ୍ଚନା,
ଅଳୀକ ଭବମାୟା ଖେଳନା,
ଏ କୃପାମୟର ରାଜ୍ୟ ପୂରିଛି
ବିବିଧ ଆନନ୍ଦରାଜି । ୧ ।
ଅନ୍ତରେ ଆଲୋକ ଯାଏ ଦିଶି,
ନୁହେ ଏ କେବଳ ଚିର ନିଶି,
ଦେଖ ଅମୃତ ଅରୁଣୋଦୟ
ନେତ୍ର ନିଦ୍ରାଜଡ଼ତା ଭଜି । ୨ ।
ଏ ପୁଣ୍ୟ କରମ ରମ୍ୟ ଧାମ,
ଅଳସର ଏଥି ନାହିଁ ସ୍ଥାନ,
ଉଠ ଉଠ ଆନନ୍ଦ ବିଶ୍ୱାସେ ବିଶ୍ୱବାସୀ
କରମ ବେଶେ ସାଜି । ୩ ।



ଦୂରେ ଯିବ ଦଳାଦଳି, ହିଂସା ଦ୍ୱେଷ,
ଜୀବନେ ଜାଗିବେ ଯେବେ ସେ ପରମେଶ,
ଜଗତର ମୂଳାଧାର । ଧ୍ରୁ ।
ଭାଇ ଭାଇ କାହିଁପାଇଁ ଭିନ୍ନଭାବ ମନେ ବହି
ଅସାର ସ୍ୱାର୍ଥ ସାଧନେ ହେଉଛି ଦହି ?
ଏକ ପିତା ଏକ ପ୍ରଭୁ, ଏକ ଧର୍ମଶାସ୍ତ୍ର ସବୁ,
ଭିନ୍ନ ଭିନ୍ନ ରୂପ ପାଇଁ,
ଏତେ ଅନର୍ଥ ଅହଙ୍କାର !
ଏ ବିଶାଳ ବିଶ୍ୱେ କେହି ନିଜ ଲାଗି ଜନ୍ମିନାହିଁ,
ଅଛି ମହତ ଉଦ୍ଦେଶ୍ୟ ମାନବ ପାଇଁ,
ଏକ ପ୍ରେମ, ଏକ ମାୟା, ଏକ ରକ୍ତ, ଏକ କାୟା,
ଭିନ୍ନ ଭିନ୍ନରୂପ ପାଇଁ
ଏତେ ଅନର୍ଥ ଅବିଚାର !
ଅଳପ ଦିନ ଲାଗି, ପ୍ରେମେ ଜୀବନ ବିତିଯାଉ,
ହଣାହଣି ମରାମରି ଶୁଣା ନ ଯାଉ,
ଏକ ଆତ୍ମା, ଏକ ଆଶା ଏକ ଆକାଂକ୍ଷାର ଭାଷା,
ଭିନ୍ନ ଭିନ୍ନ ରୂପ ପାଇଁ
ଏତେ ଅନର୍ଥ, ଏ ଚିତ୍କାର !



ସଖା ହେ ! ଆଜି କିମ୍ପା ଉଦାସ,
କହ ମୋ' ପ୍ରାଣଟି କିପାଁ ନିରାଶ ? ଧ୍ରୁ ।
କାହିଁ ଥିଲ ଦୂରେ ଦୂର ସ୍ୱରଗରେ ଥିଲି ମୁଁ
ମହୀରେ ଶତ ଅନ୍ତରେ,
ଆସି ମୋର ପାଶେ ଟାଣିନେଲେ ପାଶେ,
ବାନ୍ଧିଦେଲ ତବ ପ୍ରେମର ପାଶ । ୧ ।
ସତେ କି ନିଷ୍ଠୁର କଲ ମୋତେ ଦୂର,
ପ୍ରାଣ କରି କ୍ରୁର ପ୍ରେମବିଧୁର,
ଝରେ ଘନ ଘନ ମୋ' ବେନି ନୟନ,
ଅବଶ ପରାଣେ କି ଅବିଶ୍ୱାସ ! ୨ ।
ନ ମାନେ ପ୍ରବୋଧ ମୋ ମନ ଅବୋଧ,
ଘୋର ଅବସାଦ ଚିତ୍ତ ବିଷାଦ,
ଏ ଚିତ୍ତ ଯାତନା, ଏ ପ୍ରାଣ କାନ୍ଦଣା
କହ ଆଜି ସଖା କାହା ସକାଶ ? ୩ ।



ଯେ ଦିନ ଜୀବନ ସହଜ ହେବ ରେ
ନଥିବ ଏ କାରା ବନ୍ଧନ,
ଆପଣା ଗୋଡ଼ରେ ଚାଲିବି ମୁଁ ବାଟ,
ଚାହିଁବି ମେଲି ମୋ ଲୋଚନ;
ପ୍ରାଣ ଭିତରେ ମୋ' କେତେ କେତେ କଥା,
ଲଭିବ ଆନନ୍ଦ ଚିର ସଫଳତା,
ଭାଙ୍ଗିବି ବାଧା- ବିପଦର ବନ୍ଧ,
କାଟି ପକାଇବି ବାଡ଼,
ଝମଝାଳେ ଦେହ- ଗୋଟାକ ବୁଡ଼ିବ,
ଦଗ୍ଧ ହୋଇବ ମୋ ହାଡ଼ ।
ନଥିବ ଏ ଘନ କୁସଂସ୍କାରରାଶି,
ଅସ୍ଥି ମଜ୍ଜା ଯାହା ପକାଇଛି ଗ୍ରାସି,
ଶତ ଶାସ୍ତ୍ର ଫାଶ ଫିଟାଇବି ହେଳେ,
ଜଡ଼ତା ଛାଡ଼ିବ ତନୁ,
ଅକାରଣ ଭୟ ଦଳା ଅବିଶ୍ୱାସ
ଦେଖ କ୍ଲେଶ ଯିବ ମନୁଁ;
ଆସିବେ ପରାଣେ ପରମଈଶ୍ୱର,
ଆନନ୍ଦେ ହୋଇବି ପୟର କିଙ୍କର,
ଚିରଦିନର ମୋ ଲୁହଝରାଟିକ
ପାଦେ ଦେବି ମୁଁ ଅଜାଡ଼ି,
ଯେତେ ପ୍ରୀତି ପ୍ରାଣେ ସଞ୍ଚିଛି ଯତନେ,
ପୂଜା ଲାଗି ଦେବି ସଜାଡ଼ି ।

ଅନନ୍ତ ବସ୍ତାର ମହାକାଶ ତଳେ,
ସ୍ୱାଧୀନ କରମ ସାଧି ଆତ୍ମବଳେ,
ସାରା ଜଗତକୁ ଭାଇ ଭାଇ ବୋଲି
କୋଳେ ଘେନିବି ଆଦରେ,
ପରସ୍ପର ଦୋଷ ତ୍ରୁଟି ନ ଧରିଣ
କ୍ଷମିବି ମୁଁ ପରସ୍ପରେ;
ଆନ ଦୁଃଖେ ଦୁଃଖୀ, ଆନ ସୁଖେ ସୁଖୀ,
ଇଚ୍ଛା ହେବ ସଦା ଆନ ହିତ ସୁଖୀ,
ଆପଣାର ଲାଗି ହେବି ସର୍ବତ୍ୟାଗୀ,
ଆନ ଆନନ୍ଦେ ଆନନ୍ଦ,
ସ୍ୱାର୍ଥ ଜଞ୍ଜାଳ ହଜିବ ଜୀବନୁଁ
ଯିବ ଜୀବ ଭଳି ଶ୍ରୀପଦ।



ଖୋଜିବୁଲୁ କିମ୍ବା ଶାସ୍ତ୍ରପତ୍ରି
ମୁଁ ପରା ଦୁଆରେ ଡାକୁଛି,
କିମ୍ବା ଅନାହାରେ ତପୁଛୁ ଅରଣ୍ୟେ
ମୁଁ ପରା ଉପାସୀ ବୁଲୁଛି।
ଦୀନ ସଦନେ ମୁଁ ଜଠରଜ୍ୱାଳା,
ବିଧବା-ଲୋଚନେ ଲୋତକମାଳା,
ଅନାଥ ବେଶେ ମୁଁ ଶୁଏଁ ତରୁତଳେ,
ତ୍ରିତଳେ କିପରି ବସିଛୁ ?
ତିଳେ ତୋର ଲଜ୍ଜା ନାହିଁ କି ଭକତ ?
ଶୀତେ ଥରେ ତନୁ, ଶୁଖେ ମୋ'ରକତ,
'ହା ଅନ୍ନ ହା ଅନ୍ନ' ନ ଶୁଭେ କି ସ୍ୱନ,
ମୋ କଥା କାହିଁରେ ଖୋଜୁଛୁ ?
ସଜାଡ଼ିଛୁ କିମ୍ବା ଏ ପଜ ସୁମନ,
ଶିଳାରେ ଘଷୁଛୁ ସୁବାସ ଚନ୍ଦନ,
ସୁନାଦୀପ ଜାଳି ଥୋଇ ଅର୍ଘ୍ୟଥାଳୀ
କହ ଯେଉଁ ଦେବେ ବନ୍ଦୁଛୁ ?
ପଦାରେ ବୁଲେ ମୁଁ ପିନ୍ଧି ଛିଣ୍ଡା କନ୍ଥା,
କେବେ କି ଭୁଲେ ତୁ ଚାହିଁଛୁ ?
କହ ରେ ସାଧକ, ମାଗୁ କି ମୁକତି,
ବିଶ୍ୱ ବନ୍ଧୁ ନେତ ବନ୍ଧା ମୋ ଶକତି,
କିପାଁ ତୋ' ଆରତି, କି ହେବ ବିଭୂତି,
ଦିନେ କି କା ଦୁଃଖ ଦେଖିଛୁ,
ଦିନେ ପରପାଇଁ ନୟନରୁ ତୋର
ଉଷ୍ଣ ଅଶ୍ରୁରାଶି ଢ଼ାଳିଛୁ ?



ଦେଖିନାହୁଁ ଯଦି ପ୍ରାଣବଲ୍ଲଭକୁ
ଅନାଥ ଅନାଥ ଆଜି,
ଏ ଭିକାରୀ ବେଶେ ତୋର ଦ୍ୱାରଦେଶେ
ଅଙ୍ଗେ ଛିନ୍ନ ଚୀର ସାଜି;
ନ କୁହ ନ କୁହ କର୍କଶ ବଚନ,
ଦିଅ ଦିଅ ତୋର ହୃଦୟଟି ଦାନ,
ଅରପ ଶ୍ରୀପଦେ ତୋ' ଧନ ସମ୍ମାନ,
ସେ ପରା ଭୁବନେଶ୍ୱର,
ନୟନର ନୀରେ ନମ ନତଶିରେ
ଚୁମ୍ବ ସାଦରେ ପୟର।
କରିଛୁ କି ସେବା ପ୍ରାଣରତନର
ଯତନେ ଭାବିଛୁ ମନେ ?
ରୋଗଶେଯେ ପଡ଼ି କାନ୍ଦନ୍ତି କାତରେ,
ଡାକୁଛନ୍ତି ଘନେ ଘନେ;
ଶୁଣ ଶୁଣ ଆଜି କାତର ଆହ୍ୱାନ,
କର କର ପାଶେ ରାତ୍ରିଜାଗରଣ,
ତୋ କେମଳ କରେ ପୋଛ ଅଶ୍ରୁଧାର,
ସେ ପରା ସ୍ନେହାଭିଳାଷୀ,
ଆପଣାର ଜନେ କୋଳେ ଘେନି ବସ
ତୋ ଅଳସପଣ ନାଶି।



ବୀଣା ବଇଁଶୀର ସ୍ୱରେ ଯେ ବାଜଇ
ସେ କି ନ ଝରଇ ନୟନୀରେ ?
ଆନନ୍ଦ-ମନ୍ଦିରେ ଯା'ରପୂଜାବେଦୀ
ସେ ତ ବସେ ମୃତ୍ୟୁସରିତତୀରେ।
ଶିଶୁ ବଦନର ଯେ ମଧୁର ହାସ,
ଭିକାରୀ କରୁଣ କଣ୍ଠେ,
ଶ୍ମଶାନ ଚିତାରେ ତାହାରି ଦହନ,
ବଇରାଗୀ ବେଶେ ମଠେ।

ଦୁଃଖ ହତାଶ୍ୱାସେ, ହରଷେ ସେ ହରି,
ସେ ପ୍ରେମ ମୋହନ ମହାନ,
କି ଦେବୁ ଆଜି ତା' ଚରଣେ ସୁଦାନ !
କର ତୋ' ହୃଦଟି ଦାନ ।



ଝରେ ଝର ଝର ପ୍ରେମର ନିର୍ଝର
ମୋ ମନ-ଗିରିକନ୍ଦରେ,
ନଦୀ ପରି ପରା ଧରାରେ ବହି ସେ
ମିଶିବ ଯାଇ ସାଗରେ ।
ବିପୁଳ ବିସ୍ତାର ପ୍ରେମ ପାରାବାରେ,
ମିଶି ମୋ ସରିତ ହେବ ଏକାକାର,
ଭୁଲିବ କ୍ଷୁଦ୍ର ନୀଚ ଅହଂକାର
ହରାଇ ଦୁର୍ବଳ ସତ୍ତା,
ପ୍ରବଳ ପ୍ରବାହ ପୁଲକ ଉଲ୍ଲାସେ
ହେବ ସେଗଭୀର ଉଦାର ।
ଶତଦୀନ ହୃଦକେଦାର,
ସିକ୍ତ ଶୁଭ୍ର ଆସାର,
ଶମିବ ଶତ ପିପାସା, ଦାରୁଣ ତୀବ୍ର ନିରାଶା,
ତାରେ, ନୀରେ ଅର୍ଚ୍ଚି ଆନନ୍ଦେ,
ଶତ ଜୀବନତରୁ ଆଦରେ,
ଶତ ମରୁଭୂମି ଫୁଲଫଳେ ରମି
ଗାଇବ ଶାନ୍ତି ଛନ୍ଦରେ ।



ଆସିଥିଲେ ଯେବେ ଦୀନହୀନ ବେଶେ
ପ୍ରାଣସଖା ତୋ ଦୁଆରେ,
କିମ୍ବା ଫେରାଇଲୁ ତୁଚ୍ଛ ଅନାଦରେ
ଭିକାରୀ ଭାବି ମନରେ ।
ଆସିଥିଲେ ଯେବେ ପିନ୍ଧି ଛିଣ୍ଡା କନ୍ଥା
କିମ୍ବା ତୁ କରିଲୁ ଛି ଛି ?
ତଣ୍ଡୁଳ ଗଣ୍ଡାକ ମାଗିଥିଲେ ଯେବେ
କହିଥିଲୁ ନାହିଁ କିଛି ।
ରାଜା ମହାରାଜା ବେଶେ ଆସିଥିଲେ
କରିଥାନ୍ତୁ କି ଆଦର,
ନୟନର ନୀର ଏବେ ତୁ ଢ଼ାଳିଲେ
କହ କି କ୍ଷତି କାହାର ?



ଶ୍ମଶାନେ ଫୁଟିଛି ପ୍ରୀତି-ମଲ୍ଲିକାଟି
ବ୍ୟଥିତ ହୃଦୟ ମଝିରେ,
ହୃଦ-ଭରା ହିମ- କାନ୍ଦଣା ଘେନି କି
ଫୁଟିଛି ଗୋଧୂଳି ତିମିରେ !
ଦରଫୁଟା ତାର ଅଧରପାଖୁଡ଼ା,
କେତେ ପ୍ରେମ ତହିଁ ରହିଅଛି ମୋଡ଼ା,
କିଏ ଜାଣେ, କିଏ ଜାଣେ ରେ,
ସେ ତ ଧୀରେ ଧୀରେ ଦିଏ ଅଜାଡ଼ି,
ଶିଶିରବିନ୍ଦୁଟି ସଜାଡ଼ି,
ତରୁତଳ ଫଟା ପାଷାଣ ଉପରେ
କହ କିଏ ବସି ଗଣେ ରେ ?



ଆଜି ସିନା ହସେ ପୂର୍ଣ୍ଣିମା ଶଶୀ
ନୈଶ ଆକାଶେ ଭାସି,
ଆଜି ସିନା ଫୁଟେ ମଧୁଚାନ୍ଦିନୀ,
ଲୋଟେ ଧରଣୀ ହସି;
ଆଜି ସିନା ସରେ ହାସରସରେ
ଭାସେ କୁମୁଦ ହେରି,
ଆସିବ ସେ ଦିନ ଶଶୀ ଯେ ଦିନେ
ସରବେ ହେବେଟି ଝୁରି ।
କୁଞ୍ଜ-କାନନ ପୁଞ୍ଜପ୍ରସୂନ ନୀଳ ଗଗନ ସାରା,
ନୀର ବିତାନ ନୀଳ କଲ୍ଲୋଳେ
ଖେଳୁଛି ରଜତଧାରା;
ଧରିଛି ଧରଣୀ କାନ୍ତ କିରଣେ
ମଧୁର ମୋହନ ଶିରୀ,
ଆସିବ ସେ ଦିନ ଶଶୀ ଯେ ଦିନେ
ସରବେ ହେବେଟି ଝୁରି ।
କାନ୍ଦିବ ଆକାଶ, କାନ୍ଦିବ ଧରଣୀ,
କାନ୍ଦିବ ଅନ୍ଧାର ନିଶି,
କୁଞ୍ଜ-କାନନ ପୁଞ୍ଜ ପ୍ରସୂନ ନୀଳ କଲ୍ଲୋଳରାଶି,
କାନ୍ଦିବ କୁମୁଦ ମ୍ଳାନ ଆନନ୍ଦେ, କାନ୍ଦିବ ହୃଦୟ ଝୁରି,
ଆସିବ ସେ ଦିନ ଶଶୀ ଯେ ଦିନେ
ସରବେ ହେବେଟି ଝୁରି ।



ହେଲ ଅବା ନୀଚ ହୀନ କ୍ଷୁଦ୍ର ପ୍ରଜାପତି,
ତବ ପ୍ରୀତିଫୁଲଦଳ ମୋ' ପ୍ରିୟ ବସତି;
ତବ ମଧୁର ସୁନ୍ଦର ରବି କିରଣରେ
ବୁଲେ ମୁଁ ଆସବ-ସେବୀ ଅତି ହରଷରେ ।



ପରାଣେ ପରାଣେ ପ୍ରେମମିଳନେ
ବିଶ୍ୱ ମୋହୁଛି ।
ଗାଉଛି କୋକିଳ ପଞ୍ଚମ କଣ୍ଠେ,
ଭ୍ରମର ଗାଉଛି,
କୁଞ୍ଜକାନନେ ସଞ୍ଚରି ଧୀରେ
ସମୀର ବହୁଛି
ସରସୀର ନୀରେ ସରୋଜ ନାଳରେ
ମୃଦୁଲେ ଦୋଳୁଛି,
ନୂତନ ତପନ ନବୀନ ନଳୀନେ
ଧୀରେ ଡାକୁଛି ।
ଲାଜେ ଫୁଟିଉଠି ଫୁଲକଳିକା
ହରଷେ ହସୁଛି,
ପାଦପ ଅଙ୍ଗରେ ନବ ସୁଆଗରେ
ଢଳିପଡୁଛି ।
ନାଚି ନାଚି ରଙ୍ଗେ ବୀଚିମାଳି ଭଙ୍ଗେ
ତଟିନୀ ଧାଉଛି,
ଲମ୍ଫଇ ଲହରୀହାର ପାରାବାର
ଗଳାରେ ଅର୍ପୁଛି ।
ଶୋଭି ପ୍ରେମ-ଜଳ ଯୁଗଳ କମଳ
ସୁକ୍ଷଣେ ଫୁଟିଛି,
ସାଦରେ ଚରଣତଳେ ମୁଁ ଗ୍ରହଣ
କାମନା କରୁଛି ।



ଜୀବନସରସେ ମୋର ନବ ଫୁଲ ଫୁଟିଲା,
ପ୍ରେମେ ମନ-ଅଳି ତହିଁ ହରଷରେ ଲୋଟିଲା ।
ନବୀନ ମୋହନ ରାଗେ,
ନବ ବର୍ଷ ଅନୁରାଗେ,
ଉଭାହୋଇ ମୋର ଆଗେ
ନବ ବର୍ଷ ହସିଲା । ୧ ।
ନବୀନ ହୃଦ-ମନ୍ଦିରେ,
ପ୍ରଭୁଙ୍କୁ ଡାକି ଆଦରେ,
ନବ ଭକ୍ତିହାରେ ମନ
କୁତୂହଳେ ପୂଜିଲା । ୨ ।



ଏ ନବ ବାସରେ ନବ ଆନନ୍ଦରେ
ସୁନ୍ଦରେ ସୁନ୍ଦରେ ମଧୁର ମିଳନ,
ବିଶ୍ୱ-ପରିବାରେ ବିଶ୍ୱର ସେବାରେ
ମିଳିଲେ କି ଆଜି ଯୁଗଳ ଜୀବନ !
ଶତ ସ୍ନେହରାଶି ହୃଦୟେ ବରଷି
ଉଦିଲେ କି ନଭେ ନବ ରବି ଶଶୀ,
ପ୍ରେମପାରାବାରେ ପ୍ରେମର ତଟିନୀ
ମିଳନେ କି ଆଜି ମୋହିଲା ଭୁବନ ! ୧ ।
ଫୁଟିଲା ପ୍ରସୂନ ସୁହାସ ମୋହନ
ସାଜି ଉପବନ ମନୋବିନୋଦନ,
ନବୀନ ଯୌବନେ ଆଶାପୂର୍ଣ୍ଣ ପ୍ରାଣେ
ପ୍ରେମର ଅଚ୍ଛେଦ୍ୟ ଅଭେଦ୍ୟ ବନ୍ଧନ ! ୨ ।
ନବ ଅନୁରାଗେ, ନବୀନ ସୁଆଗେ,
ମିଳିଲେ କି ବେନି ନବପ୍ରେମ ଯୋଗେ,
ସାଜି ଫୁଲଡାଲା ଭକ୍ତି-ପ୍ରୀତିମାଳା
ସାଦରେ ପାଦରେ କରିବେ ବନ୍ଦନ ! ୩ ।



ଶୁଭ ପ୍ରଭାତେ ମଧୁ ମିଳନେ
ପୟରତଳେ ଆଜି ଯୁଗଳ ଅନ୍ତର ।
ପ୍ରାଣ-କୁଞ୍ଜବନେ ପ୍ରୀତିମଞ୍ଜରୀ
ମୁଞ୍ଜରେ ଆହା ଆଜି କି ଶୋଭା ଧରି,
ମଣିକାଞ୍ଚନର ହୋଇଛି ମେଳ,
ମିଶିଯାଇଛି କି କ୍ଷୀରରେ ନୀର ! ୧ ।
କୁହରେ କୋକିଳ କାନନକୁଞ୍ଜେ,
ଗୁଞ୍ଜରେ ଅଳିକୁଳ ବକୁଳପୁଞ୍ଜେ,
ସଞ୍ଚରେ ଧୀରେ ଧୀରେ ସମୀର,
ନଚାଇ ନଦୀନୀର ସରସୀ ସର । ୨ ।
ତଡ଼ାଗ-ତରଙ୍ଗ ଭଙ୍ଗ ବିଭଙ୍ଗେ
ଭାସ୍କର-କରେ ନାଚେ ପୁଷ୍କର ରଙ୍ଗେ,
ଦେଇଛି ପେଇ କି ସୁଧାସମ୍ଭାର,
ଦମ୍ପତି ମନମୋହୀ କିବା ସୁନ୍ଦର ! ୩ ।

ତାଳ ଆଶିଷ ଏ ମଧୁ ମିଳନେ,
ବାନ୍ଧ ହେ ପ୍ରାଣେ ପ୍ରାଣେ ପ୍ରେମ ବନ୍ଧନେ,
ବେନି ମାନସ-ସୁମନ-ଆସନେ
ବିରାଜ ବିଶ୍ୱ-ପ୍ରଭୁ ପରମେଶ୍ୱର। ୪।



ନବୀନ ବାସରେ ଆଜି ନବ ଶୁଭ ଆମୋଦେ,
ଏ ଦୀନ ହୃଦ-ମନ୍ଦିରେ ରଖ ପଦ-ଇନ୍ଦୀବରେ,
ସ୍ନେହ ଭକ୍ତି ସମାଦରେ ପୂଜିବି ପ୍ରଭୁ ଆନନ୍ଦେ।
ଦେହ ମନ ହେବ ନୂଆ,
ହେମ ହେବ ହୃଦ ଲୁହା,
ପଦ-ପାରସ ପରଶେ
ଗାଇବି ନବୀନ ଛନ୍ଦେ।



ଦୁଆରେ ଆସି ମୋର ହସୁ ଆଜି
ଆଗୋ ନୂତନ ବନ୍ଧୁ ମୋର ନୂତନ ସାଜେ ସାଜି।
କି ଦେବି କହ ମୋତେ ନବବନ୍ଧୁ,
ଅଛି ମାତ୍ର ମୋର ନେତ୍ର-ନୀରବିନ୍ଦୁ,
କିଛି ନାହିଁ ନୂଆ ମୋର, ହୃଦୟେ ପଡ଼ିଛି ଗାର,
ଅତୀତ ସ୍ମୃତିଟି ପ୍ରାଣେ ଯାଉଛି ବାଜି। ୧।
ଯାଉଛି ଭାସି କହ କେଉଁ ଦେଶେ,
ଦିଗହୀନ ଅନ୍ଧକାର ମରୁ କି ସେ!
ନ ଜାଣେ ନ ଜାଣେ ବନ୍ଧୁ, ଏ ଭୀଷଣ ଭବସିନ୍ଧୁ,
ତରିବାକୁ ନାହିଁ ବଳ, ଭାବେ ଆଜି। ୨।
ବଳ ନାହିଁ ମୋର ସିନା, ଅଛି ଆଶା,
ଅଛି ମାତ୍ର ପାଦେ ପାଦେ ପାଦଖସା,
ଯେବେ ସୁଦ୍ଧା ପ୍ରାଣମଣେ ଧାଏଁ ଏ ବିଜନ ଦଳେ,
ସେ ବିନ୍ଦୁ ଅର୍ଘ୍ୟ ମୋ ହୃଦୟେ ହେଜି। ୩।।



ଇମନ କଲ୍ୟାଣ—ଏକତାଲା

ଆଜି ଶୁଭକ୍ଷଣେ ଏ ବିଶ୍ୱସଦନେ
ମଙ୍ଗଳ ମୁକୁଟ ଶିରେ
ଫୁଲ୍ଲ କୁସୁମଚାରୁ ପରିମଳ-
ସ୍ନେହ ସମୀରେ ଧୀରେ,
ସୁଧା-ହସିତ ସ୍ନିଗ୍ଧ ବଦନେ
ମଧୁର ମୋହନ ହର୍ଷ,
ଆସିଛି ଦୁଆରେ ନବବର୍ଷ!
ଆସିଛି ନବବର୍ଷ!
ଶୂନ୍ୟ ହୃଦୟ ପୂର୍ଣ୍ଣ କରି ସେ ଢାଳି
ପ୍ରେମ-ଅଶ୍ରୁବାରି,
ହସାଇ, ରସାଇ, ଶତ ଜନ ମନ
ନବ ଶୋଭା ସାଜ ଧରି,
ଶତ ଆଶାସ୍ୱପ୍ନ ଆଙ୍କି ହୃଦପଟେ
ଶତ ଭାବି ମହୋତ୍କର୍ଷ,
ଆସିଛି ଦୁଆରେ ନବବର୍ଷ! ଆସିଛି ନବବର୍ଷ!
ବେଦନା ଯାତନା ସାରା
ଜୀବନର ତପ୍ତ ଲୋତକଧାର,
ମର୍ମ୍ମଭେଦୀ ଶତ ଦୀର୍ଘଶ୍ୱାସ; ଶତ କଷ୍ଟହାହାକାର;
ହରିବ ନିମିଷେ କୋମଳ ଶ୍ରୀକରେ
ବିମଳ ପ୍ରେମସ୍ପର୍ଶ!
ଆସିଛି ଦୁଆରେ ନବବର୍ଷ! ଆସିଛି ନବବର୍ଷ!



ନବୀନ ଅତିଥି

ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ବି.ଏ. ମହୋଦୟଙ୍କର

କୁଳପ୍ରଦୀପ

**ଶ୍ରୀମାନ୍ ସତ୍ୟସୁନ୍ଦରର**

ଭବିଷ୍ୟତ ଜୀବନର ଆକାଙ୍କ୍ଷିତ ମହତ୍ତ୍ୱ

ଓ

ଶୁଭ କାମନାରେ

ଶିଶୁ-ଜନ-ମନୋହର

# ଶତଦଳ

ସ୍ନେହୋପହାର ପ୍ରଦତ୍ତ ହେଲା ।

# ଶତଦଳ

## ଶିଶୁ

ଅମଳକମଳଦଳ ଜିଣି ସୁକୋମଳ,
ଶଶାଙ୍କ-ସୁଷମାନିନ୍ଦ୍ୟ ବଦନ-ମଣ୍ଡଳ,
ଶମ୍ପା-ଶୋଭା ଜିଣି ନେତ୍ର ଚଞ୍ଚଳ ସୁନ୍ଦର,
ବିଲୋଳ କଟାକ୍ଷ, ହାସ ଦୀପ୍ତିରେ ଭାସ୍ୱର ।
ଆହା କି ସୁନ୍ଦର ଶିଶୁ ଭାବନାବିହୀନ,
ସୁଧାରସସିକ୍ତ ତବ ଏ ନବ ଜୀବନ,
ପ୍ରାତଃ ସମ ସୁମଧୁର ପ୍ରଶାନ୍ତ ଉଜ୍ଜ୍ୱଳ,
ଏନବ ଜୀବନେ ନାହିଁ ସଂସାର ଜଞ୍ଜାଳ ।
ପଡ଼ିନାହିଁ ଦୁଃଖଛାୟା ଏ ଜୀବନପଥେ,
ଦୁଃଖ ସୁଖର ପ୍ରଭେଦ ଜାଣିବୁ କେମନ୍ତେ ?
ପାପ ପୁଣ୍ୟ ନ ଜାଣୁ ତୁ ନିର୍ଦ୍ଦୋଷ ସୁନ୍ଦର,
କି ଶଙ୍କାରେ ଚିତ୍ତ ତୋର ହେବଟି କାତର ?
ବେଢ଼ିନାହିଁ ମାୟାଜାଲ କ୍ଷୁଦ୍ର ମନୋମୀନ,
ବିମଳ ଆମୋଦେ ତୋର ବହିଯାଏ ଦିନ;
ପଶିନାହିଁ ତୋ' ଅନ୍ତରେ ସଂସାର ଗରଳ,
ଚିନ୍ତାରେଖାଶୂନ୍ୟ ତୋର ଆନନ ଅମଳ ।
ନୈରାଶ୍ୟ ବିଷମ ବିଷେ ନୋହିବୁ ଜର୍ଜ୍ଜର,
ଆଶାଶୂନ୍ୟ, କି ଜାଣୁ ତୁ ଭାର ନୈରାଶ୍ୟର ?
ନାହିଁ ଲୋଭ, ନାହିଁ କ୍ରୋଧ, ନାହିଁ ଅହଂକାର,
ଉଚ୍ଚପଦ ଅଭିଳାଷ ନାହିଁ ତୋ' ଦୁର୍ବାର ।
ବାସନାବିହୀନ ଶିଶୁ ସନ୍ତୋଷ ଅନ୍ତର,
ପ୍ରେମମୟ ନମ୍ରଚିତ୍ତ ନିର୍ମ୍ମଳ, ମଧୁର;
ଉଚ୍ଚନୀଚ ଭେଦଜ୍ଞାନ ନାହିଁ ତୋହଠାରେ,
ସ୍ୱାର୍ଥକୀଟ ପଶିନାହିଁ ଚିତ୍ତ ସୁକୁମାରେ
ଅମୃତ ନିର୍ମିତ ତୁହି ଚିର ପ୍ରଫୁଲ୍ଲିତ,
ପ୍ରଫୁଲ୍ଲତାଗୁଣେ ସର୍ବେ କରୁ ବିମୋହିତ;
ନିର୍ଦ୍ଦୋଷ ସୌନ୍ଦର୍ଯ୍ୟ ତୋର କି ମନୋମୋହନ,
ଅସ୍ଥାୟୀ କିନ୍ତୁ ରେ ହାୟ ଏ ମଧୁଜୀବନ !
ସରଳ ସ୍ୱଭାବ ହେତୁ ଚିର ସୁଖୀ ତୁହି,
ସଂସାରେ ତୋ' ସୁଖ ତୁଲା କାହୁଁ ଦେଖି ମୁହିଁ ?
ତୋ'ପରି ସ୍ୱଭାବ ଯଦି ମିଳନ୍ତାରେ ମୋତେ,
ସମ୍ଭବିଥାଆନ୍ତା ସ୍ୱର୍ଗଭୁବନ ମରତେ ।
ସ୍ମରିଲେ ମୋହରି ମଧୁ ଶୈଶବ ଜୀବନ
କି ଦୁଃଖ ବିଦରେ କ୍ଷଣେ ତାପିତ ମରମ !
ଫେରି ଆସିବ କି ଆହା ସେ ସୁଖର ଦିନ,
ଆକୁଳେ କାନ୍ଦିବି ଯେବେ ନେତ୍ର କରି କ୍ଷୀଣ ?
ତଥାପି ଆସିବ ଫେରି ସେ ସୁଖର ଦିନ
ପରାର୍ଥେ ସମ୍ପିଲେ ପ୍ରାଣ ବାସନାବିହୀନ ।

## ବିଶ୍ୱରୂପ ଓ ପ୍ରେମସ୍ୱରୂପ

ଚାହେଁ ନା ଝଞ୍ଜା, ବଜ୍ର, ବିଦ୍ୟୁତ୍,
କରାଳ ନିବିଡ଼ ଜଳଦମାଳା,
ଚାହେଁ ନା ଅଗ୍ନି-ଗିରି ଉଦ୍‌ଗୀରଣ
ନ ଶମିବ ମୋର ପରାଣଜ୍ୱାଳା;
ଚାହେଁ ମୁଁ ସୁନ୍ଦର ମଧୁର ବେଣୁର
ବାଜଣା ତଟିନୀ ବନାନ୍ତରାଳେ
ଚାହେଁ ମୁଁ ଶିଶିର-ସିକ୍ତ ସୁନ୍ଦର
କୋମଳ-କମଳ-କୁସୁମ-ମାଳେ । ୧ ।
ଚାହେଁ ନା ଅଭ୍ର- ଭେଦୀ ଉଚ୍ଚତା ହେ,
ତୁଷାର ଆବୋରା ତୁଙ୍ଗ ଶୃଙ୍ଗ,
ଚାହେଁ ମୁଁ ଶ୍ୟାମଳ ନବ ଦୂର୍ବାଦଳ,
କିଶଳୟ ଅଙ୍ଗେ ନୀଳ ତରଙ୍ଗ ।
ଚାହେଁ ନା ପ୍ରଚଣ୍ଡ ପ୍ରତାପୀ ମାର୍ତ୍ତଣ୍ଡ-
କିରଣ ଅନଳଜ୍ୱାଳା-ବିକାଶୀ,

ଚାହେଁ ମୁଁ ଶାରଦ ସ୍ନିଗ୍ଧ ଆକାଶେ
ଶିଶିର ମୋହନ ସୁଷମାରାଣି ।
ବିଭୂତି-ଭୂଷିତ ବିଶ୍ୱରୂପ ତବ
ମହାମହିମାର ମୂର୍ତ୍ତ ବିକାଶ,
କୋଟି ରବି ଶଶୀ ନକ୍ଷତ୍ର ମଣ୍ଡଳେ
ଆନନ୍ଦ ଉଜ୍ଜ୍ୱଳ ଜ୍ୟୋତି ଉଭାସ ।
ଚାହେଁ ନା ଅନନ୍ତ ଦିଗନ୍ତ ବିସ୍ତାର
ମହା ପାରାବାର ଅତଳ ତଳ,
ଚାହେଁ ମୁଁ ସ୍ୱଚ୍ଛ ସ୍ୱର୍ଣ୍ଣ ଝରଣା
ତୀର ତରୁବୀଥି ତାଳ ତମାଳ ।
ଚାହେଁ ନା ଭୀଷଣ ମଧ୍ୟ ନିଶୀଥେ
ଉଲ୍‌କାପତନ ଅନଳକଣା,
ଚାହେଁ ମୁଁ ବସନ୍ତ- ନିଶାନ୍ତେ ଫୁଟନ୍ତା
ଫୁଲର କୋମଳ ହିମକାନ୍ଦଣା ।
ଚାହେଁ ନା ହେ ତବ ସଂହାର ରୂପ
ମୁଣ୍ଡମାଳା ଗଳେ ରୁଦ୍ର ଯତି,
ଚାହେଁ ମୁଁ ଜନନୀ ଅନ୍ନପୂର୍ଣ୍ଣା
ବାତ୍ସଲ୍ୟ-ମଧୁର ମାତୃ ମୂରତି ।
ଚାହେଁ ନା ରତନ- ଶେଯ ଶୟନ ମୁଁ,
ଚାହେଁ ପ୍ରେମବୋଳା କୋମଳ କୋଳ,
ସନ୍ତାନ ସରି ହସି ମୁଖ ଚାହିଁ
ବକ୍ଷସୁଧା ପିଇ ହୋଇବି ଭୋଳ ।
ମଧୁର ଚୁମ୍ବନେ ପ୍ରେମ ଆଲିଙ୍ଗନେ
ଛନ୍ଦି ଗଳା ତୋର କରିବି ଆଦର,
ଅଜ୍ଞାନ ଶିଶୁକୁ ଚୁମ୍ବି ପ୍ରତିଦାନେ
ମୋ' ଦେହରୁ ଧୂଳି ଝାଡ଼ିବ ଶ୍ରୀକର ।
ଅନନ୍ତ ଜୀବନ ଅନନ୍ତ ମୁକତି
ପୂର୍ଣ୍ଣ ସଫଳତା ଅସୀମ ନିର୍ଭର,
ପ୍ରେମ-ସ୍ୱରୂପ ତୋ' ପାଦତଳେ ମୋର
ବହିବ ଜୀବନ ଅମୀୟ ନିର୍ଝର ।

## କ୍ଷୋଭେ

ଆଜ ଦୀନର-କୁଟୀର ଦୁଆରେ,
ଆସି ଛିଡ଼ା ହୋଇ ହେ ମହାମହିମ
ବୁଡ଼ାଇଲ ବଡ଼ ଲଜ୍ଜାରେ ।
ସ୍ଥାନ ଦେବି କାହିଁ ଭାବନା ଭାରି,
ମାନସ-ଶେଯଟି ଦେବି କି ପାରି ?
ଜୀର୍ଣ୍ଣ ପୁରାତନ, ସେ ଛିନ୍ନ ମଳିନ,
ସଙ୍କୋଚେ ପାରେ ଚାହିଁ,
କହିବାକୁ ଲାଜ 'ଆସ ବସ' ବୋଲି
ହେ କୋଟିଭୁବନ ସାଇଁ !
ସରୁଛି ଗୋପନେ ସରମେ
ଆହା, ଅତିଥିର ସେବା ଧରମେ
ଚିର ମୁଁ ଅକ୍ଷମ, ଚିର ମୁଁ ଅଧମ,
ବଡ଼ କ୍ଷୋଭ ମୋର ମରମେ
ଧୋଇବି ଶ୍ରୀପଦ ମୁଁ କେଉଁ ନୀରେ,
ଭାବୁଛି ଅଥୟ ଚିତ୍ତେ ଅଧୀରେ,
ସହସ୍ର ସାଗର- ସରିତ ନିର୍ଝର
ନିରତ ପୂର୍ଣ୍ଣ ଆସାରେ
ପଖାଳିବି ମୁଁ କି ପୟର ଯୁଗଳ
ଲୋଚନ ଲୋତକଧାରେ !
ମରୁଛି ଆକୁଳ ହୃଦରେ,
ଆହା, ଅତିଥିର ଯତ୍ନ-ଆଦରେ
ଚିର ମୁଁ ଅଯୋଗ୍ୟ, ଚିର ମୁଁ ଦୁର୍ଭାଗ୍ୟ,
ଭାବି ମୋ ପରାଣ ବିଦରେ ।
କି ଘେନି ରଖିବି ଅରଘଥାଳୀ,
ନଭୋଥାଳେ ଇନ୍ଦୁ, ମରୀଚିମାଳୀ,
ନକ୍ଷତ୍ରମଣ୍ଡଳୀ- ପୂଜାଦୀପ ଜାଳି
ସଜାଡ଼େ ପ୍ରକୃତିରାଣୀ,
ହୃଦୟର ଶ୍ରଦ୍ଧା ଆଦର ଅଜାଡ଼ି
ଦେବି କି ହେ ଦେବ ଆଣି ?
ବଡ଼ ବ୍ୟଥା ମୋର ଅନ୍ତରେ,
ଆହା, ଅତିଥିର ପାଦପ୍ରାନ୍ତରେ

ଚିର ମୁଁ ସ୍ୱଦୀନ, ଚିର ନୀଚ ହୀନ,
କି ଦେବି ଭାଳଇ କାତରେ ।
ଅରପିବି କିବା ବିଶ୍ୱ-ବନ୍ଦନ !
ମୁକୁତା ମାଣିକ ଫୁଲ ଚନ୍ଦନ,
ଶୋଭେ ସୁଷମାରେ ଗିରି ପାରାବାରେ
କୋଟି କାନନ ଉଜ୍ୱଳି,
ତୁଚ୍ଛ ମୁଁ ଥୋଇଛି ସ୍ୱଳ୍ପ ସୁମନର
କ୍ଷୁଦ୍ର ଭକତି ଅଞ୍ଜଳି ।
ମଳିନ ମୁଁ ଲାଜତରାସେ,
ଆହା, ଅତିଥି ଅର୍ଚ୍ଚନା ସକାଶେ
ଚିର ମୁଁ ଦରିଦ୍ର, ଚିର ଅକିଞ୍ଚନ
ଦହଇ ପରାଣ ନିରାଶେ ।
କି ଅନ୍ନ ଦେବି ମୁଁ ଛାମୁରେ ଆଣି,
ନାହିଁ ତ ମୋ ଘରେ ବାସି ତୋରାଣି,
ଦେବି କି ପରଷି ପ୍ରେମସୁଧାରାଶି,
ଭରସି ନ ପାରେ ପ୍ରଭୁ ।
ରହିଛି ମଉନେ ନିଊନତା ଜାଣି
ନିଜ ଗୁଣେ ବୁଝ ସବୁ ।
ଆହେ ଅପାର କୃପାସାଗର !
କଣିକାଟି ଦାନେ କିଣିନିଅ ମୋତେ,
ମାଗୁଣି ଚରଣେ ମୋହର ।

## କିପାଁ

କିପାଁ ଡାଳେ ଡାଳେ ଫୁଟିଅଛି ଫୁଲ,
କିପାଇଁ ପଞ୍ଚମେ ଗାଉଛି କୋକିଳ ?

କିପାଇଁ ସାଗର ଲହରୀ ବ୍ୟାକୁଳ,
କିପାଁ ନୀଳାକାଶେ ଚାନ୍ଦିନୀ ସୁନ୍ଦର ?

ସୌରକରେ କିପାଁ ଦୀପିତ ଅମ୍ବର,
କିପାଁ ଇନ୍ଦ୍ରଧନୁ ସୁରଙ୍ଗେ ଭାସ୍ୱର ?

କିପାଁ ହୃଦକୋଣେ ଆକୁଳ କ୍ରନ୍ଦନ,
ବାସନାବ୍ୟଥିତ ହୃଦ ଉଚ୍ଚାଟନ ?

କିପାଇଁ ନୟନେ ମୋହ ଆବରଣ,
କିପାଁ ହିତବ୍ରତେ ଆତ୍ମବଳିଦାନ ?

ପରାର୍ଥ-ସାଧନେ ନିବେଦିତ ପ୍ରାଣ,
ଭବ ଶେଷ ସୀମା ଯଦି ଗୋ ଶ୍ମଶାନ ?

ଅଛି ଆହା ଊର୍ଦ୍ଧ୍ୱେ, ଅଛି ବହୁଦୂର,
ଆଶା ବିଶ୍ୱାସର ଆକାଙ୍‌କ୍ଷା ମଧୁର
ପୂରିବ ସେଠାରେ, ଅଛି ତ ସେ ପୁର ।

## ବନଫୁଲ ଉଦ୍ୟାନକୁସୁମ

ଏ ତ ବନଫୁଲ, ଚିର ଅନାଦରେ
ଫୁଟିଛି କଣ୍ଟକ ବେଢ଼ାରେ,
ଆନ ଗୋଟିକ ତ ଉଦ୍ୟାନକୁସୁମ,
ବଢ଼ିଛି କେତେ ସେ ଶ୍ରଦ୍ଧାରେ ।
ସାନ ଚାରାକାଳୁଁ ଅତି ଯତନରେ
ମାଳିର ସିଞ୍ଚିଲା ସଲିଳେ
ବଢ଼ିଲା ଗଛଟି ଆନନ୍ଦରେ ଅତି
ଦୋହଳି ବସନ୍ତ ଅନିଳେ ।
ଚାହୁଁ ଚାହୁଁ ଫୁଲ ଫୁଟିଲା ସୁନ୍ଦର,
ବିତରିଲା ବାସ ମୋହନ,
ଲୋକେ ତ ରସିଲେ ଆଦରେ ଅନାଇଁ,
ସେ ପରା ଉଦ୍ୟାନ-ସୁମନ !
ଏ ତ ବନଫୁଲ, ଗହନ ଅନ୍ଧାରେ
ଘନ ପଞ୍ଚ ଲତାକୁଞ୍ଜରେ
ଫୁଟିଣ ମନକୁ ବାସ ବିତରିଲା,
କେହି ନ ଦେଖିଲେ ନେତ୍ରରେ ।
ଲୋକ ଆଖି ସିନା ଦେଖି ନ ପାରିଲା,
ନ ବୁଝିଲା ଗୁଣ ତାହାର,
ଅଲିତ ଚିହ୍ନିଲା ଫୁଲସୁଗନ୍ଧକୁ,
କେତେ ରୂପଗୁଣ କାହାର !

## ଯଉବନ

ଦେଖୁଛ ଯେବେ ପଳାଶ ଫୁଲଟି,
ତାର କି ରକତ ଶିରୀ,
ସଉରଭ ବିନା ତୋରା ତନୁ ସିନା,
ଯଉବନ ସେହିପରି ।
ଯଉବନ ଦେଖି ନ ଭୁଲା ତୋ' ଆଖି,
ଦୁନିଆର ଦୁଇଦିନିଆ ଖେଳ,
ମୁକୁତା ନୁହେଁ ଏ ଶିଶିରବିନ୍ଦୁ,
ଘଡ଼ ଅନ୍ଧାର ଏ ପୂର୍ଣ୍ଣିମା ଇନ୍ଦୁ,
କାଞ୍ଚନ ନୁହଇ ଭେଳ,
ଏ ତ ମହାକାଳଫଳ ।
ଦୁଇଦିନ ପାଇଁ କିପାଁ ଉଛତ,
ବନ୍ଧୁ ନୁହେ ଏ ତ ବଇରୀ ସତ;
ମଣି ଦେଖି ଯଦି ବରିବୁ ଫଣୀକୁ
ସାର ହେବ ହଳାହଳ ।

## ଗୋଲାପ

ସଜ ସୁରଭିତ ଯୌବନ କାନ୍ତି
ଦରଦରହାସୀ ଗୋଲାପ,
ନବ ବସନ୍ତେ ଶାନ୍ତ ସୁନ୍ଦର
ଝରଝର ଆଖି ଯୋଡ଼ିକ ।
କୋମଳ ମଞ୍ଜୁଳ ଦଳୁଁ ଝଳମଳ
ନୀରବ ନୀହାର ଝରଣା,
ସଲାଜ ସୁନ୍ଦର ନେତ୍ର ଟଳମଳ
ହସ ମିଶା ହର୍ଷ କାନ୍ଦଣା ।
ତହିଁ ରସ ବାସ ହୃଦୟ ଉଚ୍ଛ୍ୱାସ
ପ୍ରବଳ ଆକୁଳ ପୁଲକ,
ମିଶାଣ ସେ କି ଗୋ ଖରା ବରଷାର,
ଆଲୋକ ମୋହନ ଝଲକ ?
(ଆରେ) ଗୋଲାପ ସୁନ୍ଦର ଜନମନୋହର
ଚିର ଯୌବନଶୋଭନ,
ଶତ ହାହାକାର-କାରା-ବନ୍ଧନେ
ପରାଣର ଟାଣ ଉଦ୍ୟମ !
ଅସରନ୍ତି ତୋର ବାସନା,
ଅସରନ୍ତି ତୋର ବେଦନା,
ଅସରନ୍ତି ତୋର ଅମୃତ ହସ,
ଅସରନ୍ତି ତୋର ସାନ୍ତ୍ୱନା ।
ଡାଳେ ଡାଳେ କୋଟି କଣ୍ଟକ ବହି
ଆଛେ ଚାହିଁବୁ ଆକାଶେ,
ଆସୁ ବାଧାବିଘ୍ନ, ଝଞ୍ଜା ପବନ,
ବଞ୍ଚିବୁ ଦୃଢ଼ ବିଶ୍ୱାସେ;
ନିଜ ପାଇଁ ତୋର ସଞ୍ଚିତ କାହିଁ,
ଆନର ଆଦରେ ଅଛୁ ଅନାଇ,
ତୋର ହାସ ବାସ ରସ ଆନ ଲାଗି,
ନିଜ ଗନ୍ତାଘର କାହିଁ,
ନିଜ ଭଣ୍ଡାରଟି ନାହିଁ ।
ରୂପ ଦେଖି ଆଖି ଆନନ୍ଦ-ଅଧୀର,
ସଉରଭଟିକ ଚୋରାଏ ସମୀର,
ଅତର ତୋହର ମୋହେ ଶତପୁର,
କେ ପିନ୍ଧେ ତୋତେ ଛିଣ୍ଡାଇ ?
ହସି ସଭିଙ୍କର ବଦନ ଚାହୁଁ,
ନୀରବ ସ୍ୱରେ କି କଥା ଶୁଣାଉଁ ?
ପରପାଇଁ ପୂରା ବଞ୍ଚିବୁ ବୋଲି
ଜଗତେ ଆଦର ପାଉରେ,
ଜଗତେ ଆଦର ପାଉ ।
ଗୋଟାଯାକ ତୋର କି ସ୍ନେହ ଗଢ଼ା,
କିସ ଘେନି ରଙ୍ଗାଇଲୁ ପାଖୁଡ଼ା ?
ମନଜ୍ଞାନ ହୁଡ଼ା, ପ୍ରେମେ ପ୍ରାଣ ବୁଡ଼ା,
ସୃଷ୍ଟି ରାଇଜ ଛଡ଼ା ରେ !
ଆଗୋ ! ନବୀନ ମୋହନ ଯୌବନ !
ଆଗୋ ସୁରୂପ ସୁନ୍ଦର ଯୌବନ !
ଲଳିତ ବସନ୍ତ ବିଳାସୀ,
ତୁ କି ! ପିକ ପଞ୍ଚମ ଲାଳସୀ ?

କୁଞ୍ଜ କୁଟୀର- ଦୁଆର-ସରାଗୀ
ମୃଦୁଳ ମଳୟ ଉଲ୍ଲାସୀ !
ନୀଳ ଗଗନ କିରଣ ଛଳନେ
ଦିଏ ରୌଦ୍ରଜ୍ୱାଳା ବରଷି,
ତୁମ୍ଭି ତୁ ଘେନୁ ତା' ଆଶିଷ ଆଦରେ
ଆଗୋ ! ଅମ୍ଳାନ ସ୍ନେହ ସୁହାସୀ !

## ଫୁଲତୋଡ଼ା

ସ୍ନେହଗଢ଼ା ତୋରା ତନୁଟି ବହିଣ
ପାଖୁଡ଼ା ପେଡ଼ି ଫିଟାଇ
ଆରେ ଫୁଲତୋଡ଼ା, ସଉରଭ ଭାର
ଭବେ ତୁ ଦେଲୁ ପଠାଇ ।
ମନ ସଉରଭ ମନେ ଗୋପନେ
ସଞ୍ଚି ରଖିଛି ମୁଁ ବିନା କାରଣେ,
ବିଧି ବର ଦାନେ ହେଲା,
ସରିଗଲେ ଦିନ ମିଶିବ ମାଟିରେ
ଛାର ପିଣ୍ଡ ମାଟି ଟେଲା ।
ଗୁଣେ ତୋ' ଭ୍ରମର ଆସୁଛି ଉଡ଼ି,
ମୋ' ଗୁଣ ସରିଙ୍କି ଦିଏ ଘଉଡ଼ି,
ରହେ ଯେ ଘଡ଼ିକେ ଯାଏ ସେ ବାହୁଡ଼ି,
ବହିଣ ମନେ ଯାତନା,
ତୋ' ସରି କାହୁଁ ମୁଁ ହେବି ରେ କୁସୁମ,
ନାଚ ଦେହେ ଉଛମନା ?

## ଛୋଟ ବଡ଼

ଛୋଟର ଆଦର କରିଥାଏ ଛୋଟ,
ବଡ଼ର ଆଦର ବଡ଼,
ଫୁଟିଥିଲା ଫୁଲ ସଙ୍ଗେ ସରି କିବା
ହେବ କେବେ ଫୁଲକଢ଼ ।
ବଡ଼ ହୁଏ ଯଦି ପୂର୍ଣ୍ଣ ଚନ୍ଦ୍ର ପରି
ଆଉ ନ ପାରିବ ବଢ଼ି,
ଫୁଟିଲା ଫୁଲ କ ଫୁଟେ ଆଉ ଥରେ,
ଫୁଟେ ସିନା ଫୁଲକଢ଼ି !
ମୁଁ ତ ଛୋଟ, ମୁଁ ତ କ୍ଷୁଦ୍ର ଅତିଶୟ,
ବଡ଼ କିନ୍ତୁ ଦିନେ ହେବି ମୁଁ ନିଶ୍ଚୟ;
ସାନ ହୁଏ ବଡ଼, ଉଙ୍ଗା ହୁଏ ଦଢ଼,
ପଛ ଲୋକ ହୁଏ ଆଗ,
ସେଥିପାଇଁ ସଦା ସାନ ମଣି ଆପେ
ଲୋଡୁଥିବି ପଛଭାଗ
ହେଲେ ସାନ ନାହିଁ ଲାଜ ଅପମାନ
ଯଦି ମୁଁ ପାରିବି ବଢ଼ି,
ଫୁଟିଲା ଫୁଲ କି ଫୁଟେ ଆଉ ଥରେ,
ଫୁଟେ ପରା ଫୁଲକଢ଼ି !

## ମେଘର ଗର୍ବ

(୧)
ମେଘ ତ ହରିଲା ଜଳଧି-ଜଳ,
ବରଷିଲା ପୁଣି ତାହା ଉପର,
ଏବେ ମେଘ ଗର୍ବେ ହୋଇ ଚଞ୍ଚଳ
କହେ, କରଇ ମୁଁ ପୂର୍ଣ୍ଣ ସାଗର ।
(୨)
ଅଞ୍ଜଳିଏ ପାଣି ଘେନି ସାଗରୁ
କରିପାରେ କିଏ ସାଗର ମରୁ ?
ମେଘ ତୁ ଢାଳି ଦେ ସବୁ ତୋ'ନୀର,
ହ୍ରାସ ବୃଦ୍ଧି ନାହିଁ ପୟୋନିଧିର ।

## "ହସ କାନ୍ଦ"

(୧)
ହସେ ଚାନ୍ଦ କିପାଁ ଆଲୋକେ ସୁନ୍ଦର,
କାନ୍ଦେ କିପାଁ କହ ନୀରବେ ଯାମିନୀ ?
ବରଷାଏ ଅଶ୍ରୁ କିପାଁ ଜଳଧର,
ଝଟକି ଉଠଇ କିପାଁ ସୌଦାମିନୀ ?

( ୨ )

ବେନି ପରସ୍ପରେ ଜଡ଼ିତ ନିୟତ,
ଏକ କାନ୍ଦେ, ଅନ୍ୟ ହସଇ ଉଲ୍ଲସେ;
ଏକ ନୟନରେ ଆନନ୍ଦ ବ୍ୟକତ,
ଆନ ସୂଚେ ଦୁଃଖ ଦୀର୍ଘ ହତାଶ୍ୱାସେ ।

(୩)

କାନ୍ଦେ ଜଣେ ଦୁଃଖେ, ହସଇ ଆରେକ,
ବେନି ପ୍ରାଣ ତେଣୁ ରହି ପାଶେ ପାଶେ
ବାନ୍ଧେ ଜଣେ ହିଆ, ହରାଏ ବିବେକ-
ବୁଦ୍ଧି ଆର ଜଣ ନିତି ଉଷ୍ଣଶ୍ୱାସେ ।

( ୪ )

ବିଧାତାର ଏ କି ଗୂଢ଼ ଅଭିପ୍ରାୟ,
ହସ କାନ୍ଦ ବେନି ପାଖ ପାଖ ରଖି
ପାଖ ପାଖ ଦିବା ବିଭାବରୀ ପ୍ରାୟ
ପ୍ରଭାବ ବେନିର ନିଅନ୍ତି ପରଖି ।

## କୁସୁମ

( ୧ )

କୁସୁମ-କଞ୍ଜ-କାନନେ ମୋହର
ଫୁଟିଛି ଗୋ ଫୁଲ ଫୁଟିଛି,
ବର୍ଣ୍ଣବିଭାରେ ପର୍ଣ୍ଣପଟଳ ଆଖି ମେଲି ହସି ଉଠିଛି;
ଗୁପ୍ତ ହୃଦୟ ସୁପ୍ତ ବେଦନା ଗନ୍ଧେ ମହକି ଉଠୁଛି,
ଆକୁଳ ଅନ୍ତର ଅଶ୍ରୁ-ଶିଶିର-ଧାରା
ଧରାତଳେ ଲୋଟୁଛି ।

( ୨ )

ମତ୍ତ ମଧୁପ ମଧୁ ଆହରଣେ
ଆସୁଅଛି ତେଣୁ ଧାଇଁ ଗୋ,
ବୁଲି ବୁଲିଯାଏ ଚଞ୍ଚଳ ସମୀର
ଆଦରେ ସଧୀରେ ଛୁଇଁଗୋ,
ଘଡ଼ିକ ସକାଶ ସୁବାସ ଚିହ୍ନଟ,
ତେଣୁ ଏଡ଼େ ତୋରା ଫୁଲଟି,
ଦେବତା ଶୀର୍ଷେ ଆସନ ଲଭେ ଯେ,
କାହିଁ ତାର ସମତୁଲଟି ?

(୩)

କ୍ଷୁଦ୍ର ସୁଦୀନ ଜୀବନେ ତବ ହେ
ନାହିଁ ଅପମାନ ଲାଜ,
କ୍ଷୁଦ୍ର କୁସୁମ ସମ ଯଦି ତବ
ଅଛି ଗୁଣ ଶୋଭା ସାଜ,
କ୍ଷୁଦ୍ର କୁଟୀରେ ବିମଳ ପ୍ରତିଭା
ଫୁଟି ତ ଉଠିବ ହେଲେ,
ଲାଜ ଅପମାନ ଘୁଞ୍ଚିବ
ଦେବତା-ଆସନ ଲଭିବାବେଳେ ।
ଆସେ ସିନା ମଧୁକର ଖୋଜି ପୁଷ୍ପରାଶି,
ଉଦେ ସିନା ଶଶଧର ଅନ୍ଧକାର ନାଶି,
ଗାଏ ସିନା ପରଭୃତ,
ମୁକୁଳ ଧରିଲେ ଚୂତ,
ଯେ ଯାହାର ସେ ତାହାର, ନାହିଁ ଏଥି ଅବିଚାର,
ମୋ' ମାନସ ଲୋଡ଼େ
ଯାହା ନ ଦିଏ ସଂସାର,
ସେଥିପାଇଁ କିପାଁ ମୁହିଁ କାନ୍ଦେ ଅନିବାର ?
ଖୋଜି ମୁଁ ଆଣିବି ତାହା, ନିଜେ କରି ନିଜ ରାହା,
ମୁକ୍ତ ସକଳଙ୍କ ହେତୁ ଅମୃତ-ଭଣ୍ଡାର,
ନିଜେ ନ ଆଣିଲେ କେବେ ନ ଦେବ ସଂସାର ।

## ସ୍ୱପ୍ନ

ପ୍ରଥମ ଜୀବନେ ମେଲିଲି ଲୋଚନ,
ଦେଖିଲି ଯେ ଶୋଭା ବଳିଲା ବଚନ ।
ସମସ୍ତ ଜଗତ ପୁଣ୍ୟ ପ୍ରେମେ ଭରା,
ନାହିଁ କାହିଁ ଦୁଃଖ ଶୋକ ମୃତ୍ୟୁ ଜରା ।
ସକଳ ସୁନ୍ଦର ମଧୁର ରଚନା,
କରେ ଚରାଚର ବିଭୁ ଅରଚନା ।
ବିସ୍ମୟେ ମଗନ ଦେଖିଲି ଉଷତେ,
ସ୍ୱରଗ ଶୋଭଇ ଅବନୀରେ ସତେ ।

ଆଜି ନେତ୍ର ମେଲି ଦେଖୁଛି ସଂସାର,
ଚାରିଆଡ଼େ ମୃତ୍ୟୁ ଶୋକ ହାହାକାର ।
ଦେଖୁଥିଲି କିବା ଜାଗ୍ରତ ସ୍ୱପନ,
ଅଜ୍ଞାନ ମୁଁ ତେବେ ମତାଇଣ ମନ ।
ପ୍ରେମ ସଜଫୁଲ ସୁବାସରେ ଭରା,
ସ୍ୱାର୍ଥକୀଟ କିନ୍ତୁ ନଷ୍ଟ କରେ ତ୍ୱରା ।
ସୁବର୍ଣ୍ଣ ସମାନ କରେ ଝକ ଝକ
ନୀଳ ନୀରଦରେ ଚପଳା ଚମକ ।
ମୁକ୍ତା ନୁହେ କିନ୍ତୁ ଶିଶିର କଣିକା,
ଚଉଦିଗେ ଦେଖ ନର ଅହମିକା ।
ଭାବିଥିଲି ଯାହା ଦେବତ୍ୱ ମହତ୍ତ୍ୱ,
ବୁଝିଲି ବୁଝିଲି ଆଜି ସବୁ ତତ୍ତ୍ୱ ।
ଉପରେ ସୁନ୍ଦର ମହାକାଳ ଫଳ,
ବୁଝିଲି ଆଜି ମୁଁ ଢାଳି ନେତ୍ରଜଳ ।
ଆହା କାହିଁ ସେହି ଶାନ୍ତିର ସ୍ୱପନ
କ୍ଷଣ ପରେ ଆଜି ହୋଇଲା ଭଞ୍ଜନ !

## ଆଶା

(୧)

ଦେଖିଥିଲି ପରା ସ୍ୱପନେ ତା'ମୁଖ,
ଅଚେତ ଅବଶ, ତଥାପି କି ସୁଖ !
ନଥିଲା ତ ଜ୍ଞାନ, ନ ଥିଲା ଚେତନା,
ଅନ୍ତରେ ତ ପୂରିଥିଲା ମୋ' କଳ୍ପନା ।
ମୁଦ୍ରିତ ନୟନେ ଛାଡ଼ି ଭବଦେଶ
ବିହରୁଥିଲି କି ଅନ୍ତର ପ୍ରଦେଶ,
ଚାରିଆଡ଼େ ପରା ଫୁଟିଥିଲା ଫୁଲ,
କରିଥିଲା ଚାନ୍ଦ ନଭ କି ଉଜ୍ଜ୍ୱଳ !
ଝୁରୁ ଝୁରୁ ପରା ବହୁଥିଲା ବାତ,
ପ୍ରାଣକୁ ଆକୁଳ ସେ କରୁଥିଲା ତ ।
ଏକ ସଙ୍ଗେ ପରା ଲଳିତ ତାନରେ
ଶତ ଶତ ବୀଣା ମୋହନ ଲହରେ
ବାଜି ଉଠୁଥିଲେ ଗମ୍ଭୀରେ ମଧୁରେ,
ଶୁଣୁଥିଲି ପରା ରହି ଦୂରେ ଦୂରେ;
ଫୁଲ କୁଞ୍ଜବନେ ଚାନ୍ଦିନୀ ନିଶାରେ
ବୁଲୁଥିଲି ପରା ପ୍ରେମ ପିପାସାରେ ।

(୨)

ସ୍ୱପନେ ଅନାଇଁ ଦେଖିଲି କା' ମୁଖ,
ଅଚେତ ଅବଶ, ତଥାପି କି ସୁଖ !
ଶତ ଶତ ଫୁଲ ଫୁଟି ଉଠିଲା କି,
ସହସା କୋକିଳ କୁହୁ ଡାକିଲା କି !
ସହସା ବସନ୍ତ ଆସିଲା କି ମାଡ଼ି,
ଶୀତ ଜରା ସତେ ଅନ୍ତୁ ଗଲା ଛାଡ଼ି !
ଫୁଲ ପରିମଳ ବିଞ୍ଚିଦେଲା କି ସେ,
ଚହଟିଗଲା ତା' ବାତେ ଦିଶେ ଦିଶେ !
ମିଶିଲା ଆସି ତା' ପ୍ରାଣରେ ମୋହରି
ଅନ୍ଧ ଅଜ୍ଞନତା ଦକା ଦୂର କରି ।
ବଳଦ ଔଷଧି ସମ କଳେବରେ
ଦେଲା ନବବଳ ଧୃତି ହୃଦୟରେ ।
ମାନସ-ନୟନେ ଅନାଇ ମୁଁ ଦେଖେ,
ଦେଖି ବାରମ୍ବାର ତଥାପି ନିରେଖେ,
କି ସୁନ୍ଦର ରୂପ କି ସୁନ୍ଦର ଶିରୀ,
ସତେ କି ସେ ଦେବବାଳା ଅଶରୀରୀ !
ସ୍ୱରଗୁଁ ଓହ୍ଲାଇ ଆସିଛି କି ସେହି,
ନବ ପ୍ରେମବାର୍ତ୍ତା ନରଲୋକେ ନେଇ ?
ଶାନ୍ତି, କ୍ଷେମ, ଦୟା, ପବିତ୍ରତା, ସ୍ନେହ,
ଏ ଆଦି ଘେନି କି ଗଠିତ ତା ଦେହ ?
ଶତ ଶତ ଫୁଲ ମେଦୁର, ମଞ୍ଜୁଳ,
ଅପୂର୍ବ କୌଶଳେ ଏକାଧାରେ ଠୁଳ,
ମଧୁର, ଲଳିତ ସୁଷମ-ବିଭବେ
ଗଠିତ, କର୍କଶ ନାହିଁ କାହିଁ ଲବେ ।

(୩)

ସ୍ୱପନେ ଅନାଇଁ ଦେଖିଲି ସେ ମୁଖ,
ଅଚେତ ଅବଶ, ତଥାପି କି ସୁଖ !
କି ମୋହିନୀ ଶକ୍ତି ପୂର୍ଣ୍ଣ ପ୍ରତି ଅଙ୍ଗ,
ବହିଯାଉଥିଲା ସୌନ୍ଦର୍ଯ୍ୟ ତରଙ୍ଗ ।

ସେ ତରଙ୍ଗେ ଆତ୍ମା ଭାସିଗଲା ପରା,
ଏକାବେଳେ ଛାଡ଼ିଗଲି ମର୍ତ୍ତ୍ୟ ଧରା ।
କାହିଁ ମୁଁ ବୁଲିଲି ନୟନ ପଲକେ
ଶତ ଶତ ବିଶ୍ୱେ ଏକା ନିମିଷକେ ।
ନିଜକୁ ପାସୋରି କରିଲି ମୁଁ ପ୍ରେମ,
ଲଭିଲି କି ପ୍ରାଣେ ଶାନ୍ତି ପୁଣ୍ୟ କ୍ଷେମ !
କୋଟି ଚନ୍ଦ୍ର ସୂର୍ଯ୍ୟ ଆଲୋକମଣ୍ଡିତା,
କୋଟି ଫୁଲ ପରିମଳ ସୁବାସିତା,
କୋମଳ, ଲଳିତ, ରୁଚିର, ମଧୁର,
ଶାନ୍ତ ସୌମ୍ୟ ଦୀପ୍ତ କରୁଣ ବିଧୁର
ଦୂରେ ଦୂରେ ରହି ଦେଖିଲି ତା' ମୁଖ,
ଅବଶ ବିମୁଗ୍‌ଧ, ତଥାପି କି ସୁଖ !
ସହସା ଚାହିଁଲା ବଦନ ଉଠାଇ,
ସହସା ହୃଦୟ ଦେଲା କି ଫିଟାଇ ?
ଭୂଇଁ ଚାହିଁ ମୁଁତ ରହିଲି ଅନାଇଁ,
କି କହିବି କଥା ମୁଖେ ଆସେ ନାହିଁ ।
ଅନ୍ତରେ ଆକୁଳ ନ ଫୁଟଇ ବାଣୀ,
ଜଡ଼ିତ ସରମେ, ନେତ୍ରୁ ବହେ ପାଣି ।
ତଥାପି ତା' ପ୍ରାଣେ ପ୍ରାଣ ଗଲା ମିଶି,
କି ମୋହନ ମନ୍ତ୍ରେ ନେଲା ଆକରଷି;
ବହୁକାଳୁ ଯେହ୍ନେ ଥିଲା ପରିଚୟ,
ହୃଦୟ ସଙ୍ଗେ କି ମିଶିଲା ହୃଦୟ !
ଦେହ ଛାଡ଼ି ଆତ୍ମା ମିଶିଲା ତା' ସଙ୍ଗେ,
ବିଜୁଳି ମିଶିଲା ଅବା ମେଘ ଅଙ୍ଗେ,
ତଟିନୀ ମିଶଇ ଯଥା ପାରାବାରେ,
ଲୋତକ ମିଶଇ ଯଥା ହାହାକାରେ,
ବୀଣାତାନ ସତେ ମିଶିଲା ପବନେ,
ମିଶିଲି ତା ସଙ୍ଗେ ହୃଦୟେ ଗୋପନେ ।
କ୍ଷଣକେ ସହସା ଏ କି ମୋ' କରଣି !
କାହୁଁ ଆସିଲା ଏ ହୃଦୟଚୋରଣୀ ?
ନ କହୁଣୁ ମୋର ହରିନେଲା ମନ,
ମନା କରିବାକୁ ନ ଫୁଟେ ବଚନ ।
କେଉଁ ଦୂରଦେଶେ ଥିଲା ତ ସୁନ୍ଦରୀ,
କାହୁଁ ଆସିଲା ସେ ପରୀ ବେଶ ଧରି !
ଜାଣି ମୁଁ ପାରିଲି ନାହିଁ ତତକ୍ଷଣେ
ମୋହିନୀ ମନ୍ତର ମାୟା ସେ କି ଜାଣେ !
ସତେ କି ମୋହିନୀ ଲଗାଇ ଲୋଚନେ
ପ୍ରେମରାଶି ହୃଦେ ଢାଳିଲା ବଦନେ ।
ହୃଦେ ଆଙ୍କିଦେଲା ତା' ଶୋଭା ବିଚିତ୍ର,
ହୃଦୟ ମନ୍ଦିର କଲା କି ପବିତ୍ର !
ସହସା ଅନ୍ଧାର ବିଜୁଳି ଆଲୋକେ
ଘୁଞ୍ଚିଗଲା ପରା ନୟନ ପଲକେ !
କ୍ଷଣପ୍ରଭା ନୁହେ, ସ୍ଥିର ସୌଦାମିନୀ,
ତା' ଆଲୋକ ଶତ ଦୀପାଲୋକ ଜିଣି ।
ହୃଦୟର ମରୁପ୍ରାନ୍ତର ଉରସେ
ପ୍ରେମମନ୍ଦାକିନୀ ବହିଲା ହରଷେ ।
ଫୁଟିଲା କି ଫୁଲ ଶୁଷ୍କେ ତରୁ ଅଙ୍ଗେ,
ମାନସ-କାନନ ଶୋଭିଲା ସୁରଙ୍ଗେ ।
ସବୁ ସୁଖ ମୋର ହୋଇଲା ସମ୍ପୂର୍ଣ୍ଣ,
ଆନନ୍ଦେ ଆବେଗେ ହୃଦ ହେଲା ପୂର୍ଣ୍ଣ ।

(୪)

ସ୍ୱପନେ ଅନାଇଁ ଦେଖିଲି ସେ ମୁଖ,
ଅଚେତ ଅବଶ, ତଥାପି କି ସୁଖ !
ଥରି ତ ଉଠିଲି ପ୍ରେମ ଆବେଶରେ,
ମନେ ହେଲା ଭୁଜବଲ୍ଲରୀ ପାଶରେ
ବାନ୍ଧନ୍ତି ଆଣି ସେ ଅପୂର୍ବ ମୂରତି,
ଆଣନ୍ତି କ୍ଷଣକେ ହୃଦୟର କତି,
ନିବିଡ଼ ଚୁମ୍ବନେ ଅଧର ପରଶି
ପ୍ରେମସୁଧା ମୋର ଦିଅନ୍ତି ବରଷି;
ନୟନେ ନୟନ ସ୍ଥାପିଅନିମେଷେ
ଚାହୁଁଥାନ୍ତି ମୁଖପଲକେ ଆବେଶେ ।
ମନକଥା ମନେ ରହିଲା ମୋହର,
ଫିଟାଇ ପାରିଲି ନାହିଁ ଓଷ୍ଠାଧର ।
ମାନସ-ନୟନେ ଅନାଇ ମୁଁ ଦେଖେଁ,
ଅଦୃଶ୍ୟ ବାସନା, ଆକୁଳେ ନିରେଖେଁ ।
ଦେଖୁଥିଲି ଚାହିଁ ସ୍ୱପନରେ ପରା,

ସହସା ଉଭେଇଗଲା ସେ ଅପ୍‌ସରା;
ସହସା ଅନ୍ଧାର ଆସିଲା କି ମାଡ଼ି,
ସହସା ଅଙ୍ଗୁକି ଜୀବ ଗଲା ଛାଡ଼ି!
ଚାହିଁଲି ତଳକୁ, ଚାହିଁଲି ଉପରେ,
ଦେଖିଲି ଏ ବିଶ୍ୱ ପୂର୍ଣ୍ଣ ତା' ରୂପରେ।
ଦେଖିଲି ଆକାଶ-ନୀଳିମା-ବିସ୍ତାରେ,
ଦେଖିଲି ତପନ ଚନ୍ଦ୍ର ତାରକାରେ,
ଦେଖିଲି ଅମ୍ବୁଧି ଅମ୍ବୁରାଶି ସଙ୍ଗେ
ତା' ରୂପ ମିଶିଛି ତରଙ୍ଗେ ତରଙ୍ଗେ।
ଦେଖିଲି କୁସୁମ-ହସିତ ଆନନେ
ମୃଦୁ ମୃଦୁ ହସେ, ବାସିତ ପବନେ
ତା' ଦେହ ସୁବାସ ରହିଅଛି ଭରି,
ପ୍ରକୃତି ଶରୀରେ ତା' ରୂପଲହରୀ
ଖେଳୁଛି, ବୁଲୁଛି, ଯାଉଅଛି ଭାସି,
ଦେଖିଲି, ଭାବିଲି ଚିନ୍ତା ଦଳା ନାଶି।

(୫)

ସ୍ୱପନେ ଅନାଇଁ ଦେଖିଲି ତା' ଶିରୀ
ବିଶ୍ୱ ସ୍ତରେ ସ୍ତରେ ପଡୁଅଛି ଝରି।
ଯେଉଁଆଡ଼େ ଚାହେଁ ସେ ତ ବିରାଜିତ,
ଦେଖି ଦେଖି ପ୍ରାଣ ହୋଇଲା ମୋହିତ।
କିଏ ସେ ସୁନ୍ଦରୀ ସେ ଅପରିଚିତ,
ଜାଣିବାଲାଗି ମୋ' ହୃଦ ଉତ୍କଣ୍ଠିତ।
ଭୂଇଁରେ ଲୋଟି ମୋ ନେତ୍ରୁ ବହେ ପାଣି,
ସହସା ଆକାଶେ ହେଲା ଦୈବବାଣୀ:
''ଆଶା'' ନାମ ତାର, ସେ ଆଶାସୁନ୍ଦରୀ,
ମାନବ ଅନ୍ତରେରହିଛି ଅମରୀ।''
'ଆଶା' 'ଆଶା' ବୋଲି କଲି ମୁଁ ଆବୃତ୍ତି,
ନାଶିଲି ବାସନା, ଶିଖିଲି ନିବୃତ୍ତି।
ଆଶା ଆଶା ସେ ତ ରହିଛି ଜୀବିତା,
ମୋ'ହୃଦମନ୍ଦିରେ ନିତି ବିରାଜିତା।
ନିତି ପ୍ରେମଫୁଲେ ପୂଜା କରେ ପଦ,
ଏ ଜଗତେ ଏକା ସେ ମୋର ସମ୍ପଦ।
କି ଆଣିଛି ସଙ୍ଗେ କି ନେବି ମୁଁ ବହି,
ତଥାପି ହୃଦୟେ ଅଛି ଆଶା ରହି।
ମୁଁ ମର୍ତ୍ତ୍ୟମାନବ, ଆଗପଛ ମୋର
କିଛି ଜଣାନାହିଁ, ଅନ୍ଧକାର ଘୋର;
ତଥାପି ଆଶା ମୋ' ରହିଛି ଜୀବିତ,
କର୍ତ୍ତବ୍ୟେ ମୋ' ପ୍ରାଣ କରି ଉତ୍ତେଜିତ।
ଆଶା ସେ ତ ମୋର ହୃଦୟର ମାଳି,
ଆଶା ସେ ତ ମୋର ଜୀବନ ସଙ୍ଖାଳି;
କରମେ, ବଚନେ, ଜୀବନେ ମୋହର
ଆଶାକୁ ନେଇ ମୁଁ କରୁଅଛି ଘର।
ତା' ବିନା ଶୂନ୍ୟ ମୋ' ସମସ୍ତ ଜୀବନ,
ସେ ତ ଯେହ୍ନେ ଦେହେ ନିଃଶ୍ୱାସ ପବନ।
ଯହିଁ ଯାଏ ତହିଁ ଆଶା ଯାଏ ସଙ୍ଗେ,
ଛାୟା ଯଥା ନିତି ଲାଗିଥାଏ ଅଙ୍ଗେ।
ଆଶାକୁ ଧରି ମୁଁ ପରମ ବିଶ୍ୱାସେ
କାଳ କାଟୁଅଛି ଜଗତେ ଉଲ୍ଲାସେ।
ଆଶା ନୁହେ କ୍ଷୁଦ୍ର ମର୍ତ୍ତ୍ୟର ମାନବୀ,
ଆଶା ଦେବୀ, ଆଶା ପୂତ ପ୍ରେମଛବି।
ତା' ରୂପ ସୁନ୍ଦର ଆତ୍ମାରେ ଜଡ଼ିତ,
ହୃଦ ଅନ୍ତସ୍ଥଳେ ସେ ପରା ନିହିତ।
ଆଶା ମହା ଶ୍ରେଷ୍ଠ ବିଧାତାର ଦାନ,
ଆଶା ପୂର୍ଣ୍ଣ କରେ ସିନା ପ୍ରେମଜ୍ଞାନ।
ସର୍ବଶ୍ରେଷ୍ଠ ସୁଖ ଆଶା ତ ଜୀବନେ,
ଆଶା ବିନା ପ୍ରାଣ ବଞ୍ଚିବ କି କ୍ଷଣେ?
ସେ ଆଶା ସୁନ୍ଦର ଚରଣ କମଳ
ମର୍ତ୍ତ୍ୟ ନିକେତନେ ମୋ' ପ୍ରିୟ ସମ୍ବଳ।
ଆଶା ସେ ତ ମୋର ହୃଦୟର ରାଣୀ,
ବୃଥା ମୋ' ବର୍ଣ୍ଣନା, ପରାଜିତ ବାଣୀ।
ଦର୍ଶନେ ଆଲୋକ, ଶ୍ରବଣେ ସଙ୍ଗୀତ,
ଶୋକରେ ସାନ୍ତ୍ୱନା, ପ୍ରାଣପ୍ରିୟ ମିତ।
ଆଶା ସେ ତ ମୋର ପରାଣର ସାଥୀ,
ତାକୁ ଘେନି ମୁଁ ତ ବଞ୍ଚେ ଦିନରାତି।
ସ୍ୱପନରେ ଦେଖିଅଛି ଆଶାମୁଖ,
ସୁଖ କାହିଁ ଭବେ, ସେହି ତ ମୋ' ସୁଖ।

ସୁଖ ସୁଖ ବୋଲି ଖୋଜି ଲୋଡ଼ି ବୁଲେ,
ସୁଖ ନାହିଁ, ସୁଖ ଅଛି ଆଶା ତୁଲେ ।
ଆଶାରେ ବାଜୁଛି ନିତି ମର୍ମବୀଣା,
ଆଶା ପଦପ୍ରାନ୍ତେ ନିତି ମୁହିଁ କିଣା ।

## ଅଦ୍ଭୁତ

ଦୂରେ ସହକାର କୁଞ୍ଜେ ଶୁଣି ପିକତାନ
ମୋ' ମନକୋକିଳ କିମ୍ପା ଗାଇଉଠେ ଗାନ ?
କାହିଁ ସେ କୋକିଳ, ମାତ୍ର ଶୁଭେ କୁହୁତାନ,
ସେ କୁହୁତାନ କି ମୋର ଟାଣିନିଏ ପ୍ରାଣ !
ଶ୍ରବଣେ ବାଜଇ ସ୍ୱର
ଭେଦି ହୃଦ ଅଭ୍ୟନ୍ତର,
ଉଚ୍ଛ୍ୱସି ଉଠଇ ଧୀରେ ଗୋପନେ, ସରମେ,
କରୁଣ ସଙ୍ଗୀତଧାରା ମରମେ ମରମେ ।
କାହିଁ ସେ କାନନକୁଞ୍ଜେ ଫୁଟିଛି ସୁମନ,
ସୁଧା ପରିମଳଧାରା ବହାଇ ପବନ,
ପରଶି ହରଇ କିମ୍ପା ଅନ୍ତର ସୁରଭି ?
କ୍ଷଣକେ ମୋହିତ ଚିର ସ୍ନେହ ଯାଏ ଦ୍ରବି ।
ବୁଝି ମୁଁ ବୁଝେ ତ ନାହିଁ,
ଘଟେ ଏହା କାହିଁପାଇଁ,
ବହିଯାଏ ନଦୀ ଯଥା ସାଗର ସଦନେ,
ସେ ନଦୀ ସଙ୍ଗେ କି ବହେ ପ୍ରେମନଦୀ ମନେ ?
ସେ କେଉଁ ଅମୃତାର୍ଣ୍ଣବେ ମିଶିବା କାରଣ
ଅନନ୍ତ ପ୍ରେମର ଧାରା ବହେ ପ୍ରତିକ୍ଷଣ,
ଏଥୁଁ ବଳି କି ଅଦ୍ଭୁତ ଅଛି କିଛି ଭବେ ?
ବୁଝି ମୁଁ ନିଜକୁ ଯାହା ବୁଝିନାହିଁ ଲଭେ ।
ଦେଖି ଯାହା ନିତି ଭୁଲେ,
ମୋ' ମୂରତି ଖୋଜିବୁଲେ
ବିମ୍ବିତ କା' ହୃଦସରେ ଚନ୍ଦ୍ରବିମ୍ବ ସରି,
କେ ଅଛି ଧରାରେ ମୋର ଗୁଣ ପ୍ରାଣେ ଧରି ?
କିପାଇଁ କମଳ ଫୁଟେ ପଙ୍କିଳ କାସାରେ,
କିପାଇଁ ଶୀତଳ ସୁଧା ଜଡ଼ ଇନ୍ଦୁ ଢାଳେ ?
କିପାଇଁ କଣ୍ଟକ ବନେ ଫୁଟେ କିଆଫୁଲ,
ଛାର ଶାମୁକା ଗରଭେ ମୁକୁତା ମଞ୍ଜୁଳ ?
ଲବଣାମ୍ବୁ ସିନ୍ଧୁଜଳ—
ତଳେ ରତନ ଉଜ୍ଜ୍ୱଳ,
କିପାଇଁ ଖଦ୍ୟୋତ ଅଙ୍ଗେ ଆଲୋକ ଝଲକ,
କିପାଇଁ ଖଣିର ତମ ଗରଭେ ହୀରକ ?
ବିଭୁ ହେ ବିଚିତ୍ର ତବ ଏ ଅଦ୍ଭୁତ ଲୀଳା
ହୀନ ମହତ ବେନିର ମିଳନ ସାଧିଲା ;
ଜଡ଼େ ଆତ୍ମା ସମାବେଶ,
ନରହୃଦେ ପରମେଶ,
ମାନବ-ମାନସେ କରି ଦେବତ୍ୱ ବିକାଶ
କ୍ଷୁଦ୍ର ନୀଚତାର ଯାହା ସାଧିଲା ବିନାଶ ।
ଏ ଆତ୍ମାରେ ଥାଉ ତବ ସେ ପ୍ରେମଅମୃତ,
ନୀଚତ୍ୱ କ୍ଷୁଦ୍ରତ୍ୱ ନାଶି କରୁ ମୋତେ ପୂତ ।

## ଆକର

ଅନ୍ଧାରେ ଆଲୋକେ ଗୋଧୂଳି ମିଳନ
ହୁଏ କି ମୋ'ହୃଦେ ନିତି,
ମୋ' ହୃଦେ ଉଦେ କି ସଦା ଦିବାକର
ହୁଅଇ ଦିବସ ରାତି ?
ପୂର୍ଣ୍ଣିମାର ଚାନ୍ଦ ଉଦେ କି ସେ ନଭେ,
ଦେଖାଦିଏ ଅମାନିଶା,
କ୍ଷୁଦ୍ର ତାରାଶତ ଫୁଟେ କି ଗରବେ,
ଉଜ୍ଜ୍ୱଳେ ମଧୁର ମିଶା ?
ଦେଖେଁ ତ ଅନନ୍ତ ମୋ' ହୃଦୟରାଜ୍ୟ
ସାନ୍ତ ଘେନି କିପାଁ ଘେରା,
ଏ ସ୍ୱାଧୀନ ଜୀବ ନିବସେ କିପାଇଁ
ମର କଳେବର-କାରା ?
ଅସୀମେ ସସୀମେ ଏ ଶୁଭ ମିଳନ
ଅନନ୍ତରେ ସାନ୍ତ ମିଶା,
ଜଡ଼ ଆତ୍ମା ବେନି ମିଳନେ ମଧୁରେ
ମିଳିଛନ୍ତି ଦିବାନିଶା

ଚିରପରାଧୀନ ଥାଇ କିପାଁ କହ
ଭ୍ରମୁଥାଏ ଦେଶ ଦେଶ,
ଅନନ୍ତ ପଥରେ ଅନନ୍ତ ଭ୍ରମଣେ
ନାହିଁ କିପାଁ ଶ୍ରାନ୍ତି ଲେଶ ?
ମୁଁ ମୋହର କିପାଁ ଖୋଜି ବୁଲୁଥାଏ
ମୋ' ସୌନ୍ଦର୍ଯ୍ୟ ପ୍ରତି ଅନ୍ଧ,
ବିଶ୍ୱସାରା କିପାଁ ଖୋଜେ ମୋର ସରି
ଲଭିଲେ ପରମାନନ୍ଦ—
ଜନମେ କିପାଇଁ ମୋ' ହୃଦ ଭିତରେ ?
ମୁଁ ତ ବୁଝି ପାରେ ନାହିଁ,
ନିଜର ନିଜତ୍ୱ ଭୁଲି କିପାଁ ଅନ୍ୟେ
ଆନତ୍ୱକୁ ଥାଏ ଚାହିଁ ?
ନିଜ ଶୋଭା ଶିରୀ ନ ଦେଖି ନୟନ
ମୁଗ୍ଧ ଦେଖି ଆନ ଶୋଭା,
ଆନର ସୌନ୍ଦର୍ଯ୍ୟ- ପିପାସୀ କିପାଁ ମୁଁ,
ଆନ ମୋର ମନଲୋଭା ?
ନିଜର ଭିତରେ ଅଛି ଯେ ମାଧୁରୀ
ନ ବୁଝେ ତାହାରି ସ୍ୱାଦ,
ଆନର ଲଳିତ ମାଧୁରୀ ପରାଣେ
ଜନମାଏ ମହାହ୍ଲାଦ।
ବୁଝି ପାରେନାହିଁ ଉଚ୍ଚତ୍ୱ ନିଜର
ଆନର ଦେବତ୍ୱ ଦେଖି,
ଆନର ମଧୁର ମୋହନ ମୂରତି
ହୃଦୟେ ଦିଏଁ ମୁଁ ଲେଖି।
ନିଜ ଅଙ୍ଗେ ଦେଖେଁ ଘୋର ମଳିନତା,
ଆନ ଅଙ୍ଗେ ଜ୍ୟୋତିରାଶି,
ନିଜ ମୁଖେ ଦେଖେଁ ଅମା ଅନ୍ଧକାର,
ଆନ ମୁଖେ ପୂର୍ଣ୍ଣଶଶୀ।
ନିଜେ ସତେ ଯେହ୍ନେ ପତ୍ରହୀନ ତରୁ,
ଆନ ଦରଫୁଟା ଫୁଲ,
ଆନର ମହତ୍ତ୍ୱ ଦେଖି ଏ ହୃଦୟ
ହୁଏ ନିତି ଶ୍ରଦ୍ଧାକୁଳ।
ଗରବିତ ନୋହି ନିଜ ଗଉରବେ
ପ୍ରତିଭା ଆନର ଶୁଣି
ନିଜଠାରୁ ବଡ଼ କରିଣ ତାହାକୁ
ହେଉଥାଏଁ ଗୁଣ ଶୁଣି।
ନିଜ ମୁଖ ଯଦି ଦେଖନ୍ତି ନୟନେ
ଦରପଣ, ଜଳ ବିନା,
ନିଜର ନିଜତ୍ୱ ଯାଇଥାନ୍ତା ହଜି,
ନିଜେ ମୁଁ ନୁହନ୍ତି ଚିହ୍ନା।
ବିଶ୍ୱର ଅସୀମ ବନପଥେ ସତେ
ହୋଇଥାନ୍ତି ଦିଶାହରା,
ସେଥିପାଇଁ ପ୍ରଭୁ କଲେ କି ଏପରି
ଆନକୁ ଦେଖାଇ ପରା !
ନିଜକୁ ଲୁଚାଇ ନିଜ ମୂରତିଟି
ଆନରେ ଦେଖେଁ ମୁଁ ଯେବେ,
ସ୍ୱତଃ ସ୍ନେହାଦର ଅର୍ଚ୍ଚନା ଆକାଙ୍କ୍ଷା
ପରାଣରେ ଜାଗେ ତେବେ।

## ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ

(୧)

ତବ ରୂପ ରାଜେ ଭୁବନେ ଭୁବନେ,
ଦେଖି ସୁଦ୍ଧା କିପାଁ ନ ଦେଖେଁ ନୟନେ ?
କିପାଁ ଫିଟୁନାହିଁ ଅନ୍ଧ ଲୋଚନ
ଦେଖିବାକୁ ତବ ରୂପ ବିମୋହନ ?
ନୀଳାଚଳ ମୂଳେ, ନୀଳ ନଭୋତଳେ,
ଶାନ୍ତି ସରସୀର ସୁନୀଳ ସଲିଳେ,
କଳ-ନିନାଦିନୀ ସୁନୀଳା ତଟିନୀ
କଲ୍ଲୋଳିନୀ ଜଳ-ଦରପଣ-କୋଳେ
ରାଜେ ତ ତୁମ୍ଭର ମୂରତି ସୁନ୍ଦର,
ଦେଖି ସୁଦ୍ଧା କିପାଁ ନଦେଖେ ନୟନ ?

(୨)

ତବ ମୁଖଜ୍ୟୋତି ବିକାଶେ ଅରୁଣ
ପ୍ରସାରି ଭୁବନେ ବିମଳ କିରଣ,
ତବ ସୃଷ୍ଟି ତାତ, ଏଡ଼େ ସେ ସୁନ୍ଦର !
ହୋଇଥିବ ତୁମ୍ଭେ କିତେକେ ଭାସ୍ୱର !
ସେ ବିଶାଳ ବିଭା, ହେମୋଜ୍ଜ୍ୱଳ ଆଭା,
ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ ?

(୩)

ତିମିରବସନା ଶାନ୍ତ ବିଭାବରୀ
ତବ ଶାନ୍ତିଭାବ ଗମ୍ଭୀରେ ପ୍ରଚାରି
ହସଇ ମଧୁରେ ତାରାହାରଚ୍ଛଳେ,
ତବ ନେତ୍ରେ କିବା ସେ ଜ୍ୟୋତି ଉଜ୍ଜ୍ୱଳେ !
ମଧୁରେ ଉଜ୍ଜ୍ୱଳେ ଶାନ୍ତ ସମାବେଶ,
ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ ?

(୪)

ଦିଗନ୍ତପ୍ରସାର ଅନନ୍ତ ଅମ୍ବର,
ତା'କୋଳ ଉଜ୍ଜ୍ୱଳେ ପୂର୍ଣ୍ଣ ଶଶଧର,
କି ଶୋଭା ମୋହନ ! କି ସୁଧାବର୍ଷଣ,
ଥରେ ଦେଖିଲେ ତ ନ ପୂରେ ଦର୍ଶନ,
ସେହି କି ତୁମ୍ଭର ପୂର୍ଣ୍ଣ ମୁଖଛବି,
(ଆହା) ଦେଖି ସୁଦ୍ଧା କିପାଁ ନଦେଖେ ନୟନ ?

(୫)

ଧୀରେ ଧୀରେ ଯେବେ ମାରୁତ ମୃଦୁଳ
କାନନେ ସଞ୍ଚରେ, ପୁଷ୍ପଗନ୍ଧ ହରେ,
ପୁଲକେ ଚଞ୍ଚଳି ପରାଣ ଆକୁଳି,
ଦେହ ସୁବାସ କି ଥାଏ ତହିଁ ଭରି ?
(ଆହା) ଦେଖି ସୁଦ୍ଧା କିପାଁ ନଦେଖେ ନୟନ ?

(୬)

ବିଜନ ଗହନେ, ପୁଷ୍ପକୁଞ୍ଜବନେ,
ଶ୍ୟାମଳ ପ୍ରାନ୍ତରେ, ସରସୀ ସଦନେ
ହସେ ଯେଉଁ ଚାରୁ ସୁରଭି ସୁମନ,
ସେହି କି ତୁମ୍ଭର ହାସ ଅନୁପମ ?
କି ପରାଣହାରୀ ! କି ଶୋଭା ମାଧୁରୀ !
(ନିତି) ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ ?

(୭)

ସୂର୍ଯ୍ୟ ପ୍ରତିମୁଖେ ଝଲସେ ଭାସ୍ୱର
ଚିତ୍ରଗାତ୍ର ମେଘଧନୁ ମନୋହର,
ଭାବେ ଶଇଶବେଯାହା ଦେଖି ଚିତ୍ତେ
ସ୍ୱରଗ ସୋପାନ ସେହି କି ମରତେ ?
ଛାୟାମାତ୍ର ଯଦିଏଡ଼େ ସେ ସୁନ୍ଦର,
ହୋଇଥବ ତୁମ୍ଭେ କି ସୁନ୍ଦରତର !
ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ ?

(୮)

କି ଅସୀମ ଜ୍ଞାନେ ଜଗତ ରଚନା
କରିଅଛ ପ୍ରଭୁ ତୁମ୍ଭଙ୍କୁ ତା' ଜଣା,
କି କୌଶଳ-କଳା ସ୍ୱଭାବେ ପୂରିତ,
ଭାବିଲେ ଅବଶ ବିମୁଗ୍ଧ ଏ ଚିତ୍ତ,
ଛାଡ଼ି ବିଜ୍ଞାନର ନୀରସ ମନ୍ଦିର
ଉର୍ଦ୍ଧ୍ୱେ ଉଠେ ଆତ୍ମା ଆନନ୍ଦ-ଅଧୀର,
ଭାବେ ମୁଁ କି ଅନ୍ଧ, ଅଜ୍ଞାନ ମାନବ,
(ଆହା) ଦେଖି ସୁଦ୍ଧା ମୋର ନ ଦେଖେ ନୟନ !

(୯)

ଯେବେ ପଡ଼େ ନେତ୍ର ଏ ତନୁ ଶୋଭାରେ,
ବିମୁଗ୍ଧ ଚକିତ ହୃଦୟ ମୋହର,
କି କୌଶଳ-କଳା ପୂର୍ଣ୍ଣ ମହିମାରେ
ଦୀପ୍ତ ପ୍ରତି ଅଙ୍ଗେ ତବ ଅଙ୍ଗୁଳିର,
(ଏତେ) ଦେଖି ସୁଦ୍ଧା କିପାଁ ନ ଦେଖେ ନୟନ ?

(୧୦)

ବିଶ୍ୱ ଚରାଚର କରଇ ପ୍ରଚାର
ଜ୍ଞାନାତୀତ ତବ ଆଶ୍ଚର୍ଯ୍ୟ ବିଭବ,
କି ଛାର ମାନବ କରେ ଅସ୍ୱୀକାର
ବିଶ୍ୱସ୍ରଷ୍ଟା କେହି ନାହିଁ ଭବ ଭବ !
ଏହି କି ଅସାର ଜ୍ଞାନର ପ୍ରଭାବ !
(ନିତି) ଦେଖି ସୁଦ୍ଧା ଅନ୍ଧ ନ ଦେଖେ ନୟନ !

(୧୧)

ଦିଅ ଜ୍ଞାନ ପ୍ରଭୁ ମାଗେଁ ଶ୍ରୀଚରଣେ,
ତବ ଧ୍ୟାନେ ଯେହ୍ନେ ଯିବ ଏ ପରାଣ,
ପରହିତ ବ୍ରତ ସାଧିଣ ଜୀବନେ
ଲଭିବି ଶାଶ୍ୱତ ଅନନ୍ତ କଲ୍ୟାଣ,
ମିଟିବ ଲୋଚନ ମୋର,
(ସଦା) ତବ ରୂପ ଯେହ୍ନେ ଦେଖିବ ନୟନ।

## ପ୍ରଭାତ

ଧୀରେ ଧୀରେ ବହେ ପବନ, ତରୁପତ୍ର କମ୍ପିତ,
ଧୀରେ ଧୀରେ ଝରେ ଶିଶିର ସ୍ୱଚ୍ଛ ମୁକ୍ତା ନିନ୍ଦିତ,
ଧୀରେ ଧୀରେ ଉଇଁ ଆସିଲା ନଭେ ଅମଳ ରବି,
ପୂର୍ବାଶା ସିନ୍ଦୂର ପଟେ କି ରମ୍ୟ ସୁବର୍ଣ୍ଣ ଛବି !
ଅଥବା ପୂର୍ବାଶା ସୁନ୍ଦରୀ ଭାଲେ ସିନ୍ଦୂର ବିନ୍ଦୁ,
ପ୍ରବାଳର ସ୍ତରେ ଅଥବା ଚିତ୍ର ସୁନୀଳ ସିନ୍ଧୁ !
ଅନ୍ଧାର ଆଲୋକ ବେନିଙ୍କ ଶୁଭ ମିଳନକାଳେ
ମ୍ଳାନ ଆସି ଦିଶିଗଲାଣି ଶୁକ୍ର ପ୍ରତୀଚୀ ଭାଲେ।
ମ୍ଳାନ କ୍ଷୀଣ ରେଖା ପରାଏ ଲୁଚିଗଲାଣି ଶଶୀ,
ତମ-ଯବନିକା ଅମ୍ବରୁ କ୍ରମେ ଗଲାଣି ଖସି।
ତା'ର ପଛପଟୁଁ ସ୍ଫୁରଇ ରମ୍ୟ ଦିବା ଆଲୋକ,
ରଞ୍ଜି ଜଳସ୍ଥଳ ଉଜ୍ଜ୍ୱଳି ହେମ କରେ ଦ୍ୟୁଲୋକ।
ଅବା ସେ ଆକାଶ କୋଣରେ ପ୍ରାଚୀ ଅଙ୍ଗନା ଧନୀ
ସଜାଡ଼ିଛି ପୂଜାସମ୍ଭାର, ମୋହ କରି ଅବନୀ।
ରବି ହେମଥାଳୀ ଘେନିଣ ଅର୍ଘ୍ୟ ରଖିଛି ସିଝି,
ଅମୃତ ଉଦକ ପରାଏ ହିମ ହେଉଛି ବିନ୍ଦୁ।
ଫୁଲେ ଫୁଲେ ପଡ଼ି ଅମୃତ ଫିଟିଲାଣି ପାଖୁଡ଼ା,
ସୁବାସ ସଞ୍ଚରେ ସମୀରେ, ସତେ ବାନ୍ଧିଛି ଜୁଡ଼ା
ଧରାଧନୀ ଅତି ସକାଳୁ କରି ଅତି ଯତନ,
ଖସିପଡ଼େ ଫୁଲ ଗଭାରୁ ପରଶିଲେ ପବନ।
ବିଛୁହୋଇ ପଡ଼ିରହିଛି ତରୁତଳେ ଶେଫାଳୀ,
ବାହାରଟା ସବୁ ଧବଳ, ପଛଭାଗଟା ଲାଲି;
ସରମେ ଝରି ସେ ପଡ଼ିଛି ଦିବାଲୋକ ପରଶେ,
ସୁଷ୍ଟ ନୋହେ ଭୋଗ ବିଳାସ ବ୍ୟସନର ସକାଶେ।
ବାପୀ ନୀଳଜଳ ଉଜ୍ଜ୍ୱଳି ଫୁଟିଲେଣି କମଳ,
ମକରନ୍ଦ ସ୍ଫୁରି ଆକର୍ଷି ଆଣେ ମିଳିନ୍ଦଦଳ।
ଗୁଣ ଯାହାଠାରେ ତାହାକୁ ସର୍ବେ କରି ଆଦର
ସ୍ଥାପନ କରନ୍ତି ନେଇ ସେ ନିଜ ଉଚ୍ଚ ଶିଖର।
ଗୁଣ ଯାହାଠାରେ ତାହାଠି ସର୍ବେ ପଶନ୍ତି ନିଜେ,
ଲାଗିଯାନ୍ତି ଅଳି ପରାଏ ତା'ର ମନୋବାରିଜେ।
ଅତିରଙ୍ଗ ଅତି ସୁନ୍ଦର ଦୃଶ୍ୟ ପଳାଶ ବନ,
ତଥାପି ନ ତୋଷେ ତହିଁରେ କ୍ଷଣେ ଭ୍ରମର ମନ।
ଗୁଣମଧୁ ସିନା ଆକର୍ଷେ ଶତ ମାନସ-ଅଳି,
କେହି ନ ଲଭଇ ସମ୍ମାନ ବୃଥା କରିଲେ କଳି।
ଧରିଲେଣି ଗାନ ପକ୍ଷୀଏ ବୈତାଳିକ ସମାନ,
ପ୍ରଭାତ ବନ୍ଦନା ସତେ କି ବିଭୁ ଅର୍ଚ୍ଚନା ଗାନ ?
ସେହି ସଙ୍ଗେ ମୋର ମାନସ ବିଭୁ ଉଦ୍ଦେଶେ ନମେ।
ହେଉ ଶୁଭଯୋଗ ମନର ନିତି ଶୁଭ କରମେ।
ଜୀବନପ୍ରଭାତେ ଯେସନ ନୋହି ଆଳସ୍ୟରତ
କରୁଥିବି ମୋର କର୍ତ୍ତବ୍ୟ ଦିବାନିଶି ନିରତ।

## ଚିନ୍ତା

ବିଶ୍ୱ ଯେବେ ନିଦ୍ରାମଗ୍ନ ଗଭୀର ନିଶୀଥେ,
ଅନ୍ଧକାର ସମାବୃତ ସର୍ବ ଚରାଚର,
ଅନନ୍ତ ଆକାଶ ବକ୍ଷ ପ୍ରଶାନ୍ତ, ଉଜ୍ଜ୍ୱଳ,
ସୁଧା ଧବଳିତ ପରା ଜ୍ୟୋତ୍ସ୍ନା ବିଲେପନେ !
ଖଚିତ ଅନନ୍ତ ଚାରୁ ତାରକାର ଶ୍ରେଣୀ
ପ୍ରଶାନ୍ତ, ସୁନ୍ଦର, ନୀଳ ଅନମ୍ବର ତଳେ;
ସତେ ଅବା ଶତ ରତ୍ନ ଖଚିତ ଦୁକୂଳେ !
ଅବା ଶତ ଦୀପାବଳି ଦେବତା ଉଦ୍ଦେଶେ
ପ୍ରଜ୍ୱଳିତ ଭକ୍ତିଭରେ, ଅବା ଶତଫୁଲ
ଫୁଟି ରହିଛି କି ନୀଳ ଜଳ ବିତାନରେ !

ଧୀରେ ବହେ ନୈଶ ବାୟୁ, ଶବଦହୀନ, ସୁପ୍ତ
ସମଗ୍ର ପ୍ରକୃତି, ମହାଘୋର ନିସ୍ତବ୍‌ଧତା
କାହାର ଆଦେଶେ ପୁଣ୍ୟ ଅବଧାନ ଲାଗି
ବିରାଜିତ ଧରଣୀରେ, ଅବା ମୋହ ମନ୍ତ
ପଢ଼ାଇ କେ କରିଅଛି ଅବଶ ଅଚେତ
ସମସ୍ତଙ୍କୁ; ଏହିକାଳେ ସହସା ମୋହର
ଗୋପନେ ଉଠିଲା ବାଜି ଭଗ୍ନ ହୃଦ-ବୀଣା
ପୁରାତନ ଛିନ୍ନ ତାର, ଆଶ୍ଚର୍ଯ୍ୟ ପରଶେ
ଲଳିତ କୋମଳ କା'ର ପୂତ ଅଙ୍ଗୁଳିର ।

ସହସା ଚମକି ମୁହିଁ ଉଠିଲି ଉଦ୍‌ବେଗେ,
ଶିହରିଗଲାଟି ତନୁ, ଘନ ବହି ଶ୍ୱାସ,
ରୋମାଞ୍ଚିତ, ସ୍ୱେଦସିକ୍ତ, ଅବା ବିଦ୍ୟୁଦ୍ଦାମ
ଶିରାରେଶିରାରେ ବହିଗଲା କି ମୋହର !

ସହସା ଉନ୍ମୀଳି ଆଖି ନ ଦେଖିଲି କିଛି,
ନ ଶୁଣିଲା କର୍ଣ୍ଣ କିଛି, ବୁଝି ନପାରିଲି,
ଅବଶ ଅଚେତ ପୁଣି ହୋଇଲି କ୍ଷଣକେ ।

ପୁଣି ତ ଉଠିଲା ବାଜି ଗମ୍ଭୀର ଝଙ୍କାରେ
ହୃଦୟ-ବିପଞ୍ଚୀ ତାନ, ବୁଝିଲି ଏଥର
କାହାର ଶବଦ ପରା ଶୁଭୁଛି ଅନ୍ତରେ ।

ସହସା ମୋହନ ମନ୍ତ୍ରେ ମୁଗ୍‌ଧ, ଅଚେତନ,
କଳ୍ପନା ଅତୀତ ସୁଖେ ବୁଡ଼ିଗଲି ଅବା,
କ୍ଷଣକେ ଚନ୍ଦନ ବନେ ପଶିଲି ପରା,
ଶତ ଶତ ପାରିଜାତ ଗନ୍ଧେ ଆକୁଳିତ,
ସୁରଭି-ମଳୟସ୍ପର୍ଶେ ଶୀତଳ ପରାଣ,
ସର୍ବଶ୍ରମ, କ୍ଳାନ୍ତି, ବ୍ୟଥା ବିଦୂରି ସହସା
ଜନ୍ମାଇଲା ପ୍ରାଣେ ଯେହ୍ନେ ଅପୂର୍ବ ସାନ୍ତ୍ୱନା ।

ଅନୁଭବେ ବୁଝିଲି କି କାହା ଆବିର୍ଭାବ
କେଉଁ ଦେବତାର ପରା ହୋଇଅଛି ପ୍ରାଣେ,
ନ ଚିହ୍ନେ ତାହାଙ୍କୁ, କିନ୍ତୁ ଚିହ୍ନଇ ସେ ମୋତେ,
ହେବ ପରା ବନ୍ଧୁ ମୋର, ଅବା ଦୟାମୟ
ଦେବଲୋକବାସୀ ଦୟା ବହି ମର୍ତ୍ତ୍ୟ ନରେ
ଆସିଅଛି ଧରଣୀକୁ, ପୋଛିଦେବ ପରା
ତପ୍ତ ଅଶ୍ରୁଧାର ମୋର ବହେ ଯା' ଗୋପନେ,
ପୋଛିଦେବ ପରା ମୋର ହୃଦୟର ଗାର,
ଶୁଖାଇଦେବ ବା ମୋର ହୃଦକ୍ଷତରାଶି,
ତୀକ୍ଷ୍ଣ ସ୍ୱାର୍ଥ-ଖଡ଼୍‌ଗାଘାତେ ବିଦୀର୍ଣ୍ଣ ପୀଡ଼ିତ;
ଯୋଡ଼ିଦେବ ପରା ମୋର ଭଗ୍ନ ବୀଣା ତାର
ହୃଦୟର, ହୃଦ-ମରୁରାଜ୍ୟେ ବର୍ଷାବାରି
ସୁଶୀତଳ ବରଷାଇ, ହରଷାଇ କ୍ଷଣେ ।

ହରିତ କୁସୁମ ପର୍ଣ୍ଣେ ସାଜି ହୃଦଧରା
ଆଣିବ ଅମୃତ ରାଜ୍ୟ ଅବା ବସନ୍ତର,
ମଞ୍ଜୁଳ କୁସୁମରାଶି, ସୁରଭି ମଳୟ,
କୋକିଳର କଳଗିର, ରସାଳ ବକୁଳ-
ପୁଞ୍ଜ-ମଞ୍ଜୁ ଗୁଞ୍ଜରଣ-ପ୍ରିୟ ନୀଳ ଅଳି-
ଦଳ ଆସି ମଧୁଭାର ଲୁଟିଣ ହୃଦୟ
କୁସୁମିତ କୁଞ୍ଜବନେ, କରି ପ୍ରଫୁଲ୍ଲିତ
ନବୀନ ହୃଦୟ-ଧରା କରିବ ମୋହର ।

ଅଥବା ଶରତ ନିଶା ଚାନ୍ଦିନୀ-ଅମୃତ,
ତହିଁ ପୁଣି ଶେଫାଳିକା ଗନ୍ଧ ମନୋହର,
ତହିଁ ପୁଣି ପକ୍ୱଶାଳି ମିଷ୍ଟ ଗନ୍ଧରାଶି
ଧୀର ପବନରେ ଆଣି ସଞ୍ଚାରିବ ହୃଦେ ।

କ୍ଷଣକେ ସକଳ ବ୍ୟଥା ଗଲା ମୋର ହରି,
ଚିନ୍ତା କରୁ କରୁ କ୍ଷଣେ ଉଭାସିଲା ପରା
ଉଜ୍ଜ୍ୱଳ ମୋହନ ଚିତ୍ରପଟ ପରି ମୁଗ୍‌ଧ
ନୟନସମୀପେ ମୋର, ନପାରିଲି ଚାହିଁ,
ତଥାପି ଦର୍ଶନ ଲୋଭ ବଢ଼ିଲା ଆକୁଳେ ।

ନିସ୍ତବ୍‌ଧତା ଭାଙ୍ଗି କ୍ଷଣେ ଶୁଭିଲା କି ବାଣୀ,
"ମାନବଜୀବନ ନୁହେ ମାଟିର ଖେଳନା,
"ନୁହେ ତାର ପରିଣାମ ଧୂଳି ହେବା ପାଇଁ,
"ନୁହେ ତାର କର୍ମ୍ମ ଭବେ ଅସାର କାନ୍ଦଣା,
"ନିତି ଶତ ରୋଗ, ଶୋକ, ଯାତନା ପୀଡ଼ିତ,
"ବହୁ କ୍ଳେଶ, ବହୁ କଷ୍ଟ, ଆୟାସ, ବେଦନା-
"ବିଧୁରତା, ଦିବାନିଶି ଭଗ୍ନମନୋରଥ,
"ଶତଚେଷ୍ଟା ବିଫଳିତ, ନୈରାଶ୍ୟ ଅନ୍ଧାରେ

''ରହି ଚିର ନିମଜ୍ଜିତ ମରବ ସେ ପଚି;
''ତଥାପି ମୋହିବ ଉଷାଆଲୋକ ଦର୍ଶନ
''ତାହାର ହୃଦୟାକାଶେ ଆଶା ବିଶ୍ୱାସର,
''ନୁହେ, ନୁହେ କେଉଁକାଳେ; ଶୁଣ ବିଶ୍ୱବାସୀ !
''ଗୋଲାପ-ମଲ୍ଲିକାବୃତ ନୁହେ ନରପଥ,
''କର୍ତ୍ତବ୍ୟର,ସମାଚ୍ଛନ୍ନ ସୁତୀକ୍ଷ୍ଣ କଣ୍ଟକେ,
''ବନ୍ଧୁର ସେ ଅପ୍ରଶସ୍ତ, ଘୋର ଅନ୍ଧକାର,
''ତଥାପି ସେ ଯେଉଁ ନର ସାହସୀ, ବିଶ୍ୱାସୀ,
''ପ୍ରଭୁର ବିମଳ ପୁଣ୍ୟ ଆଦେଶ-ଆଲୋକ
''ଧରି ସେ କଠିନ ବର୍ତ୍ମ ହୋଇବ ସେ ପାରି,
''ଗଭୀର ଆକାଙ୍କ୍ଷା ହୃଦେ ଧରିଣ ସୁଦୃଢ଼େ
''ଲକ୍ଷ୍ୟ ଜିଣି ଭାଗ୍ୟବାନ ହେବ ସେ ଯଶସ୍ୱୀ
''ଇହ ପରକାଳେ ବେନି, ଅମର ଅକ୍ଷରେ
''ଉଜ୍ଜ୍ୱଳ ସୁବର୍ଣ୍ଣ ବର୍ଣ୍ଣେ ଲେଖିବ ତା' ନାମ
''ଦେଶ ଇତିହାସ ଅଙ୍ଗେ, ଅବା ଶତ ହୃଦ-
''ଶତଦଳ ଆସନରେ ପାତିବ ଆସନ ।''

ନିସ୍ତବ୍ଧ ହୋଇଲା ସ୍ୱର, ହେଲା ଅନ୍ତର୍ହିତ
ସେ ଦେବତା ମୂର୍ତ୍ତି କାହିଁ, ତୁଟିଲା ମୋହିନୀ,
ଅନାଇ ଦେଖିଲି ପୁନଃ ଅଛି ମୁଁ ଜଗତେ,
କିନ୍ତୁ ପୁନଃପୁନଃ ହୃଦେ ଜାଗିଲା ମୋହର,
''ମାନବଜୀବନ ନୁହେ ଅସାର ଖେଳନା ।''

## ଚାହେଁ

କହି ନ ପାରଇ କଥା ଆଉ କିଛି,
ଲଜ୍ଜା ପୂରିତ ମରମେ,
ଚାଲି ନ ପାରଇ ଆଉ ପାଦେ ପଥ,
ଚରଣ ଜଡ଼ିତ ସରମେ ।
ଜୀବନର ଉଷା-ଶିଶିର-ବିଧୌତ
ମୃଦୁଳ ମଳୟ ପବନେ
କାହିଁ ଶାନ୍ତି, ଜ୍ୱାଳା ପୂରିତ ଅନ୍ତର,
ମର୍ମ୍ମ ଦହୁଛି ଗୋପନେ ।
ନିଦାରୁଣ ଅଭିମାନ ରୋଷ ବହି
ଜାଗେ ବିଫଳ କାନ୍ଦଣା,
କେହି ନ ବୁଝେ ମୋ ଅନ୍ତର ଯାତନା,
ବ୍ୟଙ୍ଗେ କରନ୍ତି ଛଳନା ।
କିପାଇଁ ଅନ୍ତର ନିଭୃତ ପ୍ରଦେଶେ
ତୀବ୍ର ପିପାସା-ଅନଳ
ଜଳୁଛି ନିୟତ ବୁଝିପାରେ ନାହିଁ,
କାନ୍ଦି କାନ୍ଦି ଚିର ବିକଳ ।
ମୁଁ ତ ଚାହେଁ ଫୁଲ ପରାଏ ହସିବି,
ଗାଇବି ଯେସନେ କୋକିଳ,
ଧରିବି ସୁକାନ୍ତ ବସନ୍ତ ସୁଷମା,
ସ୍ନିଗ୍ଧ ଯେସନ ସଲିଳ ।
ମୁଁ ତ ଚାହେଁ ନଦୀ ପରାଏ ବହିବି,
ଗଭୀର ଯେସନ ସାଗର,
ଅସୀମ ବିସ୍ତାରେ ପୂରିବ ଅନ୍ତର,
ଉଦାର ଯେସନ ଅମ୍ବର ।
ମୁଁ ତ ଚାହେଁ ଧରା ପରାଏ ସହିବି,
ଦୀପ୍ତ ଯେସନ ମିହିର,
ମୁଁ ତ ଚାହେଁ ପଦ୍ମପରାଏ ଫୁଟିବି,
ଶୀତଳ ଯେସନ ଶିଶିର ।
ମୁଁ ତ ଚାହେଁ ତାରା ଆଲୋକ ପରାଏ
ଜଳିବି ଅନ୍ଧାର ଉଜ୍ଜ୍ୱଳି,
କଳା ନବଘନ ପଟଳେ ଅଥବା
ଝଟକେ ଯେସନ ବିଜୁଳି ।
ମୁଁ ତ ଚାହେଁ ଗାଢ଼ ହେବି ତମଃ ସମ,
ସ୍ତବ୍ଧ ଯେସନ ତ୍ରିଯାମା,
ଅଥବା ବିମଳ ଶାରଦ ଗଗନେ
ସୌମ୍ୟ ଯେସନ ଚନ୍ଦ୍ରମା ।
ମୁଁ ତ ଚାହେଁ ଅଦ୍ରି ପରାଏ ଉଠିବି,
ଶକ୍ତ ଯେସନ ପାଷାଣ,
ମୁଁ ତ ଚାହେଁ ବୃକ୍ଷ ପରାଏ ସହିବି
ରୌଦ୍ର ବରଷା ସମାନ ।
ମୁଁ ତ ଚାହେଁ ହେବି ନୀରଦ ସମାନ
ବରଷି କରୁଣା ଆସାରେ,

ମୁଁ ତ ଚାହେଁ ତୃଣ ପରାଏ ବିରାଜି
ଅକିଞ୍ଚନ ହେବି ସଂସାରେ ।
କେତେ ପଥ ମୁହିଁ ବୁଲି ଆସିଅଛି,
କଳ୍ପନା ହୁଏ ବଣା କି,
ତଥାପି ଶିକ୍ଷା ତ ନୋହିଲା ସମ୍ପୂର୍ଣ୍ଣ,
ମୂର୍ଖ ମଧ୍ୟେ ମୁହିଁ ଗଣା କି ?
ତଥାପି ମୋ ଦିନ ବହିଯାଏ ଘେନି
ଅନ୍ତରେ ବିଶ୍ୱାସ ହରଷ,
ଆଶାଦୀପ ଜାଳି ଜୀବନ ଅନ୍ଧାରେ
କାଟଇ ଯାମିନୀ ଦିବସ ।

## ସ୍ତବ

ଦ୍ୟୁଲୋକ-ଭୂଲୋକ-ପାଳକ-ଶାସକ,
କଲୁଷ-କଳଙ୍କ-ନାଶକ-ପାବକ,
ନିଖିଳ-ରଚକ,
ତିମିରେ ଆଲୋକ, ଶାନ୍ତିବିଧାୟକ,
ନରକ-ତାରକ ନାଥ ହେ,
ହେ ପ୍ରେମମୟ । ୧ ।
ଜଗତ-ଜୀବନ ଶାନ୍ତି-ସରସୀଜ,
ଚିର-ଚିର-ଜ୍ୟୋତିଃ ହୃଦରାଜ୍ୟ-ରାଜ,
ସଜ ପଦକଞ୍ଜ
ଜପିବି ଜାଗ୍ରତେ ଜପମାଳା ସମ
ଜୀବ ଯିବାଯାଏ ନାଥ ହେ,
ହେ ପ୍ରେମମୟ । ୨ ।
ଧରଣୀ କାରଣ ! ଧରଣୀ-ତାରଣ,
ଶୋକନିବାରଣ, ଶାନ୍ତି-ପ୍ରସ୍ରବଣ,
ଦୁରିତ-ବାରଣ,
ପରମ ଶରଣ କରୁଣା କାରଣ,
ହୃଦୟହରଣ ନାଥ ହେ,
ହେ ପ୍ରେମମୟ । ୩ ।
ଅଶ୍ରୁତ, ଅଦ୍ଭୁତ, ଅଚ୍ୟୁତ ସେବିତ,
ଭବତାତ ପୂତ ନିତ୍ୟ, ସତ୍ୟ-ସ୍ୱତ,
ସତତ ଶୋଭିତ
ସ୍ୱରଗ ଶୋଭାରେ, ସ୍ୱରଗ ସଭାରେ
ସତତ ପୂଜିତ ନାଥ ହେ,
ହେ ପ୍ରେମମୟ । ୪ ।
ଦମ୍ଭ-ହର ଦୈତ୍ୟ-ଦରପଦଳନ,
ଦିବେ ଦେବବୃନ୍ଦେ ଦିନେଶ ସମାନ,
ଚନ୍ଦନ, ନନ୍ଦନ,
ଦୟାରେ ଉଦାର, ଦୀନେ ଦୟାକର,
ଦୁଷ୍ଟ ଦଣ୍ଡଧର ନାଥ ହେ,
ହେ ପ୍ରେମମୟ । ୫ ।
ନଳିନଚରଣ ସୁମନୋମୋହନ,
ନୟନରୋଚନ, ଭକ୍ତବିନୋଦନ,
ପ୍ରଭୁ ଭଗବାନ
ସତ୍ୟ ସନାତନ, ଶାନ୍ତି ନିକେତନ,
ପତିତପାବନ ନାଥ ହେ,
ହେ ପ୍ରେମମୟ । ୬ ।

**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ**



# ଉତ୍ସର୍ଗ

(୧)

କ୍ଷୁଦ୍ର ଏ ସ୍ଫୁଲିଙ୍ଗ କ୍ଷୁଦ୍ର ଅନଳକଣିକା
କ୍ଷୀଣପ୍ରାଣ, ନାହିଁ ତହିଁ ସୂର୍ଯ୍ୟତେଜଶିଖା ।
ତରୁଣ ଉତ୍କଳ ସୁତ କରକମଳରେ
ଅର୍ପିଲି ଆନନ୍ଦ ଶ୍ରଦ୍ଧା ସୁଧା ସ୍ନେହଭରେ
ହେଉ ସେହି କ୍ଷୁଦ୍ର. ହେଉ ଅତିହୀନ ସାନ,
ଛୁଇଁବ ଯଦି ସେ ମୋର ଭ୍ରାତା-ଭଗ୍ନୀପ୍ରାଣ,
ଜାଳିବ ଯଦି ସେ ଚିତ୍ତେ ଦେଶପ୍ରେମବହ୍ନି,
ସାର୍ଥକ ମଣିବି ସୁଖେ ଅୟସଲେଖନୀ ।
ଆଣିବ ଯଦି ସେ ନବ ଜୀବନ ଚେତନା,
ବ୍ୟର୍ଥ ନ ଭାଳିବି ମମ ଏ କ୍ଷୁଦ୍ର ରଚନା ।

(୨)

ଅଛନ୍ତି ଉତ୍କଳସୁତ ଅଛନ୍ତି ଅନେକ
ରଖି ଯେ ପାରନ୍ତି ହେଳେ ମାତୃଭୂମି ଟେକ ।
ଶତ ତରୁଣ ତରୁଣୀ କୋମଳ ଅନ୍ତରେ
ଦେଶପ୍ରେମ-ପୁଣ୍ୟ ଫଲ୍‌ଗୁ ବହେ ନିରନ୍ତରେ !
ଲାଜେ ଲୁଚି ରହିଛନ୍ତି ଅଜ୍ଞାତ ନିବାସେ
ଦେଶପ୍ରେମୀ କର୍ମବୀର ନୈରାଶ୍ୟ ଉଦାସେ ।
କହ କେ ଆଣିବ ପ୍ରାଣେ ନବୀନ ପ୍ରେରଣା
କେ ଦେବ ଅନ୍ତରେ ଶୁଭ ଜୀବନ ଚେତନା ?
ଅକାରଣେ ବଣ-ମଲ୍ଲୀ ଗହନେ, ବିଜନେ
ଫୁଟି ମଉଳଇ ସିନା ଅକାଳେ ଯୌବନେ ।
ଭାବି ଏବେ ବ୍ୟଥା ବଡ଼ ମରମେ ମୋହର
ନୟନୁଁ ଝରଇ କ୍ଷଣେ ଉଷ୍ଣ ଅଶ୍ରୁ ଝର ।
କହ କେ ସଗରକୁଳ ଉଦ୍ଧାରିବ ଭାଇ,
ଦେଶପ୍ରେମୀ କର୍ମବୀର ଭଗୀରଥ କାହିଁ ?

(୩)

ଯାଅ ତେବେ ଗୋ ସ୍ଫୁଲିଙ୍ଗ କ୍ଷୁଦ୍ର ଅଗ୍ନିକଣା,
ଆଣ ଜୀବନେ ଅନନ୍ତ ଅନଳ-ପ୍ରେରଣା ।
ବହୁ ପଛେ ଝଞ୍ଜା ଘନ, ଭୀମ ପ୍ରଭଞ୍ଜନ,
ନ ଲିଭୁ ତୋହର ଦୀପ୍ତ ହାସିତ ଆସନ ।
ଜାଳ ପ୍ରତି ପ୍ରାଣେ ପୁଣ୍ୟ ଦେଶପ୍ରେମ-ଦୀପ,
ଏତିକି ଆଶିଷ ହେଉ ହେ ବିଶ୍ୱ-ଅଧିପ !

୨୭ । ୭ । ୨୬ — କୁନ୍ତଳା କୁମାରୀ

# ସୂଚୀପତ୍ର




## ତରୁଣର ଆବାହନ

(୧)

ନିରାଶାର ଗିର ନ ଘୋଷୁ ରସନା,
ନ ବାଜୁ ତାହା ଏ ଜାତି ଶ୍ରବଣରେ,
ଦେଢ଼କୋଟି ପ୍ରାଣ ନବଜାଗରଣେ
ଦିଅ ଉଠିବାକୁ ନବ ବିକ୍ରମରେ ।
କିପାଁ ଧୂଳିତଳେ ରଚି ମୃତ୍ୟୁ-ଶେଯ
ହରାଇବେ ସର୍ବେ ନର ବୀର୍ଯ୍ୟ ତେଜ,
ଅନନ୍ତ ମରଣ ଏ ଜାତି କପାଳେ
ଲେଖିନାହିଁ ବିଶ୍ୱଧାତ୍ରୀ,
ଉଠିବେ ଉଠିବେ ଦେଢ଼କୋଟି ଆତ୍ମା
ଅମୃତପଥଯାତ୍ରୀ ।
କିଏ କହେ ନାହିଁ ଆମର ସାହସ,
କିଏ କହେ ଆମେ ଅଜ୍ଞାନ ଅଳସ ?
କିଏ କହେ ମୃତ ଓଡ଼ିଆର ପ୍ରାଣ,
ଚିର ଅବସାନ ତା ଗୌରବ, ଟାଣ ?
ପରପଦାହତ, ଦୁର୍ବଳ ଭୀରୁ,
ନିତ୍ୟ ଲାଜେ ମ୍ରିୟମାଣ ।
ପଡ଼ିଅଛି ଭାଙ୍ଗି ଦୁର୍ଗ ବାରବାଟୀ,
କୋଣାର୍କ ଶିଖର ଚୁମ୍ବିଅଛି ମାଟି;
ନୀଳଚକ୍ର ବାନା ଲୋଟିଛି ଧୂଳିରେ,
ପୋତି ପଡ଼ିଅଛି ଚିଲିକା ବାଲିରେ;
ଆଉ ନ ନାଚଇ ଓଡ଼ିଆ ବୋଇତ
ନୀରଧି-ତରଙ୍ଗ ରଙ୍ଗେ ଆଲିଙ୍ଗିତ;
ନୀରବ ଉତ୍କଳ ସାରଳା ସଙ୍ଗୀତ
ହଜିଅଛି ଚିର ଏ ଜାତି ବିଭବ,
ରସାତଳେ ଲୀନ ଓଡ଼ିଆ ଗରବ;
ଛିନ୍ନ ଭିନ୍ନ ଅଙ୍ଗେ, ମରଣ ଉଛଙ୍ଗେ
ନବଜାଗରଣ ଆଉ କି ସମ୍ଭବ ?
ଦିଅ ମରିବାକୁ ଶାନ୍ତି ସୁଧୀରେ
ଆଉ ନ ଉଠିବ ଏ ଜାତି ମହୀରେ,
ନ କହ ନ କହ ଏ କୈତବ-ବାଣୀ
ଜାତି କର୍ଣ୍ଣପୁଟେ, କ୍ଷୀଣ ପ୍ରାଣ ତାର
ଜଳିବ ବା ଶୋକେ ଆର୍ତ୍ତ ହାହାକାର,
ସ୍ମରି ନିଜ ଦୁଃଖ ଦୁର୍ଦ୍ଦଶା ଦୀନତା
ନିଜ ନେତ୍ରେ ତାର ବଢ଼ିବ ହୀନତା,
କିପାଁ ଅକାରଣେ ଦେଶମାତୃପ୍ରାଣେ
କ୍ଳେଶରେଖା ଟାଣି ନରିବ କଷଣ,
ଉଠୁ ଉଠୁ ସେହି ଉପେକ୍ଷି ମରଣ ।
ହୃଦୟସ୍ପନ୍ଦନ ହଜିନାହିଁ ତାର,
ଶିରାରେ ଶିରାରେ ବହେ ପ୍ରାଣଧାର,
କିପାଁ କହୁଅଛ ଦୁର୍ଭିକ୍ଷ, ବନ୍ୟା, ବ୍ୟାଧି
ସାରିଅଛି ସର୍ବ,
ଦୈନ୍ୟ ହରିଛି ମଣିଷପଣିଆ,
ମଥା ଟେକିବାର ଗର୍ବ ?
ନ କହ ନ କହ ଆଉ,
ଜାଗିଲେଣି ତାର ତରୁଣ ସନ୍ତାନ
ଘୁଞ୍ଚାଇବେ ମିଳି ମାତୃ ଅପମାନ;
ନେ କେତେ ପ୍ରେରଣା ପ୍ରାଣେ ଲଭି ଶୁଭ
ଧରି ହୃଦେ ଦୃଢ଼ ବିଶ୍ୱାସ ଧ୍ରୁବ,
ଜାଗିଛନ୍ତି ନବ କର୍ମେ
ନିରାଶର ବ୍ୟଥା ନ ବାଜୁ ମର୍ମେ,
ଦେଶ ନବ ପ୍ରାଣ ପାଉ ।
କିପାଁ ବାଧା ବିଘ୍ନ ପାଷାଣ ଭୀଷଣ
ସ୍ଥାପିବ ଚରଣପ୍ରାନ୍ତେ ଅକାରଣ ?
ହେଉ ଅଗ୍ରସର ନବ ଆନନ୍ଦରେ
ତରୁଣ ବାହିନୀ ନବ ଜୀବନରେ,
ମୃତ୍ୟୁ-ତମସ ଠେଲି ଦୀପ୍ତାଲୋକେ
ଚାଲିଛନ୍ତି ସେନା ସାହସ ପୁଲକେ,
ଚାଲିଛନ୍ତି ବିଶ୍ୱ ଜୟୀ,
ନବ ଧଉଦନ ଉନ୍ମାଦନାରେ ଡେଇଁବେ ପର୍ବତ ନଈ ।

ଦେଢ଼ କୋଟି ଭୁଜ ଅଜେୟ ବିକ୍ରମ
ଲଭିବ ସଂହତି, ଅଦ୍ଭୁତ କରମ
ସାଧିବ ଏ ମହୀମଣ୍ଡଳେ; ହେଳାରେ
ନ ଦଳ ତରୁଣ ପ୍ରାଣ ଅବଜ୍ଞାରେ,
ସେ ତରୁଣ ହୃଦ ପ୍ରତି ରକ୍ତବିନ୍ଦୁ
ମିଶି ବିରଚିବ ମହାଶକ୍ତି ସିନ୍ଧୁ ।
କୋଟି କୃଷ୍ଣାର୍ଜ୍ଜୁନ, ସୁଭଦ୍ରା, ସାବିତ୍ରୀ
ଜନମିବେ ଦିନେ ଉତ୍କଳ ପବିତ୍ରି;
ଉତ୍କଳ ସମ୍ବଳ ସେହିମାନେ ସିନା,
ହେଉନ୍ତୁ ଅଳପ, ଅଗଣା, ଅଚିହ୍ନା !

(୨)

ଦିନେ ରଣପ୍ରାଙ୍ଗଣର ମୃତ୍ୟୁ ନର୍ତ୍ତନେ
ବାଜିଛି ମୁରଲୀ ତାନେ
ଗୀତାର ତତ୍ତ୍ୱ, ଯୋଗ ମହତ୍ତ୍ୱ,
ତରୁଣ ସାରଥି ପ୍ରାଣେ ।
ମହାବୋଧିସତ୍ତ୍ୱ ମୂଳେ,
ତରୁଣ ତପସ୍ୱୀ ମହାଜ୍ଞାନ ଲଭି
ଉଦ୍ଧାରିଲେ ଜୀବକୁଳେ ।
ପର୍ବତ କନ୍ଦରେ ତରୁଣ ଅନ୍ତରେ
ଜାଗିଥିଲା ଯେଉଁ ବାଣୀ,
ମଥା ନତ କରି ଶୁଣିଲା ମେଦିନୀ,
ଉଦ୍ଧରିଲେ କୋଟି ପ୍ରାଣୀ ।
କ୍ରୂର କୃଶ କାଷ୍ଠେ ବହିଥିଲା ଦିନେ
ତରୁଣର ରକ୍ତଧାର,
ନିମହିଲା ତହିଁ ଅର୍ଦ୍ଧ ଅବନୀ, ସୃଜିଲା ସେ ମାରାଧାର,
ତରୁଣ ସେ ନାରାୟଣ,
ଯୁଗେ ଯୁଗେ ଅବତରି ମହୀତଳେ
ପ୍ରେମ କରେ ବିତରଣ ।
ଉଦ୍ଧାରିବେ ସେହି ଏ ଦୀନ ଉତ୍କଳ,
ଉତ୍କଳଭୂମି ଦିନେ ହେବ ଉର୍ବ୍ବସ୍ୱଳ ।
ଅନଙ୍ଗ, ଯଯାତି ଆସିବେ ତ ଫେରି,
ବାଜିବ ଓଡ଼ିଆ ଜୟ ତୂରୀ ଭେରୀ ।
ଜାଗିଅଛି ଆଜି ତରୁଣ କେଶରୀ
ନୀଳାଚଳ ପୁଣ୍ୟ ଚୂଳେ,
ବନ୍ଦନା ଗୀତି ଗାଉଅଛି ଜଳତରଙ୍ଗ ସାଗର କୂଳେ ।

ଫୁଟିଅଛି ଫୁଲ ନାଗେଶ୍ୱର ବନେ,
ଶୁଭେ ଶଙ୍ଖସ୍ୱନ ଏକାମ୍ର କାନନେ,
ଚାରୁ ଚିତ୍ରୋତ୍ପଳା ସଜାଡ଼ିଛି ମାଳା
ଲଳିତ ନଳିନୀ-ଦଳ ଦାମ ଘେନି,
ପୂଜିବେ ମହାରେ ମଞ୍ଜୁପାଦ ବେନି,
ଆସିବେ ଓହ୍ଲାଇ ସ୍ୱର୍ଗ ସୀମନ୍ତିନୀ,
ତରୁଣର ପ୍ରାଣେ ନବ ସଞ୍ଜୀବନୀ
ପୂତ ନୀର ସିଞ୍ଚି ମୋହିବେ ମୋହିନୀ ।
ଉତ୍କଳର ପ୍ରାଣାସନେ
ଅଭିଷେକ ଆଜି ତରୁଣ ରାଜାର
ପ୍ରେମ-ହେମ ଆଭରଣେ ।

(୩)

ହେଲାଣି ହେଲାଣି ନବ ସୂର୍ଯ୍ୟୋଦୟ,
ଆଉ କି ଲଜ୍ଜା, ଆଉ କି ଭୟ !
ନବ ଯଉବନ ଶିରୀ ସଂପଦେ ହସଇ ପ୍ରକୃତିରାଣୀ,
ନ କହ ନ କହ ଆଉ କର୍ଣ୍ଣମୂଳେ
ନିରାଶା ଭୀଷଣ ବାଣୀ ।
ଚିରରାତି ନାହିଁ କପାଳେ କାହାରି,
ଉଠ ଦେଢ଼କୋଟି ପ୍ରାଣୀ !
ଦେଖ, ତବ ଦ୍ୱାରେ ତରୁଣର ବେଶେ
ଉଭା ରବିପ୍ରଭା ଝରି ସେ କିଏସେ ?
ଆଖିକୋଣେ ତା'ର କି ଜ୍ୟୋତି ରୁଚିର,
ଅଧରେ ମୋହନ ଆଶାମୃତ ଗିର ।
ଦେଢ଼କୋଟି ଭାଇ ଉଠିବେ, ଓଡ଼ିଆ-
ପ୍ରାଣ ନ ମରିବ ଚିର,
ନିଅ ବରି ତବ ତରୁଣତପସ୍ୱୀ,
ତବ ଅରିନ୍ଦମ ବୀର ।
ରଚ ରମ୍ୟ ମାଳି, ତୁଳସୀ, ମଲ୍ଲିକା,
ଦିଅ ଧାନ, ଦୂବ, ଚନ୍ଦନ ଟୀକା,
ସଜାଡ଼ି ହୃଦୟ-ପୁଣ୍ୟ-ବେଦିକା ।
ନିଅ ବରି ତବ ତରୁଣ ତପସ୍ୱୀ
ତବ ଅରିନ୍ଦମ ବୀର,
ଦେଢ଼କୋଟି ଭାଇ ଉଠ ହେ ଓଡ଼ିଆ,
କି ପାଇଁ ମରିବ ଚିର ?



# ମା

ଆଜି ଏକକଣ୍ଠେ ମା ବୋଲି ଡାକ ହେ
ତେତ୍ରିଶ କୋଟି ମାଆର ସନ୍ତାନ,
ମା ନାମ ମହିମା ଶକ୍ତିରେ ଉଠ
ଦୁର୍ବଳ ଭୀତ କମ୍ପମାନ,
ମା ନାମ ଗରିମା ଗିରି ହିମାଚଳେ
ଶତ ଶତାବ୍ଦୀର ତୁଷାର ଉଜ୍ଜ୍ୱଳେ
ମାତୃସ୍ନେହଝରା
ଗଙ୍ଗାସିନ୍ଧୁଧାରା
ବ୍ରହ୍ମପୁତ୍ର ବନେ ପବିତ୍ର କଲ୍ଲୋଳେ,
ଉଠେ ମହାଗୀତି ବ୍ୟୋମେ ଜଳେ ସ୍ଥଳେ ।
ମା ନାମର ସ୍ତୁତି ଅନ୍ତରେ ଉଚ୍ଛୁଳେ,
ବିନ୍ଧ୍ୟାଦ୍ରି ସହ୍ୟାଦ୍ରି ନୀଳଗିରି କୋଳେ
ରେବା ଗୋଦାବରୀ ଗାଆନ୍ତି ନିରୋଳେ ।
ଶିରୀ ବୃନ୍ଦାବନେ ଚନ୍ଦନ ବନେ ବଦ୍ରିନାରାୟଣେ
ମା ନାମର ମନ୍ତ୍ର–
ବାଜେ ହୃଦ-ଯନ୍ତ୍ରମଧୁର ନିକ୍ୱଣେ ।
କିଏ ସେ କୁମର, ଭେଦିନାହିଁ ଯା'ର ହୃଦ ଅଭ୍ୟନ୍ତର
ମା ନାମର ଭକ୍ତି ?
କିଏ ସେ ଦୁହିତା,
ମା ନାମ ଶ୍ରବଣେ ନୁହେଁ ସେ ମୋହିତା ?
ଭାରତର କୁଳେ କିଏ କୁଳାଙ୍ଗାର,
ମା ନାମେ ନୟନେ ନାହିଁ ଯାର ଧାର ?
ମାପରା ଆମର ତ୍ରିଲୋକ-ପାବିନୀ,
ଗାୟତ୍ରୀ, ସାବିତ୍ରୀ ବିଶ୍ୱ-ପ୍ରସବିନୀ,
ବେଦ ବେଦାନ୍ତରଜନନୀ, ମୋହିନୀ,
ନିଖିଳଅବନୀ ଜ୍ଞାନପ୍ରଦାୟିନୀ,
କାବ୍ୟକଳା-ଶିଳ୍ପ ଲୀଳା ବିଳାସିନୀ,
କୋଟି କୁଞ୍ଜବନ-କୁସୁମମାଳିନୀ,
କୋଟି କଳ୍ପତରୁ-ବଲ୍ଲୀ-ରସାଳିନୀ,
ମନୋଜ୍ଞ-ମାନସ-ହେମ ମୃଣାଳିନୀ ।
ମା ପରା ଆମର ଜ୍ଞାନ ବିଜ୍ଞାନର
ଆଦ୍ୟ ଲୀଳାଭୂମି,
ପବିତ୍ର ଓଁକାର ଝଙ୍କାରି ଉଠିଲା ଯହିଁ ନଭ ଚୁମି ।
ବୁଡ଼ିଥିଲା ଯେବେ ବିରାଟ ଅବନୀ ଅଜ୍ଞାନତିମିରେ,
ଉଜ୍ଜ୍ୱଳ ଥିଲା କେ ବିଦ୍ୟାଧରମ ହେମ ଦୀଧିତିରେ ?
ଆଜି ହେରି ତାରହୀନ ଅଧୋଗତି,
ଛାତି କି ତୁମର ନୁହଇ କରତି ?
ନାହିଁ କିହେ ଉଷ୍ଣରକ୍ତ ଧମନୀରେ,
ବ୍ୟଥିତ ନୁହଁ କି ମାତୃ ଆରତିରେ ?
ଉଠ ଉଠ ତେବେ ଉଠ ମୋର ଭାଇ,
ଆର୍ଯ୍ୟତେଜଃ ତବ ରକ୍ତୁଁ ଯାଇନାହିଁ,
ମାତୃ ନାମ ମନ୍ତ୍ରେ
ଉଠ ହେ ଏକତ୍ରେ
ତେତ୍ରିଶ କୋଟି ମାତୃସ୍ତବ ଗାଇ ।



# ଭାରତମାତା

ଭାରତ ମୋ ମା, ଭାରତ ମୋ ମା,
ଜାଣିଛି ଏହା ମୁଁ ଅନ୍ତରେ,
ଭାରତଜନନୀ ଜନ୍ମଭୂମି ମମ,
ନମେ ତବ ପଦପ୍ରାନ୍ତରେ ।
ତୁହି ଲୋ ପବିତ୍ରେ ! ତୋ ପବିତ୍ର ରଜେ
ମୋ ପିତୃପୁରୁଷ ପିଣ୍ଡ ଗଢ଼ିଛୁ,
ତୁହି ଲୋ ପବିତ୍ରେ ! ତୋ ବିଚିତ୍ର କ୍ଷେତ୍ରେ
ଶତସ୍ନେହାଙ୍କରେ ସନ୍ତାନେ ପାଳିଛୁ ।
ତୁହିଁ ଲୋ ଭକ୍ତି
ତୁହି ଲୋ ଶକ୍ତି,
ତୁହି ଲୋ ମୁକ୍ତିଦ୍ୱାର,
ଯାଏଁ ଯଥା ତଥା,
ତୋ ନାମସ୍ମରଣ ପୁଣ୍ୟ ମୋ ଉପହାର ।
ଆଜି ଦୀନା ତୁହି କାଙ୍ଗାଳିନୀ ବେଶେ
ଛିଡ଼ା ହେଉ ଶୀର୍ଣ୍ଣ ମୋ ମାନସଦେଶେ,
'କିଛି କରିନାହିଁ' ଭାବନା କଷଣେ ମର୍ମେ ମରୁଛି
ଦୁଃସହ କ୍ଳେଶେ,
ଘୋର ଲଜ୍ଜା ମୋର ଘୋର ମଳିନତା,
ଆମେ ଥାଉଁ ଥାଉଁ ମାତା ଅବନତା,
କୁଳାଙ୍ଗାର ସୁତେ କି ସୁଖେ ଜନନୀ,
ଧରିଛୁ ଦୁର୍ବଳ କୋଳେ,
ମୁରୁଛି ନ ପାରୁ ଆମକୁ ସତେ କି
ମାତୃସ୍ନେହ ମାୟା ଭୋଳେ !

ତେଣୁ କି ତୋହର କେଦାରେ କେଦାରେ
ସଜାଇ ରଖିଛୁ ସ୍ୱର୍ଣ୍ଣ ଶସ୍ୟଭାରେ,
ଅଯୋଗ୍ୟ ଆମେ ଲୋ, ଆମ ଅରଜନ
ପର ପାଦତଳେ ଲୋଟୁଛି,
ଆପଣା ବେଳକୁ ହାଣକୁରାଡ଼ିରେ
ଭାଇ ଭାଇଗଳା କାଟୁଛି ।
ତିଳେ ପ୍ରେମ ଆଉ ନାହିଁ ଆମ ଘରେ,
ଭାସୁଛୁଁ ଆପଣା ସୋଦର ରକ୍ତରେ,
ହିନ୍ଦୁ ମୁସଲମାନ, ଦୁଇ ବାହୁ ତୋ'ର
ଦୁହିଙ୍କ ଭିତରେ ଦ୍ୱନ୍ଦ୍ୱଯୁଦ୍ଧ ଘୋର,
ବାଟ ବିଦେଶୀଙ୍କୁ ବରଣ କରିଣ
ଜଗତେ ଲୋକହସା,
ଆମରି କରମ ଆମକୁ ଘାରୁଚି
କେ ଫେଡ଼ିବ ଆମ ଦଶା ?
ପରକୁ ନିନ୍ଦିବୁଁ ଦୋଷିବୁଁ କିପାଇଁ ?
ଆପଣା ଭାଇକି ସ୍ନେହ ତିଳେ ନାହିଁ;
ଆମ ମା, ଭଉଣୀ ଆମରି ଅନ୍ୟାୟ-
କାରାଗାରେ ବନ୍ଦୀ କାନ୍ଦୁଛନ୍ତି ହାୟ !
ଆମ ଶାସ୍ତ୍ରପୋଥି ଆମ ରକ୍ତ ମଥି
ଜୀବନ ଆମର ସାରିଲାଣି ଘାରି,
ଆମ ଅବିଚାରେ ଅସ୍ପୃଶ୍ୟ ଭିତରେ
ଗଣା ଛଅ କୋଟି ନରନାରୀ;
ଭାଇ ଭାଇ ବୋଲି ଉଚ୍ଚେ ଦେଉଁ ଡାକ,
ବକ୍ତୃତା ମଞ୍ଚରେ ଦେଶପ୍ରେମଯାକ
କଥାରେ ଅଜାଡ଼ି, କାହି କମାମରେ
ଫେରୁଁ ନିଜ ଘରେ ଶୂନ୍ୟ ହୃଦୟରେ ।
ନିଜ ଜାୟା ସୁତେ ଖାଦ୍ୟ ନ ପାଆନ୍ତି
ଦେଶ ଦେଶ ବୋଲି ଲୁହେ ଯାଉ ତିନ୍ତି,
ଅଳସ ଅକର୍ମା ଦିନ ଯାଏ ବିତି,
ଜପୁ କିନ୍ତୁ ମନ୍ତ୍ର ଓମ୍ ଶାନ୍ତି , ଶାନ୍ତି !
ଏ ଘୋର କପଟ ତମୋଆବରଣ
କହ ମାତା କିଏ କରିବ ଛେଦନ ?
ନିଜ ନୟନରେ ନିଜକୁ ଦେଖିବୁଁ,
ନିଜ କୁରୂପରେ ସରମେ ସରିବୁଁ,
ତେବେ ସିନାମନେ ହେବ ଅନୁତାପ,
ତେବେ ସିନା ଦୂରେ ଯିବ ମୋହ ପାପ ।
ପବିତ୍ରା ମାତାର ଏ ଅଧମ ସୁତେ
କହ କହ କାହୁଁ ପାଇଲୁ ?
ଗୌରବ ବିଭବ ସବୁ ତ ତୋହରି
ଆମରି ହାତରେ ସାଇଲୁ ।
ତୋ' ଚରଣ ପରା ଧୁଏ ମହାସିନ୍ଧୁ,
କିପାଁ ନ ଦେଲୁ ସେ ନୀର ଏକ ବିନ୍ଦୁ,
କେ ଧୋଇବ କହ ଏ କଳଙ୍କ-କାଳି ?
ବିନା ଆମେ ରକ୍ତ ନ ଦେଲେ ମା ଢାଳି,
କେବେ ଲଭି ଜ୍ଞାନ
ତୋହରି ସନ୍ତାନ
ଏକ ହେବେ ପ୍ରେମ ଭେଦାଭେଦ ଛାଡ଼ି,
ରକ୍ତଧାରେ ନୁହେ, ଭକ୍ତିଧାରେ ବୁଡ଼ି ।
ଆସିବ ନାହିଁ କି ମାଆ ସେ ସୁଦିନ,
ଈର୍ଷା ଦ୍ୱେଷ ବନ୍ଧ କରି ସର୍ବେ ଛିନ୍ନ,
ଏକ ହେବେ ପ୍ରାଣେ,
ଧର୍ମେ, କର୍ମେ, ଜ୍ଞାନେ,
ମାନବସନ୍ତାନେ ନ ମଣିବେ ହୀନ ।



## ହାହାକାର

ଆଜି ତେତ୍ରିଶ କୋଟିର ହାହାକାର !
ରୁଦ୍ରରୂପେ ପ୍ରଭୁ ଦୁଆର ସମୀପେ,
ଚୌପାଶେ ବିରାଟ ଅନ୍ଧକାର ।
ଭୀଷଣ ବନ୍ୟା ବ୍ୟୁତ୍ପାତ, ଦୁର୍ଭିକ୍ଷ ଦାଉ
ମହା ମହଙ୍କର ସଂହାର ଲୀଳା
କାତର କଣ୍ଠେ ଡାକିଲେ ବିକଳେ
ଦୂର ବୈକୁଣ୍ଠେ ପ୍ରଭୁ ନ ଶୁଣନ୍ତି ଆଉ,
କେବଳ ମୃତ୍ୟୁ, ମୃତ୍ୟୁ ବିଭୀଷିକା
ଆବରିଛି ଚାରି ଧାର ।
ବିକଟ ନୃତ୍ୟେ ମରଣଦୂତେ
ଅତିଥି ଆମର ଅଗଣାରେ,
ଜଗତରେ ଆମେ ଅଗଣାରେ ।
ଶତ ଶତାବ୍ଦୀ ବ୍ୟାପିଥିଲୁଁ ପରା,
ଥାପି ଅନ୍ୟାୟର ସିଂହାସନ,
ଦୁର୍ବଳ ଦୀନ, ଅସ୍ପୃଶ୍ୟ ଇତର,
ନରନାରାୟଣ ଶିରେ,

କୋଟି କୋଟି ତେଣୁ ଆଜି ସିନା ଲୋତକ ରୁଧିରେ,
ବୁଡ଼ିଛୁଁ ସରବେ ନିଜର ଗରବେ,
ଅଭିମାନେ ଚୂର୍ଣ୍ଣ ଯୁଗଯୁଗାନ୍ତର ସାଧନାର ସ୍ୱର୍ଣ୍ଣ-
ଶୋଭାବନ ତପୋବନ।
ଭାଇ ଭାଇ ବକ୍ଷ ଶୋଣିତ ପିପାସୀ,
କ୍ରୂର ଅବିଶ୍ୱାସୀ, ଉଦାସୀ,
ଆମର ସାର ଆଜି ଧୂଳି ପୂର୍ଣ୍ଣ-
ଜୀର୍ଣ୍ଣ ପଲ୍ଲୀ କଙ୍କାଳ କୁଟୀରମାଳା,
ତହିଁ ଘେନି ବିପୁଳ ଉଦରଜ୍ୱାଳା,
ନଗ୍ନ ତନୁର ଅପମାନ,
କାଟିବୁଁ ହତାଶ ଅର୍କ୍ଷିତ ଜୀବନ,
ବିଫଳିତ ନୀରବ ରୋଦନ-
ସମ୍ବଳ କରି ହେବ ସଂସାର ଅବସାନ।
ତେବେ ଯାଇଏ ପାପର ହେବ ପୂର୍ଣ୍ଣ ପ୍ରାୟଶ୍ଚିତ୍ତ
ରକ୍ତ ମଥିତ,
ଆତ୍ମପ୍ରାଣ ବଳିଦାନ
ଚାହାନ୍ତି ଆମର ହସ୍ତୁଁ ଦୀନ ଦୁଃଖିତ ଭଗବାନ।

(୨)

କିପାଇଁ ଭାରତବାସୀ ! ଡାକ କାତରେ,
କୃପାସିଂହାସନ ନ ଟଳିବ ଆଉ
ତୁମର ବ୍ୟର୍ଥ ଚିତ୍କାରେ।
ନ ହେବା ଯାଏ ପୂର୍ଣ୍ଣ ପ୍ରାୟଶ୍ଚିତ୍ତ
ତୁମେ ହେବ ନିତ୍ୟ ଦଳିତ ବ୍ୟଥିତ
ଏହା ତ କେବଳ ନୁହେ କପାଳ ଲେଖାରେ,
ଆପଣା ଅର୍ଜିତ କର୍ମଫଳେ କିପାଁ ଭଗବାନେ
ଦୋଷ ଦିଅ ରେ।
କେ କହିଥିଲା ତୁମକୁ,
ଭାଇ ଭାଇ ମଧ୍ୟେ ବିରୋଧର ବନ୍ଧ
ବଜ୍ର ଦୃଢ଼େ ବାନ୍ଧିବାକୁ ?
ଆଉ ନତ ଦୁର୍ବଳେ କ୍ରୂର
ଚରଣେ ଚାପିବାକୁ ?
ଅର୍ଦ୍ଧାଙ୍ଗ ତୁମର ନାରୀକୁ ଅନ୍ୟାୟେ
କବାଟର କୋଣେ ଗୁଞ୍ଜିବାକୁ ?
ଏବେ ପଛଘୁଞ୍ଚା ନ ଦିଅ ହେ ବାବୁ, କ୍ରୂର କର୍ମଫଳ
ଭୁଞ୍ଜିବାକୁ।

ଉଚିତ ନୁହେ ତୁମର ବ୍ୟର୍ଥ ହାହାକାର
ଅନ୍ୟାୟ ପ୍ରାର୍ଥନା,
ସହୁଛ କିପାଇଁ ବିକଳ ଚିତ୍ତରେ
ମୂଢ଼, ଜଡ଼, ଅନ୍ଧ, କଦର୍ଥନା ?
ଯଦି ମୁକ୍ତି ଚାହଁ ଭୀଷଣ କଷଣୁ,
ଭାଳ ମନେ ଏହି କ୍ଷଣୁ,
ଆପଣା ଭିତର ଅଳିଆ ଜଞ୍ଜାଳ
ଝାଡ଼ି କରତବ ନିର୍ମଳ ତନୁ।
ଜାତିଭେଦ ବନ୍ଧ ଛେଦ ପ୍ରେମାଦରେ,
ବ୍ରାହ୍ମଣ ଶୂଦ୍ରକୁ ଘେନ ଶ୍ରୀଅଙ୍କରେ,
ଯୁଗ ଯୁଗ ଯଚା ନାରୀ ଅଧିକାର
ଦିଅ ତାଙ୍କୁ ନ୍ୟାୟକରେ।
ଆପଣାର ପାପ ଅମାପ ଭାଳିଣ
ନ ବୁଡ଼ ଆଉ ନୈରାଶ୍ୟରେ,
ରୁଦ୍ରରୂପ ତେଜି ବିଶ୍ୱ-ରୂପ
ଦେଖା ଦେବେ ହାସ ଆସ୍ୟରେ।
ଏତିକି ବିଶ୍ୱାସେ ଉଠଉଠ ଅନ୍ଧ,
ତେଜ ଦୂରେ ତମ କପଟତା ଛନ୍ଦ,
ନ୍ୟାୟମୟ ପାତା, ଜଗତ-ବିଧାତା
ବଇରୀ ନୁହନ୍ତି କାହାରି,
କ୍ଷୀଣେ ରକ୍ଷାକର, ଦୁଷ୍ଟେ ଦଣ୍ଡଧର,
ଦୁଷ୍କୃତ ଅନୃତ ସଂହାରୀ।
ତାଙ୍କରି ଅମୃତ ଆନନ୍ଦ ଭଣ୍ଡାର
ଚିର ମୁକ୍ତ କୃପା କ୍ଷମା ପ୍ରେମଦ୍ୱାର,
ତୁମରି ପାଇଁ ତ ମାନବ ସନ୍ତାନ
ବୋଲାନ୍ତି ସେ ଭଗବାନ।

(୩)

ଚିର ନ ରହିବ ଦୁଃଖ-ଅମା-ନିଶା,
ଅରୁଣ ନାଶିବ ଏ ଘନ ତମିସ୍ରା,
ଉଠ ଉଠ ଭାଇ ! ଦିନ ଯାଏ ବହି
ବୃଥା କଷ୍ଟ ସହି।
ତୁମରି ହାତରେ ଅଛି ତବ ମୁକ୍ତି,
ତେଜ ତେଜ ତବ ଜଡ଼ତାର ସୁପ୍ତି,
ତୁମରି କରମେ ଲଭିବ ମରମେ
ଚିର ଆକାଂକ୍ଷିତ ତୃପ୍ତି।

ଚିରଦିନ କାର ନ ଯାଏ ସମାନ,
ନିୟତିର ଚକ୍ର ନିତ୍ୟ ଭ୍ରାମ୍ୟମାନ,
ଏବେ ତଳେ ତବ ଧୂଳିରେ ଶୟନ
ଦୁଃଖ ଅପମାନ ହେବ ଅବସାନ;
(ଯଦି) ମୋହମୁଗ୍ଧ ତବ ମେଲିବ ନୟନ,
ଆଉ ନିର୍ଯ୍ୟାତନେ ନ ବଧିବ ତବ
ଦୁର୍ବଳ ଭାଇ ପ୍ରାଣ।
ଉଠ ତେତ୍ରିଶ କୋଟି ଫିଙ୍ଗି ଦୂରେ
ଅବସାଦ ଆବରଣ,
ମରଣେ ଜୀବନ କର ହେ ବରଣ।
ତୁମ ହୀନତାରେ ବିଶ୍ୱଜନନୀ ଅଶ୍ରୁଭାରେ ମ୍ରିୟମାଣ,
ଉଠ ଅରିନ୍ଦମ ବିଶ୍ୱଜୟୀ ବୀର!
ଉଠ ହେ ମାନବ! ଉଚ୍ଚେ ତୋଳି ଶିର,
ଜୀବନ ଆହବେ, ବିଜୟ ଗୌରବେ
ଲଭ ମଙ୍ଗଳ ପରିତ୍ରାଣ।



## ପୁରୁଣା ଓଡ଼ିଆ

(କ)

ଭଗ୍ନ କୁଟୀରେ ହେ କୃଷକ ଭାଇ
ଅର୍ଦ୍ଧମୃତ ତୋର ପରିବାର,
ନିତି କ୍ଳାନ୍ତି ନିତି ଖଟଣି ସାର ତୋ',
ନ ମିଳଇ ପୂର୍ଣ୍ଣ ଆହାର।
ନଈବଢ଼ି ପାଣି ଧୋଇଦେଲା ତୋର
ଯତ୍ନକର୍ଷିତ କେଦାର,
ନଗରନିବାସୀ ନ ବୁଝିଲେ କେହି,
ଲୁଟିନେଲେ ତୋର ଭଣ୍ଡାର।
ଦିନ-ଖରା ରାତି-କାକର ସହି ତୁ
ବିଲେ କେତେ କାମ କରିବୁ,
ମହାଜନ ଦାଉ ଟିକସ ଜ୍ୱାଳାରେ
ନିତି ନିତି ଆୟୁ ସାରିବୁ।
ଦୀର୍ଘ ହତାଶ ନିଶ୍ୱାସ ତୋର
ଆଉ ନ ମିଶିବ ମାଟିରେ,
ଦେଢ଼କୋଟି ଆଜି ଉଠିବେ ଓଡ଼ିଆ
ଜଡ଼ତାର ମୋହ କାଟି ରେ।

(ଖ)

ହେଦୀନ ଶିଳ୍ପୀ! କୁଟୀରେ ତୁମରି
ଅସ୍ତ୍ର ପଡ଼ିଛି ଅଳସେ,
ବିଦେଶୀ ବିଳାସ ବ୍ୟସନେ ସାରିଲୁଁ
ଧନ ଆମେ ବୃଥା ରଭସେ।
ନ ସ୍ମରିଲୁଁ ତୋର ପୂରୁବ ଗୌରବ,
ନ ଚାହିଁଲୁଁ ଦୀନ ଦଶା,
ଆପଣା ଚରଣେ ହାଣିଲୁଁ କୁଠାର,
ଜଗତେ କି ଲୋକହସା!
ଭୟ ନାହିଁ ଭାଇ ଜାଗିଲାଣି ଏବେ
ପୁରୁଣା ଓଡ଼ିଆ ପ୍ରାଣ,
ଶିବ ଶିରୀ କ୍ଷେତ୍ର ମହତ ବିଭବ
ମଳିର ରଚିବା ଟାଣ।
ଚାହା ବଗିଚାର କୁଲିଗିରି ଆଉ
ନ ଡାକିବ ଆମ ପୁତେ,
ଆପଣା ଗୋଡ଼ରେ ଛିଡ଼ା ହେବେ ସେହି,
ଉଚ୍ଚ ହେବେ ନିଜ କୃତେ।
ନିଜ ହାତେ ନିଜେ ହେବେ ସେ ମଣିଷ,
ନ ଚାହିଁବେ ପର ଦୁଆରେ,
ମୁକ୍ତି-ତରଣୀ ଭାସିବ ଏଥର
ରକ୍ତର ପାରାବାରେ!

(ଗ)

ହେ ବୀର ବନ୍ଦୀ! କାରାଗାର କୋଣେ
କଳଙ୍କିତ ତବ ଅସି,
(ଏବେ) ଝଳେ ନବ ଜ୍ୟୋତିଃ ଅୟସ ଫଳକେ
ଲିଭି ଯାଇଅଛି ମସି।
କିଏ ହସି ହସି ଦେବ ପ୍ରାଣ ଭାଇ,
ବିଶ୍ୱ ଡାକୁଛି କାହାକୁ?
କିଏ କାନ୍ଦି କାନ୍ଦି ଗାଇବ ଗୀତଟି,
ଆଗୁଁସାର ପଥ ଦେବାକୁ?
କିଏ ବହିନେବ ଛିନ୍ନ ପତାକା,
ଉଠାଇବ ବୀର-କେତନ?
ଆସ ଅଗ୍ରେ ଆସ ତରୁଣ ତପସ୍ୱୀ!
କୋଟି କଣ୍ଠ ଡାକେ ସଘନ।



# ଅଜି

ଆଜି ମାଆ ତୋର ମଙ୍ଗଳ ନେତ୍ରେ
ନବୀନ ଆଲୋକ ଜଳା ଲୋ,
ଦେଢ଼କୋଟି ମୋର ଓଡ଼ିଆ ଭାଇଙ୍କୁ
ନବ ଜରମରେ ଜଗା ଲୋ।
ଆପଣା ହାତରେ ଆପେ ଛେଦି ଶିର
ନିଜ ବିଷେ ନିଜେ ମରିବୁଁ,
ମାଆ ତୁ କିପରି ଦୂରେ ଛିଡ଼ା ହୋଇ
ପାଷାଣ ପରାଣେ ଚାହିଁବୁ ?
ସାର୍ଥକ ଆଜି ହେଉ ଲୋ ଜନନୀ !
ସନ୍ତାନ ଅଧିକାର,
ଦୂରେ ଯାଉ ନବ ଜୀବନ ଜ୍ୟୋତିରେ
ଯୁଗାନ୍ତର ଅନ୍ଧକାର।
ଆଦର, ଆଦର, ଆଦର-
ପିପାସୀ ଆସିଛୁଁ ଭଉଣୀ ଭାଇ,
ମାଆ ତୋ ରିକ୍ତ ଅଞ୍ଚଳେ କହ
ସ୍ଥାନ କି ଆମର ନାହିଁ ?
ଆନନ୍ଦ, ଆନନ୍ଦ, ଆନନ୍ଦ-
ଲାଳସୀ ଆସିଛୁଁ ଭଉଣୀ ଭାଇ,
ମାଆ ତୋ' ଅମିୟ ଅଙ୍କ-ଆସନେ
ସ୍ଥାନ କି ଆମର ନାହିଁ ?



# ସାନ୍ତ୍ୱନା

ଝରୁଛି ଅଶ୍ରୁ ଦୀର୍ଘଶ୍ୱାସେ
ବକ୍ଷ ବିଦୀର୍ଣ୍ଣ ତୁମରି,
ବରଷ ବରଷ ବିତିଲାଣି କ୍ଳେଶେ,
ପଡ଼ିଛି ମହୀକି ଆବୋରି।
ଆଶାବାଣୀ କେହି କହିନାହିଁ କାନେ,
ଆଶାଗୀତ କେହି ଗାଇନାହିଁ ପ୍ରାଣେ,
ଚିର ଅବସାଦେ ଲୋଟି ଧୂଳିଶେଯେ
ଜୀବନ ଯିବ କି ବାହାରି ?
ନାହିଁ ନାହିଁ ଚାହଁ ନେତ୍ର ମେଲାଇ
ଆଜି କିଏ ତବ ଦୁଆରୀ।
ଦେବତାର ଦୀପ କନକ-ଆଲୋକେ
ମଙ୍ଗଳ କରେ ଜଳଇ,
ତୁମ ଦୁଃଖ, ଦୈନ୍ୟ ବେଦନା ଆଘାତେ
ଛଳ ଛଳ ଆଖି ଝରଇ;
ନିଅ ବରି ତବ ବୀର ଅରିନ୍ଦମ,
ଥୁଅ ଥୁଅ ପାଦେ ଅରଘ ଚନ୍ଦନ,
ଦେଢ଼କୋଟି ନରନାରୀ ଉଠ ଆଜି
ପାହିଲାଣି କ୍ଳେଶ ଶର୍ବରୀ।



# ସୁପ୍ରଭାତ

ଚାହାଁ ଚାହାଁ ଉଦେ ଚାରୁ ମିହିର,
ତେଜି ଜଡ଼ତା ଉଠ ହେ ଧୀର,
ଉଠ ହେ ଧୀର କରମବୀର।
ନବ ପ୍ରଭାତ, ନବ ଅମୃତେ
ନବ ଜୀବନ ଦେବଟି ମୃତେ,
ତେଜ ଅନୃତେ
ଉତ୍କଳ ସୁତେ,
ଦୂର କର ଅନ୍ଧ-ନୟନ-ତିମିର।
ପ୍ରଚାର କଲାଣି ଦିଗଦିଗନ୍ତ
ବିହଙ୍ଗ ଗୀତେ ନବ ଉଦନ୍ତ,
ଶତ ସୁବାସିତ ସୁମନ-ଗନ୍ଧେ
ମଧୁର ମଳୟ ସମୀର।
ଉଠ ଆଜି ଦେଢ଼କୋଟି ନରନାରୀ,
ଦେବତ୍ୱ ମହତ୍ତ୍ୱ ନ ଦିଅ ହେ ସାରି,
ନିଖିଳ ବିଶ୍ୱେ ରହି ଚିର ନିଃସ୍ୱ
ନ ହୁଅ ଲାଜରେ ନତଶିର।



# ଭାରତ-ରମଣୀ

ସଫଳ ଜନମ, ସଫଳ ଜୀବନ,
ମୁଁ ପରା ଭାରତ-ରମଣୀ,
ମୋ ତ୍ୟାଗ ପୁଣ୍ୟ ସହିଷ୍ଣୁତା ଗୁଣେ
ମୋହିବି ନିଖିଳ ଧରଣୀ।

ନାରୀତ୍ୱର ପୂଜା, ନାରୀତ୍ୱେ ଆଦର
ଲଭି ଶ୍ରେଷ୍ଠାସନ ଛାୟା ଜନନୀର,
ବିଧି ବିଧାନେ ମୁଁ ଶକତି, ସାବିତ୍ରୀ,
ମୁଁ ଶାରଦା, ଲକ୍ଷ୍ମୀରୂପିଣୀ ।
ପ୍ରବୃତ୍ତି ନୁହେ ମୋ' ନିବୃତ୍ତି ପନ୍ଥା,
ସଂଯମ, ଶାନ୍ତି ଜୀବନେ ଗୁନ୍ଥା,
ବୈଧବ୍ୟ, ବସନେ, ଚିତାର ଦହନେ;
ମୂର୍ତ୍ତିମତୀ ଧର୍ମଧାରିଣୀ ।-
ଆତ୍ମଶକ୍ତି ଲୀଳା ନର କଳେବରେ
ଉଠିବ ବିଶ୍ୱ କଟାକ୍ଷ ମାତରେ,
ମୁଁ ତ ଆଦ୍ୟାଶକ୍ତି
ଭକତି ଆରତି ଅନ୍ତିମ ମୁକ୍ତି ସରଣୀ ।



## ମଣିଷ ଭାଇ

ଶୁଣ ହେ ମଣିଷ ଭାଇ !
ଝୁରି ମରିବାକୁ ବୁଡ଼ି ମରିବାକୁ
ମଣିଷ ଜନମିନାହିଁ ।
ଶତ ହତାଶ୍ୱାସେ ସାରିବ ସଂସାର
ନିରାଶେ ନିବିଡ଼ ଅନ୍ଧାରେ,
ଚିର ଶୃଙ୍ଖଳିତ, ଲାଞ୍ଛିତ, ବଞ୍ଚିତ,
ପୀଡ଼ିତ କଷଣ କାରାରେ,
ଏ ନୁହେ ମାନବ ନିୟତି,
ଧ୍ୱଂସର ଯାତ୍ରୀ, ମୃତ୍ୟୁର ଧାତ୍ରୀ
ନୁହେ ଏ ବିଶାଳ ଜଗତୀ ।
ଶୁଣ ହେ ମଣିଷ ଭାଇ !
ଅମୃତ ଦୀପ୍ତି ସନ୍ତାନ ତୁମେ,
ମରଣ ତୁମର କାହିଁ ?
(୨)
ଶୁଣ ଶୁଣ ନରନାରୀ !
ବିଳାସର ଲୀଳାନିକେତନ ବିଶ୍ୱ
ନୁହଇ ସତତ କାହାରି ।
କ୍ରୂର ଅତ୍ୟାଚାରେ ଦଳିବ ଦୁର୍ବଳେ,
ରକ୍ତେ ପିପାସା ଶମିବ,
ନତଶିରେ ସୁଖେ ଶ୍ରୀପାଦ ଅରପି
ଆପଣାକୁ ଆପେ ବଧିବ,
ଏ ନୁହେ ବିଧାତା ବିଚାର,
ଧ୍ୱଂସର ଯାତ୍ରୀ, ମୃତ୍ୟୁର ଧାତ୍ରୀ
ନୁହେ ଏ ସୁନ୍ଦର ସଂସାର ।
(୩)
ଶୁଣ ଶୁଣ ବିଶ୍ୱବାସୀ !
କରମର ଶୁଭ ଭୁବନ ଏହିଟି
କରମରେ ଶ୍ରମ ନାଶି,
ଉଠ ଦେବ ତେଜେ ତେଜି ଲାଜ, ଭୟ,
ଅପମାନ, ଅହମିକା,
ପଶୁତ୍ୱ ଦେବତ୍ୱ ପରୀକ୍ଷାରେ ଜୟୀ
ଲଭ ବୀରତ୍ୱର ଟିକା,
ଗଣୀ କର ଭବରାଣେ,
ତାଙ୍କ ରଚା ଚରା- ଚର ଚରଣରେ
ବଳି ଦିଅ ନିଜ ପ୍ରାଣେ ।
(୪)
ଶୁଣ ଶୁଣ ଅରିନ୍ଦମ !
ଷଡ଼ରିପୂଜିତ, ଦେବତାପୂଜିତ
ତାରାଦଳେ ତବାସନ ।
ଶତ କ୍ଷତଶିରେ ଶୋଣିତ ଶ୍ରାବରେ
ନୁହଁ କ୍ଳିଷ୍ଟ, ନୁହଁ କ୍ଷୀଣ,
ଶତ କଲୁଷର କଳଙ୍କକାଳିରେ
ନୁହଁ ହୀନ, ନୁହଁ ଦୀନ,
ବିଧାତାର ବରପୁତ୍ର
ଯୁଗାନ୍ତ-ମୃତ୍ୟୁ- ରଜ୍ଜୁ ଛିଣ୍ଡାଇ
ଧର ହେ ଜୀବନସୂତ୍ର ।



## ଚାଲ

ଚଅଳେ, ଚାଲ, ଚଅଳେ ଚାଲ
କେତେ କହୁଅଛ ସଙ୍ଗାତ ?
ଅନ୍ଧାରେ ଝୁଣ୍ଡି କଣ୍ଟାଟି ଫୁଟି
ପରାସେ ପୀଡ଼ିତ ଗୋଡ଼ହାତ ।
ଚିର ନିଶି ବୁଢ଼ି ପଡ଼ିଥିବୁ ତଳେ,
ଏ ନୁହେଁ ନିୟତି କଷାଘାତ,
କ୍ଷୁଦ୍ର ଦୀପଟି ତେଜି ଧର ଭାଇ,
ଦଣ୍ଡେ ଛାଡ଼ି ଦେବ ସୁପ୍ରଭାତ ।

କିପାଁ ଘରକୋଣେ ଲୁଚି ବସ ଭାଇ
ରଣ ତୂରୀ ଭେରୀ ବାଜଇ,
ବୀର କିରୀଟର ଆଶାରେ ଉତ୍‌ଫୁଲ୍ଲ
ହୁଅ ହୁଅ ଆଗେ ରଣଜୟୀ ।
କିପାଁ ଭୀତ ହେଉ ବୋଇତବାହୀ ତୁ
ଦେଖି ଭୀମ ଊର୍ମି ସାଗର,
ଅଦୂରେ ଅଛି ତୋ ଆଶା ବିଶ୍ରାମର
ସୁନ୍ଦର ପ୍ରିୟ ବନ୍ଦର ।



# ମାଗୁଣି

ମାଗୁଣି ମୋହର ଅନ୍ତ ହେଉ ଆଜି
ଶାନ୍ତ ଚରଣ ତଳରେ,
ଶାନ୍ତ ଅନ୍ତର ଶାନ୍ତି ଲଭୁ ମୋ
ନବୀନ କରମ ବଳରେ ।
କରମଭୁବନେ ଦେଇଛ ଜନମ
ସରମେ ନ ସରେଁ ଯେସନେ,
ହିସାବ ନିକାଶ ଶେଷ ଦିବସକୁ
ଊଣା ନ ପଡୁ ଏ ଜୀବନେ ।
ମରିବି ଯେ ଦିନେ ମରିଣ ବଞ୍ଚିବି
ଏତିକି କରୁଣା କର ହେ,
ରାଜ-ଐଶ୍ୱର୍ଯ୍ୟ ନ ଦିଅ ପଛକେ
କିଙ୍କର-ରୂପେ ବର ହେ ।



# ପ୍ରାର୍ଥନା

ସାରାରାଜି ଜଳୁ ଭାତି ଜୀବନର ଧ୍ରୁବତାରା,
ଢାଳ ଢାଳ ମୋ' ନୟନେ ଆନନ୍ଦ-ଅମୃତଧାରା ।
ଘନ ତମସ ନିରାଶେ
ବିଶ୍ୱାସ ମୋହର ନାଶେ,
ଫୁଟିଉଠ ଏ ପରାଣେ ପ୍ରେମାଲୋକେ ନେତ୍ରକାରା ।
ଚିର ମୁଁ ତୁମରି ଆଶୀ
ମୋ' ଚିତ୍ତ-ଗଗନବାସୀ,
ହର ମୋ' ଦୁର୍ବଳ ଦେହ କଳୁଷ ଜଞ୍ଜାଳ ଭାରା ।
ତବ ପରଶରତନେ
ଗଢ଼ ଏ ପିଣ୍ଡ ଯତନେ,
ଦୂର କର ମୋ' ଦୁରିତ, ନିବାର ଶୋକାଶ୍ରୁଧାରା ।



# ଆଶ୍ଳେଷ

ଯଦି ବିଜେ ଆଜି ରାଜ ମହାରାଜ
ମୋହରି ଦୁଆରେ ପ୍ରଭୁ ହେ,
ଭାଙ୍ଗି ତବ ଉଚ୍ଚ ମାନ ସିଂହାସନ,
ଛିଣ୍ଡାଅ ଶୃଙ୍ଖଳ ସବୁ ହେ ।
ଧୂଳିରେ ଧୂସର ତନୁଟି ମୋର
ବସନଭୂଷଣହୀନ ଲାଜ ଘୋର,
ରକ୍ତ-ମଥିତ, ଅଶ୍ରୁ-ବ୍ୟଥିତ,
ଯେନ ମମ ସ୍ୱାମୀ ଏ ଦେହଭାର ।
ପଙ୍ଗୁ ମୁହିଁ ଉଠି ନ ପାରେ,
ଅନ୍ଧ ମୁହିଁ ଚାହିଁ ନ ପାରେ,
ଢାଳ ଆଲୋକ, ଢାଳ ପୁଲକ,
ବୁଡ଼ାଅ ପ୍ରେମ-ପାରାବାରେ ।
ଭଗନ ହୃଦୟମନ୍ଦିରେ ଆଜି
ନଗନ ପ୍ରାଣ-ବେଦୀରେ,
ଶୋଣିତ ଚନ୍ଦନେ ଅଭିଷେକ ତବ
ନୀରବ ନିବିଡ଼ ରାତିରେ ।
ଘନ ଆଲିଙ୍ଗନ ମଝିରେ
ପାଇବି ମରମ କତିରେ,
ଭାତିବ ନୟନ ଜ୍ୟୋତିଃରେ
ଯୁଗ ଯୁଗାନ୍ତର ଅନ୍ଧାର ।
ଶତ କ୍ରନ୍ଦନ ରୋଳେ,
ଶତ ବନ୍ଧନ ଭୋଳେ,
ଚିର ସୁନ୍ଦର ମୋର ପାଇବି ଆନନ୍ଦେ
କମ୍ପିତ ବକ୍ଷସ୍ଥଳେ ।



# ମୋ' କରଣି

ଏ ଚିର କଷଣୁ ତରାଣ ହେ ନାଥ
ନୁହେ ସେ ଚରଣ ମାଗୁଣି,
କଷଣ ଦୂଷଣେ କରଣିଟି ମୋର
ନେବି ଏ ଜୀବନେ ବରଣି ।

ଏ ଭବ ଅର୍ଣ୍ଣବ ପାରି ପାଇବାର
ଜାଣେ ଶ୍ରୀପଦଟି ତରଣୀ,
ନିଜ ମୁକ୍ତି ଲାଗି ନ ଆଶ୍ରିବି ତହିଁ
ବୁଡ଼େ ଯେବେ ଆନ ପରାଣୀ ।
କରମ ମୋହର ହେଉଛି ଧରମ,
ଶରମେ ନ ସେବେ ଧରଣୀ,
ରାଜ-ଅଇଶ୍ୱର୍ଯ୍ୟେ ନ ଭ୍ରମୁ ମରମ,
ନ ଲୋଡୁ ସଂପଦ ସରଣୀ ।

—:*:—

## ନିର୍ମାଖୀ

ଅଶ୍ରୁରେ ଆଜି ଧୋଇଅଛି ମୋର
ମରମର ଅହଂକାର,
ପ୍ରାର୍ଥନା ମୋର ପୟରେ ନିବାର
ନିରାଶାର ହାହାକାର ।
ଦୁଃଖରେ ଆଜି ତେଜିଅଛି ମୋର
ଗର୍ବର ମେଘାସନ,
ଆଘାତରେ ଆଜି ଚୂର୍ଣ୍ଣ ମୋହର
କିରୀଟର ଆଭରଣ ।
ଭଗ୍ନ ବୀଣାର ତାର,
ଭୁଲିଅଛି ପ୍ରିୟ ଲଳିତ ରାଗିଣୀ,
ଛନ୍ଦର ଅଳଂକାର ।
ଏତିକି ମାଗୁଣି ଚରଣେ,
ପରାଜୟ ଦୁଃଖ ନିନ୍ଦି ମୋ' କରମ
(ଯେହ୍ନେ), ନ ମରିବି ଚିର ମରଣେ ।

—:*:—

## ଶ୍ରୀଛାମୁ

ସେଦିନ ଅନ୍ଧାରେ ତୀବ୍ର ତୃଷାରେ
କମ୍ପୁଥିବି ଶୀତ ନିଶୀଥେ,
ଜଳୁ ଜଳୁ ତବ କ୍ଷୁଦ୍ର ପ୍ରଦୀପ
ଗୁପ୍ତ ଏ ଚିତ୍ତେ ସ୍ତିମିତେ ।
ଯେ ଦିନ ରୁଦ୍ର ରୌଦ୍ର ଦହନେ
ବୁଲୁଥିବି ତୃଷା ଘର୍ମରେ,
କ୍ଷୁଦ୍ର ତୁମର କୃପାଝରଣାର
କଳଗୀତି ବାଜୁ ମର୍ମରେ ।
ଯେ ଦିନ ନୀରବ ରୋଗଶେଯେ ପଡ଼ି
ନୟନ ବାନ୍ଧିବ ରୁଧିରେ,
ଅଲକ୍ଷିତ ହାତେ ଛୁଇଁଯାଅ ମୋତେ
ସ୍ନେହୀ ସଖା ସମ ସୁଧୀରେ ।
ଯେ ଦିନ ଭିକାରୀ ପରାଏ ବୁଲିବି
ହକାରି ଦୁଆରେ ଦୁଆରେ,
ତୁମରି ଭଣ୍ଡାର ମେଲା ଥାଉ ପ୍ରଭୁ
ଦୀନ ଦୁଃଖିତର ଆଗରେ ।
ଯେ ଦିନ ଭୀଷଣ ରଣପ୍ରାଙ୍ଗଣରେ
ଏକା ହୋଇଥିବି ଛିଡ଼ା ମୁଁ,
ଶତ କରେ ଶସ୍ତ୍ର ଧରି ବାହାରିବ
ଶତ ବୀରବେଶେ ଶ୍ରୀଛାମୁ ।
ଯେ ଦିନକଠିନ କାରା ନିଗଡ଼ରେ
ଦୃଢ଼େ ହୋଇଥିବି ବନ୍ଧନ,
ନକ୍ରନାଶନ ଚକ୍ର ତୁମରି
କରୁ ତାହା କ୍ଷଣେ ଛେଦନ ।

—:*:—

## ନରନାରାୟଣ

ତୁମେ ଏଇ ପଥେ ଯିବ ବୋଲି
ସାରାରାତି ଧରା ଥିଲା ଉଜାଗର,
ରଖିଲା କବାଟ ଖୋଲି
ବଉଦ ଚାନ୍ଦର ମୋହନ ଲୀଳା
ଆକାଶେ ଅମୀୟ ଆଲୋକ ମେଳା,
ଚାରୁ ଚନ୍ଦ୍ରାତପ ଥାପି, ଅନନ୍ତ ଦିଗନ୍ତବ୍ୟାପୀ
କୋଟି ତାରାଦୀପେ ମଙ୍ଗଳ ଆଳତି ଜାଳି ।
ହୃଦ ଉଲସାଇ ବାସ ବିକଶାଇ
ଫୁଟାଇ କୁସୁମମାଳି ।
ନିଖିଳ ଜାଗିଲା ତୁମରି ପାଇଁ,
ମହାମହିମଙ୍କୁ ଥିଲା ଅନାଇଁ,
ବହିଲା ସୁବାସ ମଳୟ ମନ୍ଦେ,
ଗାଇଲେ ବିହଙ୍ଗ ଲଳିତ ଛନ୍ଦେ
ତବ ସ୍ତବ ସ୍ତୁତି ବନ୍ଦନା,
ନବ ଧାନ, ଦୂବ, ଚନ୍ଦନ ଘେନି
ସଜାଡ଼ିଲା ଅର୍ଘ୍ୟଥାଳୀ ।

ତୁମେ ଗଲ କେଉଁ ପଥେ
କେହି ନ ଜାଣିଲା ସତେ,
ଦରିଦ୍ର ଇତର ବେଶେ ଦ୍ୱାରେ ଦ୍ୱାରେ
ପଡ଼ିଲା ଶ୍ରୀପାଦ ଧୂଳି,
ଶତ ଛିନ୍ନ ତବ ଭିକ୍ଷାର ଥଳୀ
ପୂରାଇଲ ବୁଲି ବୁଲି,
କେହି ନ ଚିହ୍ନିଲେ ନରନାରାୟଣ-
ଛଦ୍ମେ ପ୍ରେମ ଦେଲ ଢାଳି ।



# ବିଷାଦିତର ବିଶ୍ୱାସ

ଚିର ମାଘ ନ ଥିବଟି ଏ ପୋଡ଼ ଜୀବନେ,
ଆସିବ ଫଗୁଣ ନିଶା ଦକ୍ଷିଣା ପବନେ ।
କାନ୍ଦେ ଆଜି ସିନା କ୍ଷୁବ୍ଧ କୋକିଳର ବଧୂ,
ଆସିବ ଅମୃତକାନ୍ତି ଫୁଲପନ୍ତି ମଧୁ ।
ଚମ୍ପାଚୂତ ଆଜି ସିନା ଝୁରି ମରେ ପିକେ
ପାଇବ ପାଇବ କୋଳେ ବସନ୍ତ ରସିକେ ।
ପଞ୍ଚମ ବୀଣା ତାନେ
ଫାଲ୍‌ଗୁନୀ ନିଶା-ଯାମେ
ଝରିବ ସ୍ୱରଗସୁଧା ସଞ୍ଜୀବନୀ ଧାର,
ପିନ୍ଧିବ ଗୋ ତରୁକୁଳ ଫୁଲ ଅଳଙ୍କାର ।
ଆଉ ନ ଲୁଚିବ ଲାଜେ କେତକୀ କାମିନୀ,
ଚାନ୍ଦିନୀ ଚୁମ୍ବନେ ଯେବେ ଚୁମ୍ବିବ ଯାମିନୀ ।
ନବୀନ ବକୁଳମାଳ ବାସ ଚହଟାଇ
ବହିବ ମଳୟ ମନ୍ଦ ହୃଦ ଉଲ୍ଲସାଇ ।

(୨)

କିପାଁ ଅଭିମାନେ କାନ୍ଦ ଗୋଲାପ ମଲ୍ଲିକା,
ଫୁଟିବ ଫୁଟିବ ବାସ କୁସୁମକଳିକା;
ଶୋଭିବ ଚିକ୍‌କଣ ଚାରୁ କୋମଳ ପଲ୍ଲବେ,
ଶୀତଶୀର୍ଣ୍ଣ ପତ୍ରହୀନ ଝୁରନ୍ତ ନୀରବେ ।
ନବୀନ ବାସନ୍ତୀ କାନ୍ତି
ନାଶିବ କଷଣ ଶାନ୍ତି,
ହରିବ ଦୂଷଣ, ଶିରୀ ଫୁଟିବ ଆନନେ,
ହସିବ ବସନ୍ତ ଯେବେ ଗଗନେ ଗଗନେ ।
ବାଜିବ ବିନୋଦ ବୀଣା ଫୁଲ କୁଞ୍ଜେ କୁଞ୍ଜେ,
ରସିବେ ବିହଙ୍ଗ ନବ ଗୀତ ମଞ୍ଜୁ ପୁଞ୍ଜେ ।

(୩)

ଚିର ମାଘ ନ ଥିବ ଏ ପୋଡ଼ା କପାଳରେ
ଜାଳି ମୋ' କମଳବନ ଶିଶିର ମାଳରେ ।
ହାସ ବାସ ରସ ହୀନ ଦୀନ ଅରବିନ୍ଦ
ଉତ୍ସଙ୍ଗେ ଝୁରଇ ମଧୁତୃଷିତ ମିଳିନ୍ଦ ।
ଉଦାସେ ଆକାଶେ ଚାହିଁ କାନ୍ଦେ କୁବଳୟ,
ହେରି କ୍ଷୀଣ ପ୍ରଭାକରେ ଅଥୟ ହୃଦୟ ।
ହେବ କ୍ଳେଶ ଅବସାନ,
ଘୁଞ୍ଚିବ ତା' ଅପମାନ,
ମଧୁର ମାଧବୀ ପ୍ରାତେ କନକ-କିରଣେ
ନିଖିଳ କୁସୁମରାଣୀ ଅରୁଣ ଚରଣେ
ପ୍ରେମେ ଢଳ ଢଳହିଆ ହେବ ପ୍ରଫୁଲ୍ଲିତ,
ଶୋଭିବ ସରସୀ ଜଳ ମୃଦୁ ହିଲ୍ଲୋଳିତ ।

(୪)

ଚିର ନ ମରିବ କ୍ରୂର ତୁଷାର ତରାସେ,
ଗନ୍ଧ ବିକଶିବ ମନ୍ଦେ ବକୁଳ ଉଲ୍ଲାସେ ।
ଶତ ସୁରଭି ସୁମନ ସାଜେ ଶୋଭାମୟୀ
ମଳୟ ଉଲ୍ଲାସେ ରସି ହସିବ ତ ମହୀ,
ଚିର ମାଘ ନ ଥିବ ତା ପୋଡ଼ା ଅଦୃଷ୍ଟରେ,
ଚିର ନ ଦଳିବ ବଳୀ ଦର୍ପିତ ପାଦରେ,
ଏ ନୁହେ ନିୟତି,
କେହି ଚିର କୁଟୀ କୋଣେ, କେହି କୋଟିପତି ।

(୫)

ଚିର ମାଘ ନ ଥିବ କା ପୋଡ଼ା କପାଳରେ,
ଚିର ନିଶା ନ ଭାସିବ ନୟନଜଳରେ,
ଦୀର୍ଘ ଦାରୁଣ ଶାସ୍ତି,
କ୍ରୂର କଷଣ କ୍ଳାନ୍ତି,
ଚିର କା କଙ୍କାଳ ପେଷି ନ କରିବ କ୍ଷୀଣ,
ଅକାଳେ ଜୀବନତନ୍ତ୍ରୀ ନ ହେବଟି ଛିନ୍ନ ।
ନ ହଜିବ ମନୁଷ୍ୟତ୍ୱ ତେଜଃ ବୀର୍ଯ୍ୟରାଶି,
ହସିବ ବସନ୍ତ ଦିନେ ଜୀବନେ ବିକାଶି ।

(୬)

ଚିର ମାଘ ନଥିବ କା ପୋଡ଼ା କରମରେ,
ଚିର ନ ସରିବ କେହି ଲାଜ ସରମରେ;
ହରୁଥିବେ ଅତ୍ୟାଚାରୀ ଦୁର୍ବଳ ସମ୍ପଦ,
ବଞ୍ଚିତ ଲାଞ୍ଛିତ ବକ୍ଷେ ସ୍ଥାପିବେ ଶ୍ରୀପଦ ।

ଦୁଃଖୀ ଦୁଃଖ ଦେଖିନିତି କାନ୍ଦୁଥିବ ବିଶ୍ୱ
ନୋହିବ କଙ୍ଗାଳି ନୀତି ନିପୀଡ଼ିତ ନିଃସ୍ୱ
ଏ ନୁହେଁ ବିହି ବିଚାର,
ଚିର ନ ରହିବ କା'ର ଗର୍ବ ଅହଂକାର ।

(୭)

ଚିର ମାଘ ନ ଥିବା କା' ପୋଡ଼ା ଅଦୃଷ୍ଟରେ,
ଚିର ନ ଦହିବ କେହି ନିରାଶା କ୍ଲେଶରେ;
ଜନମ ଜନମ କା'ର ନ ଯିବ ବିଫଳି,
ହତାଶ୍ୱାସେ ଭାଳି ଭାଗ୍ୟ ସଙ୍ଗେ କରି କଳି ।
ଧରଣୀ ଧୂଳିରେ
ଈଶ ସୃଷ୍ଟି ସାର ନର ଯିବ କି ମିଶିରେ,
ଏହି ତା'ର ଶେଷ ?
ନୁହେଁ ନୁହେଁ, ଅଛି ଭାଇ ଜୀବନ ଅଶେଷ ।

(୮)

ବ୍ୟର୍ଥ ଏ ମାନବ ଦେହ ନ ଧରିଲା ଭବେ
ମାନବର ଆଶା ଯଦି ନ ପୂରିବ ଲବେ,
ଜନମ ଜନମ ବୁଲି ଲଭିବ କି ଫଳ
ଅନ୍ଧ କର୍ମସୂତ୍ର ମାତ୍ର ଯଦି ତା ସମ୍ବଳ ?
ଦେବତ୍ୱ, ମହତ୍ତ୍ୱ,
ନାହିଁ ଯଦି ଜୀବନେ, କେ ଚାହେଁ ମାନବତ୍ୱ ?
ବିଧାତାର ଛଳ
ନୁହେ ଏ ଜଗତ ବୃଥା ମାୟାର କୌଶଳ ।
ବୃଥା ଇନ୍ଦ୍ରଜାଲ ପରି ଦେଖି କେ ଭୁଲିବ,
ଶତ ଶୋକ, କଷ୍ଟ, କାନ୍ତି କହ କେ ସହିବ ?
ଜରା ମୃତ୍ୟୁ ଦୈନ୍ୟରାଶି କେ ବହିବ ଶିରେ,
ମାନବର ଆଶା ଯଦି ନ ପୂରେ ମହୀରେ ?

(୯)

ଚିର ମାଘ ନ ଥିବ କା' ପୋଡ଼ା ପରାଣରେ
ଚିର ନ ଯିବ କା' ଦିନ ପର ଶରଣରେ,
ଶୀର୍ଣ୍ଣ ନ ଶୋଇବ ଜୀର୍ଣ୍ଣ ଦୀନ ନିକେତନେ,
ଅଶନ ବସନ ଚିନ୍ତା ମାରିବ ଜୀବନେ ।
ନିଜ ବିଲଦାଣ୍ଡେ ବସି ବୋଲାଇ ଭିକାରୀ
ନିଜ ଅରଜିତ ବିତ୍ତେ ନୁହେ ଅଧିକାରୀ,
ମୁଣ୍ଡଝାଳ ତୁଣ୍ଡେ ପଡ଼ି ସେ କରମ-ହୀନ,
ଛିଣ୍ଡା କନ୍ଥା ସମ୍ବଳ ତା' ଚିତ୍ତ ଚିନ୍ତା-କ୍ଷୀଣ;
ଏ ନୁହେ ଶାଶ୍ୱତ,
ନବ ଭୁଜବଳେ ଉଠିବ ସେ ପଦାନତ ।
ସେ କ୍ଷୁଦ୍ର ପାଷାଣ,
ରଚିବ ହିମାନୀ ଶିଖ ମହାଗିରିମାନ ।
କ୍ଷୁଦ୍ର ଦୀପାଧାର,
ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜେ ଜାଳିବ ସଂସାର ।

(୧୦)

ଚିର ମାଘ ନଥିବ କା' ପୋଡ଼ା କପାଳରେ,
କିପାଁ ମୁଁ ଭାସିବି ତେବେ ନୟନଜଳରେ ?
ଜାଣେ ଏ ଜୀବନ ନୁହେଁ ମାୟାର ଛଳନା,
ନିଷ୍ଠୁର ନିୟତି ଚକ୍ର ପେଷଣ ଯନ୍ତ୍ରଣା;
ଅକାଳେ ମରିବା ପାଇଁ
ଜଗତେ ଜନମିନାହିଁ
ଅନନ୍ତ ଜୀବନ, ପ୍ରାଣେ
ଅନନ୍ତ ପ୍ରେରଣା,
ନୁହେଁ ମୁଁ ମାନବ ମାତ୍ର
ମାଟିର ଖେଳନା ।
ଜାଣେ ଏ ଜୀବନ ନୁହେଁ
ଜଳର ବୁଦ୍‌ବୁଦ,
ନିତି ନବ କର୍ତ୍ତବ୍ୟରେ
ହେବି ମୁଁ ଉଦ୍‌ବୁଦ୍ଧ ।
କରମଭୂମି ଏ ପ୍ରେମ
ଲୀଳା ନିକେତନ,
ନୁହେଁ ନୁହେଁ ମିଛମେଳା
ଭବ ଆୟୋଜନ ।



## ଅଭୟପଦ

ଏଥର ପ୍ରଭୁ, ଏଥର, ଭୟ ଦିଅ ଭାଙ୍ଗି ମୋହର ।
ଏଥର ପ୍ରଭୁ, ଏଥର !
ତୁମର ବିଶାଳ ବିଶ୍ୱ ଭୁବନେ
ସାନ ହେଲେ ମୁହିଁ ତଥାପି ତ ଜଣେ,
(ତେବେ) କିପାଇଁ କମ୍ପିତ, ଭୀତ, ବିଷାଦିତ,
ଅବସାଦିତ ଏ ଅନ୍ତର ?
ନିତି ନୟନରେ ହେରେ ଅନ୍ଧକାର,
ଜଗତ ବ୍ୟଥିତ, ଉଠେ ହାହାକାର,
ରୁଦ୍ର ରୂପଧାରୀ ହେ ବିଶ୍ୱ ସଂହାରି !
ଲୀଳାମୟ ଲୀଳା ସମ୍ବର ।

ଉପରେ ଦିଶେଯା ନିଷ୍ଠୁର ମରଣ
ସେ ତ ଜୀବନର ସ୍ନେହ ଆବରଣ,
ଦେଖାଅ ତା ମୋରେ, ଶିଖାଅ ତା ମୋରେ,
ଯାଉ ଏଜଞ୍ଜାଳ ଜ୍ୱାଳାରାଶି ଦୂରେ,
ସତ୍ୟରୂପେ ପ୍ରତିଭାତ ହୁଅ ନେତ୍ରେ
ମୋ ମାନସସରେ ହେ ଚିର ପବିତ୍ର
ଫୁଟ ଶତଦଳ, ସୁନ୍ଦର !
ହେ କ୍ରୂର ! ତୁମରି କରୁଣା-କିରଣ-
ପରଶେ ପ୍ରଫୁଲ୍ଲ ବିବିଧ ବରଣ
ମମ ମର୍ମ-ପ୍ରୀତି-ବୃତ୍ତି-ନିଚୟ
ଶୋଭୁ ସୁବାସିତ ପୁଷ୍ପ ନିକର ।

—:※:—

## ନାରୀ ଶକ୍ତି

ଷୋଳ କୋଟି ପ୍ରାଣେ ଆସିଛି ଆହ୍ୱାନ
ଦୂର ମହାକାଶୁଁ ଆଜି,
ଷୋଳ କୋଟି ନାରୀ ଉଠିବେ ଭାରତେ
କରୁଣା କଲ୍ୟାଣେ ସାଜି ।
କେତେଦିନ ଆଉ କହ କେତେଦିନ
ପୁଣ୍ୟ ଆର୍ଯ୍ୟଭୂମି ହୋଇଥିବ ହୀନ ?
ହେର, ଅବସାନ ଆଜି ଦୀର୍ଘ ରାତି,
ଫୁଟେ ପ୍ରାଚୀମୂଳେ ନବାରୁଣ ଭାତି,
ଶତ ଶତ ପୂତ ପଦ୍ମିନୀ ପୟର
ନୂପୁର ଉଠଇ ବାଜି;
ଉଠିବେ ଭାରତ ଶକତି ସଂହତି,
ଜାଗିବେ ଭାରତେ ଇନ୍ଦିରା ଭାରତୀ,
ଚାହିଁ ଚାହିଁ ନେତ୍ର ମେଲାଇ ରେ ଜଡ଼
ମୂଢ଼ ମୋହନିଦ୍ରା ଭାଜି ।
ଭାରତର ନାରୀ ଭାରତ ସମ୍ପଦ,
ପୂଜ ଦେବୀ ଜ୍ଞାନେ ପଦ-କୋକନଦ,
ଭଗିନୀ, ଜନନୀ, ଜାୟା, ସୁତା ମୁଖ
ଉଜ୍ଜ୍ୱଳୁ ଅମର୍ତ୍ତ୍ୟ ଆନନ୍ଦ ମୟୁଖ,
ସେ କିରଣେ, ତବ ଅନ୍ତର ଅନ୍ଧାର
ପୁଞ୍ଛିବ ଜଞ୍ଜାଳ ଜ୍ୱାଳା ପାପଭାର,
ସଞ୍ଚରିବ ଭୁଜଦଣ୍ଡେ ଚଣ୍ଡ-ଶକ୍ତି
ପ୍ରଫୁଲ୍ଲ ମାନସ ତାମରସ ଗନ୍ଧେ
ସ୍ଫୁରିବ ଅମୃତ ଭକ୍ତି ।

ବସୁନ୍ଧରା ତଳେ ଭାରତରମଣୀ
ନୁହେ ହୀନ ନୁହେ ଦୀନ,
ଅମର କୀରତି କୋଟି ଯୁଗେ କେଭେଁ
ଜଗତୁଁ ନୋହିବ ଲୀନ;
ଯେତେଦିନ ବହୁଥିବ ଗଙ୍ଗାଧାର,
ହିମଗିରିଶିର ଶୋଭିବ ତୁଷାର,
ଆର୍ଯ୍ୟରମଣୀର କୀରତି କାହାଣୀ
ମୃଦୁଳ ମଳୟ କରିବ ପ୍ରଚାର ।
ପୂତ ରାଜସ୍ଥାନେ, ରାଜପୁତ୍ର ବନେ,
କଳିଙ୍ଗେ, କର୍ଣ୍ଣାଟେ, ବଦ୍ରି, ବୃନ୍ଦାବନେ,
ମିଥିଳା, ବିଦର୍ଭ, ବଙ୍ଗେ, ବିନ୍ଧ୍ୟାଚଳେ,
ଆର୍ଯ୍ୟ ମହିଳାର ମହିମା ଉଜ୍ଜ୍ୱଳେ ।
ଆଜି ସୁଦ୍ଧା ସତୀ, ସାବିତ୍ରୀ, ପଦ୍ମିନୀ,
ସଂଯୁକ୍ତା, ସୁଭଦ୍ରା, ଜାନକୀ, ରୁକ୍ମିଣୀ,
ଜୀବିତ ଭାରତ ଜୀର୍ଣ୍ଣ କଙ୍କାଳରେ,
ଆର୍ଯ୍ୟମାତା ମରିନାହିଁଟି ପ୍ରାଣରେ,
ଗୋପନେ ଗୋପନେ କ୍ଷୀଣ ଶିରା ମଧ୍ୟେ
ବହେ ତାର ପ୍ରାଣଧାର,
ମେନକା ପାଷାଣୀ ସୁତା ଶକତିରେ
ଘୁଞ୍ଚିବ ତା' ହାହାକାର ।
ନାଜେ ନତ ଆଉ ନୋହିବ ତା ମଥା,
ହରିବ ଦୁହିତା, ଜନନୀର ବ୍ୟଥା,
ଷୋଳ କୋଟି ନାରୀ ଉଠିବେ ଆନନ୍ଦେ
'ବନ୍ଦେ ମାତରଂ' ଗାଇ,
ଭାରତ ଉଦ୍ଧାର ମହାମନ୍ତ୍ର ଦୀକ୍ଷା
ନେବେ ସେ ଉଉଣୀ ଭାଇ;
ଭୁଲିନାହିଁଜେବେ ଭାରତ ସନ୍ତାନ
ନାରୀ ଚିର ତାର ଦେବତା ପ୍ରଧାନ,
ବାଣୀ, ବୀଣାପାଣି, ଅନ୍ନଦା, ଈଶାନୀ,
ରମା, ନାରାୟଣୀ, ତ୍ରିତାପ ତାରିଣୀ,
ଧର୍ମେ କର୍ମେ ସଦା ସେ ସହଚାରିଣୀ ।
ବୃଥା ଉବତଳେ ନ କର ପ୍ରଚାର
ଭାରତରେ ଭରା ନାରୀ ଅତ୍ୟାଚାର,
ବିଦେଶୀ ସରବେ ଗରବେ ବଖାଣି
ନ ଗାଆନ୍ତୁ ନାରୀ ଦୁର୍ଦ୍ଦଶା କାହାଣୀ,

ଉଠ ନବ ତେଜେ ଉଠ ଆର୍ଯ୍ୟସୁତ
ଅପମାନେ ଅନ୍ଧ ଅବଜ୍ଞାରେ ମୃତ,
ଉଭାହେଉ ଆଜି ଦିବ୍ୟ ଦୀପ୍ତିମୟୀ
ସ୍ୱାହା ଅନଳର ପାଶେ,
ବଜ୍ରଧାରୀ ବାମେ ଶକ୍ତିମୟୀ ଶଚୀ
ବିରାଜୁ ଗରବୋଲ୍ଲାସେ;
ହେଉ ଅବତୀର୍ଣ୍ଣା ଉମା ଘରେ ଘରେ
ତ୍ରିଶୂଳଧାରିଣୀ, ବିଶାଳ ଖର୍ପରେ
ପୋଛି ନେଉ ପାପ, ଦୈନ୍ୟ ସନ୍ତାପ,
ଉଠୁ ଭାରତ ତା ପ୍ରାଚୀନ ଦର୍ପରେ ।
ମହା ମହିମାର ମହା ତପୋବନ
ରଚିବେ ରମଣୀ ନୈମିଷ କାନନ,
ଭାରତର ବକ୍ଷେ ଧରା ଅଳଙ୍କାର,
ଦୂରେ ଯାଉ ଆଜି ଅମୃତ ଆନନ୍ଦେ
ନୈରାଶ୍ୟ ବିଷାଦ ଆର୍ତ୍ତ ହାହାକାର;
ବରଷ ବରଷ ମହା ଛଳନାରେ
ମୃଣ୍ମୟୀ ପ୍ରତିମା ଷୋଡ଼ଶୋପଚାରେ
ଆଉ ନ ପୂଜିବେ ଋଷିର ସନ୍ତାନେ,
ଜୀବନ୍ତ ଜନନୀ ଚରଣକମଳ
ଲଭିବ ଭକତି-ଆରତି ବିମଳ,
ଆଉ ନ ମରିବେ ମାତୃ ଅପମାନେ,
ଘରେ ଘରେ ହେବ ମାତାର ପ୍ରତିଷ୍ଠା,
ବଢ଼ିବ ଶକତି ସାଧନାର ନିଷ୍ଠା,
ଭାରତ-ସଦନୁଁ ମିଥ୍ୟାଚାରରାଶି
ଯିବ ଦୂରେ, ବହୁ ଦୂରେ,
ପୂତ ମାତୃତୀର୍ଥ ରଚିବେ ରମଣୀ
ଭାରତର ଅନ୍ତଃପୁରେ ।
ବୀର ସୁତା ହେବେ ବୀର-ପ୍ରସବିନୀ,
ଶତ ଅରୁନ୍ଧତୀ, ବଶିଷ୍ଠ ଶୋଭନୀ,
ଯଶୋଦା କୁଟୀର ଯଶୋଗୀତେ ପୁଣି
ନିନାଦିବ ଆର୍ଯ୍ୟ କ୍ଷିତି,
ଶତ ଦେବସୁତ ଆଦରେ ଶ୍ରୀଅଙ୍କେ
ଘେନିବେ ପୁଣି ଅଦିତି;
କୌଶଲ୍ୟା ସୁମିତ୍ରା ଶଚୀ ମାତା ଯା'ର
ସେ ତନୟ ସିନା ଦେଶ ଅହଙ୍କାର,
ଫେରି ତ ଆସିବେ ଶିବାଜୀ, ପ୍ରତାପ,
ନ କର ନ କର ବୃଥାରେ ବିଳାପ,
ଉଠିଥିଲୁ ଦିନେ, ପଡ଼ିଅଛୁ ତଳେ,
ନ ହୁଅ ନିରାଶ ଭାଇ,
ଉଠିବୁ ଏଥର କେଶରୀବିକ୍ରମେ
ମାତାର ଉତ୍ସାହ ପାଇ ।
ମାଆ ସେ ଆମର ଧ୍ୟାନ, ଆରାଧନା,
ମାଆ ତ ଆମର ସର୍ବାର୍ଥ ସାଧନା
ମାତୃନାମ ମନ୍ତ୍ର ଜପି ହୃଦତନ୍ତ୍ରେ
ଉଠିବୁ ଭାରତ ତରୁଣ ତରୁଣୀ,
ଉଠିବୁଁ ଏଥର ତେତ୍ରିଶ କୋଟି,
ଆଉ ନତ ଶିରେ ନଥିବୁଁ ମଉନୀ ।
ଗଲାଣି ଆମର ଦିନ ଜଡ଼ତାର,
ଅପସରିଯାଏ ଦୂରେ ଅନ୍ଧକାର,
(ଏବେ) ଭାରତର ବକ୍ଷେ ଏକ ମହାଲକ୍ଷ୍ୟେ
ବନ୍ଧା ନରନାରୀ ପ୍ରାଣ,
ମିଶି ଭ୍ରାତା ଭଗ୍ନୀ ଘୁଞ୍ଚାଇବୁଁ ପ୍ରାଣ-
ପଣେ ମାତୃ ଅପମାନ ।
ଉଦ୍ଧାରିବେ ପୁଣି ଭରତର ଭୂମି
ଦୁର୍ଗା ଦଶ-ପ୍ରହରଣେ,
ମନ୍ଦିରେ ମନ୍ଦିରେ ପୂଜିବେ ଯୁଗଳ
ମୂର୍ତ୍ତି ଲକ୍ଷ୍ମୀନାରାୟଣେ;
ଈଶ୍ୱର ପାର୍ବତୀ ମିଶି ବେନି ଅଙ୍ଗେ
ଶୋଭିବେ ଜାହ୍ନବୀ ବ୍ରହ୍ମପୁତ୍ର ସଙ୍ଗେ,
ଆଉ ଥରେ ଆର୍ଯ୍ୟଧରା,
ହୋଇବ ଅଖିଳ-ଅବନୀ-ବନ୍ଦିତା
ନନ୍ଦନର ଫୁଲଝରା ।



## ସାହସ

ଦୁଃଖ ଯେଦିନ ଘୋଟିଆସେ ମୋର
ରୁଦ୍ର ତିମିର ବେଶେ,
ସେଦିନ ଯେସନେ ଭୟେ ନ ମରିବି
ତାକୁ ନିରାଶା କ୍ଲେଶେ ।

ଅଶ୍ରୁ ଯେଦିନ ବୃଷ୍ଟି ପରାଏ
ନେତ୍ରେ ବହାଏ ଧାର,
ସେଦିନ ଯେସନେ ଭୁବନେ ଭୁବନେ
ନ ଜାଗିବ ହାହାକାର।
ମୃତ୍ୟୁ ଯେଦିନ କରାଳ ଲୋଚନେ
ତରାଟି ଚାହିଁବ ମୋତେ,
ନିଜର ମହତ୍ତ୍ୱେ ବରିବି ତାହାକୁ,
ନ ମରିବି ଅଣାୟତେ।
ଦୂର କର ମୋର ନିବିଡ଼ ନିରାଶ-
ବନ୍ଧନ ଗୋଟି ଗୋଟି,
କ୍ରନ୍ଦନ ମୋର ନ ଉଛୁଳୁ ପ୍ରାଣେ-
କଣ୍ଟକ କୋଟି କୋଟି।



## ସୌଭାଗ୍ୟ

ଘନ ଗହନ ତିମିର ନିଶା
ଏକାକୀ ପଥିକ ଚାଲଇ ଡ଼ରି,
କେ ଜାଣେ ତାହାର କହିଗଲା କଥା
ପାହିବ ତୋ ଦୁଃଖ ବିଭାବରୀ-
ଉଠ ହେ ପାନ୍ଥ ତରୁଣ ତରୁଣୀ !
ପୂରୁବ ଗଗନ ଉଠେ ଅରୁଣି,
ନବ ଆଲୋକେ, ନବ ପୁଲକେ
ନିଖିଳ ଅବନୀ ହସିବ,
ଫୁଟିବ ପ୍ରସୂନ ବନେ ଉପବନେ
ନବଗାନେ ପିକ ରସିବ।
ଶତ ଅତ୍ୟାଚାର ଅନାଚାର ରାଶି-
ବନ୍ଧନ ତବ ଖସିବ,
ନବ ମଙ୍ଗଳେ ନିଖିଳ ଧରା
ନବ ପ୍ରେମାନନ୍ଦେ ଭାସିବ।



## ଆତ୍ମବଳ

ଚିର ଆର୍ତ୍ତନାଦ ବେଦନା ବିନାଶି
କଣ୍ଠେ ଦିଅ ମୋର ଗୀତ,
ଶୁଣୁ ଚରାଚର ମୋ ବଂଶୀ ଝଙ୍କାର,
କରୁ ତା ନିଖିଳ ନନ୍ଦିତ।
ମାୟାଜାଲ ବୁଣା ଶେଷ ହେଉ ମୋର,
ଗୁନ୍ଥିବସେଁ ଫୁଲମାଳି,
ଚିର ଅଶ୍ରୁରାଶି ଶୁଷ୍କ ହେଉ ମୋ',
ହର୍ଷଧାରା ଦିଏଁ ଢାଳି।
ଦୀର୍ଘ ଅଳସ ଦିବସ ଯାମିନୀ
ପୂରିଉଠୁ କର୍ମ କୋଳାହଳେ,
ଶକ୍ତି ପ୍ରାର୍ଥନା ଲଭୁ ପ୍ରତିଷ୍ଠା
ନିର୍ଭର ପୂର୍ଣ୍ଣ ଆତ୍ମବଳେ।



## ମିଳନ

କର ଦୂର କର ଦୂର ସରମର ଆବରଣ,
ଅଙ୍ଗେ ଅଙ୍ଗେ ମୋର କର ଆଲିଙ୍ଗନ,
ହିଆରେ ଥୁଅ ଶ୍ରୀଚରଣ।
ଗୋଟା ତନୁ ମୋର ଚିର ତୃଷାତୁର,
ସହିବ କେତେ ସେ ବସନର ଭାର,
ନିତି ନାଚେ ନାଚେ କେତେ ମରୁଥିବି,
ପାଇବାର ଆଶା ନ ପାଇ ଝୁରିବି,
ଲୋକଲୋକାନ୍ତରେ କେତେ ଭ୍ରମୁଥିବି,
ସହିବି ଜନମ ମରଣ।
କିପାଁ ଏ ସାଧନା, କିପାଁଏ ବେଦନା,
କହିବି କହିବି ନ ଫିଟେ ରସନା,
କେତେ ଦୂରେ ଦୂରେ ରହିଥିବି ଆଉ,
ସହିବି ବିଚ୍ଛେଦ କଷଣର ଦାଉ,
(ଏବେ) ନଦୀ ସିନ୍ଧୁ ସମ ମିଶ ମୋ' ମାନସେ,
ନର ହେଉ ନାରାୟଣ।



## ନିସ୍ୱାର୍ଥ

ନିଜ ସ୍ୱାର୍ଥ ଚିନ୍ତି ଜଗତ ଯେଦିନ
ଦେବ ମୋତେ ଶତ ପୀଡ଼ା,
ଦୁର୍ବହ ଭାରେ ଭାଙ୍ଗି ନପଡ଼ିବି,
ଦୃଢ଼ ପଦେ ହେବି ଛିଡ଼ା।
ଆନଲାଗି ଯେବେ ସରିବ ମୋହର
କଷ୍ଟସଞ୍ଚିତ ବିତ୍ତ,
ଆପଣାର ଇଷ୍ଟ ମଣି ତା ଗୁପତେ
ହେବ ଆନନ୍ଦିତ ଚିତ୍ତ।

ଆନର ଆସନେ ବସାଇ ଯେବେ
ଭାଗ୍ୟଦେବତା ସୁଖେ
ନିଜ ବଡ଼ପଣେ ରହିବି ନିଉନେ
ଆନ ପଦେ ନତ ମୁଖେ,
ନିଜ ଲାଜ ଯେବେ ଗ୍ରାସିବ ମରମ
ଆନେ ନ ମଣିବି ତୁଚ୍ଛ,
ଆନର ପତନେ ନ ହସିବି କେଭେଁ
ନିଜକୁ ଭାବଣ ଉଚ୍ଚ ।



## ଅମୃତ ସନ୍ତାନ

ବିନାଶ ମୋହର ନୁହଇ ତୁମର
ପ୍ରେମମୟ ଅଭିପ୍ରାୟ,
ରହିଛି କୌଶଳେ କଳେବର ମମ
ଗୁରୁ କାରୁକଳା ପ୍ରାୟ ।
ନୟନେ ମୋହର ଶତ ସୂର୍ଯ୍ୟପ୍ରଭା,
ଅଙ୍ଗେ ଅଙ୍ଗେ ରମ୍ୟ ନନ୍ଦନର ଶୋଭା,
ବାହୁରେ ଅସୀମ ଅଜେୟ ଶକତି,
ହୃଦୟେ ବିଶାଳ ଭକତି,
ଶତ ଶୋକ ଜରା ଘେରିଛି ମରଣ,
ତଥାପି ନୁହେଁ ମୋ କ୍ଳାନ୍ତ ଚରଣ,
ଜନମେ ଜନମେ ନବ ନବ ବେଶେ
ଧରେ ନବ ନବ କାୟ ।
ଚିର ବିକାଶ ମୋ ଜନ୍ମ ଅଧିକାର,
ଚିର ମୁକ୍ତ ମମ ଉନ୍ନତି-ଦୁଆର,
ଅମୃତ ସନ୍ତାନ ତୁମରି ମୁଁ ତାତ,
ନିର୍ମଳ, ପୂତ, ଅବଦାତ.
ପାତକ-କଳଙ୍କ ନରକ-ନିଗଡ଼େ
କେତେଦିନ ବନ୍ଧା ଥିବି ହେ ନିବିଡ଼େ ?
ଧୂଳିରେ ଧୂସର ଜାତରେ କିପାଇଁ
କରୁଥିବି ହାୟ ହାୟ !



## ଅପୂର୍ଣ୍ଣତା

ପୂଜିବି କେସନେ ତୁମକୁ ହେ ପ୍ରଭୁ !
ନିତି ମୋର ଥିଲା ଭାବନା,
ତମରି ପଦାର୍ଥ ତୁମକୁ ଅରପି
କରିବି କିସ ମୁଁ ପ୍ରାର୍ଥନା ?
ନିଜର ବୋଲି ମୁଁ କହିବି କାହାକୁ,
ଦେବି ମୁଁ କମଳ-ପୟରେ,
ନିଜ ଅପୂର୍ଣ୍ଣତା ନାନ୍ଦା ମ୍ଳାନିମା
ଅଶ୍ରୁ ଆଣିଛି ଭୟରେ ।
ଦୀନତା ହୀନତା ସଞ୍ଚାଳି ମୋର
ସେତିକି ଦେବି ମୁଁ ଢାଳି,
କଳୁଷ-କଳଙ୍କ ଛଳ ଅହମିକା
ଜୀବନର ଯେତେ କାଳି ।
ତୁମରି ପୁଣ୍ୟ ପାଦରେ
ବନ୍ଦୀ ମୁଁ ଅପରାଧରେ,
ଘୃଣ୍ୟ ନଗ୍ନ ଭଗ୍ନ ମୋହର
ବିକଳ କଙ୍କାଳ ହିଦରେ ।
ଆଶା ବଡ଼ ମନେ ମୋର,
ତୁଟିବ ଅଜ୍ଞାନ ଘୋର,
ସୂର୍ଯ୍ୟ ଉଦୟେ ଉଆଁସ ନିଶାର
ରହିବକି ଅନ୍ଧକାର ?
ତାର ଅବା ମୋତେ ମାର,
ଏତିକି ମୋ ଅହଙ୍କାର,
ତବ ବଡ଼ପଣେ ଊଣା ଯା ମୋ' ଠାରେ
ପୂର୍ଣ୍ଣ ହେବ ସାରାତ୍‌ସାର ।



## ମଣିଷପଣିଆ

ନିଦାରୁଣ ଯଦି ହେଲୁ ବିଧି ମୋରେ
ତୃଣ ସମ କର ନିଜ ଆଖିରେ,
ଭଣା ହେଉ ମୋର ଅହଂକାରପଣ,
ଗଣାହୁଏଁ ମୁହଁ ନିରିମାଖିରେ ।
ତଥାପି କଣ୍ଠେ ମୋ ଦିଅ ଗୀତ ଗୋଟି,
ଗାଇ ଗାଇ ଦିନ ହରିବି ହରି,
ତପତ ରୁଧିର-ତରପଣେ ପ୍ରାଣ
ଚରଣ-କମଳେ ସାରିବି ମରି ।
ଝୁଣି ଝୁଣି ତବ କଣ୍ଟାବଣ ବାଟେ
ଯେତେ ଚାଲୁଥିବି ଖରାରେ ତାତି,
ତେତିକି ଆନନ୍ଦ ବଢୁଥିବ ମୋର,
ଫାଟୁଥିବ ପଞ୍ଚ ତୃଷାରେ ଛାତି ।

ରଖିଥିବି ଯେହ୍ନେ ମଣିଷପଣିଆ
. ଏତିକି ମାଗୁଣି ନିତି ମୋହରି,
ଅନ୍ତେ ପଦପ୍ରାନ୍ତେ ଦେ'ଣା ପାଉଣା ମୋ
ବୁଝିନେବି ନ୍ୟାୟପଣ ସୁମରି ।



# ପାଦଚିହ୍ନ

କେ ତୁହି ବାଟୋଇ ଚାଲୁ ଚାଲୁ ଛିଡ଼ା
ଶ୍ରାନ୍ତେ କାତରେ ପ୍ରାନ୍ତରେ,
ନିବିଡ଼ ଦୁରାଶା ମାୟା-ମରୀଚିକା
ଭୁଲାଇ ବଥାଏ ଅନ୍ତରେ ।
ହେବ ହେବ ଶେଷ ଦୀର୍ଘ ଦାରୁଣ
ଅରଣ୍ୟର ସୀମା, ଚାଲ ରେ ତରୁଣ,
ପାଷାଣ କଷଣେ ଝୁଣିବା ପଡ଼ିନୁ,
ଚିନ୍ତା କହ କାହିଁପାଇଁ ?
ନିତି ତାତି ତଳେ ପଡ଼ିଥିବୁ ତୋର
ନିୟତିରେ ଲେଖା ନାହିଁ ।
ଉଠ ଅପ୍ରତିମ ଶକତି ଅସୀମ,
ନୋହୁ ତୁହି ହୀନ, କରମରେ ଦୀନ,
ଶତ ଅପମାନ ଲାଜ ବୋଝ ବହି
ନ ହୁଅ ନ ହୁଅ କ୍ଷୀଣ,
ଚାଲ ସାହସରେ ଆଗୁଆର ହୋଇ
ପଡୁ ପଥେ ପଦଚିହ୍ନ,
ଦୁର୍ଭାବନାଶ୍ରୁ ଚିରଦିନ ପାଇଁ
ଆଖିକୋଣେ ହେଉ ଲୀନ ।



# ଅଭିଶପ୍ତର ଅଭିମାନ

ଜାଣେଁ ଏ ଜୀବନ କେଭେଁ ନ ହେବ ବିଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ;
ନିବିଡ଼ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବି ଚିରଦିନ ତୀବ୍ର ହାହାକାରେ ।
ଅମୀୟ ଅରୁଣ ଭାତି
ବିନାଶିବ ଚିର ରାତି,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବି ଜାଗିବି, ଦୀପ୍ତ ଆଶା ମୋର ମନେ ।

(୨)
ଦୁର୍ବଳ କୋମଳ ମୁହିଁ ମଳିନ ଅଧମ,
କୋଟି କର୍ତ୍ତବ୍ୟ ପାଳନ ସତତ ଅକ୍ଷମ,
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୂଷଣ ଶ୍ରାନ୍ତି,
ଘେରିଛି ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ;
ଅମୃତ ସନ୍ତାନ ମୁହିଁ ସୁଧା ଅଧିକାରୀ,
ଅନନ୍ତ ତିମିର ତଳେ ଦୀପ୍ତ ଦୀପଧାରୀ ।

(୩)
ଲାଞ୍ଛନାର ଗଞ୍ଜନା ଶତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ପୀଡ଼ଇ ମରମେ,
ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୁଳିଶ-
ପ୍ରହାରେ ଜର୍ଜ୍ଜର ହିଆ, ଜୀବନ ମୋ ବିଷ;
ତଥାପି ଅମର ମୁହିଁ ମାନବ ସନ୍ତାନ,
ବ୍ୟର୍ଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।
ତିଳେ ତିଳେ ଏ ଜୀବନ
କରିବିଟି ନିବେଦନ,
ସାରା ସୃଷ୍ଟି ସାର ମୁହିଁ ପ୍ରଚ୍ଛନ୍ନ ଦେବତା,
କରମକରତା ମୁହିଁ ମୋ ଭାଗ୍ୟନିୟନ୍ତା ।

(୪)
କରୁଛ କି ପରିହାସ ଦେଖି ଦୀନ ବେଶ,
ଅର୍ଦ୍ଧ ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଲେଶ ?
ତପତ ତପନ ତଳେ ତିନ୍ତି ସ୍ୱେଦଜଳେ
ରୁକ୍ଷ ବକ୍ଷଧରା ମୁହିଁ ଚଷଇ ଲଙ୍ଗଳେ;
ଅବା ଭିକ୍ଷାପାତ୍ର ଧରି
ସରମେ ମରମେ ସରି
ତବ ରମ୍ୟ ହର୍ମ୍ୟ ତୋରା ତୋରଣ ସମ୍ମୁଖେ
କ୍ଳାନ୍ତ ପଦକ୍ଷେପେ ଆସେ, ନ ଚାହୁଁଛ ମୁଖେ ।

(୫)
ଲାଜେ ପୋତି ମଥା ଦୂରେ ଯାଅ ମୋର ଭାଇ,
ନ ଚିହ୍ନ ନ ଚିହ୍ନ ମୋତେ ନ ହେବି ବଥାଇ ।
ତିଳେ ତିଳେ ପ୍ରାଣ ମୋର କରିବି ଅର୍ପଣ
ତବ ଶତ ସୁଖ ଯହିଁ ହେବଟି ବର୍ଦ୍ଧନ ।

ବଞ୍ଚିବାର ଅଧିକାର ରଖ ଚିରଦିନ,
ମରଣେ ସମ୍ଭଳ କରି ହେଉଥାଏଁ କ୍ଷୀଣ ।
ତଥାପି ମରିବି ନାହିଁ,
ମନେରଖ ଏହା ଭାଇ
ଅକାରଣେ ଜନ୍ମ ମୋର ନ ହେଲା ଭୂତଳେ,
ଅନନ୍ତ ବିନାଶ ଘେନି ମରିବି ବିରଳେ ।
ଅନନ୍ତ ବିକାଶ ମମ
ଚିରଦିନ ଅନୁପମ,
କଷଣ-କର୍ଦ୍ଦମେ ପଦ୍ମ ମୁହିଁ ଶତଦଳ,
ନ ହେବ ବିଫଳ ମୋର ତପ୍ତ ନେତ୍ରଜଳ ।

(୬)

ପାଷାଣେ ପିହିତ ଭାଗ୍ୟ ବିଚାରିଛ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦକା ।
ଉଚ୍ଚାସନେ ସ୍ୱଚ୍ଛମନେ ଆରାମ ଶୟନେ
ହରୁଛ ଦିବସନିଶି, କାନ୍ଦେ ମୁଁ ଅୟନେ ।
ମୋ ରକ୍ତ ତପତ ଧାରେ,
ମୋର କ୍ରୁର ହାହାକାରେ
ବୁଡ଼ି ରହିଅଛି ତବ ଜୀବନସଂପଦ,
ନ ମିଳେ ମୁକତି ମୋତେ ଧାୟିଣ ଶ୍ରୀପଦ ।
ତୁମେ ବୀର ତୁମେ ଗୁଣୀ,
ମୁଁ ହୀନ ଅଜ୍ଞାନ ଋଣୀ,
ତୁମରି ସଭ୍ୟତା ପାଶେ ତୁମରି ଆଲୋକେ,
ତୁମ ବିନା ବାସ ମୋର ଅନନ୍ତ ନରକେ ।
ନ ଭାବ ନ ଭାବ ଭାଇ,
କେହି କେବେ ଶୁଝି ନାହିଁ
ନିଷ୍ଠୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି,
ଥାଅ ସୁଖେ, ଭୋଗେ ମୁହିଁ କଷ୍ଟ କୋଟି କୋଟି ।

(୭)

ଦୀର୍ଘ ଦୁର୍ଗମ ଯଦ୍ୟପି ଏ ଘନ ବିପିନ,
କଣ୍ଟକ ପରାଘେ ତ୍ରାସେ କାନ୍ଦି ତନୁ କ୍ଷୀଣ,
ସରିବ ସରିବ ମୋର ଅଜ୍ଞାତ ନିବାସ,
ନିଜ ତେଜେ ଦିନେ ମୁହିଁ ହେବି ସ୍ୱପ୍ରକାଶ ।
ଯେ 'କରେ' ସୁଖରେ ହର ଦ୍ରୌପଦୀ ବସନ,
ସେକର ଉପାନେ ଲଜ୍ଜା ହେବ ନିବାରଣ ।
ରଞ୍ଜାଇବି କେଶରାଶି
ରକତେ ଆନନ୍ଦେ ଭାସି,
ଭୀମ ଭୁଜେ ବନ୍ଧାଇବି; ଦର୍ପୀ ଦୁଃଶାସନ
ବୃକୋଦର ପଦାଘାତେ ତେଜିବ ଜୀବନ ।

(୮)

ଲଙ୍କା ନିଗଡ଼େ ବନ୍ଦିନୀ ଜନକନନ୍ଦିନୀ,
ଦଶଆନନ ଦଳନେ କାନ୍ଦଇ ମେଦିନୀ-
କର୍ଷିତ କେଦାର ସୀତା ସରମ-ଆକୁଳା,
ଉଠୁଛି ଗୋପନ ଚିତ୍ତେ ଚିତାର କୁହୁଳା,
ଜଳିବ ସେ ଦାଉ ଦାଉ,
ଭସମିବ ଚାହୁଁ ଚାହୁଁ
କନକ-କମଳ-କାନ୍ତି ଲଙ୍କା ଭବଶଙ୍କା,
ଅହଙ୍କାର ଅରି ଶିର ପାଦେ ହେବ ବଙ୍କା ।
ଧୈର୍ଯ୍ୟ ସହିଷ୍ଣୁତା ସତ୍ୟ ଶ୍ରୀରାମ-ଜାନକୀ-
ଲକ୍ଷ୍ମଣ ବିଜୟ ବାନା ଉଡ଼ିବ ଝଟକି !
ଯୁଗ ଯୁଗାନ୍ତର ଯଶ ଗାଇବ ଗଗନ-
ଗଗନ ସାଗରଶୋଭୀ ବିଶାଳ ଭୁବନ ।

(୯)

ଭାବିଛ ବିଫଳେ ଯିବ ତାରାର ତପସ୍ୟା,
କାନ୍ଦିବ କରୁଣେ ଗୌରୀ ଗିରିଜା ବିବଶା;
ଶିବ ପତି ନ ଲଭି ସେ, ଅସତୀ ବୋଲାଇ
ସତୀରୂପେ ବୃଥା ପିତୃଗୃହେ ମରି ନାହିଁ ।
ମହାଯତିଯୋଗ ଭଙ୍ଗ
କରିବ ଦେବ ଅନଙ୍ଗ,
ନେତ୍ରାନଳେ କଳେବର ଯଦି ବା ଦହିବ,
ପରଉପକାରେ ନିତି ମରି ସେ ବଞ୍ଚିବ ।

(୧୦)

ଅକାରଣେ ପାଷାଣ କି ଅହଲ୍ୟା ସୁନ୍ଦରୀ,
ଅରପିବେ ଶିରେ ପରା ଶ୍ରୀପାଦ ଶ୍ରୀହରି ।
କିପାଁ କଳଙ୍କିନୀ ରାଧା ହେବ ଗୋପକୁଳେ,
ମୋହନ ମୁରଲୀ ତାନେ କଦମ୍ବର ମୂଳେ ।
ଛାଡ଼ି ପ୍ରିୟ ପରିଜନ
ଧାଇଁ ଉନ୍ମାଦିନୀ ସମ
ଅନନ୍ତ ଅଶ୍ରୁସାଗରେ ବୁଡ଼ିବ କି ଚିର,
ନ ଉଦିବ ଚିଦାକାଶେ ବ୍ରଜର ମିହିର ?

ନିପଟ କପଟ ଶ୍ୟାମ
ବାତୁଳେ ରାଧାର ନାମ
ବଜାଇ ଝୁରିବେ ପରା ଦିବସ ଯାମିନୀ,
ଯମୁନାର ନୀର ଯେବେ ଚୁମ୍ବିବ ଚାନ୍ଦିନୀ।

(୧୧)

ମିଛେ କି କୋକିଳ କେବେ ଢାଳେ କଳଗିର
ନ ବହିଲେ ମୃଦୁ ମଧୁ ମଳୟ ସମୀର ?
ମିଛେ କି କୁମୁଦ ଆଖି
ଇନ୍ଦୁ ପାଦେ ରହେ ରାଖି,
ଶତ ବିମ୍ବେ ସରାମ୍ବୁ ସେ ନ କରେ ଚୁମ୍ବନ,
ଶୀତଳ ଶିଶିର ଛଳେ ସ୍ନେହ ଆଲିଙ୍ଗନ ?
ନୀରବ ରଜନୀ ଧୀର ଗଭୀର ସୁସ୍ୱରେ
ଝିଲ୍ଲୀରବେ ଆଶାଗୀତ ଗାଏ ଶ୍ରବଣରେ।
ଅନନ୍ତ ଅବ୍ୟକ୍ତ ଶାନ୍ତି ପୂରେ ତ ପରାଣେ,
ମିଛେ କି ଜୀବନରହେ ଆନର ଧିଆନେ ?

(୧୨)

ଅକାରଣେ କ୍ରୌଞ୍ଚପକ୍ଷୀ ନ ତେଜିବ ଜୀବ,
ରାମାୟଣ ପଣା ପରା ପୃଥିବୀ ପିଇବ;
କବି କୁଳଗୁରୁ ହେବେ ଚୋର ରତ୍ନାକର;
ବୋଲାଇବେ ବାଲ୍ମୀକି ମହର୍ଷିପ୍ରବର;
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀତ୍ୱ ଗୌରବ ପରା ଉଠିବ ମହକି !
ପାଇ ପୁତ୍ର ଅଧିକାର
ରଘୁନାଥ ନେତ୍ରାଧାର
ପୋଛି ଲବକୁଶ ଯୁଗ ଧନ୍ୟ ହେବେ ଭବେ,
ଅକାରଣେ କ୍ରୌଞ୍ଚୀ ଶୋକ ନ କଲା ବୈଧବ୍ୟେ।
ଭାବି ଭୀରୁ ଭୀମ ଭୁଜେ ବଳୁଛ ଦରପେ,
ଅସହାୟ, ହୀନ, ଭୟେ ପରାଣ ଥରପେ;
ଚିରଦିନ ସମତୁଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ହେବି ମୁଁ ଉପର;
ତୁମରି କିରୀଟ ମୋର ହେବ ଶିରଶୋଭା,
ମୋହରି ମୋହିନୀ ଦିନେ ହେବ ମନୋଲୋଭା।
ଆଜି ଯା'ରେ ପଦାଘାତ,
କାଲି ତା'ର ଧରି ହାତ
ଆଦରେ ଅଜଳନିଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ।

(୧୪)

ବଳି ! ପଦଦଳା ତବ ସହିବି ନୀରବେ,
ଗୋଟିଏ କଥା ମୋ' ମୁଖେ ନ ଶୁଣିବ ଭବେ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରିବ ବିଦୀର୍ଣ୍ଣ ତବ ଅହଂକାର ପ୍ରାଣ।
ଆଜି ଯାକୁ ତୃଣ ସମ କର ତୁଚ୍ଛ ହେୟ,
କାଲି ସେହି ହେବ ତବ ଶ୍ରେୟ ତବ ପ୍ରେୟ;
ଆଜି ଯେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲି ପୂଜାଫୁଲ ଦେବ ତା'ରି ପାଦତଳେ।
ଆଜି ତୁମେ ଯାର ରାହୁ,
କାଲି ତବ ପ୍ରେମବାହୁ
କରି ଆଲିଙ୍ଗନ ତା'କୁ ଦେବ ଦେବାସନ,
ତା' ଗୁଣେ ମୋହିବ ତବ ମୂଢ଼ ଅନ୍ଧ ମନ।

(୧୫)

ଅସ୍ପୃଶ୍ୟ ଇତର ମୁହିଁ ଘୃଣିତ ଚଣ୍ଡାଳ,
କରେ ପରିଷ୍କାର ତବ ନରକ ଜଞ୍ଜାଳ;
କାନ୍ଧେ ବହିନିଏଁ ବୋଲି ପ୍ରଖର ଖରାରେ
"ବେହେରା, ବେହେରା" ଡାକ ଶୁଣାଅ ଶ୍ରଦ୍ଧାରେ।
ମୁହିଁ ପଦସେବାକାରୀ
ଭୃତ୍ୟ, ପୂଜାରୀ, ଭଣ୍ଡାରୀ,
ବୋଲାଉଛ ବାବୁ ବସି ଉଚ୍ଚ ଆସନରେ,
ଲାଜ ଲୁଚାଅ କିନ୍ତୁ ମୋ ଦତ୍ତ ବସନରେ;
ମୋ ଦତ୍ତ ଅଶନ ପୁଣି ନିୟତ ଭୋଜନ,
ତୁଙ୍ଗ ପ୍ରାସାଦରେ ତୁମେ ତଳେ ମୋ ରୋଦନ।

(୧୬)

ଅଗାଧ ଐଶ୍ୱର୍ଯ୍ୟ ତବ, ମୁଁ ହୀନ ମୂଲିଆ,
ତୁମେ ଶୁଭ୍ର ସିଂହାସନେ, ମୁଁ ପାଦତଳିଆ;
ମୋ ରକତ-ସିନ୍ଧୁ ମନ୍ଥିଦରପ-ମନ୍ଦରେ
ଦୁଇଦିନ ହସୁଥାଅ ଭାସି ଅମୃତରେ।
ଚୋରାଇ ଚନ୍ଦ୍ରମାଶିରୀ ବୋଲାଅ ଦେବତା,
ତୁଏଁ ମୁଁ ଲାଞ୍ଛିତା ଚିର ପଦଅବନତା।
ଉଠିବ ଉଠିବ ଭାସି
କରାଳ ଗରଳରାଶି,
ନୀଳକଣ୍ଠ ଲୋଡ଼ା ତହିଁ ହୋଇବ ତୁମର,
ବେଳହୁଁ ଦୁର୍ବାର ତବ ବାସନା ସମର;
ନୋହିଲେ ଭୀଷଣ ରଣ ସୁରାସୁରଗଣେ
ରଚିବ ଶ୍ମଶାନ ତବ ମନ୍ଦାର-ନନ୍ଦନେ।

(୧୭)
କର୍ଣ୍ଣ ବାହୁବଳେ ଆଜି ତେଜୀ ଦୁର୍ଯ୍ୟୋଧନ
କୃଷ୍ଣାର୍ଜ୍ଜୁନେ ହେୟ ଜ୍ଞାନ କରେ ତୃଣ ସମ,
ନ ଜାଣୁଛ ମନେ ଅଛି 'ଆଞ୍ଜଳିକ' ଶର,
ଅଭିମନ୍ୟୁ ବଧ ଶୋଧ ନଭିବି ନିକର ।
କତୃସଦନ ଦହନ !
ଭୀମ ଗଦାରେ ଭଗନ —
ହେବ ସେ ଗର୍ବିତ ଜାନୁ, ତେଜିବ ଜୀବନ,
ଅନ୍ୟାୟ-ଆହବେ ପରା ବଳାଉଛ ମନ !

(୧୮)
ଚିରଦିନ ଚାନ୍ଦ କା'ର ନ ଉଦେ ଆକାଶେ,
ଚିରଦିନ ନ ଭାସେ କେ ସମ୍ପଦ ବିଳାସେ;
ଚିର ପରାଜିତ ନୁହେ ନ୍ୟାୟ ଯୁଧିଷ୍ଠିର,
ଚିର ମନ୍ତ୍ରେ ନ ଭୁଲିବ କେହି ଶକୁନିର ।
ଥାଉ ତବ ପକ୍ଷେ ଲକ୍ଷ ନାରାୟଣୀ ସେନା,
ଏକା ନାରାୟଣ ମୋର ରକ୍ଷା ବଜ୍ର-ସେହ୍ନା;
ଥାଆନ୍ତୁ ସହସ୍ର ରଥୀ,
ଏକା ମୋ ରଥ ସାରଥୀ ।
ନିରସ୍ତ୍ର ନିର୍ଦ୍ଦ୍ୱନ୍ଦ୍ୱ କୃଷ୍ଣ କ୍ଷୁଦ୍ର ବଂଶୀଧାରୀ,
ଗୀତା ଗାନେ ପ୍ରାଣେ ମୋର ବର୍ଷୁ ଶାନ୍ତିବାରି

(୧୯)
ଭାଳି ମୋ ମୂର୍ଖତା ସୁଖେ ଦିଅ କରତାଳି,
ମରେଁ ମୁଁ ଦରିଦ୍ର କ୍ଷୋଭେ ଚିରେ ଚିତା ଜାଳି;
ନାହିଁ ମୋର ବାସ, ଅଛି ମହାକାଶ ତଳେ,
ନାହିଁ ମୋର ହେମଶଯ୍ୟା, ଶୁଏଁ ମୁଁ ଭୂତଳେ;
ଶୀତ ଖରା ବରଷାରେ
ପ୍ରକୃତିର ଅତ୍ୟାଚାରେ
କ୍ଷୀଣ ଅଙ୍ଗଶିରୀ ସରି ଆୟୁ ଯାଏ ହରି,
ତଥାପି ବଞ୍ଚିବି ନିଶ୍ଚେ ଏ କଷଣେ ମରି ।
ମରଣ ନୁହେ ମୋ କ୍ଲେଶ,
ନୁହେ ତା ବିନାଶ, ଶେଷ,
ଅଭୂତ ସୁନ୍ଦର ନବ ଜୀବନ ଆରମ୍ଭ,
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?

(୨୦)
ସମ୍ବଳହୀନର ଶେଷ ଆଶାର ସମ୍ବଳ
କାଢ଼ିନେଲ ଶୀତେ ଯଥା ଶୀତାର୍ତ୍ତ-କମ୍ବଳ;
ଭାବିଲ ମହତ ଏକ କରମ ସାଧିଲି,
ବୈରଭାବେ ହୀନ ଅରି ଜୀବନ ବଧିଲି,
କିନ୍ତୁ 'ରକ୍ତବୀଜ' କେବେ ମରି ସେ ନ ମରେ,
ଶତ ଶତ ଦୈତ୍ୟ ଜାତ ବିନ୍ଦୁଏ ରକ୍ତରେ ।
ଖଡ୍‌ଗ ହସ୍ତେ ହାଣି ଶିର
ବୁହାଇଲ ଯେ ରୁଧିର,
ବିନ୍ଦୁ ସିନ୍ଧୁ ହୋଇ ଶେଷେ ବୁଡ଼ିବ ଆପଣ,
ନଭିବ ତ ପ୍ରତିଫଳ କୃପାରେ କୃପଣ ।

(୨୧)
ପଦେ ଦଳି ପୁଲ ଗୋଟି ହେଲା କି ଗୌରବ,
ମଥିତ ବ୍ୟଥିତ ତା'ର ସ୍ଫୁରିଲା ସୌରଭ;
ମରି ସେ ମରିଲା ନାହିଁ,
ହଜାଇଲା କାହିଁପାଇଁ
ତାର ଶୋଭାଶିରୀ ହାସ ଅକାଳେ ହେଳାରେ,
କିଏ ଜିତେ କିଏ ହାରେ ବୁଝ ଏ ଖେଳାରେ ।
ନିଜର ଆନନ୍ଦ-ଧନ ସାରିଲ ବୃଥାକୁ,
ନିଜ ହସ୍ତେ ଜିହ୍ୱା ଛେଦିକହିବ କାହାକୁ ?

(୨୨)
ଭାବିଲ ବୁଡ଼ିବି ପରା କଦଳୀ ଭେଳାରେ,
ଅନନ୍ତ ଅମ୍ବୁଧି ତଳେ ଚାହିଁବ ଗେହ୍ଲାରେ;
-------------, ନିଷ୍ଠୁର କାଣ୍ଡାରି !
------------- ସାରିବ ସଂହାରି
------------- ଅତଳେ କୂଳ
----------- ମୋ ଭରସା ଠୂଳ
ହେଲାଣି ଅଭୟ ପାଦେ, ଦୟାର ଠାକୁର
ଶୁଣିନେଣି କାକୁ ମୋର, ଶୁଣ ଶୁଣ କ୍ରୂର !

(୨୩)
ଯଦି ମହାଭାରତର ମହାସିନ୍ଧୁ ଜଳେ
ବୁଡ଼ି ମୁଁ ଚିତ୍‌କାରେ କାନ୍ଦେ କୃପା ପାଦତଳେ,
ତୋଳିନେବେ ବିସ୍ତାରି ସେ ପ୍ରେମମହାବାହୁ
ଗଉରୀ-ଶେଖରାସନ ହେବେ ଚାହୁଁ ଚାହୁଁ ।
ତହିଁ ମାନ-ସରୋବର-କମଳ-ବିଳାସୀ
ମରାଳର କଳଗାନେ ମାନସଉଲ୍ଲାସୀ,
ହେବି ହୈମବତୀସତୀ ତ୍ରିଲୋକପାବନୀ,
ଅକାରଣେ ଏ ପ୍ରଳାପ କରେ ପାଗଳିନୀ ।

(୨୪)
ବିଶ୍ୱାସ ତାହାର ବିଶ୍ୱରାଜ୍ୟ ବିଧାତାର,
ଚିର ନ ବଢ଼ିବ ତହିଁ କ୍ରୂର ଅତ୍ୟାଚାର;
ଯେ ହୀନବିଶ୍ୱାସୀ କର୍ମେ ନେଉ ସେ ପରଖି,
ଏତିକି ମାଗୁଣି ମୋର ଅନାଥ ଅରକ୍ଷୀ ।



# ଆହ୍ୱାନ

ସେନାପତି ଆଜି ଦେଇଛନ୍ତି ଡାକ,
ଉଠ ଭାରତର ବୀରପୁତ୍ରଯାକ
ଅପୂର୍ବ ଅସହଯୋଗ ରଣାଙ୍ଗନେ
ଆସେ ଅସ୍ତ୍ର ଝଷି ପରା ଜଣେ ଜଣେ ।
ଭାରତର ଯେତେ ବୀର ଗୁଣମଣି,
ଚାଲି ଆସ ସେନାପତି ଡାକ ଶୁଣି,
ଗାନ୍ଧି ଯୋଗୀବୀର ତୁମର ଅଗ୍ରଣୀ,
ଶିବ ସ୍ମରି ଉଠି ତରୁଣ ତରୁଣୀ ।
ନାହିଁ ଏଥି ଲୋଡ଼ା ବନ୍ଧୁକ, କମାଣ,
ହତିଆର ଏଠି ଏକା ତୁମ ପ୍ରାଣ,
ତୁମ ରକ୍ତବିନ୍ଦୁ ଗୁଳି ବାରୁଦର,
ଏହି ଅସ୍ତ୍ରେ ଆଜି ହୁଅ ହେ ହାଜର ।
ସେନାପତି ତବ କଲେଣି ଆହ୍ୱାନ,
ଆସ ଆଗେ କିଏ ଦେବ ପ୍ରାଣଦାନ,
ଆସ ଏକସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ୍, ପାର୍ଶୀ, ବୌଦ୍ଧ, ଇହୁଦୀ, ଖ୍ରୀଷ୍ଟାନ ।
ଏହି ହିନ୍ଦୁସ୍ଥାନେ ତୁମ ବାସସ୍ଥାନ,
ତାରଅପମାନେ ତୁମ ଅପମାନ ।
ଧର୍ମଯୁଦ୍ଧେ ତବ ଆସିଛି ଆହ୍ୱାନ,
ବାଜେ ରଣଶିଙ୍ଘା ଶୁଣ ଡେରି କାନ ।
ଭୟ ଦକା ଡେଳି ଉଠି ବଢ଼ ସାନ,
ଆତ୍ମବଳେ ଆଜି ମହା ବଳବାନ ।
ଅମିତ ବିକ୍ରମେ ଅସୁର ଦଳନ,
ଆତ୍ମ ଦମ୍ଭେ ଉଠ ବୀର ଅରିନ୍ଦମ ।
ଉଠ ଭାରତର ସେନା ନାରାୟଣୀ,
ଗାନ୍ଧି ବିଷ୍ଣୁ ରୂପୀ ତୁମର ଅଗ୍ରଣୀ ।
ଭାରତ-ତରୁଣ ଭାରତ-ସମ୍ବଳ,
ତେଜ ମୂର୍ତ୍ତିମନ୍ତ ପୂତ ହୋମାନଳ,
ଭାରତ-ଭରସା ଭାରତ-ସଙ୍ଖାଳି,
ଉଠ, ଡାକେ ଦେଶ, ପ୍ରାଣ ଦିଅ ଢାଳି ।

ଅସ୍ତ୍ରଧାରୀ ସଙ୍ଗେ ନିରସ୍ତ୍ର ସଂଗ୍ରାମ
କହ, କେବେ କାହିଁ ଶୁଣିଥିଲା କାନ ?
ପଶୁତ୍ୱ ବଳରେ ଖଣ୍ଡନ କାରଣେ
ଧରାବନ୍ଧୁ ଅତ୍ୟାଚାର ନିର୍ବାସନେ
ଅସୁର ବଳକୁ କରିବାକୁ ନାଶ
ସହାୟ ତୁମ୍ଭର ପ୍ରଭୁ ଶ୍ରୀନିବାସ ।
ମୋହନ କରମଚାନ୍ଦ ମହାଯତି
ଧର୍ମଯୁଦ୍ଧେ ତବ ଆଜି ସେନାପତି ।
ଧର୍ମବାନାଧାରୀ ନିରସ୍ତ୍ର ନିର୍ଭୀକ,
ଉଠ ଭାରତର ଯୁବକ ସୈନିକ ।
ରଣେ ତୁମ ଆଗେ ଯିବେ ଜଗନ୍ନାଥ,
ଚକ୍ରେ ଘଉଡ଼ିବେ ସହସ୍ର ଉତ୍ପାତ ।
'ଜୟ ମା ଶଙ୍କରୀ' ଉଚ୍ଚେଦେଇ ଡାକ
ଉଠ ଭାରତର ବୀରପୁତ୍ରଯାକ
ଆଜି ଧର୍ମଯୁଦ୍ଧେ ମହା ଅଭିଯାନ,
ବାଜେ ବଜ୍ରଭେରୀ, ଶୁଭେ ବଜ୍ରଗାନ,
କୁମାରୀକାଠାରୁ ହିମଗିରିଯାଏ
ଗଗନ ପବନ ସେ ତାନ କମ୍ପାଏ ।
ଅଛି କିଏ ବୀର ଭାରତ ସନ୍ତାନ,
କାହା ବକ୍ଷେ ବାଜେ ଆଗ୍ନେୟ ଆହ୍ୱାନ ?
ତାତିଲାଣି କା'ର ରକ୍ତ ଶିରେ ଶିରେ,
ବିଜୁଳି ଚମକେ କାହା ଧମନୀରେ ?
ବୀରଗର୍ବେ ନାଚିଉଠେ କା'ର ଛାତି,
ଦେଶପ୍ରେମମଦେ କେ ଉଠିଛି ମାତି ?
କାହା ପ୍ରାଣେ ଜାଗେ ଦେଶାତ୍ମ-ସମ୍ମାନ,
କରିବ କେ ତା'ର ଲାଗି ଆତ୍ମଦାନ ?
ଶକ୍ତିହାଡ଼ କା'ର ବଜ୍ରଠାରୁ ଟାଣ,
ସୁଖେ ହସିହସି କେ ତେଜିବ ପ୍ରାଣ ?
ତୁମ ଭାଗ୍ୟରବି ଉଇଁବ ଏଥର,
ସମୟ ଆସିଲା ଭାଗ୍ୟପରୀକ୍ଷାର ।

ଜୟଚନ୍ଦ୍ରଠାରୁ ମୀର୍ଜାଫର ଯାଏ
ଅତୀତ ଭାରତ ଚିତ୍ର ଚମକାଏ।
କରିଥିଲେ କାର୍ଯ୍ୟ ବିଶ୍ୱାସହନ୍ତାର,
କରିବ ଏଥର ତା'ର ପ୍ରତିକାର।
ହସିହସି ପ୍ରାଣଦେବଟି ହେ ଭାଇ,
ହିନ୍ଦୁସ୍ଥାନ ସ୍ୱାଧୀନତା ଗୀତ ଗାଇ।
ଭାରତମାତାର ବୀରପୁତ୍ରଗଣ,
ରଣସ୍ଥଳ-ଧୂଳି କର ଆଲିଙ୍ଗନ।
ଶାନ୍ତି ଅସ୍ତ୍ର ତବ ଏ ଶାନ୍ତି ସମରେ,
ବକ୍ଷ ମେଲି ଠିଆହେବ ଅକାତରେ।
ଖୋଲି ଛାତିପରେ କମାଣ, ବନ୍ଧୁକ
ଦେଖାଇବେ କେତେ ଗୁଳିର ବନ୍ଧୁକ।
ହଣାହେବ ବୀର ଶିର ଗୋଟି ଗୋଟି,
ତୁମ ରକ୍ତ ଭୂଇଁତଳେ ଯିବ ଲୋଟି।
ଗଙ୍ଗାଧାରା ସଙ୍ଗେ ରକ୍ତଧାରା ମିଶି
ପୋଛିଦେବ ଦୁଃଖ ଅତ୍ୟାଚାରରାଶି।
ପୂର୍ବକୃତ ପାପ ତହିଁ ଯିବ ଭାସି,
ଉଠିବ ଆଲୋକ ଅନ୍ଧକାର ନାଶି।
ଆଇନ ଅମାନ୍ୟ ତପ୍ତ ଅଗ୍ନିକୁଣ୍ଡ,
ମୁଣ୍ଡମାଳା ତବ ହେବ ତହିଁ ଗୁଣ୍ଡ।
ପୁରୋହିତ ନିଜେ ଗାନ୍ଧି ଯଜ୍ଞାସନେ,
କେ ଦେବ ଆହୁତି ଆସ ହେ ବହନେ।
କେତେ ବେତମାଡ଼, କେତେ କାରାବାସ,
ଦ୍ୱୀପାନ୍ତର, ରାଜ୍ୟାନ୍ତର, ପ୍ରାଣନାଶ,
କ୍ଷୁଧା, ହରତାଳ, ପୋଲିସର ଲାଠି,
ସୃଷ୍ଟିପଦାଘାତ ସହିବ ଏକାଠି।
କଳି ନୋହିବ ହେ ଯନ୍ତ୍ରଣା ତୁମର,
ସହିବାକୁ ବୀର ହୁଅ ଅଗ୍ରସର।
ଏବେ କି ଯନ୍ତ୍ରଣା ନ ସହୁଛେ ଭାଇ,
ଅନ୍ନବସ୍ତ୍ର ବେନି ନେଲା ଯେ ଛଡ଼ାଇ।
ଦୁର୍ଭିକ୍ଷ, ଦାରିଦ୍ର୍ୟ, ବଢ଼ି, ରୋଗ ଦାଉ,
ଋଣ, କରଭାର ସାରେ ତୁମ ଆୟୁ।
ନାହିଁ ସେ ଭାରତ ଦେବତାବାଞ୍ଛିତ,
ଆଜି ଅନାଥିନୀ ଜଗତେ ଲାଞ୍ଛିତ।

ହିମାଦ୍ରି, ନୀଳାବ୍ଧି ଯା'ର ବେନି ସୀମା,
ଯା'ର ଜଗନ୍ନାଥ ପ୍ରଭୁଙ୍କ ମହିମା
ବେନି ମେରୁ ସରି ଲଭିଛି ପ୍ରଚାର;
ଯା' ନାଉରୀପୁଅ ଲଙ୍ଘି ପାରାବାର
ଜାଭା, ବ୍ରହ୍ମ, ଶ୍ୟାମ, ବୋର୍ଣ୍ଣିଓ, ଜାପାନ,
ମାଲୟ, ସୁମାତ୍ରା, ଚୀନେ ଦେଲା ଜ୍ଞାନ;
ଅରଘ, ଚନ୍ଦନ, ଧାନ, ଦୂବ, ଘିଅ,
ସୁନାଥାଳୀ ସାଜି ଯା' ସାଧବଝିଅ
ବାପଭାଇଙ୍କର ବନ୍ଦାଏ ବୋଇତ,
ଭଙ୍ଗା ଖଞ୍ଜଣୀର ଗୀତ ଏ ଅତୀତ।
ଯା' ଅମାର ଖଳା ଲକ୍ଷ ଭରଣରେ
ବସୁଥିଲା ସୁନା କଳସୀ ପୂର୍ବରେ,
ନାରୀ ଥିଲେ ଯାଙ୍କ ଧନୁକଧାରିଣୀ
କୋଟି କାରୁକଳା-ଲୀଳା-ଗରବିଣୀ,
ସେ ଚାଷୀ, ଶିଳ୍ପୀଙ୍କ ଦୁର୍ଦ୍ଦଶାର କଥା
ଭାବିଲେ କା'ହୃଦେ ନ ହେବଟି ବ୍ୟଥା ?
ପେଟେ ନାହିଁ ଦାନା, ଦେହେ ନାହିଁ କନା,
ଦିନରାତି ରୋଗ, ଟିକସ ଭାବନା,
ପଖାଳ ଗଣ୍ଡାକୁ ଟିପେ ନାହିଁ ଲୁଣ,
ବାହୁନିବା କିସ ଶାସନର ଗୁଣ ?
ଅପୂର୍ବ ରଚନା ଶାସନପ୍ରଣାଳୀ,
ତେତ୍ରିଶ କୋଟିଯା' କବଳେ କାଙ୍ଗାଳୀ।
ମୁହେଁ ମିଠା ପେଟେ ଶାଣଦିଆ ଖୁର,
ଛଳବ୍ୟବସାୟୀ ଦୁର୍ବୁଦ୍ଧି ଚତୁର।
ନିଜ ଦେଶେ ଆଜି ଆମେ ନିର୍ବାସିତ,
ବାଘ ହାବୁଡ଼ରେ ମୃଗଭଳି ଭୀତ।
ଗ୍ରେଟ୍ ବ୍ରିଟେନ୍ ଯେ ତୁଷାରପ୍ରଧାନ,
ନାହିଁ ତହିଁ ଚାରୁ ଶସ୍ୟକ୍ଷେତ୍ରମାନ।
ଖାଦ୍ୟ ଯା ନିଅଣ୍ଟ ତିନି ସପ୍ତାହକୁ,
ଖାଦ୍ୟ ଆଶେ ଚାହିଁଥାନ୍ତି ଭାରତକୁ।
କଳେ ବଳେ ଜଉଶଳେ ଲୁଟିବାର,
ନାମ ତା'ର ବିନା ଶୁଳ୍କରେ ବେପାର।
ରେଲ, ତାର, ଡାକ ଜାହାଜ ଚଳାଇ,
ଦେଶୀଙ୍କୁ ମୂଲିଆପଣରେ ଲଗାଇ
ମାଲିକ ସମାନ ବସି ଉଚ୍ଚାସନେ
ରଖିଛି ଡରାଇ ଜୋରଡ଼ା ଶାସନେ।

ଆମକୁ ଜଗିବା ଲାଗି ଆମ ଧନେ
ଅଗଣା ପଉଜ ସମ୍ପାଦି ଯତନେ
ବିପୁଳ ବାହିନୀ ଖର୍ଚ୍ଚ ଶିରେ ଚାପି
ଦରିଦ୍ର ପ୍ରଜାଙ୍କ ରକ୍ତ ନିଏ ମାପି ।
ଚର୍ମସାର ହାଡ଼ କଙ୍କାଳର ମାଳା,
ପୋଲିସ ପହରା ଗୋଇଠାର ଜ୍ୱାଳା,
ଭୋକୀ ଶୋଷୀ ତଣ୍ଟି ଚିପି ଅକାତରେ
ଟିକସ ବସାଇ ସ୍ୱଦେଶୀ ମାଲରେ
ମୂଳୁ ମାରି ତା'ର କଲେଟି ସଂହାର,
ଦେଲେ ବିଦେଶୀଙ୍କୁ ଭାରତ ବଜାର ।
ଏକା ଲୁଟିବାରେ ନ ହେଲା ସନ୍ତୋଷ,
ସର୍ବେ ମିଳି ଲୁଟିନେଲେ ଧନକୋଷ ।
ଜାପାନ, ୟୁରୋପ, ଆମେରିକା, ଚୀନ—
ମାଲ କିଣି ଆମେ ହେଲୁ ଦୀନହୀନ ।
ଜାହାଜରେ ବହିନେଲେ ଆରପାର,
ଶୂନ୍ୟ ହେଲା ଆମ ସୁନାର ଭଣ୍ଡାର ।
କାଗଜର ନୋଟ୍ ସିନ୍ଦୁକ-ସମ୍ବଳ,
ଦୁଇଅଣା ଦିନିକିଆ ଅର୍ଥବଳ ।
ବେପାର ବଣିଜେ ନାହିଁ ସ୍ୱାଧୀନତା,
ବିଦେଶୀ ବଣିଆ ଗୃହଶିଳ୍ପହନ୍ତା ।
ତନ୍ତୀଙ୍କ ଆଙ୍ଗୁଠି କାଟି ମାଞ୍ଚେଷ୍ଟରୀ—
ଲୁଗାରେ ଆମର ଘର ଦେଲେ ଭରି ।
ଘେରା ଆମ ଘର ଲୁଣି ପାରାବାରେ,
ଗନ୍ତାଘର ଭରା କୋମଳ କପାରେ,
ଯେତେ ଧାନ, ମୁଗ ଗହମ ଅପାର,
ତହିଁରେ ଚାକିରୀ କପାମାଳି ସାର ।
ଜରଦିଆ ପୁଣି ରୀତି [illegible]ହାର,
ଖଜଣା ସୁଝିବା ଲାଗି ରୋଜଗାର ।
କର ତା' ଗୋଲାମୀ, ଭର ତା' ଭଣ୍ଡାର,
ଆମ ଚିଜେ ନାହିଁ ଆମ ଅଧିକାର ।
ଲିଭରପୁଲ୍ ଲୁଗା ପେଡ଼ି-କଉଡ଼ିରେ
ନ କିଣିଲେ ଆଉ ଗତି ନାହିଁଟି ରେ ।
ଆମରି ସାଗର, ଆମରି ଚିଲିକା,
ଆମ ଦ୍ରବ୍ୟ ଆମେ କରୁଁ ନିତି ଭିକ୍ଷା ।

ଲଣ ଦେ ମାରିଲେ ଜେଲ ଚୋରିମାନା,
ଆମେ ମୂଳ ଲାଗୁଁ ତାଙ୍କ କାରଖାନା
ପାଟ ନୀଳକ୍ଷେତେ, ଚାହା ବଗିଚାରେ
କୁଲିଙ୍କ ଜୀବନ ବିତେ ଅତ୍ୟାଚାରେ ।
ମେଲେରିଆ, ଶୋଥ, ଡେଙ୍ଗୁ, କଳାଜ୍ୱର
ଗରିବ କୁଲିଙ୍କ ଚିର ସହଚର ।
ଭାରତ ଭାଗ୍ୟରେ ଖାଲି କୁଲିଗିରି,
ଅଳ୍ପ ବେତନର କିରାଣୀ ଚାକିରୀ ।
ଆଉ କି ଭାରତେ ଅଛି ସୁନା ଚାନ୍ଦି,
ନେଲା ଭଣ୍ଡାରକୁ ନାନା ଫନ୍ଦି ବାନ୍ଧି ।
ଆମ କୁଳଲକ୍ଷ୍ମୀ ଆଭରଣହୀନା,
ସରିଲାଣି ପୂର୍ବ ରୂପର ଗରିମା ।
ସୁନା ଅଭାବରେ ପିନ୍ଧେ କାଚଚୂଡ଼ି,
ମଣିମୁକ୍ତା ଛଟା ନ ଜାଣେ ଦିହୁଡ଼ି ।
ପାଟ ପୀତାମ୍ବରୀ ଝୀନ ବସନର
ରଙ୍ଗ ଚକମକ କଥା ସପନର ।
ନାହିଁ ସେ ପଦ୍ମିନୀ, ସେ ନୁରଜାହାନ,
ଦେବତାଏ ଯା'ଙ୍କ ରୂପେ ହତଜ୍ଞାନ ।
ନ ସଜାଏ ଆଉ ଚାରୁ ହର୍ମ୍ମ୍ୟପୁରୀ
ସୁନ୍ଦରୀଙ୍କ କର-ଶିଳ୍ପର ଚାତୁରୀ ।
ବିଦେଶୀ ଦଦରା ପଦାର୍ଥରେ ଭରା
ଆମ କୋଠାଘର ସିନ୍ଦୁକ ପେଟରା ।
ଚୀନାମାଟି, ଆଲ୍‌ମୋନିଆ ବାସନ
କଂସା, ପିତଳକୁ କଲା ନିର୍ବାସନ ।
କିପରି ଭୁଲିବା ଦେଢ଼ଶ' ବର୍ଷର
ଗୋଲାମୀ ସାରିଲା ତେଜ ମାନବର ।
ବଳବୀର୍ଯ୍ୟ ଶିରୀ ସ୍ୱାସ୍ଥ୍ୟ ଧନହରା
ଘେରେ ଖାଲି ଅକାଳରେ ମୃତ୍ୟୁ ଜରା ।
ପ୍ରତାପ, ଶିବାଜୀ, ଆଜି ସେ ସ୍ୱପନ,
ବୀର ବଂଶଧର ଦାସତ୍ୱେ ମଗନ ।
ସିଗ୍ରେଟ୍, ଚଷମା, ବିଲାତି ପୋଷାକ,
ନଭେଲ, ସିନେମା, ଟେରିକଟା ବାଙ୍କ,
ସୁରାପାନ ସାରିଦେଲା ଯୁବାଗଣେ;
ବୁଢ଼ା ବୁଡ଼ିଗଲେ ଅଫିମ ସେବନେ ।

ଥରି ସେ ଉଠନ୍ତି ଗୋରାଟମ ଚାହିଁ,
ଅସ୍ତ୍ରହୀନତାର ପରିମାଣ ଏହି ।
ଏ ଦେଶେ ଆମର ଭୂଇଁ ଟାଖଣକ
ନାହିଁ କରାୟତ୍ତ, ଜନ୍ମଭୂମି ଧିକ
କହୁଁ କେଉଁ ମୁଖେ, ତାକୁଁ ଅନାତ୍ମକ,
ଏହାଠାରୁ ମୃତ୍ୟୁ କି ଦୁଃଖ ଅଧିକ ?
ବିଭୁଦତ୍ତ ଆମ ଜନ୍ମ ଅଧିକାର
ହରାଇ ଆରତେ କରୁଁ ହା' ହା'କାର ।
ନିଜ ଅନ୍ନ ପାଣି ନିଜେ କିଣି ଖାଉଁ,
ଆପଣାକୁ ପୁଣି ମଣିଷ ବୋଲାଉଁ ।
ଭୀରୁ ମାର୍ଜାରର ପରି ପରସ୍ପରେ
ଦ୍ୱନ୍ଦ୍ୱ ସାଧି ମରୁଁ ଆତ୍ମୀୟ ଦ୍ୱେଷରେ ।
ଭାଇ ଭାଇ ମଧ୍ୟେ ଭେଦ ଉପୁଜାଇ
ବିଦେଶୀ ବସଇ ରାଜଗାଦୀ ପାଇ ।
ସୁନାର ଭାରତ କଲା ଛାରଖାର
ବିଦେଶୀ ବଣିକ ଧୂର୍ତ୍ତ ଚାଟୁକାର ।
କେହି ନ ଭୁଲ ତା' କୋମଳ କଥାରେ,
ନ ଯାଅ ବିଶ୍ୱାସ ଶତ ଘୋଷଣାରେ ।
ଦଗା ଦେଲା ସେହି ଶତ ଶତ ବାର,
ତା'ସଙ୍ଗେ ବିଶ୍ୱାସ ନାହିଁ ବ୍ୟବହାର ।
ମଣିଷ ବୋଲି ସେ ତୁମକୁ ନ ମଣେ,
କୌଶଳେ ବିନାସ୍ତ୍ରେ ମାରେ ପଣେ ପଣେ ।
ହାତରେ ନ ମାରି ଭାତେ ମାରିବାର
କୂଟ ନୀତି ତା'ର ଶାନ୍ତିର ପ୍ରଚାର ।
କାପୁରୁଷପଣେ ଯେ ଶାନ୍ତି ଅର୍ଜନ,
ତା'ଠାରୁ ବରଞ୍ଚ ମୃତ୍ୟୁ ପ୍ରୟୋଜନ ।
ବଞ୍ଚି ମହୀ ଭୋଗ କରି ସ୍ୱର୍ଗବାସ
ଅର୍ଦ୍ଧମୃତ ଜୀବେ ନିତି ମୃତ୍ୟୁ-ତ୍ରାସ ।
ଶୃଗାଳ ଜୀବନେ କି ଲୋଡ଼ା ଆମର,
ସିଂହ ସରି ପ୍ରାଣ ତେଜିବୁଁ ଏଥର ।
ଧର୍ମେ କର୍ମେ ସବୁ ଦେବୁଁ ଜଳାଞ୍ଜଳି,
ଦାସଧର୍ମ ମୁକ୍ତି ମନେ ନେବୁଁ କଳି ।
ଦେଶ ଆମ ଧର୍ମ କର୍ମ ଜପାମାଳି,
ଅରଟର ଚକ୍ର ଜୀବନସଞ୍ଚାଳି ।

ସେନାପତି ତବ କଲେଣି ଆହ୍ୱାନ,
ଆତ୍ମ ଅରପଣେ ହୁଅ ଆଗୁଆନ ।
ବାଜିଉଠିଲାଣି ରଣତୂରୀ, ଭେରୀ,
ନ ଅନାଅ ଆଉ ପଛପଟେ ଫେରି,
ସାଜ ରଣସାଜେ ସୁର ପରାକ୍ରମୀ,
ତୁମ ଶକ୍ତି କେହି ନପାରିବ ଦମି ।
ମହାଯୋଗୀ କର୍ମଚାନ୍ଦ ଗାନ୍ଧିଙ୍କର
ଫଳିବ ତପସ୍ୟା, ମୁକ୍ତ ଭାରତର
ନୀଳାକାଶ ତଳେ ତୁମ ରକ୍ତାଙ୍କିତ
ଉଡ଼ିବ ପତାକା ଜୟ ସୁନିଶ୍ଚିତ ।
ଅନ୍ୟାୟ ଶାସନ ଚିରଦିନ ମହୀ
ଅକାତରେ ଶିରେ ନପାରିବ ବହି ।
ଅଛି କି ବ୍ରିଟନ ଅନ୍ୟାୟର ସୀମା,
କେ କହିବ ତା'ର ଅନ୍ୟାୟ ମହିମା !
ମହାରଣେ ଢାଳିଥିଲୁଁ ଯେ ଶୋଣିତ
ତା'ର ପ୍ରତିଦାନ ଦେଲେ ସେ ଉଚିତ ।
ଦେଇଥିଲୁଁ ଗଣ୍ଡି ଦଉଡ଼ି ଫିଟାଇ,
''ରେଗୁଲେଟିଂ ଆକ୍ଟ'' ଦେଲା ତା ଦୁଝାଇ ।
କିନ୍ତୁ ଯେ ବିପଦେ ବନ୍ଧୁ ବ୍ୟବହାର,
ଅର୍ଡ଼ିନାନ୍‌ସ ତେଣୁ ଜାରି ବାରମ୍ବାର ।
ସାମାନ୍ୟ ସନ୍ଦେହେ ସହସ୍ର ଗ୍ରେପ୍ତାର,
ଯୁବକ ଶକ୍ତିକୁ ପେଷେ କାରଗାର ।
ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ଶାସନସଂସ୍କାର
ପିଲାଙ୍କୁ ଟାକୁଆ ଉଣ୍ଡିବା ପ୍ରକାର ।
ଦ୍ୱୈତ ଶାସନର ଲୀଳା ରଚାଇଲେ,
ଦ୍ୱିମନା ମୂର୍ଖଙ୍କୁ ତାନେ ନଚାଇଲେ ।
ତା'ପରେ ପେଷିଲେ ଦଳେ କମିଶନ
ମଧୁରଲକ୍ତିଆ ଦୂତ ସାଇମନ ।
ଶନିସପ୍ତା ପରି ଭାରତେ ବୁଲିଲେ
ଆମ ଶ୍ରମଧନେ ମଉଜ ମାରିଲେ ।
ତାଙ୍କ ଆଗମନେ ପ୍ରଥମ ଶିକାର
ଲାଲା, ଲାଜପତ ଲାଠିର ପ୍ରହାର
ଭୁଲୁଁ ନଦ୍ୟୁଲୁଣ୍ଠ ଲାହୋର, ମିରଟେ
ଅଟଳ ଯୁବକେ ଛଳନା କପଟେ
ଷଡ଼ଯନ୍ତ୍ର-ବାନା ଧରି ବିନାଦୋଷେ
ଭାରତର ସାରା କର୍ମୀଦଳେ ରୋଷେ
କଠିନ ହାଜତ ଅବା କାରାବାସ
ବିହି ଏ ଦେଶର ଶକ୍ତି କଲା ନାଶ ।

ଜାଲିଆନାବାଗ କରୁଣ କାହାଣୀ,
ଡାୟାର, ଓଡ୍ୱାୟାର କମାଣ ନିଶାଣୀ,
ମୋ ପିଲାଙ୍କ ଛାତିଫଟା ଦେହଛଟା,
ଶ୍ୱାସରୁଦ୍ଧ ମୃତ୍ୟୁ ଶୋଷ ହଟହଟା,
ମଧ୍ୟ ପ୍ରଦେଶର ଦୁର୍ଭିକ୍ଷ ଭୀଷଣ,
ବଙ୍ଗ ଓଡ଼ିଆର ବଢ଼ିର କଷଣ ।
ଲାହୋରର ଘୋର କ୍ରୂର ଅତ୍ୟାଚାର,
ରାଜଦ୍ରୋହ ଛଳେ ଯୁବକେ ଗ୍ରେପ୍ତାର ।
ବିଜୟ, ଯତୀନ୍ଦ୍ର ଅନଶନ ବ୍ରତ
ମୃତ୍ୟୁ କଥା ମନେ ନିୟତ ଜାଗ୍ରତ ।
ଦେଶବନ୍ଧୁ, ଗୋପବନ୍ଧୁ, ଲଜପତ
ଯା' ଧର୍ମଶାସନେ ଅକାଳେ ନିହତ ।
ଗାନ୍ଧି, ଜହରଲାଲ, ରାଜେନ୍ଦ୍ର, ସୁଭାଷ,
ପଟେଲ, ସତ୍ୟପାଳ କଲେ କାରାବାସ ।
ଦେଶାନ୍ତରୀ ରାସବିହାରୀ, ମହେନ୍ଦ୍ର,
ହରଦୟାଲ, ସାବରକର, ଅରବିନ୍ଦ
ପୁରୁଷକେଶରୀ ଭାରତରତନ
ତପନର ତଳେ ଋଷି ମହାଜନ,
କଳା ବୋଲି ହେୟ, ଘୃଣ୍ୟ ଦଣ୍ଡଧାନେ
କଳା ନୀଚ, ଚୋର, ତସ୍କର ସମାନେ ।
କଳା ଦେହେ ଆମ ନାହିଁ କି ରକତ,
ଏତେ ଉତ୍ପାତରେ ନ ହେବ ତପତ ?
ଦକ୍ଷିଣ ଆଫ୍ରିକା କଳାଙ୍କ ନିଗ୍ରହ
ଭାବିଲେ କାହାର ନ ବହିବ ଲୁହ ।
ଜେନେରାଲ ସ୍ମଟ୍ ନିଷ୍ଠୁର, ନିର୍ଦ୍ଦୟ
ରାକ୍ଷସାବତାର, ହିଂସାର ବିଗ୍ରହ ।
କଳାଙ୍କୁ କଳା ସେ କେତେ ଅପମାନ,
କଳା ତା ନୟନେ ଘୁଷୁରି ସମାନ ।
କୁଲି ଜାତି ପୁଅ ଭାବି ମହାତ୍ମାଙ୍କୁ
କେତେ ଦୁଃଖ ଦେଲା, ଅଜଣା କାହାକୁ ?
ଡ୍ୟାମ୍ ନେଟିଭ୍ ବୋଲି ତା'ର ଭାଇଗଣ
କରନ୍ତି କଳାଙ୍କୁ ସ୍ନେହସମ୍ଭାଷଣ ।
କେ ସକଳା ପୁଭଳି ପୂଜାର ଅନ୍ଧାରେ
ସଢୁଛନ୍ତି, ତାଙ୍କ ଆତ୍ମା ତାରିବାରେ
ଆମ ଅର୍ଥଧନ କରିଣ ଖରଚ
ବସାନ୍ତି ପାଦ୍ରୀଏ ମିଶନ, ଚରଚ ।

ଏତେ ଜ୍ଞାନଧନ ଦେଲେଣି ଅଜାଡ଼ି,
ଜ୍ଞାନମୁଖେ ହିନ୍ଦୁସ୍ଥାନେ ଗଲା ମାଡ଼ି
ଶତକରା ପଞ୍ଚାନବେ ନିରକ୍ଷର,
ନ୍ୟାୟଶାସନ ଏ ଦେଢ଼ଶ' ବର୍ଷର ।
ତାଙ୍କ ବୋଲି, ତାଙ୍କ ଢଙ୍ଗ, ରୀତିନୀତି
ଶିଖି ଦିନ ଯିବ ଦାସତ୍ୱରେ ବିତି ।
ଏହି ମରମେ ତ ଧରମ ପ୍ରଚାର,
ହିନ୍ଦୁ ଅନ୍ଧ ବୋଲି କରନ୍ତି ପ୍ରଚାର ।
ମୂର୍ଖ ମୁସଲମାନ, ବୌଦ୍ଧ ନିରୀଶ୍ୱର,
ଆମେ ଏକା ତ୍ରାତା ଜଗତଯାଜକ ।
ଜଣା ତ ଯାଇଛି ତ୍ରାତାପଣ ଗୁଣ,
ହରିନେଲେ ଅସ୍ତ୍ର, ଅନ୍ନ, ପାଣି, ଲୁଣ ।
ମନୁଷ୍ୟ ଜନ୍ମରୁ ତାରିବେ ଏବାର,
ବୁହାଇ ଭାରତ ତପ୍ତ ରକ୍ତଧାର ।
ଧର୍ମାଦର୍ଶଧାରୀ ଭଣ୍ଡ ପ୍ରବଞ୍ଚକ
ଅର୍ଥିରେ ଥାଇଣ ତର୍ଥିକଟା ଠକ ।
ମହାରାଣୀ କରିଥିଲେ ଯା' ଘୋଷଣା
ହୋଇ ରହିଲା ସେ ଅକ୍ଷର ରଚନା ।
ନ୍ୟାୟେ ଧର୍ମ ଜାତି ବର୍ଣ୍ଣ ନିର୍ବିଶେଷେ
ପାଳିବେ ପ୍ରଜାଙ୍କୁ, କି ହୋଇଲା ଶେଷେ ?
ଆଖି ଦେଖୁଥାଇ ଅନ୍ୟାୟ ଗୋରାର
କଳା ଗୋରା କାର୍ଯ୍ୟ ଭେଦ ବ୍ୟବହାର ।
ଉଚ୍ଚ ଅଟ୍ଟାଳିକା, ବିଜୁଳି ମୋଟର,
ବେହେରା, ଚପ୍ରାଶି, ଅର୍ଦ୍ଦଳୀ, ଚାକର,
ପଦେ ପଦେ ଆଜ୍ଞାକାରୀ ଅନୁଚର,
ମାଗଣାରେ ମିଳେ ସେବକ ଡାକ୍ତର ।
ଗୋଡ଼େ ଗୋଡ଼େ ତାଙ୍କ ବାଜଇ ସଲାମ,
ଅଳପ ଖଟଣୀ, ବ୍ୟସନ, ଆରାମ ।
ଶିକାର ଖେଳିବା ଲାଗି ବନ୍ଦୋବସ୍ତ,
ସବୁ ସୁବିଧାରେ କରନ୍ତି ସେ ଗସ୍ତ ।
କାର୍ଯ୍ୟକାରୀଠାରୁ ଭାଇବନ୍ଧୁ ଯାଏ
ସାରା ଖରଚଟା ସର୍କାର ଯୋଗାଏ ।
ଗୋରା ତାଙ୍କ ଚମ, ବିଲାତରେ ପାଶ୍,
ଫର୍ମାସୀ ଯୋଗାଇ ମରେ କଳା ଦାସ ।

ତହିଁ ଉଚ୍ଚ ଭତ୍ତା, ବେତନ ଅଗଣା
ଖଞ୍ଜାଏ ଦରିଦ୍ର ପ୍ରଜାଙ୍କ ଖଜଣା ।
ତହିଁ ପୁଣି କେତେ ଗୋରା ବୁଟ୍‌ଚଟା
ଆମରି ଖାଇଣ ଆମ ତଣ୍ଟିକଟା ।
ଗୋଦଡ଼ା ଗୋଡ଼ର ଭୀଷଣ ପୋଟକା,
ମିଛ ଚଟୁଚନା ଧୋବ ପାଣିପକା ।
'ଡ଼ିଟୋ' ମାରିବାକୁ ପ୍ରତ୍ୟେକ କଥାରେ,
ଆପଣା ଜାତିର ଦାଉ ସାଧିବାରେ,
ହାଁଜୀଦଳ କେତେ ଗୋରା ଅନୁଗତ,
ତାଙ୍କ ପାପେ ବୁଡ଼ି ରହିଛି ଜଗତ ।
ଯାବଚ୍ଚନ୍ଦ୍ରଦିବାକର ବିରାଜିବେ
ବିଶ୍ୱାସଘାତକେ ଦୁର୍ନାମ ଅର୍ଜିବେ ।
ପରାଧୀନ ତାଙ୍କ କୁଚକ୍ର ଫଳରେ
ଭାରତ ଶୃଙ୍ଖଳ ପିନ୍ଧିଛି ପୟରେ ।
ଏପରି ଶୃଗାଳେ ଶତ ନମସ୍କାର,
ଯଦୁକୁଳଧ୍ୱଂସୀ ଶାମ୍ବ ଅବତାର ।
ଏହାଙ୍କ ପଛକୁ ପୁଣି ବଳୀୟାର
ଅଳସ ବିଳାସୀ ରାଜା ଜମିଦାର ।
ମଦ, ବାରାଙ୍ଗନା,ସିନେମା, ମୋଟର,
ନାଟ, ନାଟଭୋଜି, ବିଲାତି ଡ଼ିନର ।
ଦେହେ ବାସ କୋଟି ଉତ୍କଟ ବ୍ୟାଧିର,
ତେଜବୀର୍ଯ୍ୟ ଶୂନ୍ୟ ଦାସ ଔଷଧିର ।
ସୂର୍ଯ୍ୟଚନ୍ଦ୍ରବଂଶୀ କ୍ଷତ୍ରିୟ ଏମାନେ,
ଦେବତାଏ ଡ଼ରୁଥିଲେ ତାଙ୍କ ନାମେ ।
ହରିଶ୍ଚନ୍ଦ୍ର, ରାମଚନ୍ଦ୍ର, ଯୁଧିଷ୍ଠିର—
ରୁଧିରେ ଭରା କି ଯାଙ୍କରି ଶରୀର !
ଶିବାଜୀ-ପ୍ରତାପ ପୁରୁଷ ଉତ୍ତମ
ସିଂହ-ଗଜପତି-ଗୋଷ୍ଠିରେ ଜନମ !
ହୀନ ଘୃଷ୍ଟି ପରି ବିଳାସପଙ୍କରେ
ଲୋଟି କ୍ଷତ୍ରୀନାମ ଲେପି କଳଙ୍କରେ
ପ୍ରଜାରକ୍ତ ଶୋଷି ବୋଲାନ୍ତି ପାଳକ;
ବେଠି ଖଟି ପ୍ରଜା ପୀଡ଼ିତ ବାଳକ ।
ଦାନ୍ତହୀନ ଖଣ୍ଡା ଖଣ୍ଡିକ ଭୂଷଣ,
ଏହିମାନେ ଗୃହଶତ୍ରୁ ବିଭୀଷଣ ।

ନାଟକଟପଟୁ ବ୍ରିଟନ୍ କୁମାରେ
କାଠ ପିତୁଳାଙ୍କୁ ଖେଳାନ୍ତି ମଜାରେ ।
ତାଙ୍କୁ ଘେନି ସବୁ ଶାସନ ତାମସା
ଉପାଧି ବା ପଦବୃତ୍ତିର ଲାଳସା ।
ସ୍କୁଲ କଚେରୀରୁ କାଉନ୍‌ସିଲ ଯାଏ
ଇଂରାଜ ଏହାଙ୍କୁ ମଉନେ ନଚାଏ ।
ରାୟ ବାହାଦୁର, ଖାଁ ବାହାଦୂର
ପଦଟି ଆଶାରେ ହଜାରେ ହଜୁର ।
ଜଗତ ଅସ୍ତିତ୍ୱ ଥିବା ପରିଯନ୍ତ
ଚାହାନ୍ତି ଏମାନେ ଗୋରାଙ୍କ ରାଜତ୍ୱ ।
ଚୋର ଭାଇ ଗାନକଟା ସରଦାର,
ଚିହ୍ନି କର ଯାଙ୍କୁ ଦୂରରୁ ଜୁହାର ।
ହାୟ ଏତେ କାଳ ଏ ଘୋର ଦୁରିତ
ଭ୍ରାତୃହତ୍ୟା ଥିବ ଭାରତେ ଜୀବିତ !
ତେଜି ପୁରୁଷତ୍ୱ ମହତ୍ୱ ଗୌରବେ
ବିରାଜିବେ କେତେ ଦିନ ଏ କୌରବେ ?
ଲଭି ସରକାର ତିଳେ ଅନୁଗ୍ରହ
ସାରା ଜାତିଟାକୁ କଲେ ଯେ ବିଗ୍ରହ ।
ଏହି କୁଳାଙ୍ଗାରେ କରି ଜନ୍ମଦାନ
ହିନ୍ଦୁସ୍ଥାନ ରହିଚନେ ହୀନିମାନ ।
ଦେଶ ଲୁଣ ଖାଇ ଗାଇ ପର ଗୁଣ
ସାରିଛନ୍ତି ଜନ୍ମଭୂମି ସନମାନ ।
ଏହିମାନଙ୍କର ଭୋଗି ପାପଫଳ
ବୀରମାତା ବେଦଭୂମି ହୀନବଳ ।
ନିର୍ବୀର୍ଯ୍ୟ ନିରସ୍ତ୍ର ପଦାନତ ଭୀତ,
ଶାନ୍ତିମନ୍ତ୍ରଧାୟୀ ଚିର ପରାଶ୍ରିତ ।
ପୂର୍ବେ ଯେବେ ଥିଲେ ରାଜା ମୁସଲମାନ
ଏତେ ଭୀରୁ ନ ଥିଲା ତ ହିନ୍ଦୁସ୍ଥାନ !
କରୁଥିଲେ ରଣ ସମାନେ ସମାନ,
ମୋଗଲର ସରି ବୈରୀ ରାଜସ୍ଥାନ ।
ଦର୍ପୀ ଔରଂଜେବ ଦମ୍ଭୀ ଶିବାଜୀର
ସମପ୍ରତିଦ୍ୱନ୍ଦ୍ୱୀ ବେନି ମହାବୀର
ବେନିର ସାକ୍ଷାତ ଖୋଲା ତରବାରେ,
ବୀର ପଟ ମରିବାରେ ମାରିବାରେ ।

ଆଜି କି ଦେଖୁଛ ହିନ୍ଦୁସ୍ଥାନ ଭାଇ,
ହୀନ ଭାରତୀୟ ଶାନ୍ତିମନ୍ତ୍ର ଗାଇ।
ଭିକାରୀ-ମୂଲିଆ-ଗୋଲାମର ଦେଶ
ନାମେ ଚଉଦିଗେ ଲଭେ ଘୃଣା ଦ୍ୱେଷ।
ଏ ଶାନ୍ତି ଶାସନେ ଯେ ଅସ୍ତ୍ର ଆଇନ
କଲା ପୁରୁଷଙ୍କୁ ଅବଳାଠୁଁ ହୀନ।
ଦୂରେ ଥାଉ ହାତ ହତିଆର କଥା,
କଟାରୀ ଖଣ୍ଡକୁ ନାହିଁଟି ବ୍ୟବସ୍ଥା।
କିପରି ବୀରତ୍ୱ ଜାଗିବ ଛାତିରେ,
ଛୁରୀ ଖଣ୍ଡେ ଯଦି ନ ଥିବ ପାଖରେ ?
କୃପାଣଧାରଣେ ଶିଖ୍ ଯାଏ ଜେଲ,
ପରଖ ଏ ଶାନ୍ତି ସୁନା କିବା ଭେଲ।
ପୁରୁଷତ୍ୱ ହରି ଯେ ଶାନ୍ତି ସାଧନ
ସେ ଶାନ୍ତି ଆରାମେ ନାହିଁ ପ୍ରୟୋଜନ।
ଶତ ଧିକ ଏହି ଶାନ୍ତିନାମଧାରୀ
ବେପାର-ଚତୁର କ୍ରୂର ଅତ୍ୟାଚାରୀ।
ଗୁପ୍ତାଘାତପଟୁ କୂଟ କପଟିଆ,
ଉପର ଯା' ଗୋରା ରଙ୍ଗ ପଟୁଦିଆ।
କୁଆଚୋର ଶାସନକୁ ନମସ୍କାର,
କଲା ଭାରତର ଶକତି ସଂହାର।
ମୁଣ୍ଡ ଟେକିବାର ଶକତି ସଂହାର।
ମୁଣ୍ଡ ଟେକିବାର ନାହିଁ ଆଉ ବଳ,
ହାଡ଼ମାଂସ ପେଷା ବିଚିତ୍ର ଏ କଳ।
ଏ କଳ କବଳେ କେତେ ହେଲେ ନାଶ,
କେ ଦେବ ତାଙ୍କର ହିସାବ ନିକାଶ ?
ସଢୁଛନ୍ତି କାରାଗାରେ ତୁମ୍ଭ ଭାଇ
ପ୍ରାଣପଣ କରି ଜନ୍ମଭୂମି ପାଇଁ।
କେହି ରୋଗଶେଯେ, ନିସ୍ତେଜ ଜେ ଭୋକେ,
ତନୁ ତେଜି କେତେ ଗଲେ ସ୍ୱର୍ଗଲୋକେ।
ଦତ୍ତ ସହ ଗଲା ସତୀନ୍ଦ୍ର କାବୁଲ
ମୋତା ମୁଜଫର, ଭଗତ୍, ନଜରୁଲ୍।
ମାତୃଭୂମି ପ୍ରେମ ତାଙ୍କ ଅପରାଧ,
ସ୍ୱର୍ଗ ଗରୀୟସୀ ତା ଭକ୍ତିରେ ବାଦ।
ଜାତୀୟତା ପ୍ରତି ଗଭୀର ମମତା
ହେଲା ଭାରତୀୟ ଯୁବପ୍ରାଣହନ୍ତା।

ଏଡ଼େ ହୀନ ଆଜି ଆମର କପାଳ,
ମାତୃଭୂମି-ପ୍ରୀତି ଆମ ପ୍ରତି କାଳ।
ଦେଶ ପ୍ରେମ ଲାଗି ନର ପାଏ ପୂଜା,
ଆମର ଶାସନ ଓଲଟା ଅବୁଝା।
କଳାପାଣି, ଫାଶିକାଠ, କାରାଗାର
ଦେଶପ୍ରେମୀଙ୍କର ଚିର ପୁରସ୍କାର।
ସେହି ପୁରସ୍କାର ତିଳକ, ଗୋଖେଲ
ପୂର୍ବେ ଲଭିଥିଲେ, ତୀର୍ଥ ତେଣୁ ଜେଲ।
ଧର୍ମ ଅର୍ଜିବାକୁ ତୀର୍ଥବ୍ରତ ସରି
ଲକ୍ଷ ଲକ୍ଷ ଯୁବା ଜେଲ୍ ଦିଅ ଭରି।
ଭାରତଗୋଟାକ ବଡ଼ କାରାଗାର,
କୋଣେ କୋଣେ ଉପଦ୍ରବ ଅତ୍ୟାଚାର।
ଏଣିକି କି ଭୟ ଜେଲ୍ ନିର୍ବାସନେ,
ଏଣିକି କି ଭୟ ମୃତ୍ୟୁ ଅନଶନେ ?
ସବୁ ସରିବ, ଏ ଭାରତର ହାଡ଼
ନ ଭାଙ୍ଗେ ସହଜେ, ଏ ଦୃଢ଼ ପାହାଡ଼;
ହିମାଳୟ ପରି ଅଟଳ ଅଟଳ,
କୋଟି କୋରଡ଼ାରେ ନହେବ ଦୁର୍ବଳ।
ମହାମେରୁ ପରି ହୋଇଥିବ ଛିଡ଼ା,
ଦେଉନ୍ତୁ ବଇରୀ ଶତ ଦୁଃଖ ପୀଡ଼ା।
ଶତ ଶତ ଯୁଗେ ସହସ୍ର ତାଡ଼ନେ
ମୂଳ କି ଉପାଡ଼ି ପାରିଲା କେ ଜଣେ ?
ମହାବୋଧି ବଟ ଅଚ୍ଛେଦ୍ୟ, ଅଜୟ
ସର୍ବଂସହା ଭୂମି ଅକ୍ଷୟ ଅମର।
ସେହି ଭୂମି କୋଳେ ଜନମ ତୁମର,
ରକ୍ଷାଲାଗି ବେଗେ ହୁଅ ତତପର।
ଉଠ ରାଜପୁତ, ପଞ୍ଜାବୀ, ଓଡ଼ିଆ,
ଶତ ରଣକ୍ଷେତ୍ରେ ହୋଇଥିଲ ଠିଆ।
ଉଠ ମରହଟ୍ଟା, ଗୁର୍ଖା ବଳବାନ,
ମାନ୍ଦ୍ରାଜୀ, ବଙ୍ଗାଳୀ, ସିନ୍ଧ୍ ମୁସଲମାନ।
ଗୁଜରାଟୀ ଯା ବର ତୋଳି ଜୟକେତୁ
ବାନ୍ଧିଲା ଭାରତବକ୍ଷେ ଦମସେତୁ
ସାବରମତିର ନିର୍ଭୀକ ସୈନିକ,
ଉଠ ଭାରତର ଯୁବକ ନିର୍ଭୀକ।

ଆରମ୍ଭିବେ ମହା ଶାନ୍ତିର ସମର,
ଆଗେ ଆଗେ ଚାଲିଛନ୍ତି ଯୋଗୀବର ।
ଗଳିତ ଦଶନ, ପଳିତ ଶରୀର
ଜ୍ୟୋତି ଟଳେ ଅଙ୍ଗେ ସହସ୍ର ମିହିର ।
ବ୍ରହ୍ମାବିଷ୍ଣୁ ମହେଶ୍ୱର-ତେଜଧାରୀ
ଖଦଡ଼ଶୋଭିତ ପୂତ ବ୍ରହ୍ମଚାରୀ
ଦକ୍ଷିଣ ଶ୍ରୀକରେ କରୁଣା କଲ୍ୟାଣ,
ବାମେ ଦୀନତ୍ରାଣ ଅରଟ ମହାନ ।
ନେତ୍ରେ ସୁରପ୍ରଭା, ଦ୍ୟୁତି ଭଗବତୀ,
ପଦଭରେ କମ୍ପିଉଠେ ବସୁମତୀ ।
ନରମୂରତିରେ ନିଜେ ନାରାୟଣ
ଉଭା, କରିବେ ସେ ଭୂଭାର ହରଣ ।
ତାଙ୍କ ଆହ୍ୱାନରେ କେ ରହିବ ଜୁନି,
ମୋହନ ଡାକେ କେ ରହିବ ମଉନୀ ?
ଥାଉ ଏ ଶରୀରେ ସହସ୍ର ପରାଣ,
ଅରପଣ ଲାଗି ହେବେ ଆଗୁଆନ,
ପଛଘୁଞ୍ଚା ଆଉନାହିଁଟି ଏକ୍ଷଣି,
ବଞ୍ଚ, ଅବା ନିଅ ମରଣ ବରଣି ।
ଗାନ୍ଧିମନ୍ତ୍ର ଜପି ପ୍ରାଣ ଦିଅ ବଳି,
ଦେଶମାତା ପଦେ ରକ୍ତ ପୁଷ୍ପାଞ୍ଜଳି ।
ଆସ ଏକସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ୍, ପାର୍ଶୀ,ଜୈନ, ଇହୁଦୀ, ଖ୍ରୀଷ୍ଟାନ,
ଘେନ ମୋହନର ଅରଟର ଚକ୍ର,
ଛେଦ ସେ ଅରଟେ ବିଦେଶୀୟ ନକ୍ର ।
ଭେଦ ସେ ଅରଟେ କୂଟ ଜାଲ ତା'ର,
ତୁମ ଆତ୍ମବଳ ଦେଖୁ ଏ ସଂସାର ।
ତୁମ ଧୈର୍ଯ୍ୟ ତୁମ ଦୁଃଖ-କଷ୍ଟଟିରେ
ପରଖି ପକାଅ ଏହିଥର ବାରେ ।
ହେଉ ତବ ହିୟା ବଜ୍ରରୁ କଠିନ,
ଅଚଳ ଅଟଳ କୃଷ୍ଣାର୍ଜୁନ, ଭୀମ,
ଭୀଷ୍ମବ୍ରତେ ବ୍ରତୀ, ଧର୍ମେ ଯୁଧିଷ୍ଠିର,
ବିଫଳିବ ତେବେ ମନ୍ତ୍ର ଶକୁନିର ।
ଉଠ ଅପ୍ରତିମ ତେଜେ ଅରିନ୍ଦମ,
ବୀର ଭାରତୀୟ କେଶରୀବିକ୍ରମ ।

ପଛଘୁଞ୍ଚା ଆଉ ନ ଦିଅ ଏଥର,
ନିଅ ପରିଶୋଧ ମଣିଷପଣର ।
କିଂପା ଜଗତଟା ଅବଜ୍ଞାଦୃଷ୍ଟିରେ
କିରୂପେ ଚାହିଁବେ ତେତ୍ରିଶ କୋଟିରେ ?
ତା'ଠାରୁ ବରଞ୍ଚ ଝାସ ଏ ଅଗ୍ନିରେ,
ଯାଉ ଦେହ, ନାମ ରହୁଟି ମହୀରେ ।
ସ୍ୱତନ୍ତ୍ର୍ୟ ଆମର ଜନ୍ମ ଅଧିକାର,
ନମିଲେ ଯଦି ତା' ଧ୍ୱଂସ ଆପଣାର
ସାଧି ନିଜ ହାତେ ମର ଏକାଥରେ,
ମିଶୁ ହିନ୍ଦୁସ୍ଥାନ ସିନ୍ଧୁ ଗରଭରେ ।
ତୁଙ୍ଗ ହିମଶୃଙ୍ଗ ପାରାବାର ଅଙ୍ଗେ
ଖସି ମିଶିଯାଉ ଅରଣ୍ୟ ତରଙ୍ଗେ ।
ହେ ପୁରୁଷେ ଯଦି ନଉଠ ଏଥର,
ଆମେ ରଣବେଶେ ହେବୁଁ ଅଗ୍ରସର ।
ତୁମେ ଯଦି ଭୟେ ଦିଅ ପଛଘୁଞ୍ଚା,
ଆମେ ଡେଇଁ ଯିବୁଁ ଆମ ଲାଜ ଲୁଚା ।
ଆମେ ନାରୀଗଣ କୋଣରୁ ବାହାରି
ଧରିବୁଁ ଅସହଯୋଗ ତରବାରୀ ।
ଶାନ୍ତି ସତ୍ୟାଗ୍ରହ ମହାରଣସ୍ଥଳେ
ଶୋଭାଯାତ୍ରା କରିଯିବୁଁ ଦଳେବଳେ ।
ଆମେ ଭାରତର ଶକତି ସଂହତି,
ତିଳେ ଭୀତି ଚିତ୍ତେ ନାହିଁ ବୈରୀ ପ୍ରତି ।
ଦେଉ ସେ ଆମ୍ଭଙ୍କୁ ଧରି କାରାଦଣ୍ଡ,
କରୁ ସୁକୋମଳ ଦେହ ଖଣ୍ଡଖଣ୍ଡ,
ଟାଙ୍ଗୁଥାଉ ଫାଶିଖୁଣ୍ଟେ ଆମ ମୁଣ୍ଡ,
ଆମେ ଯେ ନ ଡ଼ରୁଁ ଚିତା ଅଗ୍ନିକୁଣ୍ଡ ।
ଉଠିବୁଁ ଗୋ ଚଣ୍ଡୀ ଚାମୁଣ୍ଡା ପ୍ରଚଣ୍ଡ,
ବୈରୀଶକ୍ତି ନିଶ୍ଚେ ହେବ ଲଣ୍ଡଭଣ୍ଡ ।
ହେ ପୁରୁଷେ ଉଠ ପାର୍ଥ, ପୃଥ୍ୱୀରାଜ,
ଭୀମ, ରାମ, କୃଷ୍ଣ ସାଜ ସାଜ ସାଜ ।
ବାନ୍ଧିଦେବୁଁ ଶିରେ ରକ୍ତ ଶିରତାଜ,
ପିନ୍ଧାଇବୁଁ ପୂତ ହାତେ ରଣସାଜ ।
ସତୀତ୍ୱ ଦେବୀତ୍ୱ ତେଜେ ଅଗ୍ନିଶିଖା,
ପତିବ୍ରତାପଣ ଆମ ଜୟଟୀକା ।

ଆମ ଆଗେ କିଏ ଠିଆ ହେବ ଭବେ,
ତୁମ ସଙ୍ଗେ ଆମେ ମିଶିବା ଆହବେ ।
ଯାଉ ପଛେ ପ୍ରାଣ ଥାଉ ଦେଶ ମାନ,
ରଖିବାକୁଁ ଆମେ ସ୍ୱଧର୍ମ ସମ୍ମାନ ।
ମୋହନ ପତାକାତଳେ ମିରାବାଇ—
ସଙ୍ଗେ ଗାନ୍ଧିନାମ ମହାମନ୍ତ୍ର ଧ୍ୟାୟି
ଅସହଯୋଗର ଏ ଶାନ୍ତିସମରେ
ନେବୁଁ ଭାଗ ହର୍ଷେ ବାସନା ପ୍ରାଣରେ ।
ପଡିପଦେ ଧ୍ୟାନ, ଊର୍ଦ୍ଧ୍ୱେ ଭଗବାନ,
ସମ୍ମୁଖେ ମହାତ୍ମା ସ୍ୱଦେଶସମ୍ମାନ ।
ଭାରତର ନାରୀ ନୋହୁଁ ଆମେ ହୀନା,
ଷୋଳକୋଟି ଆମେ ନୋହୁଁ ଅତି କ୍ଷୀଣା ।
ଆମ ମାଆ ଥିଲେ ଲକ୍ଷ୍ମୀ, ଦୁର୍ଗାବତୀ,
ଆମେ କର୍ମଦେବୀ ପଦ୍ମିନୀ ସନ୍ତତି,
ସାଧନ ଆମର ଭାରତ ଉଦ୍ଧାର,
ମହାଶକ୍ତି ଅସ୍ତ୍ରେ ମ୍ଲେଚ୍ଛର ସଂହାର ।
ହରିଲା ଯେ ଆମ ବସ୍ତ୍ର ଆଭରଣ,
ଆମ ମଣିମୁକ୍ତା କଲା ଯେ ହରଣ,
ଆମ ସନ୍ତାନଙ୍କୁ ଅର୍ଦ୍ଧ ଅନଶନେ
ପେଷି ନାନା ଯନ୍ତ୍ରେ ମାରିଲା ଜୀବନେ,
ଯାହା ଯୋଗେ ଆଜି ହେଲୁ କାଙ୍ଗାଳିନୀ,
ବିଶ୍ୱ ବଡ଼ଦାଣ୍ଡେ ବୁଲୁଁ ଭିକାରୁଣୀ,
ତା ଉଚିତ ଦଣ୍ଡବିଧାନ ପ୍ରୟାସେ
ଯୋଖିଦେବୁଁ ଶକ୍ତି ଅରଟେ ଉଲ୍ଲାସେ ।
ଶକ୍ତିମୟ ହସ୍ତେ ଧରିଣ ଅରଟ
ଭାଙ୍ଗିବୁଁ ବଇରୀ ଚକ୍ରକୂଟ ନଟ ।
ନିଷ୍ଠୁର ନିଗଡ଼ ଫେଡ଼ିବା କାରଣ
ଆମ ହସ୍ତେ ସେହି ହେବ ସୁଦର୍ଶନ ।
ପଶୁବଳ ନୁହେ, ଆସିବ ଶକତି,
ଆମେ ଯେ ତହିଁର ସଜୀବ ମୂରତି ।
ଧୈର୍ଯ୍ୟ, ଶାନ୍ତି, ଶକ୍ତି, କ୍ଷମା, ସତ୍ୟ, ସ୍ନେହ
ସ୍ୱର୍ଗୀୟ ଭୂଷଣେ ଭରା ଆମ ଦେହ ।
ଅରଟ, ଅରଟ ଆମ ଜପାମାଳି,
ଅରଟର ସୂତା ଜୀବନସଙ୍ଖାଳି,
ବିଦେଶୀବର୍ଜ୍ଜନ ଦୃଢ଼ ବ୍ରତ ପାଳି
ଦର୍ପୀଙ୍କ ଶାସନଯନ୍ତ୍ର ଦେବୁଁ ଟାଳି ।
ଗାଅ ହେ ଭଉଣୀ ଅରଟର ଗୀତ,
ଅରଟରେ ଆମ ସାଧନା ନିହିତ ।
ସର୍ବ ବଳ ତହିଁ କରିବା ନିହିତ,
ଆଣିବା ଫେରାଇ ସୁବର୍ଣ୍ଣ ଅତୀତ ।
ଅରଟ ଆମର ଜୀବନସମ୍ବଳ,
ଅରଟ ଯେ ଏକା ଭାରତର ବଳ ।
କୋଟି ମେସିନ୍‌ଗନ, ଲକ୍ଷ ରଣତରୀ,
ଅୟୁତ କମାଣ ନୁହେ ତାକୁ ସରି ।
ଅରଟକୁ କହ କି ଅସ୍ତ୍ରେ ନାଶିବ,
ଅରଟ ପ୍ରଭାବେ ନିଜେ ନାଶ ଯିବ ।
ଅରଟ ଭାରତ ହସ୍ତେ ସୁଦର୍ଶନ,
ଗାନ୍ଧିବେଶେ ଅରପିଲେ ନାରାୟଣ ।
ଖଦଡ଼ବସନା ଅରଟସୁନ୍ଦରୀ
ଜଗଦ୍ଧାତ୍ରୀ, ଉଠ ପାର୍ବତୀ ଶଙ୍କରୀ ।
ହେ ଭବାନୀ, ତୁମ ବିଭବେ ଭାରତ
ହୋଇବ ମୁକତ, ହୋଇବ ମୁକତ ।
ଉଠ ରଣଚଣ୍ଡୀ ଅରଟଧାରିଣୀ,
ହେ ମହାଭୈରବୀ ଭାରତତାରିଣୀ,
ଅରଟର ସୂତା ତୁମରି ସାଧନା,
ଅରଟେ ଭାରତ ମୁକ୍ତି ଉଦ୍‌ଯାପନା ।
ଆଜି ହୋଲିଖେଳେ ଆସିଛି ଆହ୍ୱାନ,
ଫଗୁଖେଳେ ଆଉ ନ ବଳେ ପରାଣ ।
ଢାଳି ସ୍ୱରୁଧୀର ଅବିର ବଦଳେ
ନୂଆ ଫଗୁଖେଳେ ମାତିବା ସକଳେ ।
ଲାଲେ ଲାଲ୍ ହେବ ରଙ୍ଗ ଭାରତର,
ତହିଁ ଲୁଚିଯିବ ଲାଲ୍ ବ୍ରିଟେନର ।
ପୂର୍ବେ କହିଥିଲେ ରାଜା ରଣଜିତ,
ହେବ ସବୁ ଲାଲ ବ୍ରିଟିଶବିଜିତ;
ହିନ୍ଦୁସ୍ଥାନ ଭୂମି ସେହି ଚିହ୍ନମାନ
ଘୁଞ୍ଚାଅ ଶୋଣିତେ ଦେଶ ଅପମାନ ।
ବୀର ଦେଶରକ୍ତ ତବ ରକ୍ତ ବିନା
କେଉଁ ନ ଲିଭିବ ଏ ଗାଢ଼ ରକ୍ତିମା ।
'ଦିଅ ରକ୍ତ' ବୋଲି ଶୁଭଇ ଚିତ୍କାର
କମ୍ପାଇ ଦିଅତ ଗିରିପାରାବାର ।
'ଜୟ ଜଗନ୍ନାଥ' ଉଚ୍ଚେ ଦେଇ ଡାକ

ଉଠ ଭାରତର ବୀରପୁତ୍ରଯାକ ।
ପୂର୍ବେ 'ଆହେରିୟା' ଉତ୍ସବେ ଯେସନେ
ରାଜପୁତେ ଦୋଳ ପରବ ପାଳନେ
କରୁଥିଲେଦେଶ ସୌଭାଗ୍ୟ ନିର୍ଣ୍ଣୟ,
ତେସନ ଉଠ ହେ ତେଜି ଦକା ଭୟ ।
ପ୍ରଭୁ ଜଗନ୍ନାଥ ସହାୟ ତୁମର,
''ମା ଭୈଃ'' ନାଦେ ହୁଅ ଅଗ୍ରସର ।
ଘଣ୍ଟ ଘୋଡ଼ାଇଣ ରଖିବେ ଶ୍ରୀହରି,
ଜୟ ସୁନିଶ୍ଚିତ, ନାଶଯିବ ଅରି ।
'ଜୟ ଜଗନ୍ନାଥ' ଉଚ୍ଚେ ଦେଇ ଡାକ
ଆସ ଭାରତର ବୀରପୁତ୍ରଯାକ ।
ଆଜି ରଣକ୍ଷେତ୍ରେ ମହାସମ୍ମିଳନ
କର ବୀର ମର୍ତ୍ତ୍ୟ ସ୍ୱାଧୀନତା ଧନ,
ସ୍ୱାଧୀନ ଭାରତ ନୀଳାମ୍ବର ତଳେ
ସ୍ୱାଧୀନ ଜୀବନଯାତ୍ରା କୁତୂହଳେ ।
ସ୍ୱରାଜ୍ୟ ଆମ୍ଭର ଜନ୍ମ ଅଧିକାର,
କାମ୍ୟ ସ୍ୱାଧୀନତା ଧେୟ ଶ୍ରେଷ୍ଠସାର ।
ସେହି ଅଧିକାର ଲାଭ ହେତୁ ଭାଇ,
ଚାଲ ଚାଲ ବୀରେ ଆଗକୁ ଅନାଇ ।
ସାବରମତିର ସ୍ୱରାଜ୍ୟ ସୈନିକ
ଉଠ ଭାରତର ଯୁବକ ନିର୍ଭୀକ ।
ଉଠ ଭାରତର ବୀରପୁତ୍ରଯାକ,
ସେନାପତି ଆଜି ଦେଉଛନ୍ତି ଡାକ ।



# ମୁଖବନ୍ଧ

ଶ୍ରୀମତୀ କୁନ୍ତଳାକୁମାରୀ ସ୍ୱକବିତ୍ୱ ବଳରେ ଉତ୍କଳରେ ପରିଚିତା। ଏହି ନାରୀ କବିଙ୍କ ଲେଖନୀ ସାଧନାବଳରେ କିପରି ସିଦ୍ଧିର ଦିଗକୁ ଗତି କରିଅଛି, ତାହା କାବ୍ୟ ବିନୋଦୀ ମାତ୍ରେ ଅନୁଭବ କରିବେ। 'ପ୍ରେମଚିନ୍ତାମଣି' ସିଦ୍ଧ ଲେଖନୀପ୍ରସୂତ, ଏଥିରେ ଅତ୍ୟୁକ୍ତି ନାହିଁ। କବିଙ୍କର ପୂର୍ବତନ କୃତିମାନ ପାଠ କରି ବିସ୍ମୟର ସହିତ ଆନନ୍ଦ ଅନୁଭବ କରିଅଛି, ଏବଂ ଅନ୍ୟ ସାହିତ୍ୟସେବୀଙ୍କ ନିକଟରେ ତାଙ୍କ କୃତିତ୍ୱର ବିଷୟ ବହୁବାର ଖ୍ୟାପନ କରିଅଛି। ପ୍ରେମଚିନ୍ତାମଣି ଥରେ ନୁହେଁ, ଦୁଇ ଥର ନୁହେଁ, ବହୁବାର ଆମୂଳଚୂଳ ପାଠ କଲି, ଆନନ୍ଦରେ ବିଭୋଳ ହେଲି, ଉତ୍କଳର ନାରୀଶକ୍ତିର ଅସାମାନ୍ୟ ବିକାଶରେ ଗର୍ବ ଅନୁଭବ କଲି। ମାଧବୀ, ବୃନ୍ଦାବତୀ, ରାଣୀ ନିଶଙ୍କରାୟ ପ୍ରଭୃତି ପ୍ରାଚୀନ ନାରୀକବିମାନଙ୍କ କବିତ୍ୱ ସରଣୀ ଧରି ଆଧୁନିକ ଯୁଗରେ ମଧ କେତେକ ନାରୀ କବି ସ୍ୱକୁସୁମାଞ୍ଜଳିରେ ଦେବୀ ବୀଣାପାଣିଙ୍କର ଆରାଧନା କରୁଅଛନ୍ତି। ଏମାନଙ୍କ ମଧରେ ପ୍ରେମଚିନ୍ତାମଣିର କବି ଶ୍ରେଷ୍ଠ ଆସନ ଅଧିକାର କରିଅଛନ୍ତି।

ପ୍ରାଚୀନ ଭିତ୍ତିରେ ନବୀନ ସୌଧ ନିର୍ମାଣ କରିବା ଏ କ୍ଷେତ୍ରରେ ଶ୍ରେୟସ୍କର। ପ୍ରାଚୀନକୁ ତୁଚ୍ଛ କରି ନବୀନକୁ ଗଣ୍ଡିଧନ କରିବା ବା ପ୍ରାଚୀନକୁ ଗଣ୍ଡିଧନ କରି ନବୀନ ପ୍ରତି ଚକ୍ଷୁ ମୁଦ୍ରିତ କରିବା ଅବିମୃଷ୍ୟକାରିତାର ଚିହ୍ନ। ଭାଷାର ସହଜ ଶକ୍ତି-ପ୍ରାଚୀନତା, ପାରମ୍ପରିକ ଜୀବନ, ତା'ର ବ୍ୟଷ୍ଟି, ତା'ର ବିଶେଷତ୍ୱ। ବ୍ୟଷ୍ଟିରେ ସମଷ୍ଟିର ପ୍ରଭାବ ଓ ସମଷ୍ଟିରେ ବ୍ୟଷ୍ଟିର ପ୍ରଭାବ ଅନିବାର୍ଯ୍ୟ।

ଉତ୍କଳ ସାହିତ୍ୟର ବ୍ୟଷ୍ଟି ହିଁ ତା'ର ବିଶେଷତ୍ୱ। ତା'ର ଭାଷା, ଭାଷାର ରୀତିର ପ୍ରସଙ୍ଗାନୁଯାୟୀ ବିଭିନ୍ନତା, ବିଭିନ୍ନତାରେ ଚାରୁତାର ବିଳାସ ଉତ୍କଳର ପ୍ରାଣରୁ-ଅସ୍ଥିରକ୍ତ-ମାଂସାଦିଗଠିତ ଶରୀରର ଜୀବନୀଶକ୍ତିରୁ ନିଃସୃତ। ତା'ର ଭାବ, ଭାବର ଅବସ୍ଥା, ଅବସ୍ଥାର ବିବିଧ ବିକାଶ ଉତ୍କଳ ପ୍ରାଣର ଅବସ୍ଥିତିର ପରିଚାୟକ ଓ ବିଶେଷତ୍ୱର ପରିମାପକ। ଏହି ସମସ୍ତ ପ୍ରତିଚକ୍ଷୁ ମୁଦ୍ରିତ କରି ନବୋଦୟବତ୍ କାର୍ଯ୍ୟ କଲେ ଘୋର ବିପ୍ଲବ- ଜାତୀୟତାର ମ୍ରିୟମାଣତା- ଜାତୀୟ ପ୍ରାଣର ପ୍ରାୟୋପବେଶନ।

ଅଭିମନ୍ୟୁ, ଭକ୍ତଚରଣଙ୍କ ପରବର୍ତ୍ତୀ ଊନବିଂଶ, ବିଂଶ ଶତାବ୍ଦୀର ଆଧୁନିକ ଲେଖକମାନଙ୍କ ମଧରେ ଅତି ଅଳ୍ପ କବି ଉତ୍କଳ ସାହିତ୍ୟ ତଥା ଭାଷାରେ ସହଜ ଶକ୍ତି ସଂରକ୍ଷଣ କରିପାରିଥିବା ଭଳି କାବ୍ୟ ଲେଖିଅଛନ୍ତି। ଭାଷାର ସହଜ ଶକ୍ତିରେ ଭାବର କମନୀୟ ଅଭିବ୍ୟକ୍ତି ଜନିତ ମାଧୁର୍ଯ୍ୟ ଯେପରି ପ୍ରାଣରେ ସ୍ପନ୍ଦନ ଆଣେ ତାହା ଅନ୍ୟତ୍ର ବିରଳ। ଏହି ସହଜ ଶକ୍ତି ଅବିଳକ୍ଷଣ ପ୍ରେମଚିନ୍ତାମଣିରେ ପରିଦୃଷ୍ଟ ହୁଏ। ପୂର୍ବବର୍ତ୍ତୀ ରାଧାକୃଷ୍ଣ ଲୀଳାତ୍ମକ କାବ୍ୟମାନ ପ୍ରାଚୀନ ରୀତିରେ ଆଦିରସର ଆତ୍ୟନ୍ତିକ ବିଶ୍ଳେଷଣ ବିଧିରେ ମୂର୍ଚ୍ଛିତ ହେତୁ ସର୍ବତୋଭାବେ ସର୍ବଜନାଦରଣୀୟ ହୋଇ ପାରୁନାହିଁ। ପ୍ରେମଚିନ୍ତାମଣିର ବିଶେଷତ୍ୱ- ଏହା ଜନସାଧାରଣର ଗ୍ରହଣୋପଯୋଗୀ। କବିଙ୍କର ବୁଦ୍ଧିମତ୍ତା, ଔଚିତ୍ୟ ବିନିଯୋଗରେ କୁଶଳତା, ପାରମ୍ପରିକ ଧର୍ମମତର ଅନୁଭୂତିମୂଳକ ଭାବନାର ପରିଣତି, ଦେଶୀୟ ଓ ବିଦେଶୀୟ ସାହିତ୍ୟଦର୍ଶିତା ଏକାଧାରରେ କାର୍ଯ୍ୟ କରି ଏହି ଗୀତିମୟୀ ନାଟିକା ପ୍ରେମଚିନ୍ତାମଣିକୁ ସର୍ବଜନହୃଦ୍ୟ କରିଅଛି।

ପ୍ରେମଚିନ୍ତାମଣି ଏକ ପ୍ରେମର ସମୂର୍ଚ୍ଛିତା ଗୀତିମୟୀ ନାଟିକା। ନାୟକ କୃଷ୍ଣଙ୍କ ନାମ 'ପ୍ରେମଚିନ୍ତାମଣି'। ତାହାହିଁ ନାଟିକାର ନାମ। କବି ତାହାହିଁ ଶ୍ରୀମତୀଙ୍କ ମୁଖରେ କୁହାଇଅଛନ୍ତି।

ସେ ଏକା ମୋ ଧନ
ସେ ଏକାମୋ ଧ୍ୟାନ

ଚିରେ 'ପ୍ରେମଚିନ୍ତାମଣି । ପୃ. ୪୧, ୪ ପଦ ।

କବି ଏହି ନାଟିକାର ପ୍ରାରମ୍ଭରେ ଶ୍ରୀକୃଷ୍ଣଙ୍କ ମୂର୍ତ୍ତିର ପ୍ରଣାମ, କୁମାରୀମାନଙ୍କ ଦ୍ୱାରା କରାଇ 'ଚିର ସୁନ୍ଦର ରାଜେ, ଚିର ରାଜେ ରେ' କୁହାଇଅଛନ୍ତି । ପୁନଶ୍ଚ ତାହାର ପ୍ରତିଧ୍ୱନି ମଞ୍ଜୁଳା ମୁଖରେ ୩୮ ପୃଷ୍ଠାରେ —

'ମାନସମନ୍ଦିରେ ପ୍ରେମସୁନ୍ଦର, ପ୍ରେମ ସୁନ୍ଦରେ ରାଜେ ରେ ।

ଯେ 'ଚିର ସୁନ୍ଦର' ସେ 'ପ୍ରେମସୁନ୍ଦର' ସେ 'ସଚ୍ଚିଦାନନ୍ଦ', ସେ ସେହି ଶ୍ରୀକୃଷ୍ଣ । ଶ୍ରୀକୃଷ୍ଣଙ୍କ ମୂର୍ତ୍ତିର କି ଅପୂର୍ବ ଲାବଣ୍ୟ, କି ଚିତ୍ତଚୋରା ମାଧୁରୀ, କି ନିତ୍ୟ ନୂତନତା, କି ସଚ୍ଚିଦାନନ୍ଦ ସାନ୍ଦ୍ରାଙ୍ଗତା, ଯାହାର ଦର୍ଶନରେ ଗୋପକନ୍ୟାଙ୍କ ହୃଦୟ ବିସ୍ମିତ, ଦ୍ରୁତ, ଉଚ୍ଛଳ । ଆହା, ସେଇ ସୁମଧୁର ରୂପ ମଧୁର ରସର ଭକ୍ତିୟାପାଗଳ ବିଲ୍ୱମଙ୍ଗଳ ଗାଇଅଛନ୍ତି —

ମଧୁରଂ ମଧୁରଂ ବପୁରସ୍ୟ ବିଭୋ ।
ମଧୁରଂ ମଧୁରଂ ବଦନଂ ମଧୁରମ୍ ।।
ମଧୁଗନ୍ଧମୃଦୁସ୍ମିତ ମେତଦହୋ ।
ମଧୁରଂ ମଧୁରଂ ମଧୁରଂ ମଧୁରମ୍ ।।

ହୃଦୟର ଉଚ୍ଛଳତା ଚିର ସୁନ୍ଦର ପ୍ରେମସୁନ୍ଦର କୃଷ୍ଣ ଚନ୍ଦ୍ରଙ୍କ ପ୍ରାପ୍ତି ନିମିତ୍ତ । ଗୋପକନ୍ୟାଙ୍କ ମଧ୍ୟରେ ପ୍ରେମମୟୀ ମହାଭାବସ୍ୱରୂପିଣୀ ରାଧାଙ୍କର କୃଷ୍ଣଙ୍କ ପ୍ରାପ୍ତି ନିମିତ୍ତ ଲାଳସା, ଉଦ୍ବେଗ, ବ୍ୟଗ୍ରତା, କେତେବେଳେ ଜଡ଼ତା ପୁଣି ବ୍ୟଗ୍ରତା, କେତେବେଳେ ମୋହ, ଉନ୍ମାଦ ପ୍ରଭୃତି ଦଶାମାନ ସ୍ଥାନେ ସ୍ଥାନେ ସୁନ୍ଦର ପରିପାଟୀର ସହିତ ବର୍ଣ୍ଣିତ ହୋଇଅଛି । ରାଧାଙ୍କର ପୂର୍ବରାଗରେ ଏହି ଦଶାତ୍ମକ ବର୍ଣ୍ଣନା ଅତି ଚମତ୍କାର ପ୍ରତିପାଦକ ।

ସାଧାରଣତଃ ନାୟକର ନାୟିକାବିଷୟକ ଭାବ ବା ରାଗ ପ୍ରଥମରେ ପ୍ରକାଶ ପାଇବା ସମ୍ଭବପର । ନାୟିକାର ତାହା ନୁହେଁ, କାରଣ- ଲଜ୍ଜା, ଭୟ, ଧୈର୍ଯ୍ୟ, କୁଳାଚାର ପ୍ରଭୃତି ଆବରଣ ହେତୁ ସହସା ପୁରୁଷଠାରେ ସ୍ତ୍ରୀର ପୂର୍ବରାଗ ପ୍ରକାଶ ପାଏ ନାହିଁ । ପୁରୁଷର ସେ ସବୁ ନ ଥିବା ହେତୁ ରାଗ ବା ଭାବର ଉଦୟମାତ୍ରେ ସେ ନାୟିକା ଅନ୍ୱେଷଣରେ ବ୍ରତୀ ହୁଏ । କିନ୍ତୁ ପ୍ରଥମତଃ ସ୍ତ୍ରୀମାନଙ୍କର ପୂର୍ବରାଗ ବର୍ଣ୍ଣିତ ହେଲେ କାବ୍ୟର ଚାରୁତା ଅଧିକ ଭାବରେ ପ୍ରତିପାଦିତ ହୁଏ । ପ୍ରେମର ଆଧିକ୍ୟ ବା ପ୍ରାବଲ୍ୟରେ ଲଜ୍ଜା, ଭୟ, କୁଳାଚାର ପ୍ରତି ଜଳାଞ୍ଜଳି ପ୍ରଦତ୍ତ ହୁଏ । ଏବଂ ସେହି ସ୍ତ୍ରୀଗତ ପ୍ରେମର ପ୍ରଥମ ଉପସ୍ଥାପନ ଓ ବର୍ଣ୍ଣନରେ ଔଚିତ୍ୟ ଅଛି । କାରଣ ପ୍ରେମର ସର୍ବତ୍ର ଜୟ । ସାହିତ୍ୟ ଦର୍ପଣକାର ମଧ୍ୟ କହିଛନ୍ତି —

'ଆଦୌ ରାଗ ସ୍ତ୍ରିୟୋ ବାଚ୍ୟଃ
ପଶ୍ଚାତ୍ ପୁଂସ ସ୍ତଦିଙ୍ଗିତୈଃ ।

ଭକ୍ତିଶାସ୍ତ୍ର ଦୃଷ୍ଟିରେ- ଭକ୍ତିହିଁ ରସ । ଭକ୍ତିରସ ଭକ୍ତିକୁ ଆଶ୍ରୟ କରେ । ଭଗବତ୍, ରସ ବା ରାଗ, ଭକ୍ତର ରସ ବା ରାଗର ପଶ୍ଚାତରେ ଜାତ ହୁଏ । ବ୍ରଜଦେବୀମାନେ ପରମ ଭକ୍ତିରୂପିଣୀ ହେତୁ ସେମାନଙ୍କର ପ୍ରଥମ ପୂର୍ବରାଗ ସମୀଚୀନ ଅଟେ ।

ସତ୍ୟ, ଶିବ, ସୁନ୍ଦରଙ୍କର ପ୍ରାପ୍ତି ନିମିତ୍ତ କୁମାରୀଗଣଙ୍କର ସ୍ନିଗ୍ଧ ହୃଦୟ ଦ୍ରୁତ। ହୃଦର ଦ୍ରୁତତ୍ୱ ଯାଦୃକ୍ କୁମାରୀଗଣଙ୍କର - ନରର ତ ଦୂରର କଥା, ନାରୀର ତାଦୃକ୍ ନୁହେଁ। କାନ୍ତ କୋମଳ ହୃଦୟର ଦ୍ରୁତତ୍ୱ ସ୍ୱାଭାବିକ। ଏ ଦୃଷ୍ଟିରେ ପ୍ରଧାନ ଭକ୍ତଙ୍କ ଅନୁରାଗୀ ହୃଦୟ କୁମାରୀର ହୃଦୟବତ୍ ସ୍ନିଗ୍ଧ ଓ ଦ୍ରୁତ।

ପ୍ରବୃତ୍ତିର ବିନାଶରେ ଅନୁରାଗ ଜନ୍ମେ ନାହିଁ। କିନ୍ତୁ ଐହିକ ବିଷୟରୁ ପ୍ରବୃତ୍ତି ପାରତ୍ରିକ ବା ଭଗବତ୍ ବିଷୟରେ ସଂକ୍ରମିତ ହେଲେ ଅନୁରାଗ ଅକ୍ଷୁର୍ଣ୍ଣ ରହେ। ଐହିକ ବିଷୟରୁ ନିବୃତ୍ତିରେ ପ୍ରବୃତ୍ତିର ଲୋପ ହୁଏ ନାହିଁ। ପ୍ରବୃତ୍ତି ପ୍ରକୃଷ୍ଟ ପନ୍ଥା– ସତ୍ୟପନ୍ଥା ଅବଲମ୍ବନ କଲେ ଉତ୍ତରୋତ୍ତର ବୃଦ୍ଧି ଲାଭ କରି ପରମ ପ୍ରେମମୟ ପଦବୀ ପ୍ରାପ୍ତ ହୁଏ।

ଭଗବାନ୍ ପ୍ରେମସ୍ୱରୂପ। ତାଙ୍କର ଶକ୍ତି ମଧ୍ୟରେ ପ୍ରୀତି ଶକ୍ତି ଶ୍ରେଷ୍ଠ। ସେ ଯେଉଁ ଶକ୍ତି ବଳରେ ନିଜେ ପ୍ରେମବାନ ହୁଅନ୍ତି ଓ ଜୀବମାନଙ୍କ ମଧ୍ୟରେ ପ୍ରେମ ବିତରଣ କରି ସେମାନଙ୍କୁ ପ୍ରେମବାତୁଳ କରାନ୍ତି, ତାହା ତାଙ୍କର ପ୍ରେମମୟୀ ଶକ୍ତି। ଭଗବାନ୍ ସ୍ୱପ୍ରେମଶକ୍ତିଠାରୁ ଅଭିନ୍ନ ହେଲେହେଁ ସେ ସେହି ଶକ୍ତିର ଅଧୀଶ୍ୱରରୂପେ କଥିତ। ଉକ୍ତ ଶକ୍ତିର ରାଜ୍ୟଏହି ବିଶ୍ୱ। ସେହି ଶକ୍ତି-ପ୍ରେମ-ବିଶ୍ୱପ୍ରେମ। ସେହି ଶକ୍ତିବଳରେ ଭକ୍ତମାନଙ୍କ ମଧ୍ୟରେ ତାରତମ୍ୟ ପରିଦୃଷ୍ଟ ହୁଏ। ଗୋପୀମାନେ ସେହି ପ୍ରେମଶକ୍ତି ବଳରେ ଭକ୍ତିଶିରୋମଣି ହୋଇ ପାରିଅଛନ୍ତି। ପ୍ରେମଶକ୍ତିର ଅତ୍ୟଧିକ ବିଳାସ ହେତୁ ଗୋପୀମାନେ ପ୍ରେମସ୍ୱରୂପା- ଭଗବାନଙ୍କର ପ୍ରେମମୟୀ ଶକ୍ତି। ସେମାନଙ୍କ ମଧ୍ୟରେ ରାଧା ଶ୍ରେଷ୍ଠ। ରାଧା ଓ କୃଷ୍ଣଙ୍କ ଲୀଳା-ପ୍ରେମଲୀଳା। ଭଗବତ୍ ପ୍ରେମ ଦିବ୍ୟ ଚିନ୍ମୟ। ସେ ପ୍ରେମ ଅପ୍ରାକୃତ। ତାହା ବୈଷ୍ଣବ ଦର୍ଶନରେ କାମ ନାମରେ ଅଭିହିତ। ସେ କାମ ବାସ୍ତବ କାମଠାରୁ ପୃଥକ୍।

'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ହେ।' – ଅଭିମନ୍ୟୁ
ପୁନଶ୍ଚ — ଅପ୍ରାକୃତ ପ୍ରେମ ଯା ନାମ କାମ – ଅଭିମନ୍ୟୁ

ସୌନ୍ଦର୍ଯ୍ୟର ଉପଲବ୍ଧି ହିଁ କାବ୍ୟର ମୁଖ୍ୟ ଉଦ୍ଦେଶ୍ୟ। କବିଙ୍କର ସୌନ୍ଦର୍ଯ୍ୟ ଅବବୋଧହିଁ ତାହାର ପ୍ରଧାନ କାରଣ। ସୌନ୍ଦର୍ଯ୍ୟରେ ହିଁ ପ୍ରୀତିର ବିଳାସ। ରାଧା ଓ କୃଷ୍ଣ ପ୍ରୀତିମୟ ଓ ସୌନ୍ଦର୍ଯ୍ୟମୟ। କାବ୍ୟର ବିଷୟ ପ୍ରେମର ମହତ୍ତ୍ୱ ପ୍ରକଟନ। ଆଧେୟର ପ୍ରତିପତ୍ତି ଆଧାର ବିନା ହୋଇପାରେ ନାହିଁ। ଏତଦ୍ଦୃଷ୍ଟିରେ ଅପ୍ରତ୍ୟକ୍ଷ ନିଗୂଢ଼ ବିଷୟ ଆଧାରରୂପେ କଳ୍ପିତ ହେଲେ ସୁକୁମାରମତି ସାଧାରଣ ଲୋକଙ୍କ ହୃଦୟ ରସାସ୍ୱାଦ କରିପାରେ ନାହିଁ। ବିଷୟଟି ଦର୍ଶନର କୋଟିକୁ ଆଶ୍ରୟ କରେ। ସଂସ୍କୃତ ଆଳଙ୍କାରିକଙ୍କ ମତରେ କାବ୍ୟକାନ୍ତାସମ୍ମିତ। ଯେ ସ୍ୱକାବ୍ୟବଳରେ ଜନସାଧାରଣଙ୍କ ହୃଦୟରେ ସହଜ ସରଳ ସୁନ୍ଦର ବର୍ଣ୍ଣନା ଦ୍ୱାରା ଚମତ୍କାର ଭାବ ପ୍ରତିପାଦନ କରିପାରନ୍ତି ସେ ପ୍ରକୃତ କବି। କବି ରୂପପାୟୀ। ତେଣୁ ଈପ୍ସିତ କବି ନିଜ ସାଧନାର ସିଦ୍ଧି କଲ୍ପେ ଅରୂପକୁ ଛାଡ଼ି ରୂପକୁ ଅବଲମ୍ବନ କରିଅଛନ୍ତି। ବସ୍ତୁର ଶୋଭନ ନିର୍ଦ୍ଦେଶର ଅଭାବ ହେତୁ କାବ୍ୟର ସାଧାରଣ ଅବବୋଧରେ ବ୍ୟାଘାତ ଜନ୍ମେ। ଅସ୍ମଦ୍ଦୃଷ୍ଟିରେ କାବ୍ୟର ବିଷୟ ଯେତେ ଲୌକିକ ଯେତେ ଜୀବନ୍ତ, ତାହା ତେତେ ଗ୍ରହଣୀୟ— ତେତେ ହୃଦୟସ୍ପର୍ଶୀ ହୁଏ। ଏତଦ୍ଦୃଷ୍ଟିରେ କବି ପ୍ରେମର ମହତ୍ତ୍ୱ ପ୍ରକଟନକଳ୍ପେ ରାଧାକୃଷ୍ଣଙ୍କ ପ୍ରେମଲୀଳା ଏହି କ୍ଷୁଦ୍ର ଗୀତିନାଟିକାରେ ବ୍ୟାଖ୍ୟାନ କରିଅଛନ୍ତି। ରାଧାକୃଷ୍ଣ– ଶରୀରୀ, ମାନବ-ତାଙ୍କର ମାନବତ୍ୱରେ ଦେବତ୍ୱର ପୂର୍ଣ୍ଣ ବିକାଶ। ତହୁଁ ଏହି ବାସ୍ତବିକତାରେ ଦିବ୍ୟ ପ୍ରେମଲୀଳା ପ୍ରକଟନ ହିଁ ଏହିନାଟିକାର ମୁଖ୍ୟ ଉଦ୍ଦେଶ୍ୟ।

ପ୍ରକୃତିର ଅନ୍ତରରେ ଓ ବାହାରେ ସର୍ବତ୍ର ସୌନ୍ଦର୍ଯ୍ୟ ଦର୍ଶନ କରି– ଚିରସୁନ୍ଦରଙ୍କର ସତ୍ତା ସର୍ବତ୍ର ବିରାଜମାନ– ଏହାର ପ୍ରତିପାଦନ ଛଳେ ଗୋପକୁମାରୀଙ୍କ ପ୍ରୀତିଭକ୍ତିରେ କୃଷ୍ଣଚନ୍ଦ୍ରଙ୍କୁ ପ୍ରଣତି।

ସଖୀମାନଙ୍କ ଉକ୍ତିରୁ ସୁମନା-ସୌନ୍ଦର୍ଯ୍ୟ ଦର୍ଶନରେ ମାନବ-ମାନସ-ଗୀତିର ସ୍ୱତଃ ଉଦ୍ବୋଧନ। ଏହି ଗୀତି ଆନନ୍ଦ ଓ କାରୁଣ୍ୟରେ ମୂର୍ଚ୍ଛିତ। ସୌନ୍ଦର୍ଯ୍ୟମୟଙ୍କ ସତ୍ତାର ନିଦର୍ଶନ ପ୍ରକାଶରେ ବିପୁଳ ଆନନ୍ଦ ଓ ତତ୍ ପ୍ରାପ୍ତି ନିମିତ୍ତ ଆକାଂକ୍ଷା-ଲାଳସା-ଆବେଗ-ହେତୁକ କାରୁଣ୍ୟ।

ଚକ୍ଷୁର କି ଅପୂର୍ବ ଆନନ୍ଦ! ପୁଷ୍ପାଦିର ଅନୁଭାବରେ ପ୍ରେମମୟଙ୍କ ପ୍ରତି ପ୍ରୀତିର ଅଭ୍ୟୁଦୟ।

ସୌରଭମୟ, ସୌନ୍ଦର୍ଯ୍ୟମୟ ସୁମନା ସହିତ ଶ୍ରୀମତୀଙ୍କ ଆତ୍ମତୁଳନା। ଅଭୀଷ୍ଟର ପ୍ରାପ୍ତିରେ ଆଶଙ୍କାଜନିତ ହୃଦୟର ଆକୁଳ ଆଲୋଡ଼ନା, ତହୁଁ ନିଜ ପ୍ରତି ଅଧିକ୍ଷେପ।

'ହୃଦୟେ ଫୁଟିଛି ଏ ପ୍ରେମ କଢ଼ି
ଅନ୍ଧାରେ ଆଗେ ଶୁଖିବ ଝଡ଼ି
ମରମବେଦନା କେ ବୁଝିବ ଆଉ ଯୌବନ ତା'ର ଯିବଟି ସରି।' (ପୃ.୫)

ଲଳିତାର ଶଙ୍କିତ ହୃଦୟରେ ଶ୍ରୀମତୀଙ୍କ ପ୍ରତି ଆଶାୟୀ ବାଣୀ। ତତ୍ ଶ୍ରାବଣରେ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀମତୀଙ୍କର —

(୧) ଲାଳସା (କ) 'ମଥାମଣି ସମ, ମଣିଛି ମିତଣି
କିସ ପର ବାଛନ୍ଦରେ!' (ପୃ.୭)

(ଖ) 'ସରବ ସୁନ୍ଦର ସାର
ସୁନ୍ଦର ଦଳର ରାଜାକୁ ଅବା ମୁଁ
କରିଚି ମୋ ଗଳାହାର
× × ×
(ସେତ) ଆଖି ମୋର ଦିଏ ଦହି।' (ପୃ.୮)

ବୃନ୍ଦାବତୀଙ୍କ ଆଶ୍ୱାସବାଣୀ— 'ଚରଣ ସ୍ପର୍ଶେ ନିବିଡ଼ ହର୍ଷେ ହେବୁ ସରବତ୍ୟାଗୀ।' (ପୃ.୯)

ଶ୍ରବଣରେ ଶ୍ରୀମତୀଙ୍କ

(୨) ଔତ୍ସୁକ୍ୟ ଓ ଜାଗରଣ 'ନିଶି ନିଶି ମୁହିଁ ଥିଲି ଉଜାଗର,
ରଖିଲି କବାଟ ଖୋଲି।'

(୩) ଗ୍ଲାନି 'ସବୁ ଦୋଷଯାକ ମନ ଆକୁଳରେ
କପାଳକୁ ଦେଲି ଲେଖି।
× ×
ମିଛେ ମିଛେ କହୁ ମୋର।' (ପୃ.୧୦)

(୪) ଘୂର୍ଣ୍ଣା 'ଖସିପଡ଼େ ବାସ,
ଖସିପଡ଼େ କେଶ,
କ୍ଷଣେ ଫୁଟେ ହାସ,
କ୍ଷଣେ ପ୍ରାଣେ କ୍ଲେଶ।' (ପୃ.୧୧)

(୫) ଉଦ୍‌ବେଗଜନିତ କମ୍ପ

‘ଥର ଥର ଥର ଆଖି ଝର ଝର
ଆଗୁଳି ଧରେ କି ଲାଜ ।’ (ପୃ.୧୨)

(୬) ଶ୍ୱାସ ‘ରୁନ୍ଧିଯାଏ ଅବା ନିଶ୍ୱାସ ପବନ
(କହ) କି କରିବି ଏହାପାଇଁ ?’ (ପୃ.୧୨)

(୭) ଉନ୍ମାଦ ଓ ବିଳାପ

‘ପାଗଳ ପରାଏ ଲୋଟେ ଧରାତଳେ
କେବେ ବସେ ତାର ଧ୍ୟାନେ,
ଝିଙ୍ଗାସି କେ କେତେ ହିୟା କରତନ୍ତି
କେ ମାରନ୍ତି କାବ୍ୟବାଣେ ।
× × × ×
ଆଖିରୁ ଆବେଗେ ପାଣି ପଡ଼େ ଝରି
କହ ମୁଁ ବଞ୍ଚିବି ସତେ,
ସବୁ ବାଟେ ମୋର କଣ୍ଟା ପଡ଼ିଚି ଲୋ
ଯିବି ଆଉ କେଉଁ ପଥେ ?’ (ପୃ.୧୫)

(୮) ମରଣ ଉଦ୍ୟମ

(କ) ଜୀବନେ ନ ଥାଏ ତିଳେ ପ୍ରୟୋଜନ
ଲୋଡ଼େ ମୁଁ ଅମୃତ ମରଣ ।’ (ପୃ.୧୬)
× × × ×
(ଖ) ‘ଶ୍ମଶାନ ମଣେ ମୋ ପୁରୀ ।’
‘ଦଦରା ବୋଇତ ବସି ଅଜ୍ଞାନରେ
ଅକୂଳେ ମାଇଲି ଜାତ ।’
(ଗ) ‘ତାହାରି ଲାଗି ମୁଁ ହେବି ବିରାଗିନୀ
× × × ×
ନିଷ୍ଠେ ମୋ ଟିଂଇ ସଙ୍ଗାଳି ।’ (ପୃ.୨୦)
(ଘ) ‘ବାସନା ମୋହର ହେଲେ ନୁଅନି ମୁଁ
ତା ପାଦର ଧୂଳି ଅଳିଆ ।’ (ପୃ.୨୩)

ଏହି ମରଣୋଦ୍ୟମ - ଅର୍ଥାତ୍ ମୃତ୍ୟୁର ଅବସ୍ଥା ସଦୃଶ ଦଶାର ପ୍ରାପ୍ତିରେ ମଞ୍ଜୁଳାର ଘୋର ଦୁଃଖମୟ ବଚନ -

‘ଦୁଲ୍ଲାକୁ ଦୁଲ୍ଲାକୁ
କାନ୍ଦିବ ସେ ମନେ
ଜୀବନ ରହିବ ଯେତେ ?’– (ପୃ.୨୫)

ଓ ବୃନ୍ଦାବତୀର ମଧ୍ୟ ତଦ୍ରୂପ ଉକ୍ତି —

'ଶ୍ୟାମ ଧନ ବିନା ରାଧା ମନ କି ରସିବ ?' (ପୃ.୨୬)

ତତ୍‌ଶ୍ରବଣରେ ଶ୍ରୀମତୀଙ୍କ ନିର୍ବେଦ, ବିରାଗ । ତାହା ନୈରାଶ୍ୟର ଫଳ । ତାଙ୍କ ଉକ୍ତିରୁ ଜଣାଯାଏ, ଯେ ପ୍ରେମରେ ବିଭୋର- ପ୍ରେମ ତାଙ୍କୁ ଘାରିଚି—

'ମରଣଜିଣା ଏ ପ୍ରୀତି ସରି ମିତ !
ଆଉ କି ଅଛି ମୁଁ ପାଇ ?' (ପୃ.୨୭)

ଏହି ପ୍ରାଣମୂର୍ଚ୍ଛା ପ୍ରୀତି ଦର୍ଶନରେ ଲଳିତାଙ୍କ ଉକ୍ତି —

'ମନେ ପକାନା.............ଯେତେ' (ପୃ.୩୧)

ତତ୍‌ଶ୍ରବଣରେ ରାଧାଙ୍କ ଉକ୍ତି —

'ସଖି ! ଏଥିରେ କି ଦୋଷ ମୋର ?' (ପୃ.୩୨)

× × × ×

'ପ୍ରତି ଅଙ୍ଗ ମମ ପିଇଲା ପୀୟୂଷ
ଚେତନା ରାଇକୁ ହଜିଲି' (ପୃ.୩୩)

ପୁନଶ୍ଚ ସେହି ଭାବର ବର୍ଣ୍ଣନ —

'ଅକ୍ଷିତ ନିର୍ମାଖୀ ବୁଲିବି ସଂସାରେ
× × ପୂଜା-ପାଠ ମୋତେ ଅଜଣା ।' (ପୃ.୩୬)
'ମୋ ଦେବତା ମୋର ସଂଖାଳି × ×
ତା ବିନା ମୁଁ ଦୀନ କଙ୍ଗାଳି ।' (ପୃ.୩୭)
'ମୁରଲୀ ତା ମୁଖେ ବାଜଇ ମଧୁରେ × ×
କି ରୂପ ଦେଖିବି କହ ନା ।' (ପୃ.୩୯)

'ପ୍ରେମର ଜୟ
ମରଣର ଲୟ
× × × ×
ଅଣୁ ପରମାଣୁ ହୁଅନ୍ତେ ନନ୍ଦିତ ।' (ପୃ.୪୦)

ଶେଷରେ ପ୍ରେମକୁହୁକୀୟା କୃଷ୍ଣଙ୍କ ପ୍ରତି ପ୍ରୀତିର ପ୍ରାବଲ୍ୟରେ ରାଧାଙ୍କ ଘୋର ଅଧିକ୍ଷେପ —

'ମଲିକି ବଞ୍ଚିବି
× × × ×
× × ଆଗେ ରହୁତ' (ପୃ.୪୩)

## ନବ ନୀରଦ

ଶ୍ରୀକୃଷ୍ଣଙ୍କ ପୂର୍ବରାଗ ରାଧାଙ୍କ ପୂର୍ବରାଗ ସଦୃଶ ମଧୁରକାରୁଣ୍ୟର ସମୂର୍ଚ୍ଛିତ । ପ୍ରାରମ୍ଭ ଗୀତିଟି ଯେପରି ଭାବଗର୍ଭକ, ସେହିପରି ଚମତ୍କାର ପ୍ରତିପାଦନ । ପାଠକର ଚିତ୍ତ ଆନନ୍ଦରସରେ ଭରି ଉଛୁଳିପଡ଼େ ।

ପ୍ରେମଚିନ୍ତାମଣିର ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ, ବିଶ୍ୱପ୍ରେମର ବିତରଣକାରୀ। ସେହି ବିଶ୍ୱପ୍ରେମର ପ୍ରେମିକା ଶ୍ରୀରାଧାଙ୍କ ସହ ତାଙ୍କର ବିନୋଦ। ଶ୍ରୀକୃଷ୍ଣଙ୍କ ଦ୍ୱାରା ରାଧାଙ୍କ ଦର୍ଶନାଦି ନ କରାଇ ପୂର୍ବରାଗ ବର୍ଣ୍ଣନରେ ପରିପାଟୀର ଅଭାବ ହେଲେହେଁ ତାହା ତେତେ ଧର୍ତ୍ତବ୍ୟ ନୁହେ। ଯେ ଲୀଳାକାରୀ, ଯେ ପ୍ରେମ-ମଧୁ ବିତରଣ କରିଛି ସେ ଜାଣେ କିଏ ଚାଖିଚି, କିଏ ବିଭୋର ହୋଇଛି, କିଏ ତନ୍ମୟ ହୋଇଛି। ତହୁଁ ନିର୍ଦ୍ଦେଶର ଅଭାବରେ ଚାରୁତାର ହାନି ହୋଇନାହିଁ, ବରଂ ବୃଦ୍ଧି ହୋଇଅଛି।

ଭକ୍ତର ପୂର୍ବରାଗରେ ପ୍ରାଥମିକ ବର୍ଣ୍ଣନର ସମୀଚୀନତ୍ୱ ପୂର୍ବେ କଥିତ ହୋଇଅଛି। ଭକ୍ତର ହୃଦୟରେ ଭଗବତ୍ ଅନୁରାଗ ବା ରତି ଜନ୍ମିବା ସେହି ଭଗବାନଙ୍କର କାର୍ଯ୍ୟ। ସେହି ଲୀଳାକାରୀ ସ୍ୱଲୀଳାର ମାଧୁର୍ଯ୍ୟର ଆସ୍ୱାଦନ କରାଇବା ନିମିତ୍ତ ଭକ୍ତମାନଙ୍କୁ ପ୍ରବୋଧିତ କରନ୍ତି, ମଧୁର ବେଣୁ ନାଦରେ– ଓଁକାର ଧ୍ୱନିରେ–ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ ଏକ ସ୍ପନ୍ଦନ ଆଣନ୍ତି ଏବଂ ଜୀବମାନଙ୍କୁ ସ୍ୱ ନିକଟକୁ ଆନନ୍ଦ ଚିନ୍ମୟ ରସ ଉପଭୋଗ କରିବା ନିମନ୍ତେ ଆକର୍ଷଣ କରନ୍ତି। ଯେ ଏହା କରନ୍ତି ସେ କୃଷ୍ଣ। ଯେ ଆକର୍ଷଣ କରନ୍ତି, ସେ ନିଜର ଶକ୍ତି ସଂଚାର କରନ୍ତି ଏବଂ ନିଜର ଶକ୍ତିର– ପ୍ରେମର ସଂଚାରର ଯେଉଁଠାରେ ଆଧିକ୍ୟ ଦେଖନ୍ତି, ସେ ତତ୍ପ୍ରତି ଆକୃଷ୍ଟ ହୋଇପଡ଼ନ୍ତି। ସ୍ୱ-ପ୍ରୀତି ଶକ୍ତିରେ ରାଧାଙ୍କୁ ବିହ୍ୱଳା, ଉନ୍ମତ୍ତା ଦେଖି ସେ ନିଜେ ଆକୃଷ୍ଟ, ଉଦ୍ବିଗ୍ନ, ଆତୁର ଓ ଉନ୍ମତ୍ତ। ଏହି ଭାବ, ଏହି ଉନ୍ମାଦନାର ବିଷୟ ଶ୍ରୀକୃଷ୍ଣ ଓ ତତ୍ସଖାଙ୍କ ଉକ୍ତିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ।

ଶ୍ରୀକୃଷ୍ଣଙ୍କ ମୁଖରେ — ‘ସୁନା ଝଳି ଘେନି ନବଣୀ ହୁଅନ୍ତା
କହନ୍ତି ବା ରୂପ ତା’ର ଇତ୍ୟାଦି। (ପୃ.୪୬)

ସୁବଳ ମୁଖରେ — ‘ଚପଳା ଲୀଳାରେ ଚିତ୍ତ ମଜାଇଲୁ
ବଳର କଲୁଟି ସାର’ ଇତ୍ୟାଦି। (ପୃ.୪୭)

ଶ୍ରୀକୃଷ୍ଣ — ‘ତଡ଼ିତେ ତଡ଼ିତ ଅବା କଲା ଆକର୍ଷଣ।’

ସୁଦାମ — ‘ସେ ସଙ୍ଗ ଗୋଧୂଳି ଆକାଶର ଶୋଭା
× × × ×
ଆଉ ଏ ଜୀବନେ ପାଇବ କି?’ (ପୃ.୫୩)

ଶ୍ରୀକୃଷ୍ଣ — ‘ମୁକ୍ତିର ଆନନ୍ଦ ସ୍ୱାଦେ ଅଧୀର ଉନ୍ମତ୍ତ....
× × × ×
ନିର୍ବିଣ୍ଣାଳ ଉନ୍ମାଦ ପ୍ରାଣେ ପ୍ରାଣେ!’ (ପୃ.୫୫)

ସୁବଳ — ‘ସାଧୁବଟି ବାଦ ଜଗତର ବାଧା
(ତୋର) ଶରଧା ଯିବଟି ସରି,....’
× × × ×
‘ବେଳହୁଁ ଭୁଲିଯା ଦଳା ହରିତାଳ-
ଜଳା ଅଙ୍ଗ ଚଳାପାଣୀ।’
‘ଚାରୁ ଚାମୀକର-ବର-ବରନାକୁ
କଲ୍ପବେ କି ଦେବୁ ବୋଲି!’ (ପୃ.୫୬)

ତତ୍ଶ୍ରବଣରେ ଶ୍ରୀକୃଷ୍ଣଙ୍କ ଉକ୍ତି —

'ଜଗତର ବାଧା.....
କନକମଞ୍ଜରୀ ଶସ୍ୟେ ସମୀର ଆଶ୍ଳେଷେ,
ତହିଁ ଜଗତର ବାଧା !' (ପୃ.୫୭)

ପ୍ରୀତିରେ ବାଧା ନାହିଁ, ବିଶ୍ୱପ୍ରୀତିର ଗତି ଅବାରିତ ।

ସଖାଦ୍ୱୟଙ୍କର ଉକ୍ତି —

'ଜଗତଟାକୁ ଦେ ଫିଙ୍ଗି ଦୂରେ !
ଦୂରେ ! ଦୂରେ ! ଦୂରେ !' (ପୃ.୫୮)

ଶ୍ରବଣ କରି ଶ୍ରୀକୃଷ୍ଣଙ୍କ ପ୍ରତ୍ୟୁକ୍ତି —

ଯେଉଁଠାରେ ମୋର ଶକ୍ତିର ବିକାଶ, ମୋର ପ୍ରୀତିର ବିଳାସ, ତାକୁ ବା କିପରି ଛାଡ଼ିବି ? ସେ ମୋର, କିନ୍ତୁ ମୁଁ ବର୍ତ୍ତମାନ ତା ଛଡ଼ା ଶକ୍ତିହୀନ, ଜଡ଼ ସଦୃଶ ।

'ଭାଙ୍ଗୁ ଜଡ଼ତାର ମୋହ ମୋର
ନିଦ୍ରା ବେନି ନୟନର ।' ନୀରପାନ-(ପୃ.୮୦)

ରାଧା ପରା ପ୍ରେମ-ଲୀଳାକ୍ଷେତ୍ର ଜଗତରେ ପ୍ରତିନିଧି - ସୁନ୍ଦ୍ର !

ତତ୍ଶ୍ରବଣରେ ଆଶ୍ଚର୍ଯ୍ୟ ସହିତ ସଖାଦ୍ୱୟଙ୍କର ଉକ୍ତି —

'ମଙ୍ଗଳ ବିଧାନ ଏ କି କହିବାରେ ଭୁଲେ ।' (ପୃ.୬୦)

ବଂଶୀ ଶ୍ରବଣରେ ରାଧା ଉନ୍ମନା ହୋଇ ବଂଶୀ ଜନ୍ମର ସାର୍ଥକତା ଓ ନିଜର ଜନ୍ମର ଅସାରତା କହି ନିଜର ଦୁଃଖ ପ୍ରକାଶ—

'କିପାଁ ବାଜୁ ଗୋ ମୁରଲୀ
ମର୍ମ୍ମ ବେଦନା ବଢ଼ାଇ ?
--------ଦିଅନ୍ତା ବିଶ୍ୱ ବୁଡ଼ାଇ !' (ପୃ.୬୧)

ସୁବଳ ଓ ସୁଦାମ ବଂଶୀନାଦରେ ଉନ୍ମତ୍ତ ହୋଇ ଗାଇବା —

'ବାଜ ରେ ରସରାଜ, ବାଜ ରେ ବଂଶୀ ବାଜ !
ବ୍ରଜ କୁଞ୍ଜେ କୁଞ୍ଜେ ବାଜ ରେ ବଂଶୀ ବାଜ !
× × × ×
ସେ ମୋହନ ଛନ୍ଦେ କିଶୋରୀ ଗଣ୍ଡେ
ଫୁଟି ଉଠୁ ରେ ମଧୁରିମା ପ୍ରେମାନନ୍ଦେ
ଲାଜ ଲଳିତ ଲାଗି
ଲାଜ ପାଟଳ ସାଜ
ଲାଜର ଗୋଲାପ ଫୁଲ
ଲାଜରେ ଲାଜ ଲାଜ !' (ପୃ.୬୨)

ବେଣୁସ୍ୱନ ଶ୍ରବଣରେ ଶ୍ରୀମତୀଙ୍କର ଦଶାର ବିପର୍ଯ୍ୟୟ ଦେଖି ସଖୀମାନଙ୍କରେ ତିରସ୍କାର —

'କିଏ ତୁ ଗାଉ ରେ ଗୀତ ଘନକାଳିଆ,

× × × ×

ଯା'ରେ ଚାଲି, ଯା'ରେ ଚାଲି

ଯା'ରେ ଯା' ତୁ ଢଙ୍ଗାଳିଆ !' (ପୃ.୬୩)

ସେ ତିରସ୍କାର ଶୁଣି ପ୍ରେମରସିକିନୀ ରାଧାଙ୍କର ଉଦାର ଉକ୍ତି —

'ତୋ' ବିନା ବଜାଇବ କେ ମୁରଲୀ ଏଡ଼େ ମୋହନ !' (ପୃ.୬୩)

ଶ୍ରୀମତୀଙ୍କୁ ଦର୍ଶନ କରି ଶ୍ରୀକୃଷ୍ଣଙ୍କର ଉକ୍ତିରେ —

ନୀଳ ନୀରଧିରେ

ସୁବର୍ଣ୍ଣ ତରଣୀ

ରୂପପସରାର ଭାସିଲା........

× × × ×

ଲଭିଲା ମୁକ୍ତିର ଆହ୍ଲାଦ।' (ପୃ.୬୪)

ପ୍ରେମର ଲାବଣ୍ୟଧାରା ଖେଳିଯାଉଅଛି ଏବଂ ତତ୍‌ପରେ କୃଷ୍ଣ ଏବଂ ଗୋପୀମାନଙ୍କର କଥୋପକଥନରେ ପ୍ରେମପ୍ରସ୍ରବଣର ପତିତ ପ୍ରବାହ।

*****

## ନୀର ପାନ

ନୀରପାନର ଅବତରଣିକା ଗୀତିକା ଅତୀବ ଅର୍ଥଯୁକ୍ତ।

'ନ ଥାନ୍ତାରେ ଯଦି........

× × × ×

ଭକ୍ତ ନ ଥିଲେ କି ଥାନ୍ତେ ଭଗବାନ !' (ପୃ.୭୩)

ପ୍ରେମରସ ପାନ କାହାର ? ଭକ୍ତର ନା ଭଗବାନଙ୍କର ? ସାଧରଣ ଦୃଷ୍ଟିରେ ଭକ୍ତର। କିନ୍ତୁ ତାହା ନୁହେଁ- ପାନ ଉଭୟଙ୍କର। ସଖୀମାନେ ଆନନ୍ଦରେ ବିହ୍ୱଳ-

'ଶାନ୍ତ ସୁନ୍ଦରଛନ୍ଦେ × × ×

ମୁଗ୍‌ଧ ପରମ ଆନନ୍ଦେ' (ପୃ.୭୫)

'ଆଜି ରାଜେ ନବ ସାଜେ, ସୁନ୍ଦର ସୁଧା ଆନନ୍ଦେ

× × × ×

ସଞ୍ଚରେ ସମୀର ମନ୍ଦେ ମନ୍ଦେ, ସୁଧା ଆନନ୍ଦେ।' (ପୃ.୭୬)

ଆଜି ପ୍ରକୃତି ଆନନ୍ଦମୟ। ଆନନ୍ଦ ସର୍ବତ୍ର ଖେଳୁଛି। ଆଜି ଭକ୍ତ ଭଗବାନଙ୍କର ମିଳନ। ଆଜି ବିଶ୍ୱପ୍ରେମର ଦାତା-ଗ୍ରହୀତା, ଗ୍ରହୀତା-ଦାତା। ଆଜି ଗୁରୁ ଶିଷ୍ୟ, ଭକ୍ତ ଭଗବାନ, ପ୍ରେମିକ ପ୍ରେମିକାଙ୍କ ଅଭିନ୍ନ ମିଳନ। ଆଜି ଗୁରୁ ଶିଷ୍ୟର ପାଦରେ, ଶିଷ୍ୟ ଗୁରୁର ପାଦରେ। ଏହାହିଁ ବିଶ୍ୱପ୍ରେମର ପୂର୍ଣ୍ଣ ସାର୍ଥକତା।

ସଖୀଦଳଙ୍କ ମୁଖରେ — 'ଜଗଜ୍ଜନମନୋରଞ୍ଜନ ଯା ନାମ
ସେ ତୋ' ପ୍ରାଣାରାମ ପ୍ରାଣାକୁଳ ଶ୍ୟାମ
ଅମରବାଞ୍ଛିତ ପଦ ତୋ ସଂପଦ
ସେ ପିପାସୀ ତୋହ ପାଇଁ। (ପୃ.୭୮)

ଏଠାରେ ଯେ ଭକ୍ତ- ସେ ଶିଷ୍ୟ, ଯେ ଶିଷ୍ୟ-ସେ କାନ୍ତା-ପ୍ରେମିକା। ଯେ ଗୁରୁ ସେ ଭଗବାନ୍, ଯେ ଭଗବାନ ସେ କାନ୍ତ-ପ୍ରେମୀ। ଅନ୍ୟତ୍ର ବୈଷ୍ଣବଦର୍ଶନରେ ଗୁରୁ, ଶିଷ୍ୟ, ଭଗବାନ ପ୍ରେମିକ, ପ୍ରେମିକା ଦୂତୀରୂପେ ତିନିଜଣ ଗୃହୀତ ହୋଇଥିଲେ ହେଁ ଏ ନାଟିକାରେ ଯେ ଗୁରୁ ସେ ଭଗବାନ। ବୈଷ୍ଣବ ଗ୍ରନ୍ଥମାନଙ୍କରେ ତ୍ରିବୀଜ (ହ୍ରୀଂ, ଶ୍ରୀଂ, କ୍ଲୀଂ), ତ୍ରିଶକ୍ତି (ପରା, ରମା, କାମ), ତ୍ରିନାମ (ହରି, ରାମ, କୃଷ୍ଣ)ର ସର୍ବତ୍ର ବିଚାର ହୋଇଅଛି। ଭଗବାନ କୃଷ୍ଣ ପ୍ରଥମରେ ଏକ; ତତ୍‌ପରେ ତାଙ୍କ ଶକ୍ତି ସହିତ ସେ ଦୁଇ ଏବଂ ତାଙ୍କ ଶକ୍ତିର ଲୀଳା ଆସ୍ୱାଦନ ଏବଂ ପ୍ରକଟନ ନିମିତ୍ତ ତୃତୀୟ ଶକ୍ତି ବା ବ୍ୟକ୍ତିର ପ୍ରୟୋଜନୀୟତା।

ଯେତେବେଳେ କେବଳ ରାଧା ଏବଂ କୃଷ୍ଣଙ୍କର ପ୍ରେମର ବିଚାର ସେତେବେଳେ ସେ ଦୁଇ ବ୍ୟକ୍ତି, ଦୁଇ ନାମ, ଦୁଇ ବୀଜର ଖେଳ। ସଖାସଖୀମାନେ ତୃତୀୟ ବୀଜକୁ, ତୃତୀୟ ଶକ୍ତିକୁ, ତୃତୀୟ ନାମକୁ ଅବଲମ୍ବନ କରି ରହିଅଛନ୍ତି। ରାଧାକୃଷ୍ଣଙ୍କ ଲୀଳା ବାସ୍ତବିକତାରେ ଆଧ୍ୟାତ୍ମିକ ଲୀଳାର ପ୍ରକଟନ। ଏଥିରେ ବାସ୍ତବ କାମର ଗନ୍ଧ ନାହିଁ। ସବୁ ଦିବ୍ୟ ଚିନ୍ମୟ। ତାହାର ପ୍ରକାଶ ଏହି ପୃଥିବୀରେ– ଏହି ମର ଦେହରେ; ଅନ୍ୟ କୌଣସି ଉର୍ଦ୍ଧ୍ୱ ଲୋକରେ, କଳ୍ପନାଗତ ଜଗତରେ ବା କଳ୍ପନାତୀତ ରାଜ୍ୟରେ ନୁହେଁ।

ଏ ରାଜ୍ୟ ପ୍ରେମର। ସେହି ପ୍ରେମରାଜ୍ୟ ଭଗବାନଙ୍କର ହେଲେହେଁ ତାହା ବର୍ଦ୍ଧମାନ ହୋଇଛି- ପ୍ରେମବାତୁଳା ରାଧାଙ୍କର। ପ୍ରେମମୟଙ୍କର ଅନ୍ତରଙ୍ଗ ସଖାମାନେ, ସେହି ଚିନ୍ମୟ ପ୍ରେମର ପୂର୍ଣ୍ଣ ବିକାଶର ଅଭିବ୍ୟକ୍ତି ନିମିତ୍ତ ସହାୟଭୂତ ଓ ପ୍ରେମମୟଙ୍କର ଅନ୍ତରଙ୍ଗା ସଖୀମାନେ ରାଧାଗତ ପ୍ରେମର ପରିସ୍ଫୁର୍ତ୍ତିର ଚରିତାର୍ଥତା ନିମିତ୍ତ ସହାୟଭୂତା। ପ୍ରେମଦାତା ଓ ପ୍ରେମଗ୍ରହୀତା ପ୍ରେମର ମାହାତ୍ମ୍ୟ ବଳରେ ପରସ୍ପରାପେକ୍ଷୀ। ଉଭୟଙ୍କର ମିଳନ ବିଶ୍ୱପ୍ରେମର ଚରିତାର୍ଥତା, ପରିସ୍ଫୁର୍ତ୍ତି, ପରାକାଷ୍ଠା।

ଶ୍ରୀମତୀ ଓ ଶ୍ରୀକୃଷ୍ଣଙ୍କ ମିଳନରେ ଆଳାପ ଅତି ମଧୁର —

'ମଧୁରଂ ରସବଦ୍ ବାଚି ବସ୍ତୁନ୍ୟପି ରସସ୍ଥିତିଃ
ଯେନ ମାଦ୍ୟନ୍ତି ଧୀମନ୍ତୋ ମଧୁନେବ ମଧୁବ୍ରତା!' କାବ୍ୟାଦର୍ଶ

ଏ ମିଳନ ପ୍ରସଙ୍ଗରେ ନାଟିକାରୁ ଉଦ୍ଧାର କରିବା ପ୍ରୟୋଜନ ଦେଖୁନାହିଁ। କାରଣ ମାଧୁର୍ଯ୍ୟମୟୀଙ୍କ ସହିତ ମାଧୁର୍ଯ୍ୟମୟଙ୍କର ମିଳନ- ମଧୁର ସହିତ ମଧୁରର ମିଳନ। ରସ ମଧୁର, ବାକ୍ୟ ମଧୁର। ମାଧୁର୍ଯ୍ୟ-ଅବବୋଧକାରୀ କାବ୍ୟ-ବିନୋଦୀ, ଭକ୍ତି-ବିନୋଦୀ, ପ୍ରେମାନନ୍ଦୀ ତାହା ପାଠ କରି ଆସ୍ୱାଦ କଲେ ଆନନ୍ଦମୟ ଭାବ ପ୍ରାପ୍ତ ହେବେ। ରାମଚନ୍ଦ୍ର କବିରାଜଙ୍କ ଉକ୍ତିକୁ ଟିକିଏ ବଦଳାଇ କହିଲେ ଏଠାରେ ସମୀଚୀନ ହେବ —

'ସର୍ବାଙ୍ଗସୁନ୍ଦରୀ ରାଧା
କୃଷ୍ଣଃ ସର୍ବାଙ୍ଗସୁନ୍ଦରଃ
ତୟୋରାନନ୍ଦ ଜନନୀ
କୃତି ସର୍ବାଙ୍ଗସୁନ୍ଦରୀ।'

ପ୍ରେମଚିନ୍ତାମଣିର ଲେଖା ସର୍ବାଙ୍ଗ ସୁନ୍ଦରୀ କହିବା ଦ୍ୱାରା ବୁଝାଯାଉନାହିଁ ଯେ ଏ ନାଟିକା ଦୋଷବର୍ଜିତ। କିନ୍ତୁ ଗୁଣ ଅନୁପାତରେ ଦୋଷର ସତ୍ତା ଏତେ କମ୍ ଯେ ତାହା ପ୍ରତି କାଳୀଦାସଙ୍କର ଉକ୍ତି —

'ଏକୋହି ଦୋଷୋ ଗୁଣସନ୍ନିପାତେ
ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କ'     ପ୍ରଯୁଜ୍ୟ।

କବି ଉପସଂହାର ଗୀତିକାରେ ଜ୍ୟୋତିର୍ମୟ ଶ୍ରୀକୃଷ୍ଣଙ୍କର ଆରାଧନା ସଖୀ ଓ ଶ୍ରୀମତୀଙ୍କ ଦ୍ୱାରା କରାଇଅଛନ୍ତି। ଭଗବାନ ନିରାକାର ଓ ସାକାର। ଯେଉଁମାନେ ତାଙ୍କୁ କେବଳ ନିରାକାରରୂପେ ଗ୍ରହଣ କରିଅଛନ୍ତି ସେମାନେ ଯେପରି ଏକଦେଶଦର୍ଶୀ, ସେହିପରି ସାକାରଦର୍ଶୀମାନେ ମଧ ଏକଦେଶଦର୍ଶୀ। ଉତ୍କଳ ପଞ୍ଚସଖାମାନେ ଭଗବାନଙ୍କୁ ନିରାକାର ଏବଂ ସାକାରରୂପେ ଉପାସନା କରିଅଛନ୍ତି। ବ୍ରହ୍ମବୈବର୍ତ୍ତ ପୁରାଣରେ ମଧ ତାହାହିଁ ପ୍ରତିପାଦିତ ହୋଇଅଛି।

'ନିରୀହଞ୍ଚ ନିରାକାରଂ ନିର୍ଲିପ୍ତଞ୍ଚ ନିରାଶ୍ରୟମ୍
ନିର୍ଗୁଣଞ୍ଚ ନିରୁତ୍ସାହଂ ନିର୍ବ୍ୟୂହଞ୍ଚ ନିରଞ୍ଜନମ୍
ସ୍ୱେଚ୍ଛାମୟଂ ଚ ସାକାରଂ ଭକ୍ତ୍ୟାନୁଗ୍ରହ ବିଗ୍ରହମ୍
ସତ୍ୟସ୍ୱରୂପଂ ସତ୍ୟେଶଂ ସାକ୍ଷରୂପଂ ସନାତନମ୍।
×     ×     ×     ×
ଜ୍ୟୋତିର୍ମୟଂ ପରଂବ୍ରହ୍ମ ସର୍ବାକାରକାରଣମ୍।'
×     ×     ×     ×

ପୁନଶ୍ଚ କେତେବେଳେ ସେ ନିରାକାର, କେତେବେଳେ ସେ ସାକାର ଏବଂ ରାଧାଙ୍କ ସହିତ ପ୍ରେମମୟ ମିଳନରୂପ – ତାହା ମଧ ବର୍ଣ୍ଣିତ ହୋଇଅଛି।

'କ୍ଷଣଂ ତେଜଃ ସ୍ୱରୂପଞ୍ଚ ରୂପଂ ତତ୍ର ସ୍ଥିତଂ କ୍ଷଣମ୍
ନିରାକାରଞ୍ଚ ସାକାରଂ ଦଦର୍ଶ ଦ୍ୱିବିଧଂ କ୍ଷଣମ୍।'

ପୁନଶ୍ଚ — 'ଏ ପୁଷ୍ପ ଚିହ୍ନିଲେ ସିନା ବାସନା ଫୁଟିବ
ନାମ ବ୍ରହ୍ମ ଜ୍ୟୋତିବ୍ରହ୍ମ ରୂପ ପ୍ରକାଶିବ।
ଏକାକ୍ଷର ବ୍ରହ୍ମ ଏହି ଜ୍ୟୋତି ବ୍ରହ୍ମରୂପ
ଏଥିପରେ ଅଲୌକିକ ଅଲେଖ ସ୍ୱରୂପ।'     ଶୂନ୍ୟସଂହିତା, ୨ୟ ଅଧ୍ୟାୟ।
'ଜ୍ୟୋତିମଣ୍ଡଳର ମଧ୍ୟେ ବିଜୟ ଶ୍ରୀହରି।'     ଶୂନ୍ୟସଂହିତା, ୪ର୍ଥ ଅଧ୍ୟାୟ।

କବିଙ୍କର ଏରୂପ ଭାବନା ଶାସ୍ତ୍ରାନୁମୋଦିତ ଓ ଉତ୍କଳର ଧର୍ମମତ ଦ୍ୱାରା ସମର୍ଥିତ।

କବି ଯେ ମଧୁର ଭାବରେ ପ୍ରଣୋଦିତ ହୋଇ ଏହି ମଧୁର ରସମୟୀ ଗୀତି-ନାଟିକା-ଲତିକାଟିକୁ ଲଳିତ ମଧୁର ପଦାବଳୀ ସୁମନାରେ, ଚିର ମଧୁ ସମୟ-ବିନୋଦିନୀ ଦେବୀ ବାଣାପାଣିଙ୍କ ସୌରଭମୟ ସୁମନା-କୁଞ୍ଜର କମନୀୟ ଅଙ୍ଗକୁ ଅଧିକତର ସୌରଭମୟ କରି ମଧୁ ବର୍ଷଣ କରିପାରିଅଛନ୍ତି, ତାହା ଉତ୍କଳର ଗୃହେ ଗୃହେ ସଂଚାର ଲାଭ କରି ଜନସାଧାରଣଙ୍କ ମନ ମୁଗ୍ଧ କରିପାରିବ-ଏହା ମୋର ଧାରଣା।

*ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି*
ରେଭେନ୍ସା କଲେଜ, କଟକ
୧୪। ୧୨। ୩୦

# ନିଜକଥା

ଦୁଇବର୍ଷ ପୂର୍ବେ ମୋର ପ୍ରିୟଭୂମି କଟକ ନଗରରେ ଥିଲାବେଳେ କେତେଗୁଡ଼ିଏ ସ୍ୱରବିଶିଷ୍ଟ ଖଣ୍ଡକବିତା ଲେଖିଥିଲି। ସେଗୁଡ଼ିକ ପ୍ରତି ଶ୍ରୀମାନ୍ ଚକ୍ରଧରଙ୍କର ଏତେ ଶ୍ରଦ୍ଧା ଆସିଥିଲା ଯେ ସେ ସେଗୁଡ଼ିକୁ ସଜାଇ ଗୋଟିଏ ବହିର ସୂତ୍ରପାତ କରିଥିଲେ, ଏବଂ ମୋତେ ବହିଟି ଶେଷ କରିବାକୁ ଅଳି କରିଥିଲେ।

ବହିର ନାୟକ ନାୟିକାଙ୍କୁ ରାଧାକୃଷ୍ଣ ଭାବରେ ଗ୍ରହଣ କରିବା ପାଇଁ ମୋର ଆଦୌ ଇଚ୍ଛା ନଥିଲେ ହେଁ, ପୁଣି ମହାଭାବପୂର୍ଣ୍ଣ ରାଧାକୃଷ୍ଣ ଲୀଳା ଓ ତତ୍‌ସମ୍ବନ୍ଧୀ ପୁସ୍ତକମାନଙ୍କ ବର୍ଣ୍ଣିତ ବିଷୟରେ ମୁଁ ଅନଭିଜ୍ଞ ଥିଲେ ହେଁ- ଚକ୍ରଧରଙ୍କ ସନିର୍ବନ୍ଧ ଅନୁରୋଧ ଉପେକ୍ଷା କରି ନପାରି ବହିର ନାମ ପ୍ରେମଚିନ୍ତାମଣି ଓ ନାଟକର ନାୟକ ନାୟିକାଙ୍କୁ ଜଗଦ୍‌ବରେଣ୍ୟ ଶ୍ରୀମତୀ-ଶ୍ରୀକୃଷ୍ଣ ନାମରେ ରଖିଅଛି।

ବହିଟିର ଆମୂଳଚୂଳ ରଚନା ମୋର ହେଲେ ହେଁ ନାଟକୀୟ ଭାବରେ ସାଜସଜ୍ଜା ମୂଳରୁ ଶେଷ ପର୍ଯ୍ୟନ୍ତ ଚକ୍ରଧର କରିଅଛନ୍ତି। ତାଙ୍କର ଚେଷ୍ଟା ନ ଥିଲେ କିୟା ମୋ ଲେଖା ପ୍ରତି ସ୍ନେହ ନଥିଲେ ଖଣ୍ଡକବିତାଗୁଡ଼ିକ ଏପରି ସଙ୍ଗୀତ ସମନ୍ୱୟରେ ପ୍ରେମଚିନ୍ତାମଣି ନ ହୋଇ ଆଉ ଅନ୍ୟପ୍ରକାର କିଛି ହୋଇଥାନ୍ତା। ପ୍ରେମଚିନ୍ତାମଣିକୁ ସଜାଇବା, ଉତୁରାଇବା, ଭୂମିକା ଲେଖାଇବା ଓ ଛପାଇବା ଇତ୍ୟାଦି କାମରେ ମୁଁ ବିଶେଷ ସାହାଯ୍ୟ ପାଇଥିବାରୁ ଓ ମୋ ଲେଖା ପ୍ରତି ଶ୍ରଦ୍ଧା, ଆଦର, ଯତ୍ନ ଥିବାରୁ ମୁଁ ଶ୍ରୀମାନ୍ ଚକ୍ରଧର ମହାପାତ୍ରଙ୍କୁ ଏଥିପାଇଁ ଆନ୍ତରିକ ଧନ୍ୟବାଦ ଓ ଆଶୀର୍ବାଦ ଦେଉଅଛି।

ଅଧ୍ୟାପକ, ସାହିତ୍ୟରଥୀ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍.ଏ. ମହୋଦୟ କଠୋର ଶ୍ରମ ସ୍ୱୀକାର କରି ଭୂମିକାଟି ଲେଖିଦେଇଥିବାରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି।

ଦିଲ୍ଲୀ, ୨-୧୨-୩୦ *ଶ୍ରୀମତୀ କୁନ୍ତଳାକୁମାରୀ ସାବତ୍*

# ପ୍ରେମଚିନ୍ତାମଣି

## ଶ୍ରୀକୃଷ୍ଣାର୍ପଣମସ୍ତୁ

ପଥ ମଝିରେ କୃଷ୍ଣ ଦେଖା,
ଆଉ ନ ଯିବି ବୃନ୍ଦାବନେ,
(ଏବେ) ମନୋମୋହନ ଶ୍ୟାମଘନ
ରାଜେ ହୃଦ-ପଦ୍ମାସନେ ।
ପଥଧୂଳି ହେବି ବୋଲି
ମଥାରେ ମୁଁ ନେବି ତୋଳି,
ଲୋଟିବି ଶ୍ରୀହରି ବୋଲି
ଧୂଳି ଶେଯେ ଅଯତନେ ।
କାନ୍ଧେ ବହି ନାମ ଝୁଲି
ପଥେ ପଥେ ବୁଲି ବୁଲି
ହରିନାମ ସୁଧାପାନେ
ମତାଇବି ସର୍ବଜନେ ।

—●—

## ଚାତକିନୀ

ଅକ୍ଷିତ ନିର୍ମାଖୀ ବୁଲିବି ସଂସାରେ
ଭିକାରୁଣୀବେଶେ ଦୁଆରେ ଦୁଆରେ,
ଭଙ୍ଗା କେନ୍ଦରାରେ ଗାଇବି ତା' ନାମ
ପ୍ରାଣାରାମ ପ୍ରିୟ ଚିର ପ୍ରାଣାରାମ,
ସେତିକି ମୋ ଧର୍ମ୍ମ ଧାରଣା,
ଯୋଗ-ଯାଗ, ଜପ-ତପ, କାଷ୍ଠା-ନିଷ୍ଠା,
ପୂଜା-ପାଠ ମୋତେ ଅଜଣା ।

—●—

(୧)

ହୃଦୟମନ୍ଦିରେ, ଚିରସୁନ୍ଦର
ରାଜେ, ଚିର ରାଜେ ରେ,
ପରାଣଛନ୍ଦେ ଗାଅ ଆନନ୍ଦେ
ମାନସ-ମୁରଜେ ବାଜେ ରେ ।
ନୀଳ-ପୟୋଧି-ଲୋଳ-କଲ୍ଲୋଳେ
ମନ୍ଦ-ମାରୁତ-ଗନ୍ଧ-ହିଲ୍ଲୋଳେ
ପିକ ପଞ୍ଚମେ ଅଳି ଗୁଞ୍ଜନେ
ବୀଣା ବଂଶୀରେ ବାଜେ ରେ ।
ନୈଶ ଅମ୍ବର ତାରକା ଶଶୀ
ପ୍ରଫୁଲ୍ଲ ପୁଷ୍ପ ସୁଷମାରାଶି
ଶତ ନିର୍ଝର ଗିରି ପ୍ରାନ୍ତର —
ଶୋଭା-ବିଭାରେ ରାଜେ ରେ ।
ଖିଳ-ରଞ୍ଜନ ଦୁଃଖ-ଭଞ୍ଜନ
ସନ୍ତାପହର କୃପା-ନିଧାନ
ଚିରସୁନ୍ଦର ସତ୍ୟ ମଧୁର
ବିଶ୍ୱ ଅନ୍ତରେ ରାଜେ ରେ ।

(୨)

ଅତି ସୁଖ ପାଏ ତୋତେ ସୁମନରେ ମୋହନ ରେ,
ହୃଦୟର ପ୍ରତିରୂପ ମୋହର କି ଜଗତରେ ।
ପର୍ଣ୍ଣେ ପର୍ଣ୍ଣେ, ବର୍ଣ୍ଣେ ବର୍ଣ୍ଣେ,
ଦଳେ ଦଳେ, ଫଳେ ଲ୍ବନେ,
ମାନବ-ମାନସ-ଗାଥା କି କରୁଣ ରସାଳ ରେ,
କାନ୍ଦେ ହସେ ହେରି
ତେଣୁ ତନୁ ତୋର ନିରୋଳରେ ।
କଳିତ ଲଳିତ ଦଳେ ଲେଖା କି ସେ ସଙ୍ଗୀତ ରେ,
ଚିରନ୍ତନୀ ସୁଧାଧାରା ଶୋଣିତେ କି ମଥିତ ରେ !
ବ୍ୟଥିତ ବିଧୁର ଆଖି
କି ଆଲେଖ୍ୟେ ରହେ ଲାଖି,
ଅଲକ୍ଷ୍ୟେ ନିଷ୍ପନ୍ଦ ହୃଦ କି ଆନନ୍ଦେ ନନ୍ଦିତ ରେ,
କି ସେ ଅକଥନୀୟ ସେ ସ୍ନେହ ବିଶ୍ୱବନ୍ଦିତ ରେ ।
ଜଗତ-ଜଞ୍ଜାଳ-ବଣେ ଫୁଟେ କି ସେ କୁସୁମ ରେ,
ସୁଷମାରେ ଜିଣି ସ୍ୱର୍ଗ ସାର ଶିରୀ ସମୂହରେ
ଜଣାଏ ଅଜଣା ଜନେ,
ପରକୁ ଆପଣା ମଣେ,
ଦୂରକୁ ନିକଟ ବନ୍ଧୁ କରେ କି ରେ କ୍ଷଣକରେ,
ବନ୍ଧାଇ ହୃଦୟେ ବିଶ୍ୱ ଘେନି ଅବା ଘଡ଼ିକରେ ।

ନରୋ-ନୀଳିମାରେ ଶୋଭେ କିବା
ସେ ଉଦାର ପ୍ରେମ,
ତା'ଝଟକେ ଝଳେ ତାରା ଗଙ୍ଗେ କି ରଞ୍ଜିତ ହେମ,
ସରିତେ ଅମୃତଧାରା,
କୁସୁମେ ନୟନକାରା,
ଚିତ୍ତଚୋରା ସେ ମାଧୁରୀ ମମ ଆତ୍ମବିସ୍ମୃତିରେ,
ଅନନ୍ତ ବନ୍ଧନ ମଧ୍ୟେ ସେହି କି ମୋ ମୁକତି ରେ।

ହୃଦେ ହୃଦେ ଖେଳେ ସେହି ଜଳଦେ କି ବିଜୁଳିରେ,
ଅସୀମ ମହିମା ଜ୍ୟୋତି ତ୍ରିଜଗତ ଉଜଳିରେ,
ନିଜକୁ ହରାଏ ନିଜେ,
ଭୁଲେ ମୁହିଁ କରେଁ କି ଯେ,
ମନଭୁଲା ପ୍ରେମ ସେହି ସାରା ସୃଷ୍ଟି ବଶ ରେ,
ଶବ୍ଦ, ସ୍ପର୍ଶ, ଗନ୍ଧ, ରୂପ ଦିବ୍ୟ ରସ ରେ।

(୩)

ଆହା ଏଇ ଫୁଲଟି ପରି
ଚିର ଅନ୍ଧାର ନିରବ-
ନିଶିରେ ଶିଶିରେ ଯିବି ମୁଁ ମରି !
ପ୍ରାଣେ ମୋହର ଜନ୍ମଜନ୍ମାନ୍ତ
ବାସନା କେତେ ଥିଲା ଏକାନ୍ତ,
କନକ-କର ରବି ରୁଚିର ସ୍ପର୍ଶ ଲଭିବି ଅନ୍ତର ଭରି।
ହୃଦୟେ ଫୁଟିଛି ଏ ପ୍ରେମକଢ଼ି,
ଅନ୍ଧାରେ ଆଗୋ, ଶୁଖିବ ଝଡ଼ି,
ମରମ ବେଦନା କେ ବୁଝିବ ଆଉ,
ଯୌବନ ତାର ଯିବଟି ସରି !
ନବ ନୀରଦ ଉଦୟେ କେକୀ କି ନ ରସିବ,
ନବ ମରୀଚିମାଳୀକୁ ଫୁଲ କି ନ ଚାହିଁବ ?
ଆକାଶେ ଶୋଭିଲେ ଧନୁ ମେଘରେ
ନ ଚାହିଁବ କହ କେ ଅନୁରାଗରେ ?
ତେସନ ସୁନ୍ଦର ମନୋମୋହକର
ଶ୍ରୀପାଦ-ସରୋଜ ମନ-ଅଳି ନ ଚୁମ୍ବିବ ?
କାହିଁ ଆଉ ତାର ପ୍ରାଣର ପୂର୍ଣ୍ଣତା,
କାହିଁ ଉପଶମ ମନ ବ୍ୟାକୁଳତା,
ଲତା ଯଦି ତେଜେ ଚାରୁ ତରୁ ଅଙ୍ଗ
ଶତ ଚରଣର ଦଳା ସେ କି ନ ସହିବ ?

(୪)

ସଖି ! ମୁଁ କି ତାରେ ଛାଡ଼ିପାରେ ?
ଜୀବ ନାଡ଼ି ପଛେ ଦହିବ ହୃଦରୁ,
ଜ୍ୟୋତି ଲିଭିଯିବ ବେନି ନୟନରୁ,
ବୁଡ଼ିଯିବେ ଚାରୁ ଚନ୍ଦ୍ରମା ତପନ –
ତାରା ଚିର ଅନ୍ଧକାରେ।
ଫୁଲ ଭୁଲୁ ତାର ସୁବାସ ଚହଟ,
ସୁନାରୁ ସରୁ ତା କାନ୍ତି ଝଟ ଝଟ,
ଆକାଶ ଅଙ୍ଗରୁ ଖସୁ ଲୋ ନୀଳିମା
ରକ୍ତ ତେଜୁ ରଙ୍ଗ ତାର,
ଯା' ପାଦେ ମୋ ଜୀବ ସେ ପଦ-ରାଜୀବ
ହେଉ, ଜନ୍ମେ ଜନ୍ମେ ଗଳାହାର।
କହନ୍ତୁ ଲୋ ଲୋକେ ଶ୍ୟାମ କପଟିଆ,
କହନ୍ତୁ କାଳିଆ କୁଳ-କଳଙ୍କିଆ,
ଗଳାରେ ମୋହର ଛୁରୀ ଦେଇ ଭଲେ
ରହୁ ଆନ ଆନନ୍ଦରେ,
ମଥାମଣି ସମ ମଣିଛି ମିତଣି !
କିସ ପର ବାଛନ୍ଦରେ !

(୬)

କଳା କେବେ କିଲୋ ସ୍ୱଗୁଣ ତେଜିବ,
କଳାକୁ ଜୀବନ ବିକି
କଳା ଦେହେ ତିଳେ ନ ଲାଗିବ ବୋଲି
ସାହସ ବାନ୍ଧିବି କିକି !
କଳା ନିତି ନବ ନବ,
କଳାରୂପେ ମୋର ନୟନର ପ୍ରୀତି
ଅନୁରାଗ ଅଭିନବ।
ସରବ ସୁନ୍ଦର ସାର,
ସୁନ୍ଦର ଦଳର ରାଜାକୁ ଅବା ମୁଁ
କରିଛି ମୋ ଗଳାହାର।
କେ କହୁ କୁରୂପ ସହି,
ତା' ବିନା ସୁରୂପ କହୁ ଯାହାକୁ ଲୋ !
(ସେତ) ଆଖି ମୋର ଦିଏ ଦହି।

(୭)

କାହିଁକି ରେ ଝୁରୁ ସହି ! ସେହି ସୁନ୍ଦର ଲାଗି,
କୋଟି କନକ ତାରା ରୂପେ ଆଖି ରହିଛି ଜାଗି।

ପଥେ ବସାଇ ଯେ ଯାଇଛି,
ଗୋପନେ ପ୍ରେମେ ସେ ଚାହିଁଛି,
ଦିବସ ନିଶି ତୋ ଅଶ୍ରୁ ଝରୁଛି
ସେହି ସୁନ୍ଦର ଲାଗି,
କାନ୍ତି କମଳ ସୌରଭରୂପେ ପ୍ରେମ ରହିଛି ଜାଗି।
ଧୂଳି ଧୂସର ତନୁଗୋଟି
ପାଦତଳେ ଯିବୁଟି ଲୋଟି,
ଚରଣ ସ୍ପର୍ଶେ ନିବିଡ଼ ହର୍ଷେ ହେବୁ ସରବତ୍ୟାଗୀ।

(୮)

ଆହା! ଏଇ ପଥେ ଯିବ ବୋଲି
ନିଶି ନିଶି ମୁହିଁ ଥିଲି ଉଜାଗର
ରଖିଲି କବାଟ ଖୋଲି
ଅତର ଚନ୍ଦନେ ହୋଇଲି ବେଶ,
ସଜ ସୁମନରେ ସାଜିଲି କେଶ,
ଘନ ଅନ୍ଧକାରେ କାହିଁ ସେ ମିଶିଲା
ଠୂଳେ ନ ପାରିଲି ଦେଖି,
ସବୁ ଦୋଷଯାକ ମନ ଆକୁଳରେ
କପାଳକୁ ଦେଲି ଲେଖି।
କନା, ସେ କି ଏକା ମୋର,
ଜଗତଯାକର
ସେତ ମନଚୋର,
ମିଛେ ମିଛେ କହେଁ ମୋର।
ଆହା! ଏଇ ବାଟେ ଯିବ ବୋଲି
ଯମୁନା କୂଳରେ
କଦମ୍ବ ମୂଳରେ
ବୁଲୁଥିଲି ଫୁଲ ତୋଳି!
ଚକିତେ ଚମକେ ଚଞ୍ଚଳ ନୟନ,
ଦିଶିଯିବ ପରା ରୂପ ବିମୋହନ,
ବହି ଯିବ ପରା
ରୂପ-ସୁଧା-ଧାରା,
ଅଧୀର ହୃଦୟେ ଆକୁଳ କମ୍ପନ।
ଖସିପଡ଼େ ବାସ,
ଖସିପଡ଼େ କେଶ,
କ୍ଷଣେ ଫୁଟେ ହାସ,
କ୍ଷଣେ ପ୍ରାଣେ କ୍ଳେଶ।

(୯)

ଆହା! ଏଇ ପଥେ ଯିବ କାହ୍ନୁ,
ଉଇଁଯିବ ପରା ହୃଦ-ଅମାକାଶେ
ଚିର-ବିନୋଦିଆ ଭାନୁ।
ଥର ଥର ଥର ଆଖି ଝର ଝର
ଆଗୁଳି ଧରେ କି ଲାଜ,
ପଥେ ଛିଡ଼ା ହୋଇ ଚରଣ ଛିଞ୍ଚାଡ଼େ
କଣ୍ଟକ କାଢ଼ିବା ବ୍ୟାଜ।
ଦୂରୁଁ ଯେବେ ଦେଖେଁ ଛାଇ
ନାଚ ଆନନ୍ଦରେ ମଉଳିପଡ଼େଁ ମୁଁ
ଚାହିଁ ତ ନ ପାରେଁ ଚାହିଁ।
ଜଡ଼ ରସନାରେ ନ ଫୁଟେ ବଚନ,
ବହିପଡ଼େ ଦେହୁଁ ସ୍ୱେଦ ଘନଘନ,
ରୁନ୍ଧିଯାଏ ଅବା ନିଃଶ୍ୱାସ ପବନ,
(କହ) କି କରିବି ଏହାପାଇଁ।

(୧୦)

କେତେ ଗୁନ୍ଥେଁ ଫୁଲମାଳି,
ଆକୁଳେ ଛିଣ୍ଡାଇ ଦଳେଁ କରତଳେ
ଉଷ୍ଣ ଅଶ୍ରୁରାଶି ଢାଳି।
ଫୁଲରୁ ସୁନ୍ଦର ବଳି
କି ରଙ୍ଗେ ରଞ୍ଜିଲେ କହ ଲୋ କମଳା,
ସୁନାରେ ଫୁଟିବ ଝଳି?
ପ୍ରେମ କହ, ମୁଁ କି ଜାଣେ?
ଖାଲି କି ବେଦନା ଗୋପନେ ଉଠୁଛି,
ମରୁଛି ମୁଁ ପ୍ରାଣେ ପ୍ରାଣେ।
କାହିଁରେ ମୋହର ନ ମିଶଇ ମନ
ଥାଏ ଥାଏ ହୁଏଁ ଆକୁଳ ଉଛନ୍ନ,
ପାଗଳ ପରାଏ ଲୋଟେଁ ଧରାତଳେ
କେବେ ବସେଁ ତାର ଧ୍ୟାନେ,
ଝିଙ୍ଗାସି କେ କେତେ ହିଆ କରତନ୍ତି
କେ ମାରନ୍ତି କାବ୍ୟ-ବାଣେ।
ଯେତେ କରେଁ ମନା ମନକୁ ଆଉ ମୁଁ
ଆଣିବି ନାହିଁ ତା କଥା,
ତେତେ ରୂପ ତାର ଦିଶେ ଆନ ଆନ,
ବଢ଼େ ନବ ନବ ବଥା।

ଯେତେ ପର ମୋତେ କରେ ସେ ସୁନ୍ଦର
ତେତେ ଆପଣାର ହୁଏ ସେ ମୋହର,
କହ ଜାଣେ ସେହି କି ମାୟା ଦୁନ୍ଦର,
ମନ୍ଦ ମୋତେ କହ ସବୁ,
ମନ୍ଦ ଇନ୍ଦୀବରେ କହିବ ଏଥର,
(ତାକୁ) ରବି ଚାହେଁ ଦୂର ନଭୁଁ।

(୧୧)
କହ ସହି ! କାହା କଥା ଭାବୁ ବିରୋଳେ ?
କିଏ ସେ ତୋ ପ୍ରାଣସଖା,
କା' ପାଦେ ତୋ ଚିତ୍ତ ଯୋଖା,
ଚମକେ ପୁଲକେ ଚିତ୍ତେ ପ୍ରେମ ଉଛୁଳେ ?
କାହାର ସେ ରୂପ ତୋରା,
କୋଟି ଭୁବନ-ପାସୋରା,
ରବି ଶଶୀ ତାରକାରେ ଛବି ଉଜଳେ ?
ନୀରବେ ନୟନାସାରେ
ଗୁନ୍ଥି କି ମୁକୁତା ହାରେ
ଅରପି ଗଳାରେ, ବାରେ ଚାହିଁବୁ ଭୋଳେ।
ନୁହେଁ ଦିନକର ପ୍ରୀତି,
କଳ୍ପ କଳ୍ପ ଗଲା ବିତି,
ତୁ ତାହାର ସେ ତୋହର ଯୁଗ ଯୁଗଳେ।

(୧୨)
କି ଉଳି ପଥର ପାଲଟିଗଲି,
ଜାଣୁ ଜାଣୁ ଏତେ ଅକର୍ମ କଲି,
ଆତ୍ମଗ୍ଲାନି ବେଳେ ତା' ରୂପ ସୁମରି
ଆଖିରୁ ଆବେଗେ ପାଣି ପଡ଼େ ଝରି,
କହ ମୁଁ ବଞ୍ଚିବି ସତେ,
ସବୁ ବାଟେ ମୋର ଜଞ୍ଜା ପଡ଼ିଛି ଲୋ,
ଯିବି ଆଉ କେଉଁ ପଥେ ?
ତା ଭିତରେ ଅଛି କହ କି ମୋହିନୀ,
ଅଛି ବା ସ୍ୱର୍ଗର ସୁଧା ସଞ୍ଜୀବନୀ,
ଶତ ପ୍ରତିଜ୍ଞା ମୋ' ଭାସିଯାଏ କେଣେ
ଥରେ ଚାହିଁଲେ ଚରଣେ,
ଜୀବନେ ନ ଥାଏ ତିଳେ ପ୍ରୟୋଜନ,
ଲୋଡ଼େ ମୁଁ ଅମୃତ ମରଣେ।

(୧୩)
ସେହି ଦିଏ ଏତେ ଦୁଃଖ,
ତା ଲାଗି ପୁଣି ମୁଁ
ଜଗତଯାକରୁ
ହୋଇଛି ଛାଏଁ ବିମୁଖ।
ନ ସାଧିଲେ ନିଜେ
ସାଧେ ପାଦ ଧରି,
ନିଜର ଯାତନା
ନିଜେ ଆଣେ ବରି।
ସାରା ସଂସାର ତା
ଦୋଷ ବଖାଣନ୍ତି,
ମୁଁ ଦେଖେଁ ଗୁଣସାଗର,
ଚନ୍ଦ୍ରରେ କଳଙ୍କ
କହନ୍ତି, ଭାବେଁ ମୁଁ
ସେ ଏକା ଅମୃତାକର।

(୧୪)
ନିଅ ଗୋ ସହି, ସହି,
ଏ ନୂଆ ଆମ୍ବ ପତର,
ଡାଳେ ଡାଳେ ବଉଳ-
ମାଳ ଶୋଭେ କିସୁନ୍ଦର !
ଏ ପତର ବଡ଼ଗୁଣର,
ସଙ୍ଖାଳି ନୂଆ ଫଗୁଣର,
ଶ୍ୟାମେ ନ ପାଇଲୁ ନାହିଁ,
ଏ ପତର ରୂପ ଧ୍ୟାୟି
ପାସୋରିଯିବୁ ବିକାର,
ଜାଳା ମନର।
ଦେବି କି ଖଞ୍ଜି
ଅଙ୍ଗେ ଅଙ୍ଗେ,
ବଢ଼ିବ କାନ୍ତି
କେତକୀ ରଙ୍ଗେ,
ଶ୍ୟାମ-ଶୋଭା ଭ୍ରମେ ଲଭିବୁ ମରମେ
ସାନ୍ତ୍ୱନା
ଅବା ମୁହୂର୍ତ୍ତର।

(୧୫)
ଆହା ! ସେଦିନ କି ଭୁଲିବି ଜୀବନେ
ପହିଲି ଯେଦିନ ଦେଖିଲି ନୟନେ

ନବ ଦୃତପତ୍ର-
ସୁଷମା ଶ୍ୟାମର,
ଥିଲି କି ଏ ଜଗତରେ,
ଭୁଲିଲି ମୋହର
କୁଳ ମାନ ଜ୍ଞାନ
ଅନ୍ଧ ହେଲି ନିମିଷରେ ।
ସେହି ଦିନୁଁ ଝୁରି ଝୁରି
ବୁଲେଁ ବନେ ବନେ
ବିଜନେ ଗୋପନେ
ଶ୍ମଶାନ ମଣେ ମୋ ପୁରୀ ।
କେ କେତେ କହିଲେ ହତଭାଗିନୀ,
ହେଲୁ ଆଗୋ ଏଡ଼େ କୁଳକାମିନୀ,
ବୁଝି ନ ବୁଝିଲି
ଘେନି ନ ଘେନିଲି
ବଚନ ଗୁରୁଜନର,
ଶତ ସରିତରେନୀର ଥାଉଁ ଯହୁଁ
ଆଶ୍ରା କଲି ଜଳଦର,
ଏବେ ପଡ଼ିଲା ମୁଣ୍ଡେ ବଜର ।
ସାନର କିମ୍ପା ଏ ଗୁମାନପଣ,
ଆକାଶେ ଅଟାଳି ରଚିବା ଟାଣ,
ବିଦ୍ୟୁତକୁ ଫୁଲମାଳ ମନାସିଲି
ଟାଦେ ବଢ଼ାଇଲି ହାତ,
ଦଦରା ବୋଇତେ ବସି ଅଜ୍ଞାନରେ
ଅକୂଳେ ମାଇଲି ଜାତ ।
ଯେ ନିଆଁ ଜାଳିଲି ହିଆରେ,
ସହସ୍ର ସାଗର- ନୀର ଅଜାଡ଼ିଲେ
ନ ନିଭି ବଢ଼ିବ କାୟାରେ ।
ସତେ ଆଉ ଦେଖା ନ ହେବ ଜୀବନେ,
ବୁଲିବି ତା ନାମ ଗାଇ ବନେ ବନେ,
ତାହାରି ଲାଗି ମୁଁ ହେବି ବିରାଗିନୀ,
ଉସମ ବୋଳିବି ଅଙ୍ଗେ,
ଛିଣ୍ଡା କନ୍ଥା କେତେ ସମ୍ବଳ ବାନ୍ଧିବି,
ରଙ୍ଗାଇବି ଗେରୁ ରଙ୍ଗେ ।
ବାର ବରଷ ମୁଁ ତପସ୍ୟା କରିବି
ଚଉପାଶେ ଅଗ୍ନି ଜାଳି,
ଇନ୍ଦ୍ରପଦ ଯଦି ଲଭନ୍ତି, ପାଇବି
ନିଶ୍ଚେଁ ମୋ ଚିର-ସଙ୍ଗାଳି ।

ତା'ବିନା ଜୀବନେ କିସ ଲୋଡ଼ା ମୋର,
ତା' ବିନା କି ହେବ ଘରେ ?
ଜହର ଖାଇ ବା ଜୀବନ ହାରିବି,
ପଶିବି ବା ପାବକରେ,
ଝାସିବି ଯମୁନା-ନୀରେ ;
ଦେଖୁଥିଲି ପରା ସେ ରୂପ-ରାଜୀବ
ତା' ରାଜୀବ-କୁଞ୍ଜ ତୀରେ ।
ଦିଶେ ଦିଶେ ଅବା ଘୋଷିବେ ସକଳେ
ରାଇର ଅକୀର୍ତ୍ତି ବୋଲି,
କହ କେ ଦେଖିଲା ଯାତନାର ଜ୍ୱାଳା
ଗୋପନ ମୋ ହୃଦ ଖୋଲି ?

(୧୬)

ଭୁଲିଯା ଭୁଲିଯା ସହି ! ସେ ନାମ ଗୀତ,
ଜୀବେ ନ ଲଭିବୁ ଯାହା ତାକୁ ଭୁଲିବା ହିତ ।
ଗୋଲାପ କୁଞ୍ଜରେ କୁସୁମ ତୋଳିଲେ
କଣ୍ଟା କି ନ ଯିବ ଗଳି,
କେତକୀ କାନନେ ନ ଦଂଶିବ ଅହି,
ଅରବିନ୍ଦ ବନେ ଅଳି ?
କିପାଁ ଅକାରଣେ ନ ହେବା କଥା
ମାନସେ ମନାସି ପାଉଛୁ ବଥା,
ବନ ଫୁଲ ତେଜି ତାରା-ହାରେ କିପାଁ
ଶରଧା ବଳିଛି ମିତ,
ତାର ପ୍ରୀତି ତିଳେ ସ୍ନେହ ବିନା ସହି,
ଜୀବ କି ଯିବା ଉଚିତ ?

(୧୭)

ସତେ ସେ କଳାଟି ଏତେ ସରି,
ଗୁଣ କିନ୍ତୁ ତା'ର ବାହୁନିବା ପାଇଁ
ମୋତେ ଅଣ୍ଟୁନାହିଁ ଦିବା ବିଭାବରୀ ।
ଏଡ଼େ ସେ କୁହୁକୀ କାଳିଆ,
ବାସନା ମୋହର ହେଲେ ହୁଅନ୍ତି ମୁଁ
ତା'ର ପାଦ ଧୂଳି ଅଳିଆ ।
ଲାଖି ରହନ୍ତି ତା' ଦେହେ,
ଚାନ୍ଦରୁ କୌମୁଦୀ ଛଡ଼ାଇଲେ ଆଉ
ବଞ୍ଚିବ ସେ କାହା ସ୍ନେହେ ?

ରବି ଅବା ପଶ୍ଚିମରେ ଉଇଁବ,
ତୁଷାର ତା' ଶୀତଳତା ତେଜିବ,
ତଥାପି ତା' ବିନା ନାହିଁ ମୋର ଗତି
ଜଳ ବିନାମୀନ ଅବା ବଞ୍ଚିବ,
ବୀଣାତାର ବିନା ରହିବ ତା' ସ୍ୱର,
ଶିଳା ପଛେ ତରଳିବ ।
କି ପ୍ରେମ-ମନ୍ତର ପଢ଼ାଇଲା ମୋତେ
କହ ସେ କିବା ଗୁଣିଆ,
ଯେତେ ଦୂରେ ମୋତେ ବରଜି ବସିଲେ
ଯେତେ ଅପମାନେ ମରମ ପୀଡ଼ିଲେ
ମୁଁ ତା' ପ୍ରେମଧନେ ରଙ୍କ ବଣିଆ,
ଯେ ପାଦେ ପ୍ରହାରେ, ନିହେ ତା ମଥାରେ
ସଖି, ଏକି ଲୋକୁକପଣିଆ !
କେତେ ତିଆରଛି ସାଥିଏ,
ବିଷ ପରି ମଣି ତାଙ୍କ ହିତ ବାଣୀ
ପଙ୍କରେ ପଶେଁ ମୁଁ ଛାତିଏ ।
ଦୂରେ ଥାଇ ମୋର ପଦ୍ମତୋଳା, ମରେ
କାଳ କଳାନାଗ ଦଂଶନରେ,
ତଥାପି ଚେତା ତ ନୋହିଲା ମୋହର,
କହ ଭୁଲିଲି କି ମୋହନରେ ?
ସାରା ଅଙ୍ଗେ ମୋର ବିଷ ସଞ୍ଚରୁଛି,
ଧରା ଦିଶେ ଆନ ଆନ,
ମରୁ ବାଲି ପଥେ ମରୀଚି ପଛରେ
ଧାଏଁ କରି ଜଳ ଜ୍ଞାନ

(୧୮)

(ଆହା) ସକାଳରୁ ସଞ୍ଜେ
ତୁମରି ଲାଗି ସେ
ଅନାଇ ବସିଛି ପଥେ,
ଛାତି ଥର ଥରେ
ଆଖି ଝର ଝରେ
ଆସିଲ ଆସିଲ ସତେ !
ସାରା ପରାଣଟା ତୃଷାରେ ପୂରି
ସାରା ମରମଟା ହେଉଛି ଝୁରି,
ଶିରାରେ ଶିରାରେ
ଚମକେ ବିଜୁଳି
ଛକିଲେ ଛକିଲ ପରା,
ଝିମି ଝିମି ଦେହ-
ଗୋଟାକ କ୍ଷଣକେ,
ଅବିଶ୍ୱାସ ଘରେ ତୁରା ।
ତୁଳାକୁ ତୁଳାକୁ
କାନ୍ଦିବସେ ମାନେ
ଜୀବନ ରହିବ ସତେ,
ଏତେ ଦୁଃଖ ଦେବ
ଶ୍ୟାମଘନ ବୋଲି
ମନେ କେ ଯାଆନ୍ତ ପ୍ରତେ ?

(୧୯)

ଶ୍ୟାମ ବିନା ତା' ମନ କାହିଁରେ ତୋଷିବ,
ନୀରଦ ବିନା କି ନୀରେ ଚାତକ ରସିବ ?
ଶଶୀ ବିନା ହସିବ କୁମୁଦ କି ନୀରେ,
ରବି ବିନା ରାଜୀବ କି ବିକଶେ କାସାରେ,
ବିଭାବରୀ ବିନା ତାରା ନଭେ କି ଫୁଟିବ ?
ନ ବହିଲେ ମୃଦୁଳେ ମଳୟ ମାରୁତ,
କୋକିଳ ଗାଇବ କାହୁଁ ଲଳିତ ସଙ୍ଗୀତ,
ଶୀତେ ପାଦପ ବପୁ କି ପଲ୍ଲବେ ଶୋଭିବ ?
ପିପାସା ଶମିବ କି ମରୀଚିକା ନୀରେ,
ତମସ ବିନାଶ କାହିଁ ଖଦ୍ୟୋତ ଜ୍ୟୋତିରେ,
ପ୍ରାଣବନ୍ଧୁ ବିନା ପ୍ରାଣ-ଆଶା କି ପୂରିବ ?
ଶ୍ୟାମଧନ ବିନା ରାଧା ମନ କି ରସିବ ?

(୨୦)

ତଥାପି, ମନରେ କାହିଁ
କ୍ଷଣେ ଅବସାଦ ଆସଇ ନାହିଁ,
ମରମ-ଜିଣା ଏ ପ୍ରୀତି ସରି ମିତ !
ଆଉ କି ଅଛି ମୁଁ ପାଇ ?
ପ୍ରୀତି ବୋଲି କେବେ ଜାଣିଲି ସହି,
(ଆନେ) ମିଛେ ମିଛେ ଦୁଅନ୍ତି ଦହି;
କିଶଳୟ ଅଙ୍ଗେ ଶ୍ୟାମଳ ସୁଷମା
...ସେ କି ତାର ପ୍ରୀତି ଭାବ ?
ଫୁଲ ନହୁଣ... ...ଳତା ଉଳି
...ପ୍ରେମ ଯେ ମୋର ସ୍ୱଭାବ ।

ଅଙ୍ଗେ ଅଙ୍ଗେ ମୋର ପ୍ରେମର ଧାର,
ରକ୍ତ ବିନ୍ଦୁ ବିନ୍ଦୁ ପ୍ରେମର ହାର;
ପ୍ରତି ଆବେଗର
ହୃଦ ସ୍ପନ୍ଦନର
ଶୁଣେ ମୁଁ ଅମର
ସଙ୍ଗୀତ ପ୍ରେମର ।
ପ୍ରୀତି ମୋ ହୃଦୟ ଫୁଲ,
ସୌରଭେ ତାହାର
ନିଜେ ମୁଁ ଆକୁଳ
ପରକୁ ଦୋଷିବି
କିପରି ସଜନି !
ମୁଁ ତ, ତେଣୁ
କରି ବସେ ଏତେ ଭୁଲ ।
ନେତ୍ର-ଦରପଣେ ଥିଲା ସେ ଛବି,
ହୃଦ-ପଦ୍ମ ଖୋଜୁଥିଲା ସେ ରବି,
ମନ-ଲୁହାଖଣ୍ଡ ସେ ଚୁମ୍ବକ ଲାଗି
ଯୁଗ ଯୁଗ ଥିଲା ଧାୟି,
ଆତ୍ମା ଖୋଜୁଥିଲା ସୁଧା ଆସ୍ୱାଦନ,
ତନୁ ଲୋଡୁଥିଲା ପରଶ ରତନ,
ତୃଷିତ ଚାତକ ଏ ପ୍ରାଣେ
ନବ ଜଳଧର ମଧୁ ଧାରା ଲାଗି
ଜନ୍ମେ ଜନ୍ମେ ଥିଲା ଚାହିଁ ।
ସୃଷ୍ଟି ମମ ଥିଲା ଅପୂର୍ଣ୍ଣ ସୁଦୀନ,
ଜ୍ୟୋତି-ପ୍ରତିମାଟି ମାତ୍ର ପ୍ରାଣହୀନ,
ପ୍ରାଣ-ପାରାବାର-ସେ ତରଙ୍ଗ ଗୋଟି
ଚୁମ୍ବନ ଲାଗି ଏ ଜୀବନ-ସୈକତ
ଅନାଗତ କେତେ ଦିବସ ଧିଆନେ
ରୁଦ୍ର ତପସ୍ୟାରେ ଥିଲା କି ରତ ?
ପ୍ରାଣ-ମୁରଲୀର ପ୍ରତି ରନ୍ଧ୍ରେ ରନ୍ଧ୍ରେ
ଥିଲା ଯେ ଅବ୍ୟକ୍ତ ଯନ୍ତ୍ରଣା,
ଅଧରେ ଦେଲା ସେ ପରଶି
ଉଠିଲା ମରମ ଉଲ୍ଲସି,
ସ୍ୱର ଲହରୀରେ ଭାସି ତ ଉଠିଲା
ବିଶ୍ୱେ ବାଜିଗଲା ମୂର୍ଚ୍ଛନା !
ଉଷା ପାଟଳରେ ସେ କି ଅରୁଣିମା,
ତାରା ଦୀପ୍ତ ହାସେ କି ଶୋଭା ମହିମା !

ଫୁଲ କୁଞ୍ଜେ କୁଞ୍ଜେ ସେ କି ମଧୁଲୀଳା
ସେହି ଲୀଳା ଏ ମୋ ପ୍ରାଣେ,
ବିଶ୍ୱେ ବିଶ୍ୱେ ଫୁଟି ଉଠିଛି ପରା ତା'
ରୂପେ ରସେ ଗନ୍ଧେ ଗାନେ ।
କୋଟି ବିହଙ୍ଗର କଣ୍ଠେ ତା' କାକଳି,
ତା' ରଙ୍ଗେ ରଞ୍ଜିତ ଫୁଟେ ପଦ୍ମକଳି,
ଦକ୍ଷିଣା ପବନେ ବହେ ସେ ସୁରଭି
ଶୁଭ୍ର ମଲ୍ଲିକା-କାନନୁଁ,
ସେ ଅତର ଅବା ଜନ-ମନ ମୋହେ
କିଆ କପୂର ଚନ୍ଦନୁଁ ।

(୨୧)

ଅନା ନା ଅନା ନା ମନା କରିଥିଲୁଁ କେତେ,
ଯାତନା ପାଇଲୁ ସିନା ଅକାରଣେ ଏତେ !
ତା' ଚିନ୍ତାରେ ସ୍ୱର୍ଣ୍ଣକାନ୍ତି ତେଜିଲା ତୋ' ଦେହ,
ଦଣ୍ଡେ ତୋ' କଥା ତା' ମନେ ପଡ଼େ କି ସନ୍ଦେହ ।
ଫୁଲ ମାଳା ବୋଲି ଭଜିଲୁଟି ଅହି,
ଚନ୍ଦନ ଭ୍ରମେ ଦହନେ ହେଉଛୁଟି ଦହି,
ଜହର ଖାଇଲୁ ଜାଣି ଏବେ ମର୍ମେ ମର୍ମେ ଚେତେ,
ଭୁଲିଯା ଭୁଲିଯା ତାକୁ ସେତ ଅବିଶ୍ୱାସୀ ଏତେ ।
କେଡ଼େ ସେ ପାଷାଣ-ମନା,
କେବେ କଲା ବିବେଚନା !
ପ୍ରେମ ତାର ପ୍ରବଞ୍ଚନା,
କଥା ତା ମିଛ ରଚନା ।
ମନେ ପକାନା,
ମନେ ପକାନା (ଆଗୋ ସହି !)
କହନା ଆଉ କହନା
ବହନେ ଭୁଲିଯା ସହି ତା' କରଣି ଯେତେ ।

(୨୨)

ସଖି ! ଏଥିରେ କି ଦୋଷ ମୋର ?
ଜାଳା ଗୁଣ ବହି ଦୋଷୀ କି ଅନଳ,
ଲବଣ ଘେନି କି ଜଳଧିର ଜଳ,
ଭୃଙ୍ଗ ଯଦି ମଧୁଚୋର ।
କଜ୍ଜଳ କଲା କି ଆପଣା ଇଚ୍ଛାରେ,
ମୁଁ କି ପାଗଳିନୀ ମୋ ନିଜ ବିଚାରେ,
ଭୁଲିପାରିଲେ ବା ମନଚୋରକୁ ମୁଁ
ରହନ୍ତି ସୁଖେ ସଂସାରେ ।

ସେ ଦିନ ଆକାଶେ ବାଜିଥିଲା ବେଣୁ,
ଚକିତେ ଶୁଣିଲେ ନଦୀତୀର ରେଣୁ,
ତାଳେ ତାଳେ ବୀଚି ଉଠିଥିଲେ ନାଚି,
ହସି ଅନାଇଲେ ପ୍ରତୀଚୀ ପରାଚୀ,
ରବି, ବିନ୍ଦୁ ଇନ୍ଦୁ ଟିକା ଘେନି ବେନି
କୁମୁଦିନୀ ପାଶେ ହସିଲା ପଦ୍ମିନୀ,
ଚିତ୍ତେ ମୋ ଛୁଟିଲା ତଡ଼ିତ,
କୋଳେ ତାର ରୋଳେ କେଉଁ ସ୍ୱର୍ଗଲୋକ
ଲଭିଲି ମୁଁ ଚିରବାଞ୍ଛିତ।
ଭସାଇଦେଲି ମୁଁ କଳସୀ ନୀରେ,
ବସାଇଲି ଆଣି ହୃଦ-ବେଦୀରେ,
ପ୍ରତି ଅଙ୍ଗ ମମ ପିଇଲା ପୀୟୁଷ,
ଚେତନା ରାଇଜୁ ହଜିଲି,
ଧନ୍ୟ ହେଲା ଆହା! ଜୀବନଗୋଟାକ,
କି ପୁଣ୍ୟ ଆନନ୍ଦେ ମଜ୍ଜିଲି!
କହ ଦୂର୍ବାଦଳ ଘନ ଶ୍ୟାମଳ!
କାହିଁ ଛାର ଘାସ
ତା ପରଶେ ପ୍ରାସ
ସେ ତ କୋମଳରୁ ବଳି କୋମଳ,
ତହିଁର ମାଧୁରୀ କେ ପାରିବ କଳି?
ପରଶେ ପଥର ଯିବ ତା' ତରଳି
କ୍ଷଣେ ଭାଳି ଚିତ୍ତ ଚଞ୍ଚଳ।
ପ୍ରତି ଅଣୁ ତାକୁ ଚିହ୍ନେ କି,
ପ୍ରତି ରକ୍ତକଣା
ସାଥିରେ ସେ ଜଣା
ଭୁଲେଁ, ସେ ମୁଁ ବେନି ଭିନ୍ନେ କି!
ଦୁଇ ଦେହ! ଭ୍ରାନ୍ତି ସ୍ୱପନ,
ପ୍ରତି କୋଷେ ପରା ପ୍ରତିଭାତେ ରୂପ,
ବିଶ୍ୱମୟ ଦିଶେ ବଦନ।
ସେ କି ସୂର୍ଯ୍ୟେ ତେଜ, ପଦ୍ମେ
ଲାଜବୋଳା ମଧୁରିମା!
ସେ କି ସଞ୍ଜ ସକାଳର ସିନ୍ଦୁର-ସମ୍ପଦ,
ତାରାମଣି-ହାସ-ଗାରିମା!
ଜଳେ ଘନୀଭୂତ ନୀଳିମା!
ସୁଧା ଚନ୍ଦ୍ରମାରେ,
ବାସ ଫୁଲହାରେ,
ମରମରେ ପ୍ରୀତି-ପ୍ରତିମା!

(୨୩)

କେତେଦୂ ଅନାଇ ବସୁ ଅକାରଣେ ଆଖି,
ଏ ଅନ୍ଧାର ତାରା ଚନ୍ଦ୍ର ଏ ଶର୍ବରୀ ସାକ୍ଷୀ।
ଶତ ଶରତ ଗଲାଣି ବିଫଳି,
ବିଗତ ଶତ ବସନ୍ତ କୋକିଳ କାକଳି,
କୋଟି ପ୍ରାବୃଟ ଯାମିନୀ-ମେଘରେ ଦାମିନୀ
ଲୁଚିଲେ ଦେଖାଇ ଝଳି,
ବସିଛି ଏକା ନିରିମାଖୀ,
ନୟନର ଲୁହ ନୟନକୋଣରେ
ସଖି! ସେ ଗଲାଣି ଲାଖି।
ଅମୃତରୁ ସାର
ତା'ନାମ କଣ୍ଠର
ଭୂଷଣ କଲିଣି ଏଣିକି,
ହେଉ ଯା ଦୂଷଣ
ହେଉ ଯା କଷଣ
ତିଳେ ଭୀତି ନାହିଁ ତହିଁକି।
ଯେଝା ଇଚ୍ଛା ଯାହା କହନ୍ତୁ,
ମୁଖେ ମୋ' କେହି ନ ଚାହାନ୍ତୁ,
ଅଳିଆ କଞ୍ଚାଳେ ଫିଙ୍ଗିଦେଇ ମୋତେ
ଅବଜ୍ଞାରେ ପାଦେ ଦଳନ୍ତୁ।
ଅର୍ଦ୍ଧିତ ନିର୍ମାଖୀ ବୁଲିବି ସଂସାରେ
ଭିକାରୁଣୀ ବେଶେ ଦୁଆରେ ଦୁଆରେ,
ଭଙ୍ଗା ଝେଞ୍ଜରାରେ ଗାଇବି ତା' ନାମ
ପ୍ରାଣାରାମ ପ୍ରିୟ ଚିତ୍ତ ପ୍ରାଣାରାମ,
ସେତିକି ମୋ' ଧର୍ମ ଧାରଣା,
ଯୋଗ-ଯାଗ, ଜପ-ତପ, କାଷ୍ଠା-ନିଷ୍ଠା,
ପୂଜା-ପାଠ ମୋତେ ଅଜଣା।
ମୋ ଦେବତା ମୋ ସଙ୍ଗାଳି,
ତା ବିନା ଶୂନ୍ୟ ମୋ ଚଉଦ ଭୁବନ,
ତା ବିନା ମୁଁ ଦୀନ କଙ୍ଗାଳି।
କି ଲୋଡ଼ା ଅବା ମୋ ଚିତା ଚନ୍ଦନେ,
କି ଲୋଡ଼ା ମୋ ସ୍ତବ ସ୍ତୁତି ବନ୍ଦନେ,
ଫଦା-ଧନପରି ହୃଦରେ ସଞ୍ଚିଛି
ଧାୟୁଛି ଜାଗରେ ଶୟନେ।

ତା ବିନା ଚୌଦିଗ ଅନ୍ଧାର,
ମୋ' ଅନ୍ଧ ଲୋଚନ
ରବି ସେ ମୋହନ,
ତା' ବିନା ରିକ୍ତ ମୋ' ସଂସାର ।

(୨୪)

ମାନସ-ମନ୍ଦିରେ ପ୍ରେମ ସୁନ୍ଦର
ପ୍ରେମସୁନ୍ଦରେ ରାଜେ ରେ,
ମରମ-ତାରେ ବାଜେ ମଧୁରେ
ପ୍ରେମସୁନ୍ଦରେ ବାଜେ ରେ ।
ଦାମିନୀ ଝଲକେ ନୀରଦ ଶ୍ୟାମ,
ବସନ୍ତ ବନେ ପୁଷ୍ପ-ଦାମ,
ଲତା ପତରେ,
ଗିରି ସାଗରେ
ପ୍ରେମ ସୁନ୍ଦର ସାଜେ ରେ !
ବିଶ୍ୱ ବଂଶୀରେ ଅମିୟ ତାନ,
ରନ୍ଧ୍ରେ ରନ୍ଧ୍ରେ ତା' ନାମ ଗାନ,
ହୃଦୟ କୁଞ୍ଜେ
ଫୁଟେ ମଞ୍ଜରୀ
ପ୍ରେମସୁନ୍ଦରେ ନାଚେ ରେ ।

(୨୫)

ସଖି ! ସୁନ୍ଦର ବୋଲି କେ କହିବ,
ସୁନ୍ଦର କେ ଅଛି ତା ବିନା ଜଗତେ,
କାହିଁରେ ବା ମନ ମୋହିବ ?
ସେ ଥିଲାକୁ ଅବା ଫୁଲ ଦିଶେ ଚାରୁ,
ଶଶୀ ଶୋଭାମୟ ତା'ରି ସୁଷମାରୁ;
ମୁରଲୀ ତା' ମୁଖେ ବାଜଇ ମଧୁରେ,
କି ମଧୁ କରିବି କଳନା,
ରୂପ-ସାଗରେ ମୁଁ ବୁଡ଼ି ତ ମଲିଣି,
କି ରୂପ ଦେଖିବି କହନା ।
ଚାରିଦିଶେ ଛୁଟେ ଆଜି ରୂପର ନିର୍ଝରୀ,
ରୂପେ ହସେ ଶଶୀ ସୁମନ, ଫୁଟେ ତାରା ମଞ୍ଜରୀ ।
ଅନନ୍ତେ କାନ୍ତ ନୀଳିମା ଭାତି,
ଚିର ଉଲ୍ଲାସ ପୂର୍ଣ୍ଣିମା ରାତି,
ତଟିନୀ ଅଙ୍ଗେ
ରୂପ ରଙ୍ଗେ
ଖେଳେ ଅମିୟ ଲହରୀ ।

(୨୬)

ମନେ ହୁଏ ଅବା ଛାଡ଼ି ଘରଦ୍ୱାର
ଅତିକ୍ରମି ଯାନ୍ତି ଅଖିଳ ସଂସାର;
ପହଞ୍ଚନ୍ତି ଅବା ଏପରି ଲୋକରେ
ପାଆନ୍ତି ତାହାଙ୍କୁ ସମଗ୍ର ପ୍ରାଣରେ;
ମୁଁ ତାହାର ସେ ମୋହର,
ଯୁକ୍ତ ବେନି ପରସ୍ପର,
ଅଭିନ୍ନ ଅଛିନ୍ନ ଯୁଗ ଯୁଗାନ୍ତରେ ।
ବିଶ୍ୱେ ସେ ଦିନ ଜାଗନ୍ତା କି ଗୀତ,
ଆକାଶ୍ର ତାହାନ୍ତେ ତାରକା ଚକିତ,
ପ୍ରେମର ଜୟ
ମରଣର ଲୟ
ମହାକାଶ ତଳେ ଉଠନ୍ତା ସଙ୍ଗୀତ,
ଅଣୁ ପରମାଣୁ ହୁଅନ୍ତେ ନନ୍ଦିତ ।
ଦିଗନ୍ତେ ଦିଗନ୍ତେ ହୁଅନ୍ତା ପ୍ରଚାର
ଊର୍ମି ଛନ୍ଦେ ଛନ୍ଦେ ନାଚି ପାରାବାର
ବେଣୁ ବନେ ବାଜି ମଳୟ ଆକୁଳ
ଫୁଲେ ଫୁଲେ ଚୁମ୍ବି ହୁଅନ୍ତା ଉତ୍‌ଫୁଲ୍ଲ;
ସେ ଦିନ ଆସିବ ସତେ,
ଦିନ ଗଣି ଗଣି ଚାହିଁବି କେତେ ମୁଁ
କହ କାହା ଆଶା ପଥେ ?

(୨୭)

ସେତ ଆଦରର ଧନମଣି !
ମୋ' ପ୍ରାଣରତନ ହୃଦୟମୋହନ
ପୂର୍ଣ୍ଣ ପ୍ରେମସୁଧା ଖଣି ।
ପରମ ସୁନ୍ଦର ପ୍ରେମ-ପ୍ରଭାକର
ମୋ' ଆତ୍ମା-କମଳ-ବନ୍ଧୁ ସୁବିମଳ,
ମୋର ସର୍ବସାର ଶକତି ଆଧାର
ପୁଣ୍ୟମୟ ଗୁଣମଣି । ୧ ।
ପବନେ ଉଛୁଳେ ତା' ସ୍ୱର ଲହରୀ,
ଫୁଲେ ଫୁଲେ ଫୁଟେ ତା' ରୂପ ମାଧୁରୀ,
ବାତୁଳ କଲା କି ଅତୁଳ ଆନନ୍ଦେ
ମନ ମୋର ନେଲା ଜିଣି । ୨ ।
କି କହିବି ଆଉ ନ ଆସଇ କଥା,
ଚରାଚରେ ପରା ବାଜଇ ମୋ ବ୍ୟଥା,
ପୁଲକ ଆକୁଳେ ଭାସେ ନେତ୍ରଜଳେ
ଦିବାନିଶି ଗୁଣ ଗୁଣି । ୩ ।

ଅସାର ସଂସାରେ ନାହିଁ ମୋର ଆଶ,
ମାଗେଁ ଶୀତ ଛାୟା ଶ୍ରୀପଦ-ସାରସ,
ସେ ଏକା ମୋ ଧନ     ସେ ଏକା ମୋ ଧ୍ୟାନ
ଚିତ୍ତେ ପ୍ରେମ-ଚିନ୍ତାମଣି । ୪ ।

(୨୮)

କିଶୋରି ଗୋ !
କାହିଁକି କାନ୍ଦୁ ଏତେ କିଶୋର ଲାଗି ?
ବୀଣା ଯଦି ତାର ରାଗିଣୀ ତେଜନ୍ତା
ତୋତେ ସେ ପାରନ୍ତା ତ୍ୟାଗି ।
ସୁନ୍ଦରି ଗୋ !
ଫୁଲମାଳ ଫିଙ୍ଗି କହ କାହିଁ କେହି
ଅହିକି କରଇ ଗେଲ,
ହୀରକ ଭୁଲି କେ ଆଦରେ କରକା,
ସୁନା ପାସୋରି ରସେ ଭେଲ ?
ମାନିନି ଗୋ !
ବୃଥା ଅଭିମାନେ କିପାଁ ତୁ ମରୁ,
ଶିରୀ ଶୋଭାରାଶି ସାରୁ ଅଙ୍ଗରୁ
କିପାଁ ଝୁରୁ ଏତେ ଦିନଯାମିନୀ ଗୋ ?
ମୋହିନୀ ଗୋ ।
ତୋ' ବିନା ଜୀବନେ ଶ୍ୟାମର କି ପ୍ରୟୋଜନ,
ତୋ ବିନା ଶ୍ୟାମର କି ପ୍ରେମର ଆୟୋଜନ ?
ଚିର ତରୁଣୀ ତୋ ରୂପ-ରାଜୀବର
ମଧୁକର ସିନା ସେ ସୁଜନ ।

(୨୯)

ଭୁଲାନା ଭୁଲାନା ସହି ଭୁଲିଛି ମୁଁ ବହୁତ,
ଶ୍ୟାମ କପଟ-ପ୍ରେମିକ ତୁ ନିଜେ କହୁ ତ !
ଗଳାରେ ସେ ଦେଇ ଛୁରୀ
ବିଜେ କଲା ନିଜ ପୁରୀ,
ମଲି କି ବଞ୍ଚିଲି ଦିନେ ଆସି ନ ଖୋଜିଲା,
କମଳ ବିଳାସ ଅଳି—
ମଲ୍ଲୀମାଳେ ମଜ୍ଜିଲା ।
କେ ସହିବ ଏ ଲାଞ୍ଛଣ ସହୁ ଭଲା ସହୁ ତ,
ତା' ପରେ କହିବା କଥା ଜୀବେ ଆଗେ ରହୁ ତ !

—●—

## ନବ ନୀରଦ

କ୍ଷଣେ ଦେହ, କ୍ଷଣେ ଦେହରେ ଜୀବନ,
କ୍ଷଣେ ସ୍ନେହ, କ୍ଷଣେ ସ୍ନେହରେ ମୋହନ;
କେ କାହାର କେତେ କେ ପାରିବ କଳି,
କେତକୀ ଦଳରୁ କେ ପୋଛିବ ଝଳି ?
କର୍ପୂର ଦେହରୁ କେ ହରିବ ବାସ,
ଗୋଲାପ ଲପନୁଁ ଛଡ଼ାଇବ ହାସ ?

(୩୧)

ହୃଦେ ଜାଗେ ଉଲ୍ଲାସ,
ଉଲ୍ଲାସ ଆଜି ଉଲ୍ଲାସ ।
ବରଷା ଦେଲାଣି ମଧୁବାରି ଧାରା,
ବସନ୍ତ ଦେଲାଣି ଫୁଲ,
ଶରତ ଦେଲାଣି ମେଘର ଶୁଭ୍ରତା,
ଶିଶିର ହିମାନୀ ଠୁଳ ।
ଆଜି ଆକାଶୁ ଓହ୍ଲାଇ ଆସ
ଆଲୋକ ଅମିୟ ପାଶ,
ନୟନ ମନର ଲାବଣ୍ୟ ପସରା
ମୁଖେ ଫୁଟୁ ମୃଦୁ ହାସ ।
ଫୁଟ ଲୋ କମଳ-କଳି,
ଗାଅ ରେ କୋକିଳ ଅଳି,
ଶଶୀତାରା-ହାରେ ରଚ ଗଳାହାର,
ତରଙ୍ଗେ ଦୋଳାଅ ବାସ ।

(୩୨)

ସେ କି ସୃଷ୍ଟି ରାଇଜେ ସାର !
ଦଳା ଜଳଜରୁ କଳା ଜୀମୂତରୁ ବଳେ ସୁଷମାରେ
ଚିକ୍କଣ ଚିକୁର ଭାର,
ସୁନା ଝଳି ଘେନି ଲବଣୀ ହୁଅନ୍ତା
ଜନନ୍ତି ବା ରୂପ ତାର ।
ସତେ କେତକୀ କମଳ କାନ୍ତି
ଗୋଳି ହେଲେ ଅବା ଫୁଟି ଉଠନ୍ତା ସେ
ଅମୃତ ତନୁ ଭାତି ।
ମେଘ ଅଙ୍ଗେ ମିଶି ବିଜୁଳି ତରଙ୍ଗ
ଫୁଟନ୍ତା କି ଅରବିନ୍ଦ,
ତହିଁ ରସନ୍ତା କଳା ମିଳିନ୍ଦ ।

ଦେହ ସଉରଭ ଝୁରି
ଫୁଲେ ହୁଆ କସ୍ତୁରୀ
କୋଳି ଦେଇ ତାର ପାଖୁଡ଼ା ପେଡ଼ିରେ
ନେଇ କେ ଦିଅନ୍ତା ଭରି ।
ଚରଣ ଚୁମ୍ବଇଁ ଯହିଁ
ଚମ୍ପା ପଦ୍ମ ଫୁଟେ ତହିଁ,
ସୂର୍ଯ୍ୟ ତେଜରେ ଜ୍ୟୋତ୍ସ୍ନା ବିକାଶେ
ଚଞ୍ଚଳା ସ୍ଥିର ରହି ।
ଗଜଗାମିନୀର ଗଳା ମୋତିହାର—
ଶିରୀକି ତାରକା ଜୋଡ଼ଇ ।
(୩୩)
ସଖୀ, ତାହାରି ପାଇଁକି ଝୁରି ଝୁରି
ସୁଧା ଢଳ ଢଳ
ଅଙ୍ଗ ନିରିମଳ
କୋମଳ କାଳିକୁ ଦେଲୁ ସାରି ।
ବୁଲୁ ବନେ ବନେ ଉଦାସ ବଦନେ
ଛାଡ଼ି ତୋ' ରୁଚିର ପୁରୀ ।
ତା'ର ନେତ୍ର ଛଟକେ ଅଟକ ପଡ଼ିଲୁ,
ହଜାଇଦେଲୁ ତୋ' ଧୃତି,
ଆକଟ ନ ଘେନି ନିକଟେ ଗମିଲୁ,
ବଣାକଲୁ ଚିତ୍ତ-ବୃତ୍ତି ।
ଚପଳା ଲୀଳାରେ ଚିତ୍ତ ମଜାଇଲୁ,
ବଜର କଲୁଟି ସାର,
ମୃଣାଳିନୀ ମୋହେ କଲୁ କି ମୋହନ,
ଫଣିନୀକି ଗଳାହାର !
ସେତ ନ ଚାହିଁଲା ଫେରି ଥରେ,
ତୋତେ ଛଳି ଚାଲିଗଲା ହେଳେ,
ତା'ର କୋମଳ ଚରଣ-କମଳ ତଳେ କି
ତୋ'ର ଶିଳା-ମନ ଦେଲା ଚୂରି !
(୩୪)
ଏଇପଥେ ଗଲା ଚାଲି,
ମରମେ ବାଜିଲା ବାସନା-କସ୍ତୁରୀ
ଧୈର୍ଯ୍ୟ ମୋ ଦେଲା ଟାଳି ।
ଭୂଇଁରେ ଉଇଁଲା ସହସ୍ର ଶଶୀ,
ଶତ ତାରା ଅବା ପଡ଼ିଲେ ଖସି,
ନନ୍ଦନ ବନ ଫାଲଗୁନ ଶୋଭା
ଅବନୀରେ ଦେଲା ଢାଳି ।
ଦେଖି ତ ଆଶା ନ ପୂରିଲା,
ବେନି ନୟନ ମୋ' ଝୁରିଲା,
କ୍ଷଣେ ତାର ରୂପ ଦରଶନ ଆଶେ
ବୁଲିଲି ଦିବସ ଯାମିନୀ,
ବନେ ବନେ ନିତି ବଜାଇ ବାଂଶରୀ
ସୁମରି ସେ ରୂପ ଦାମିନୀ ।
ଯମୁନାର କୂଳେ କେତେ ନିଶି ଭୋଳେ
ଉଜାଗରେ ଦେଲି ସାରି,
କଦମ୍ବ କମଳେ ଗୁନ୍ଥି ବନମାଳା
ଫିଙ୍ଗି ମୁଁ ଅଇଲି ଚାଲି ।
(୩୫)
ଯଦୁମଣି ! ତୋ ନୟନମଣି ସେ କେ ରମଣୀ
ଚିତ୍ତ-କୁମୁଦ-ମୋଦିନୀ, ଇନ୍ଦୁସୁଧା-ଖଣି ?
କିଏ ସେ ନବ ନନ୍ଦିନୀ
ନବ ରବି ବିନୋଦିନୀ
କା'ରୂପ-କୁସୁମ-ଦାମେ ଅଳି ନୀଳମଣି ?
କିଏ ତୋ' ବଇଁଶୀ ସ୍ୱର ବିଭାସ ରାଗିଣୀ
ନୀରବ ନିଶାର ସ୍ୱପ୍ନ କୁଞ୍ଜ ବିହାରିଣୀ
ମଧୁ ଯଉବନ-ତରଙ୍ଗ-ରଙ୍ଗିଣୀ
ଚାରୁ ସରିତର ପ୍ରଣୟ-ତରଣୀ ?
(୩୬)
ପ୍ରେମରାଇଜର ରାଜା ପାଶେ
ପ୍ରେମରାଇଜର ରାଣୀ
ନିଖିଳ ବିଶ୍ୱେ ଉଚ୍ଚାରିଲା ଯେବେ
ମିଳନ ମଙ୍ଗଳ ବାଣୀ
ସେଦିନ ସାଗର ତରଙ୍ଗ ଉଙ୍ଗେ
ମିଶିମଲା ମୃଦୁ ସରିତ ଧାର,
ନବ ନୀରଦରେ ମିଶିଲା ଛନକେ
ପୁଲକେ ଚମକ ବିଜୁଳି ହାର !
ପ୍ରେମରାଇଜର ସୂର୍ଯ୍ୟ ପାଶେ
ପ୍ରେମରାଇଜର ଶଶୀ,
ନିଖିଳ ବିଶ୍ୱ ବାଜିଗଲା ଯେବେ ମିଳନ ମଙ୍ଗଳ ବଂଶୀ
ସେଦିନ ଗଗନେ ମଞ୍ଜୁଳାଲୋକେ
ଉଜ୍ଜ୍ୱଳ ଗ୍ରହ ତାରକାମାଳା,
ଲକ୍ଷ କୁସୁମ ବକ୍ଷ ସଉରଭେ
ପୂର୍ଣ୍ଣ ପ୍ରଣୟର ବରଣ ଡାଲା ।

(୩୭)

ଗଲାଣି ସେ ଦିନ ସଖା ଗଲାଣି, ଗଲାଣି—
ପ୍ରାଣେ ଅଛି ମାତ୍ର ସ୍ମୃତି ତାର,
ମାନସ-ସଦନୁଁ ତାହା ନେଇଛି ମେଲାଣି,
ଅଛି ମାତ୍ର ମରମରେ ଗାର !
ସେଦିନ ଆହା ସେଦିନ କି ଦିନ ସେ—
ମୋ ଜୀବନ କ୍ଷୁଦ୍ର ପରିସରେ,
ମୋ' ଜୀବନ ସମୀପ ବିସ୍ତାରେ
ସେଦିନ ଏ ଦରିଦ୍ରର କ୍ଷୁଦ୍ର କୋଠ ଘରେ
ସଞ୍ଚିତ ଅମୂଲ୍ୟ ନିଧି ଅପୂର୍ବ ରତନ ।
ସେଦିନ ଯେଦିନ ସଖା ଦୂର ଦିଗ୍‌ବଳୟେ
ଭାସି ଉଠିଥିଲା କ୍ଷୁଦ୍ର ନକ୍ଷତ୍ର ମୂରତି,
କ୍ଷୀଣ ଜ୍ୟୋତିଃକଣା ତାର ନୟନର ପ୍ରିୟ,
ପ୍ରଶାନ୍ତ ସାଗର ମମ ମାନସେ ସେଦିନ
ଉଠିଥିଲା କ୍ଷୁଦ୍ର ଏକ ଆକାଙ୍‌କ୍ଷା-ତରଙ୍ଗ
ଦୂରେ ସେହି ବହୁଦୂରେ ଦୂର ତମୋତଳେ
ଅର୍ଦ୍ଧାଲୋକେ ଦରସ୍ଫୁଟ ବଙ୍କିମ ଚନ୍ଦ୍ରମା
ଦ୍ୱିତୀୟାର ବାତାୟନ ବନ୍ଧେ ନିହି ଶିର
ମୋ ନୟନ ନିବଦ୍ଧ ସେ—
ଦୂରାଗତ ରଜତ ରଶ୍ମିରେ ।
ଅବା ପତ୍ର ଅନ୍ତରାଳେ ଅର୍ଦ୍ଧ ଉନ୍ମୀଳିତ
ମଲ୍ଲିକାମଞ୍ଜରୀ—
ଧୀର ସାନ୍ଧ୍ୟ ସମୀରଣେ ଭାସନ୍ତା ସୌରଭ ।
କ୍ଷୁଦ୍ର ମୋ କଳ୍ପନା, କେତେ
ଉଠିବ ସେ ଉଚ୍ଚେ,
ପ୍ରାଣେ ଆଣି ସଞ୍ଚିବ କିପରି
ସୁଦୂର ତାରକା ଜ୍ୟୋତିଃ ଅପୂର୍ବ ଗରିମା ?
କାହୁଁ ପାଇବି ମୁଁ ଦୀନ
ନୃପ-ନିକେତନ-ଶୋଭୀ ମାଣିକ୍ୟ ମଞ୍ଜୁଷା ?
ବ୍ୟଥିତ ଅନ୍ତର ମୋର
କରୁଥିଲା କି କରୁଣେ ନୀରବ ବିଳାପ,
ଅନ୍ତର ଅନ୍ତରତମେ ତାର ଆହ୍ୱାପୁରେ
ବାଜି ଉଠିଲା କି ମୃଦୁ ମଧୁର ଝଙ୍କାରେ
ପ୍ରତିଧ୍ୱନି !
ତଡ଼ିତେ ତଡ଼ିତ ଅବା କଲା ଆକର୍ଷଣ ।

(୩୮)

ସେ ଦିନ ସେ କଥା ସେ ପ୍ରେମବ୍ୟଥା
ସେ ମଧୁମିଳନ ମିଳିବ କି ?
(ସଖା ପୁଣି)
ସେ ରୂପ ସେ ରଙ୍ଗ ସେ ସୁଧାତରଙ୍ଗ
ସେ ଚାନ୍ଦିନୀ ଛଟା ଫୁଲ ବନେ
ଆଉ ଝଳିବ କି ?
ସେ କଳା ମେଘରେ ବିଜୁଳି ଚମକ,
ଯମୁନା କଲ୍ଲୋଳେ ଆକୁଳ ପୁଲକ,
ନୀପେ ଫୁଲ ସାଜ
କିଶୋରୀର ଲାଜ
ମୟୂରର ନାଚ ତୋ' ହୃଦେ ନାରାଚ,
ନୀଳ ନୟନେ ସେ ବିନ୍ଧିବ କି ?
ସେ ସଞ୍ଜ ଗୋଧୂଳି ଆକାଶର ଶୋଭା,
ସେ ପ୍ରୀତି-ବାତୁଳୀ ଶିରୀ ମନୋଲୋଭା,
ସେ କେଶ, ସେ ବେଶ, ସେ ହାସ, ସେ ଭାଷ,
ଗଳାରେ ସେ ଭୁଜ ଛନ୍ଦିବ କି ?
ସେ ବାଣୀ, ସେ ଠାଣି, ସେ ବାଙ୍କ ଚାହାଣୀ
ଆଉ ଥରେ ଫେରି ଚାହିଁବି କି,
ସେ କୋହ, ସେ ଲୁହ, ସେ ମାନ, ସେ ସ୍ନେହ
ଆଉ ଏ ଜୀବନେ ପାଇବ କି ?

(୩୯)

ସତ୍ୟ ସଖା !
ଦୂରବନ ଅନ୍ତରାଳେ ବାଜିଥିଲା ବିନୋଦିଆ ବୀଣା ।
ଚାହିଁଥିଲି ଚକିତେ ଉନ୍ମନେ,
ଅଶରୀର ସ୍ୱର ମାତ୍ର
ଭେଦିଥିଲା ମର୍ମ ରନ୍ଧ୍ରେ, ରନ୍ଧ୍ରେ,
ଆତ୍ମହରା ଏ ଅନ୍ତର,
ଦେହ-ପିଞ୍ଜରୀରୁ ଫିଟି ପଳାଇଥିଲା କି
ଚେତନା-ସାରିକା !
ସ୍ପନ୍ଦନେ ସ୍ପନ୍ଦନେ ହୃଦେ ଉଠିଥିଲା ଉର୍ମି !
ରୋମାଞ୍ଚ ସ୍ୱେଦିତ ଦେହେ ପ୍ରଫୁଲ୍ଲ ନୟନେ
ଚାହିଁଥିଲି ସ୍ୱରଧାରା ନୀରଝରା ସନ୍ଧାନରେ,
ବହିଥିଲା ପ୍ରାଣେ ପ୍ରେମ-ଫଲଗୁ
ଅଜ୍ଞାତେ ଗୋପନେ ହୃଦ-ବାଳିଶେଯ ତଳେ
ଗଣ୍ଠିଧନ ସରି ତାହା ଲୁଚାଇଥିଲିଟି
ଲୋକଲୋଚନରୁ ।

ସଂସାର ସେଦିନ ମୋ' ମାନସ ପଟୁଁ
ପୋଛି ଯାଇଥିଲା ପରା
ଅପୂର୍ବ କି କୁହୁକ ଇଙ୍ଗିତେ
ନ ଜାଣେ ମୁଁ ଥିଲି କିବା ସଶରୀରେ
ଧରଣୀର କ୍ଷୁଦ୍ର ପ୍ରାଣୀ ସମ
କ୍ଷୁଦ୍ର ନ୍ୟାୟାନ୍ୟାୟ କ୍ରୂର
ବେଷ୍ଟନୀର କଠିନ ଶୃଙ୍ଖଳେ।
ସେଦିନ ଉଦାସ ଯୁବା ଆତ୍ମହରା, ଲୀନ ଯାର
ଅନ୍ତର ଚେତନା—
ଚେତନାର ମହା ପାରାବାରେ,
ଶରୀର ବନ୍ଧନ ଯା'ର ଥିଲା ମାତ୍ର ନୟନର ଭ୍ରମ,
କାହିଁ ସେ ବିହରୁଥିଲା କଳ୍ପନାର କଳ୍ପଲୋକେ
ମୁକ୍ତିର ଆନନ୍ଦ ସ୍ୱାଦେ ଅଧୀର ଉନ୍ମନ।
ଚିର ଅଭ୍ୟୁଦୟେ, ଚିର ଜନମେ ମରଣେ
ସୀମାହୀନ ଅନନ୍ତ ଆକାଶେ
ବିହରୁଥିଲେ କି ବେନି ଲୋକୁଁ ଲୋକାନ୍ତରେ
ବେନିର ଉଦ୍ଦେଶେ!
ଅପୂର୍ବ ମିଳନେ କ୍ଷଣେ ମିଳିଲେ କି ବେନି
ପରସ୍ପର ଅଙ୍ଗେ
କେନ୍ଦ୍ରଚ୍ୟୁତ ଗ୍ରହଦ୍ୱୟ ମହା ବିସ୍ଫୋରଣେ!
କି ଉଦ୍ଭ୍ରାନ୍ତ କି ଉଦ୍ଦାମ କି ଅପୂର୍ବ
ରହସ୍ୟମଣ୍ଡିତ,
ବଜ୍ରବହ୍ନି ସମ୍ମିଳନ ସେ କି, ଶତସୂର୍ଯ୍ୟ ସନ୍ଦୀପିତ!
ଅବା ମହାର୍ଣ୍ଣବ ତୋଳି ବୀଚିମାଳା ବାହୁ
ଆଲିଙ୍ଗନ ଆଶେ ଆକୁଳିତ ପୂର୍ଣ୍ଣ କଳାଙ୍କରେ!
କି ବିଶାଳ ଉନ୍ମାଦନା ପ୍ରାଣେ ପ୍ରାଣେ!

(୪୦)

ସାଧିବଟି ବାଦ ଜଗତର ବାଧା
(ତୋର) ଶରଧା ଯିବଟି ସରି,
ସୁନ୍ଦରେ ସୁନ୍ଦରେ ମୋହନ ମିଳନ
ସଂସାରେ ସ୍ୱପନ ପରି।
କଳା କୁବଳୟେ କନକ କିରଣ!
ମଉଳି ଯିବଟି ଝଳି,
ଝଟକ ହାଟକ କେତକୀର କୋଳେ
ପଶିବକି ନୀଳ ଅଳି!
ଶରଦର ଶ୍ୟାମେ ବସନ୍ତ କୁସୁମ
ସହ ପାରିବେଟି ଅରି?
ସାଧିବଟି ବାଦ ଜଗତର ବାଧା
(ତୋର) ଶରଧା ଯିବଟି ଭାଙ୍ଗି,
ବେଳହୁଁ ଭୁଲିଯା ଦଳା ହରିତାଳ-
ଢଳା ଅଙ୍ଗ ଚଳାପାଙ୍ଗୀ।
ଚାରୁ ଚାମୀକର-ବରବରନାକୁ
କଜ୍ଜଳେ କି ଦେବୁ ବୋଳି,
ଚାନ୍ଦିନୀ ନିଶାର ରଜତର ଧାର
କଳା ମେଘେ ଦେବୁ ଗୋଳି?
ନଳ ଶ୍ଲେଷଗିର ନିଦାଘ ନିଶ୍ୱାସେ
ଶୁଖିଯିବ ଶିରୀଷାଙ୍ଗୀ!

(୪୧)

ଜଗତର ବାଧା!
କ୍ଷୀଣ ବାଲିବନ୍ଧ ମାତ୍ର
ଖରସ୍ରୋତା ଜାହ୍ନବୀ ମୁହାଣେ।
ଅନନ୍ତ ସାଗର ଘୋଷ ପଶେ ଯହିଁ
ଶ୍ରବଣ ବିଦାରି,
କମ୍ପିଉଠେ ଦିଗଦିଗନ୍ତର ଗଭୀର ଗର୍ଜ୍ଜନେ,
ତହିଁ ଜଗତର ବାଧା!
କ୍ଷୁଦ୍ର ଅତି ତୁଚ୍ଛ ଅତି ଜଗତର ବାଧା।
ଅନଳ ଉଲ୍ଲାସ ଯହିଁ ଆଗ୍ନେୟ ଶଇଳେ,
ଅନନ୍ତ ଆକାଶ କୋଳେ ଉଲ୍‌କାର ବିହାର,
ଉର୍ମିଳା ନର୍ତ୍ତନେ ଉଠେ ବାଡ଼ବର ଶିଖା,
ତହିଁ ଜଗତର ବାଧା!
ଘନେ ଦାମିନୀସ୍ଫୁରଣେ,
କମ୍ର କିଶଳୟ କୋଳେ ମଲ୍ଲିକା ବଦନେ,
ଚାନ୍ଦିନୀ ଚୁମ୍ବନେ ଜାଗେ ଜଗତର ବାଧା!
କନକ ମଞ୍ଜରୀ ଶସ୍ୟେସମୀର ଆଶ୍ଳେଷେ,
ତହିଁ ଜଗତର ବାଧା!

(୪୨)

ଜଗତ ଜଞ୍ଜାଳଯାକ ଆରେ ବନ୍ଧୁ,
ଦେ ଫିଙ୍ଗି ଦୂରେ, ଦୂରେ,
ବାଜୁ ରେ ବାଜୁ ରେ, ମଧୁରେ ମଧୁରେ
ମୁରଲୀ ମରମ ପୁରେ।
ହସୁରେ ହସୁରେ ଫୁଲଯାକ ଫୁଟି,
ରସୁରେ ଅଳି ମଧୁପାନ ଲୁଟି,
ଜଗତର ଜ୍ୱାଳା ମନୁ ଯାଉ ତୁଟି,
ଜଗତଟାକୁ ତୁ ଦେ ଫିଙ୍ଗି ଦୂରେ!

ଜଗତଟା ସେତ ଅତି ପୁରୁଣା,
ଅତି ଅରସିକ ଅତି ନିଉଛୁଣା,
ଜଗତ ବାଧାରେ ନ କରଟି ଊଣା
ଶରଧା ତୋହର ବନ୍ଧୁ ରେ !
ଜଗତଟାକୁ ଦେ ଫିଙ୍ଗି ଦୂରେ,
ଦୂରେ ! ଦୂରେ ! ଦୂରେ !

(୪୩)

ଜଗତ ଫିଙ୍ଗିବି କାହିଁ ?
କାହିଁ ବଳ ମୋ ?
ଫିଙ୍ଗି ଦେଇଥିଲି ମାତ୍ର ଦେହ ମନ ଦୁଇ,
ତା ଥିଲା ମୋ' ସାଧେ
ନିଜକୁ ପାସୋରି ପ୍ରିୟା ପାଦପଦ୍ମତଳେ !
ଆତ୍ମା ଦେବା ନ ଥିଲାଟି ଲୋଡ଼ା,
ଆଗହୁଁ ସେ ମିଶିଥିଲା ତାର ଆତ୍ମାସଙ୍ଗେ
ଜନ୍ମସୀମାରେଖାଠାରୁ ବହୁଦୂରେ
ବିସ୍ମୃତି ଅତଳେ ।
କେବେ ଭିନ୍ନେ ବହିଥିଲା ଧାରା ବେନି ଜୀବନର
କେ ଜାଣେ, କେ ଜାଣେ ?
ବିଚ୍ଛେଦର ସେହି ବିଷାଦ ମୁହୂର୍ତ୍ତେ
ମେଲାଣି ମାଗନ୍ତେ ଯହିଁ ପଡ଼ିଥିଲା ଭାଙ୍ଗି
ଆତ୍ମା ଦୁଇ, କେ ଜାଣେ ସେ କେଉଁ ରାଇଜରେ
ହୋଇଥିଲୁଁ ଛିନ୍ନ କ୍ରୁର କାଳ-କରାଳ ନିୟମେ,
ଚନ୍ଦ୍ରଅଗ୍ନୁ ଚନ୍ଦ୍ରିମା ଶୀତଳ !
ତଥାପି ମଙ୍ଗଳମୟ ସେ ବିଧାନ
ଉଜଳିଲା ଆଜି ଜଡ଼ 'ପିଣ୍ଡ
ଅମୃତ ଆଲୋକେ ମମ,
ମର୍ମ୍ମ ବାଇଣାରେ ଯୋଖିଦେଲା ଅମୃତ ରାଗିଣୀ,
କୁସୁମ ଉରସେ ଦେଲା ସିଞ୍ଚ୍ ନୀହାର କଣିକା
ସୁବାସେ ଦିଗନ୍ତ ମୋହି
ଚନ୍ଦନ ଘର୍ଷଣେ ଶିଳାପଟେ !

(୪୪)

ଜାଣୁ ଏତେ କବିତା ଦୁ
ଜାଣୁ ଏତେ ରଙ୍ଗ,
କହ ପ୍ରେମିକ ନ ଲଭେ କିପାଁ ପ୍ରେୟସୀର ସଙ୍ଗ ?
ଇନ୍ଦୁଲାଗି ସଞ୍ଚଳିତ ସାଗର ଲହରୀ,
ଅକାରଣେ ରାହୁ ମୁଖେ ପଡ଼େ ସୁଧା ଝରି ;
ଦୂର ମେଘଲାଗି ନାଚେ ମୟୂରର ହିଆ,
ଅଳିର ଚୁମ୍ବନ ବିନା କୁଞ୍ଚମରେ ଝିଆ ;
ଜଳଦ ଆଦରେ ମାତ୍ର ଚାତକ ବେଦନା,
କଳାନାଗ ଶୁଣେ କେତକୀର କଳର୍ଥନା !
ମଙ୍ଗଳ ବିଧାନ ଏ କି କହିବାରେ ଭୁଲେ
କର୍କଶ କଣ୍ଟକ ଯହିଁ ରାଜେ ଫୁଲେ ଫୁଲେ !
ଏତେ ପ୍ରେମ, ଏତେ ଆଶା,
ତହିଁ ନିତି ଏତେ ଭଙ୍ଗ !

(୪୫)

କିପାଁ ବାଜୁ ଗୋ ମୁରଲୀ
ମର୍ମ୍ମବେଦନା ବଢ଼ାଇ ?
ଅଥୟ ମନ ମୋହର,
ଆଣନ୍ତି ସ୍ୱର ଛଡ଼ାଇ !
ହୁଅନ୍ତି ମୁରଲୀ ଖଣ୍ଡ,
ଲଭନ୍ତି ଅଧର ଦଣ୍ଡ,
କିପାଁ ମାନବଜନମ ଯାତନା ପାଉଛି
ବଂଶକୁଳେ ଜନ୍ମ ନ ପାଇ ?
ଅନ୍ତରେ ମୋହର ଯେତେ ଯେତେ କଥା
ଯେତେ ସକରୁଣଖେଦ ଲାଜ ବଥା
ସ୍ୱର-ତରଙ୍ଗରେ ଝରି ଝରି ପଡ଼ି
ଦିଅନ୍ତା ବିଶ୍ୱ ବୁଡ଼ାଇ !

(୪୬)

ବାଜ ରେ ରସରାଜ, ବାଜ ରେ ବଂଶୀ ବାଜ !
ବ୍ରଜ କୁଞ୍ଜେ କୁଞ୍ଜେ ବାଜ ରେ ବଂଶୀ ବାଜ !
ସେ ମୋହନ ତାନେ
କାନନ ବିତାନେ
ପ୍ରେମଲତିକା ପ୍ରାଣେ
ଫୁଟେ ରେ ଫୁଲ ଢଳି,
ଗାଉ କୋମଳେ ଅଳି,
ମଞ୍ଜୁଳ ଦଳେ ଢଳି
ଉଠୁରେ ଆନନ୍ଦ ଝଳି
ନନ୍ଦନ ଶୋଭା ସାଜ ।

ସେ ମୋହନ ସ୍ୱନେ
ଯମୁନା ଜୀବନେ
ପ୍ରୀତିକମ୍ପିତ ପଲ୍ଲବନେ ଛନ ଛନେ
ନାଚ ରେ ଭଙ୍ଗେ ଭଙ୍ଗେ
ନୀଳ ରତନ ରଙ୍ଗେ,
ନିର୍ମ୍ମଳ ଚଞ୍ଚଳ ବୀଚି
ନାଚ ରେ ନାଚ ନାଚ।
ସେ ମୋହନ ଛନ୍ଦେ କିଶୋରୀ ଗଣ୍ଡେ
ଫୁଟି ଉଠୁ ରେ ମଧୁରିମା ପ୍ରେମାନନ୍ଦେ
ଲାଜ ଲଳିତ ଲାଲି
ଲାଜ ପାଟଳ ସାଜ
ଲାଜର ଗୋଲାପ ଫୁଲ
ଲାଜରେ ଲାଜ ଲାଜ!

(୪୭)

କିଏ ତୁ ଗାଉ ରେ ଗୀତ ଘନକାଳିଆ!
କିପାଁ ବଜାଉ ବଇଁଶୀ ବନମାଳିଆ!
ଯା'ରେ ଚାଲି ଯା'ରେ ଚାଲି,
ଚିତ୍ତ ତା' ପଢାନା ଜାଳି,
କାନ୍ଦେ ସେ କମଳମୁହାଁ
ତା' ଶ୍ୟାମସୁନ୍ଦରେ ଭାଳି!
ଦେ'ନା ଦୁଃଖ ଯା'ରେ ଚାଲି,
ଯା'ରେ ଚାଲି ଯାଆ,
ଯା'ରେ ଚାଲି, ଯା'ରେ ଚାଲି
ଯା'ରେ ଯା'ତୁ ଢଙ୍ଗାଳିଆ!

(୪୮)

ସହି! ନ କର ନ କର ମନା
ସେତ ମୋ' ଶ୍ୟାମଧନ,
ତା'ବିନା ବଜାଇବ କେ ମୁରଲୀ
ଏଡ଼େ ମୋହନ!
ତାହାରି ଆଶାରେ ସହି,
ଦେହଭାର ଅଛି ବହି,
ବରଷ ବରଷ ମୋର
ତା'ଲାଗି ଦୁଃଖ ଘୋର,
ତାହାରି ସ୍ମୃତିରେ ମୋର
ବଞ୍ଚୁଛି ଜୀବନ,
ସେତ ମୋ' ଦିବସ ଧ୍ୟାନ
ନିଶାର ସ୍ୱପନ।

(୪୯)

ପୂର୍ଣ୍ଣ ଆଜି ସୁନ୍ଦର ହେ
ପୂର୍ଣ୍ଣ ଆଜି ମିଳନ,
କଣ୍ଠ ଲଭିଲା ହଜିଲା ସ୍ୱର
ରକ୍ତେ ଜାଗିଲା ସ୍ପନ୍ଦନ!
ଯାହା ଯହିଁ ଥିଲା ଦୀନ
ନିମୀଳିତ ଅତି ହୀନ,
ପରଶ-ରତନେ ଲୁହା ଆଜି ସୁନା
ପାବନ ଚିତ୍ତ ପାବନ।
ଅନ୍ଧ ନୟନେ ଦର୍ଶନ ଆଜି
ଅବଶ ଅଙ୍ଗେ ଚେତନ,
ଶୈଳକନ୍ଦରୁ ନିର୍ଝରିଣୀର
ମୁକ୍ତ ଆଜି ବନ୍ଧନ।

(୫୦)

ନୀଳ ନୀରଧିରେ
ସୁବର୍ଣ୍ଣ ତରଣୀ
ରୂପ ପସରାର ଭାସିଲା,
ନନ୍ଦନ ବନୁଁ
ମନ୍ଦାରମାଳା
ପ୍ରୀତି ଉପବନେ ଖସିଲା।
ଅନ୍ତର ତୋର
ଅୟସ ଯନ୍ତରେ
ଲଳିତ ରାଗିଣୀ ବାଜିଲା,
ହୃଦ-ମରୁବାଲି
ଅନ୍ତର ଢାଟାରେ
ବସନ୍ତର ଶିରୀ ସାଜିଲା
ଆଖିରେ ଖେଳିଲା
ବିଧୁର ସୁଧାଂଶୁ
ରକତେ ବିଜୁଳି ସଞ୍ଚରି,
ମରମେ ଜାଗିଲା
ଅମିୟ ସଙ୍ଗୀତ,
ଫୁଟିଲା ପ୍ରଣୟମଞ୍ଜରୀ
ଚିର ପିପାସିତ
ହିଆ ମୋର ଆଜି
ଲଭିଲା ଅମୃତ ଆସ୍ୱାଦ,
ଚିର ବନ୍ଦି ଆଜି
କାରାଗାର କୋଣୁ
ଲଭିଲା ମୁକ୍ତିର ଆହ୍ଲାଦ।

(୫୧)

ପ୍ରୀତି-ବାତୁଳ କି ସତେ ଶ୍ୟାମ ଏ ପ୍ରେମମଞ୍ଜୁଳାର,
ମୃଦୁଳା ଶିରୀଷ ତୁଳା ଲବୁଣୀ ପିତୁଳାର !
ତୁମ ଲାଗି ପାଗଳିନୀ
କୋମଳା କୁଳକାମିନୀ,
କଲାଣି ଦିନ ଯାମିନୀ
ତୁମ ନାମ ଗଳାହାର
ତୁମେ କି ତା' ଲାଗି ସତ
ଭାବିତ ଦିନେ କହ ତ,
ସାରିଛି ସେ ତା' ମହତ,
ଏବେ କାନ୍ଦଣା ଯେ ସାର;
ଗଞ୍ଜଣା ହେଲାଣି ଭାର,
ସାର ମାତ୍ର ଲୁହଧାର ।
ପ୍ରୀତି-ବାତୁଳ କି ନୀଳମଣି ଏ ହେମପ୍ରତିମାର
ଚମ୍ପା ଚହଟ ସୁଷମା ଏ ରୂପ ପୂର୍ଣ୍ଣିମାର !
ନିଅ, ନିଅ ତେବେ ବନ୍ଧୁ,
କୋଳେ ଏ ଅମିୟ ଇନ୍ଦୁ,
ସିନ୍ଧୁ ଉର୍ମି ଛନ୍ଦେ ନାଚୁ
କୁନ୍ଦ ଶୋଭା ଜୋଛନାର ।
ଦେଖ ଦେଖ ଦେଖ ଦୁହେଁ
ଏକ, ଏକ ଦୁଇ ନୁହେ,
ଏକ ଆତ୍ମା ଦୁଇ ଦେହେ
ଚିର ଏ ତାର ସେ ତାର,
ରବିରେ ରଶ୍ମିହାର ।

(୫୨)

ହୃଦେ ଥିଲା ମମ
ଅପୂର୍ଣ୍ଣ ବାସନା-
ରାଇଙ୍କରେ ସିଂହାସନ,
ଶକ୍ତିମୟୀ ନିଜେ
ବିଜେ ଗଉରବେ
ଚରାଚର ବିନୋଦନ ।
ଚନ୍ଦନ ତରୁ
ମଳୟ ପରଶେ
ଗନ୍ଧେ ମୋହିଲା ମାନସ,
ପ୍ରେମ-ମୃଣାଳିନୀ
ବୃନ୍ତେ ଫୁଟିଲା
ସୁଧା ମକରନ୍ଦ ସାହସ ।
ହୃଦକୁମୁଦ ମୋ'
କୌମୁଦୀ ଆଶାରେ
ସାରା ନିଶି ଥିଲା ଜାଗି,
ମନମିଳିନ୍ଦ ମୋ'
କାନ୍ଦୁଥିଲା ନିତି
ମଧୁର ମାଧବୀ ଲାଗି ।
ଘନ ବନ କୁଞ୍ଜେ
ସେ ବଂଶବାଥିରେ
ଗୋପନ ମୁରଲୀ ପ୍ରାଣ
ଦକ୍ଷିଣା ପବନ
ଚୁମ୍ବନ ମୃଦୁ
କଲା ମଧୁସ୍ୱନ ଦାନ ।
ଡାଳେ ଡାଳେ ଥିଲା
ଗହଳ ପଲ୍ଲବ,
ଲୋଡୁଥିଲେ ଫୁଲ ଭୂଷା,
ଅନ୍ଧକାର କୋଳେ
ତରୁଣ ତପନ
ରଙ୍ଗେ ଆଗିଙ୍ଗିଲା ଉଷା ।
ହୃଦ-ଚିତ୍ରପଟ
ଝୁରୁଥିଲା ପରା
ରଞ୍ଜନ କର ତୂଳି,
ନବ ବାରିଦର
ଆଶାରେ ଥିଲା କି
ନିଦାଘେ ଧରା ମଉଳି ?

(୫୩)

କି ଲାଗି ହେ ନବଘନ
ରସିଲ ରାଇମଣିରେ,
ଭୁବନମୋହନ ରୂପେ
ଜଗତ ପାର ଜିଣି ରେ ।
ମେଘରେ ମୟୂର ଆଶ,
କୋଳେ ତା ବିଦ୍ୟୁବିକାସ,
ଭୁଲାଇ ପାରିବ ନିକି
କେକୀ ତା' ନାଚଠାଣିରେ ?
କାଇଁଚ ଖୋଜିବ ସୁନା
ମଣି ପବି ଯହିଁ ଚୂନା,
ଉଚ୍ଚରେ ଆଦରି ଉଣା
ମରିବ ଜାଣି ଜାଣି ରେ ।

(୫୪)

ସେ ତ ଜୀବନର ସଞ୍ଜୀବନୀ,
କି ଲାଗି ଅଯସ
ରସେ ପରଶରେ
ଚିତ୍ତେ କି ଚିହ୍ନିବ ଧନି !
ସେ ତ ଜୀବନେ ଜୀବନ ମନ୍ତ୍ର,
ସ୍ୱର ତରଙ୍ଗର
ବିରତ ମୂର୍ଚ୍ଛନା
ପାସୋରିପାରେ କି ଯନ୍ତ୍ର ?
ସେ ତ ଜୀବନେ ଜୀବନ ପାଶ,
ଆଖିରେ ଆଲୋକ
ଅନ୍ତରେ ପୁଲକ
ତାହାରି ଅମିୟ ହାସ ।
ତା' ପ୍ରେମ-କୁସୁମ କୋଳେ
ଜନମ ଜନମ
କାମନା ବାସନା
ଆକୁଳ ଆନନ୍ଦେ ଦୋଳେ ।

(୫୫)

ଆଜି ଆଣ ହେ ମାଳତୀ କୁଞ୍ଜ ଲତିକା
ସଜ ସୁମନର ମାଳି,
ଅର୍ଘ୍ୟ ଚନ୍ଦନେ ସାଜିବା ତାହାରି
ପ୍ରଣୟର ହେମ ଥାଳି ।
ହେମନ୍ତ ଦେଉ ତା ଧାନର ଗୁଚ୍ଛ,
ବରଷା ତା ଦୂର୍ବାଦଳ,
ବସନ୍ତ ଦେଉ ତା ଫୁଟନ୍ତା କମଳ,
ଶରତ ତା ଶୁଭ୍ର ଜଳ ।
ତାରା ଦେଉ ତାର କନକ ହାସ,
ମଳୟ ତା ମଲ୍ଲୀଗନ୍ଧ,
ମେଘ ଦେଉ ତାର କଜ୍ଜଳ ଶୋଭା,
ତଟିନୀ ତା ନୀର ଛନ୍ଦ ।
ଇନ୍ଦୁଦେଉ ତା ଜ୍ୟୋତ୍ସ୍ନା-ପୀୟୁଷ,
ତପନ କିରଣମାଳା,
ନୀହାର ଆଣୁ ତା ମୋତି ଜ୍ୟୋତି,
ବହ୍ନି ବିରହ ଜ୍ୱାଳା ।
ବିଜୁଳି ଖେଳାଉ ତା' ଲୀଳା ଚମକ,
ବଜ୍ର ଦେଉ ତା ଡ଼ାକ,
ସୁଷମା-ରାଇଜ-ରାଣୀକୁ ରସାଇ
ଫୁଟିଉଠ ଫୁଲଯାକ ।
ସାଗର-ତରଙ୍ଗ ଫେନପୁଞ୍ଜେ ତା'ର
ଚରଣ ପଖାଳି ଯାଅ,
ବନ କୁଞ୍ଜେ କୁଞ୍ଜେ ତା'ର ନାମେ ସଙ୍ଗୀତ
ମଧୁରେ ବିହଙ୍ଗେ ଗାଅ ।

---

## ନୀରପାନ

ଆତ୍ମା ଚିହ୍ନିଲା ଆତ୍ମାର ସାଥୀ,
ନ ଫୁଟିଲା ମୁଖେ କଥା,
ସରିତ ଚିହ୍ନିଲା ସାଗର ତରଙ୍ଗ,
ପାଦପ ଚିହ୍ନିଲା ଲତା ।
ଦୀପ ଆଲିଙ୍ଗିଲା ଅନଳ ଶିଖାଟି,
ହେମ ଆଦରିଲା ହୀରା,
ରକ୍ତେ ଛୁଟିଲା ଉଷ୍ଣ ଆନନ୍ଦ
ଚମକାଇ ଶିରା ଶିରା ।

(୫୭)

ନ ଥାନ୍ତା ରେ ଯଦି
ଘନ ଅନ୍ଧକାର
କେ ବୁଝନ୍ତା
ଦିନମଣି ସନମାନ ?
ନଥାନ୍ତା ରେ ଯଦି
ନିଦାଘର ଖରା
ଧରା କି ରସନ୍ତା
ବାରି ଝରା ତାନ ?
ବିରହ ଦହନେ
ନ ତାତିଲେ ତନୁ
ମିଳନ ମାଧୁରୀ
ପାସୋରନ୍ତା ମନୁ,
ବଜର ନ ଥିଲେ
ବରଷନ୍ତା ଘନୁ
ସୁଧା ରସଧାରା
କେ କରନ୍ତା ପାନ ?

ନ ବହନ୍ତା ଯଦି
ନିରାଶାର ଲୁହ
ନ ଫୁଟନ୍ତା ଛାତି
ନ ଉଠନ୍ତା କୋହ,
ନ ଥିଲେଟି ବିଷ
କୁଳିଶ ବେଦନା
କୋମଳ ସାନ୍ତ୍ୱନା
ଚାହାନ୍ତା କି ପ୍ରାଣ ?
ପାପୀର ଅନ୍ତରେ
ପୁଣ୍ୟର ଅମୃତ
ନ ଥାନ୍ତା ରେ ସତ୍ୟ
ନ ଥିଲେ ଅନୃତ,
ନ ଥାନ୍ତା ରେ ଧର୍ମ୍ମ
ନ ଥାନ୍ତା ରେ କର୍ମ୍ମ.
ଭକ୍ତ ନ ଥିଲେ କି
ଥାନ୍ତେ ଭଗବାନ ?

(୫୮)

ଶାନ୍ତ ସୁନ୍ଦର ଛନ୍ଦେ
ନନ୍ଦେ, ନନ୍ଦେ, ନନ୍ଦେ
ନିଖିଳ ବିଶ୍ୱ ନିବିଡ଼ ଆନନ୍ଦେ
ଚରଣ ବନ୍ଦେ ବନ୍ଦେ।
ଶତ ଚିତ୍ତ ତରଙ୍ଗିତ ସଙ୍ଗୀତ
ଶତ ଶୁଭ୍ର ସୁମନ ସୁବାସିତ
ଶତ ସରିତ ନୀର ଅମୃତ
ବରଷେ ଶ୍ରୀପଦ ଅରବିନ୍ଦେ।
କୋଟି କନକ ତାରାମାଳୀ
କାନ୍ତି କଳାକର ଭାସ୍କର ଥାଳୀ
ପୂଜା ଅଞ୍ଜଳି ପୟରେ ଢାଳି
ସ୍ତବ୍ଧ ହୃଦ ନିଷ୍ପନ୍ଦେ।
କାନନ ଗହନ ଗିରିଶ୍ରେଣୀ
ନୀଳ ନୀରଧି ତରଙ୍ଗ ବେଣୀ
ନୀଳ ନୀରଦ ନୀଳ ସମ୍ପଦ
ମୁଗଧ ପରମ ଆନନ୍ଦେ।

(୫୯)

ଆଜି ରାଜେ ନବ ସାଜେ ସୁନ୍ଦର ସୁଧା ଆନନ୍ଦେ।
ଉଜ୍ଜ୍ୱଳ ଆଜି ସୂର୍ଯ୍ୟ ଚନ୍ଦ୍ର ତାରା,
ନିର୍ମ୍ମଳ ଆଜି ପୁଲକିତ ଧରା,
ଚଞ୍ଚଳ ଆଜି ନଦୀ ବନରାଜି
ଫୁଲ୍ଲ କୁସୁମ ସଉରରେ ସାଜି,
ବନ୍ଦେ କାହାର ପଦାରବିନ୍ଦେ ସୁଧା ଆନନ୍ଦେ।
ତୋଳେ କୋକିଳ ପଞ୍ଚମେ ତାନ,
ଦୋଳେ ସଧୀରେ ଲତା ବିତାନ,
ଗୁଞ୍ଜରେ ଅଳି ଫୁଲେ ଫୁଲେ ଢଳି,
ସୁଧାକର ଧାରା ଢାଳେ କରମାଳୀ,
ସଞ୍ଚରେ ସମୀର ମନ୍ଦେ ମନ୍ଦେ ସୁଧା ଆନନ୍ଦେ।

(୬୦)

ଆହା ଶୁଣିଲି ସତେ କି ଗାନ!
ସ୍ୱରଟି ରହିଲା ମରମରେ ଜାଗି,
ଭୁଲିଗଲି କଥାମାନ।
କେଉଁ ଦୂର ବନେ ବାଜିଲା ବୀଣା,
କାନେ ନ ପଶୁଣୁ ମରମଭିଣା,
କେତେ ଯେ ବିଷାଦ
କେତେ ଅବସାଦ
ଶୁଣି ସେ ଲଳିତ ତାନ।
ମୋ ଜୀବନକୁଞ୍ଜେ ରାଗିଣୀ ତାର,
ଗଗନେ ପବନେ ଶୁଣେ ସେ ସ୍ୱର,
ଭ୍ରମର ଗୁଞ୍ଜନେ
କୋକିଳ ପଞ୍ଚମେ
ତା' ସୁକଣ୍ଠ କରେ ଜ୍ଞାନ।
ଜାଗ୍ରତେ ସ୍ୱପନେ ଜରମ ଧ୍ୟାନେ
ଶୁଣେ କି ତା' ସ୍ୱର ବାଜୁଛି କାନେ,
ନୀର ଝର ଝରେ
ପତର ମର୍ମରେ
ଚମକି ଉଠେ ମୋ' ପ୍ରାଣ।

(୬୧)

ଲଳନା ଲଲାମ ଲତା ଲାଜକୁଳା
ତୁଳନା ତୋହର ନାହିଁ,
ଭାଗ୍ୟଧରା ଧରାଶିରୀ ସାର ସ୍ନେହୀ
ସାରସ ଘୁଡିରା କାହିଁ।

ଯା' ପ୍ରୀତି-ତୃଷିତ ସାରା ଚରାଚର
ତୁ ପୁଣି ତାହାର ମଣି ଲୋଚନର,
ନାମେ ଝୁରେ ତୋରତା' ମଧୁ ମୁରଲୀ
ତାର, ଦିନ ଯାଏ ମୁଖେ ଚାହିଁ।
ଯା' ରୂପ ମୋହନ ବିଶ୍ୱ-ବିମୋହନ
ଯା' ଚରଣରେଣୁ ନିଖିଳ ବନ୍ଧନ
ତୁ ତା' ପ୍ରାଣକାନ୍ତା କର୍ପୂର ଚନ୍ଦନ
ତୋର, ହୃଦେ ବନ୍ଦୀ ପ୍ରାଣସାଇଁ।
ଜଗଜ୍ଜନ ମନୋରଞ୍ଜନ ଯା' ନାମ
ସେ ତୋ' ପ୍ରାଣାରାମ ପ୍ରେମାକୁଳ ଶ୍ୟାମ,
ଅମରବାଞ୍ଛିତ ପଦ ତୋ'ର ସମ୍ପଦ,
ସେ ପିପାସୀ ତୋହ ପାଇଁ।

(୬୨)

ଗଗନ ଅବା ସୁଦୀନ ଥିଲା
ଲଭିଲା ନୀଳିମା କାନ୍ତି,
ତପନ ଥିଲା କି ମୃଣ୍ମୟ ଖଣ୍ଡ
ଉଦ୍ଭଳିଲା ଦିବ୍ୟ ଭାତି।
ଏଣିକି ଆସିଲା ଦିବସେ ଶୁଭ୍ରତା,
ରଜନୀ ଲଭିଲା ନୀରବ ଶାନ୍ତି,
ହିମାନୀ ଶୋଭିଲା ଧବଳତା ଗୁଣେ,
ଅନଳ ଉଠିଲା ତାତି।
ବସନ୍ତର କୋଳେ ଫୁଲଭୂଷା ଅବା
ଉଷା କୋଳେ ନବ ରବି,
ଶରତ ରାତିର ଶେଫାଳୀ ସୌରଭ
ନଭେ ଛାୟାପଥ ଛବି।

(୬୩)

ଛନ୍ଦ ସେ ପାରେ ଜାଗିଛି ଆଜି କବିତା
ମୋର କବିତା,
ଗାଇଯାଅ ପ୍ରାଣେ ସେ ନବ ଗୀତି ହେ ସୁନ୍ଦରି
ମୋର ଚିତ୍ତ-ସବିତା!
ତାନେ ତାନେ ଉଛୁଳୁ ସୁଧା,
ତାନେ ତାନେ ମୋହୁ ବସୁଧା,
ମୋହୁ ନିଖିଳ ସୃଷ୍ଟି
ସୃଷ୍ଟିର ସାର ସୁନ୍ଦରି ରେ!
ଢାଳ ତବ ଅମିୟ ଦୃଷ୍ଟି
ବାଇଯାଅ ମଧୁର ତୋ ବୀଣା,
ନିମିଷେ ବିଶ୍ୱ ହେଉଟି କିଣା,
ଭାଙ୍ଗୁ ଜଡ଼ତାର ମୋହ ମୋର
ନିଦ୍ରା ବେଳି ନୟନର,
ନବ ଛନ୍ଦର ନବ ଆନନ୍ଦେ
ପ୍ରାଣବନ୍ଧୁର ପ୍ରେମସମ୍ପଦେ
ପର୍ଣ୍ଣ ହେଉ ମୋ' ହୃଦୟ-ନିଳୟ,
ହେରେଁ ତୋ ଶିରୀ ସଂସାରମୟ!

(୬୪)

ହେ ସୁନ୍ଦର!
ସୁନ୍ଦରେ ସେ ନିବେଦିବ
କୁତ୍ସିତ କିପରି କ୍ଷୁଦ୍ର ହାରପ୍ରଣୟର ?
ଦୀପ୍ତ ଶଶଧର!
ଏ ଜହ୍ନିଫୁଲ ଲଭିବ କି ତବ ପ୍ରେମାଦର ?
ଆଗୋ! ଫୁଟେ କେତେ ମଞ୍ଜୁଳା ମାଳତୀ,
କେତେ ଯୂଥିକା ମଞ୍ଜରୀ,
କେତେ କୁମୁଦ କାମିନୀ;
ତବ ଆଶେ ପ୍ରିୟ, ହେ ପ୍ରାଣ-ଅମିୟ,
ସାନ ଏ ତ ଜହ୍ନିଫୁଲ, ଫୁଲରେ ନଗଣ୍ୟ
ହେ ବରେଣ୍ୟ!
ଫୁଟେ ଏ ଅନନ୍ତ ପ୍ରେମେ ଦିବା ଅବସାନେ
ଶ୍ରୀଚରଣ ତଳେ ହେ ମୋହନ!
ଧ୍ୱାନ୍ତ-ବିନାଶନ ସଖା ନୀଳ ଅମ୍ବରର
ହେ ସୁଧା-ଆକର!

(୬୫)

ଧୀରେ ବହେ ଗନ୍ଧବହ ମୃଦୁଳେ ଦୋଳାଇ
ପୁଷ୍ପିତା ଲତିକା ଅଙ୍ଗ ତରଙ୍ଗ-ବିଭଙ୍ଗେ,
ସରମରେ ମରମରି ପତ୍ର ଅନ୍ତରାଳେ
ବାଜିଉଠେ ଫୁଲ ପ୍ରାଣେ ମଧୁର ମୁରଲୀ
ମଳୟ ପରଶ ଭୋଳେ ବଂଶ ନିକୁଞ୍ଜରେ।
ଯେବେ ସନ୍ଧ୍ୟାକାଳେ ବିହଙ୍ଗମେ
ବିବିଧ ପ୍ରସୂନ ପ୍ରାୟ ଦୋଳି ଚଳନ୍ତି କୁଳାୟେ,
ଅମୃତ ସଙ୍ଗୀତେ ମୋହି ନିଖିଳ ମେଦିନୀ
ବାଜିଉଠେ ଆରତିର ଘଣ୍ଟା ଦେବାଳୟେ
ମଙ୍ଗଳେ ମଧୁରେ,

ଯେବେ, ବିଦାୟ ଲୋଡ଼ଇ ଅଳ ଶେଷ ଗୁଞ୍ଜରଣେ
ନିଃଶେଷି ଚୁମ୍ବନାଶ୍ଳେଷ ମଲ୍ଲିକାର କୁଞ୍ଜେ,
ଏକାକେ ଦରିଦ୍ରା ସେହି କ୍ଷୁଦ୍ର ଜହ୍ନିଫୁଲ
ଜାଗିଉଠେ ନବ ପ୍ରାଣେ ।
ତୁମରି ନୟନ-ବରଷି ପୀୟୂଷ ଆଶେ
ସଜାଏ ଶରୀର ତା'ର ପତ୍ର ଓଢ଼ଣାରେ,
କ୍ଷୁଦ୍ର ତା' ଅଧରେ କମ୍ପିଉଠେ ଜୀବନତରଙ୍ଗ,
ବକ୍ଷେ ତାର ବହିଯାଏଆକୁଳ ବାସନା ଯୌବନର
ପରଶେ ପ୍ରଦୋଷ ପ୍ରିୟ ତିମିର ମୋହିନୀ ।
ପ୍ରଣୟର ସେ କି ଗାଢ଼ ଅଭିବ୍ୟକ୍ତି,
ସେ କି ସୃଷ୍ଟି ଆଦିକାଳୁଁ ପ୍ରକୃତି ପ୍ରାଣର
ଭାଷାହୀନ ନୀରବ ବେଦନା !

(୬୬)

କିପରି ସେ ସମ୍ବୋଧନ କରିବ ହେ
ତା' ହୃଦୟ-ଧନେ,
କେଉଁ ନାମେ ହେ ଶଶାଙ୍କ, ହେ ଚନ୍ଦ୍ରମା ?
ଅଛି ତବ ଶତ ପ୍ରିୟ ବସ୍ତୁ;
କିନ୍ତୁ ତୁମେ ଏକା ତାର ଏ ଜୀବନେ ପ୍ରିୟ
ଜୀବନ ଉଦ୍ଦେଶ୍ୟ !
ତାର ପ୍ରଫୁଲ୍ଲତା ଆଗୋ,
ତାର ଶୋଭାରାଶି !
ହେଉ ତବ ନେତ୍ରନିଧି, ନିତି ତା' ବାସନ;
ତୁମରି ତର୍ପଣ ଲାଗି ବହେ ତାର
ହୃଦୟେ ଶୋଣିତ ।
ପ୍ରିୟ ବୋଲି ଡାକିବାରେ ଥିଲେ ହେଁ କାମନା
କହିବ ନାହିଁ ତା ମୁଖେ କ୍ଷୁଦ୍ର ଜହ୍ନିଫୁଲ ।
ଜାଣେ ନାହିଁ ଭାଷା ପରିପାଟୀ ପ୍ରଣୟର,
ଜାଣେ ନାହିଁ ମଧୁର କବିତା,
ଛନ୍ଦିବ ସେ ସ୍ୱପ୍ନାଳସୀ ଛନ୍ଦେ ।
ଜାଣେ ନାହିଁ କରିବ କିପରି
ବନ୍ଦୀ ହୃଦ-କାରାଗାରେ,
ରଖିବ କିପରି ପ୍ରିୟତମେ ତାର କଠିନ ନିଗଡ଼େ
ଭୁଲାଇ ସ୍ୱରୂପେ ।

(୬୭)

ନୁହେ ସେ କେତକୀ ଜାତୀ ଚମ୍ପା ଚହଟିନୀ,
କୁନ୍ଦ କରବୀର ଶିରୀ, ମୃଦୁଳା ମାଧବୀ;
ଧର ହେ ଧର ହେ ବକ୍ଷେ ପ୍ରିୟ
ଯଦି ଆକାଙ୍‌କ୍ଷା ଦୁର୍ବାର,
ଅବା ଦଳ ଅବହେଳେ ପଦତଳେ ।
ଏତିକି ସେ ଶୁଦ୍ଧ ତବ ପ୍ରେମ ସୁନିର୍ମଳ,
ତବ ଶ୍ରୀଚରଣ ତାର
ଜୀବନ ସମ୍ବଳ ।

(୬୮)

ଦିଅ ଦିଅ ଚରଣେ ସ୍ଥାନ ଜହ୍ନିଫୁଲଟିକି,
ଜହ୍ନେ ଜ୍ଞାନ, ଜହ୍ନେ ଧ୍ୟାନ
ଜହ୍ନେ ଜୀବନ ଦେଇଛି ବିକି ।
କୌମୁଦୀ ବିନା ଫୁଟିବ କୁମୁଦ,
ଚାନ୍ଦିନୀ ବିନା ହସିବ କୁନ୍ଦ,
ସୁରଭି ଶେଫାଳୀ ରଜନୀଗନ୍ଧା,
ସେତ ପ୍ରେମେ ବନ୍ଦେ ନିଶାରାଣୀକି ।
ଜହ୍ନ ନାମ ବହେ ଅଙ୍ଗେ,
ଜହ୍ନ ମିଶିଛି ତା ପରାଣ ସଙ୍ଗେ,
ମରମେ ମରମେ ପ୍ରେମତରଙ୍ଗ
ରଙ୍ଗାଏ ଜନକ କାନ୍ତିକି ।

(୬୯)

ମୋ' ମାନସ ତିଲୋତ୍ତମା,
ଜନମେ ଜନମେ ଖୋଜି ବୁଲୁଥିଲି
ଏଇ ମମ ପ୍ରାଣରମା ।
ମୁଁ ଶ୍ୟାମଘାସ ସେ ସୁଷମାଫୁଲ,
ରୌଦ୍ର ଦହନେ ଛାୟା ଅତୁଳ,
ମୃତ ଜୀବନେ ମୋ ସଞ୍ଜୀବନୀ ଧାରା
ପରାଣର ପ୍ରିୟତମା
କୋଟି ଯୁଗ ଅବା ଅନାଇଥିଲି ମୁଁ
ତିଳେ ଦରଶନ ଆଶେ,
ପ୍ରତି ଅଙ୍ଗ ମୋର ଧନ୍ୟ ହୋଇଲା
ଅଧର ମଧୁର ହାସେ ।

ଅନ୍ତରେ ମୋର ରଚିଥିଲି ଏକ
ମାୟାର ମୋହନ କୁଞ୍ଜ,
ଗାଉଥିଲା ପିକ ତହିଁ ତରୁଡ଼ାଳେ,
ଫୁଟିଥିଲା ଫୁଲପୁଞ୍ଜ।
ସଞ୍ଜ ଗୋଧୂଳି ଲୋଟିଥିଲା ତାର
ଗଗନେ ଚୂର୍ଣ୍ଣ ମେଘେ,
ସ୍ୱଚ୍ଛଝରଣା ବହିଥିଲା ତାର
ଶିଳା ଦେହେ ପ୍ରେମାବେଗେ।
ବାକିଥିଲା ଖାଲି ପ୍ରେମର ପ୍ରତିମା
ମନୋରାଇଜର ରାଣୀ,
ବାକି ଥିଲା ଖାଲି ଗଜଗାମିନୀର
କଳିତ ଲଳିତ ଠାଣି।
ବାକି ଥିଲା ଖାଲି ହୃଦୟ-ମନ୍ଦିରେ
ଦେବତାର ପ୍ରେମାସନ,
ଜାଗର ଜାଳି ମୁଁ ବସିଥିଲି ନିତି
ଧାୟି ଶ୍ରୀରୂପ-ରତନ।
ପଛପଟେ ଆସି ଠିଆ ହେଲା କିଏ,
ମୁଦିଲା ନୟନ କରେ,
ଥରି ଉଠିଲା କି ମରମେ ବାସନା
ରୋମାଞ୍ଚିତ ପୁଲକରେ !
ହୃଦ-ସିନ୍ଧୁତୀରେ ଅନୁରାଗ ବୀଚି
ନାଚି ନାଚି ଗଲା ବହି,
ନୟନେ ମିଶିଲା ନୟନ, ପରାଣେ
କାମନା ଦେଲା କି ଦହି !
ଆତ୍ମା ଚିହ୍ନିଲା ଆତ୍ମାର ସାଥୀ,
ନ ଫୁଟିଲା ମୁଖେ କଥା,
ସରିତ ଚିହ୍ନିଲା ସାଗର ତରଙ୍ଗ,
ପାଦପ ଚିହ୍ନିଲା ଲତା !
ଦୀପ ଆଲିଙ୍ଗିଲା ଅନଳ ଶିଖାଟି,
ହେମ ଆଦରିଲା ହୀରା,
ରକ୍ତେ ଛୁଟିଲା ଉଷ୍ଣ ଆନନ୍ଦ
ଚମକାଇ ଶିରା ଶିରା !
ଲାବଣ୍ୟ-ସିନ୍ଧୁ ଉର୍ମି ଚୁମ୍ବିଲା
ଇନ୍ଦୁର ସୁଧା-ଅଧର,
ବିଶ୍ୱେ ବାଜିଲା ବଂଶୀସ୍ୱରେ
ମର୍ମ୍ମର ଗୀତ ଲହର !

(୭୦)

ଆଜି ମୋ' ହୃଦୟେ ତବ ଆସନ ହେ ସୁନ୍ଦର !
ବିକଶିତ ହୃଦ-କୁମୁଦ, ଉଲ୍ଲସିତ ଅନ୍ତର !
ଆଲୋକ-ଉତ୍ସ ଆଖିରେ ଫୁଟେ,
ପୁଲକ-ତରଙ୍ଗ ଅଙ୍ଗେ ଛୁଟେ,
ବିଶ୍ୱେ ବହେ ଆନନ୍ଦ-ଧାରା ଶତ ସରିତ ନିର୍ଝର !
କୁସୁମେ କୁସୁମେ ନବ ଛବି,
ନବ କିରଣେ ଦୀପ୍ତ ରବି,
ଜଳେ ନୀଳାକାଶେ ମଙ୍ଗଳ-ଦୀପ
ଶଶୀତାରା ଦଳେ ଭାସ୍ୱର !
ପ୍ରେମ-ସଙ୍ଗୀତ ଗାଏ ବିହଙ୍ଗ,
ପ୍ରେମେ ନାଚେ ସିନ୍ଧୁ-ତରଙ୍ଗ,
ଲତିକା-କୁଞ୍ଜେ ଗନ୍ଧ ମଳୟ ସଙ୍ଗେ ମନ୍ଦ ମର୍ମ୍ମର।

(୭୧)

ଏଇ ଥିଲା ମୋର ମର୍ମ୍ମେ ବାସନା,
ଏଇ ଥିଲା ମୋର ଆଶା,
ଫିଟିଯିବ ମମ ଅବଶ ରସନା,
ବେଦନା ଲଭିବ ଭାଷା।
ନିଶାର ନୀହାର ରବି କିରଣରେ
ଲଭିବ ମୁକୁତା-ଦ୍ୟୋତି,
ଦରଫୁଟା ପଦ୍ମ ଗୋଲାପ ଅଧରେ
ଫୁଟିବ ଜୀବନ-ଜ୍ୟୋତି।

(୭୨)

ଗୁପ୍ତ ଚିତ୍ତେ ମୋର ମନମୋହନ
ଲୁପ୍ତ ନିର୍ଝର ଗୋଟି,
ଦେଖିଲା କେବେ ସେ ସିନ୍ଧୁ ସପନ
ଶିଳା ତଳେ ଗଲା ଲୋଟି;
ବାଧା ନ ମାନି ସେ ଧାଇଁଲା,
ଫେରି ପଛକୁ ନ ଚାହିଁଲା
ଗୁପ୍ତ ହୃଦେ ମୋର ମନମୋହନ
ସୁପ୍ତ ବାସନା-ଫୁଲ,
ଦେଖିଲା କେବେ ସେ ଇନ୍ଦୁସପନ
ଫୁଟିଲା କି ପ୍ରେମାକୁଳ,
ଆପେ ଦେଲା ବକ୍ଷ ପାତି,
ଅଙ୍କେ ତାହାର ଶୋଭିଲା ଆଦରେ
ଜୋଛନାର ମଧୁରାତି।

(୭୩)

ତୁ କିଏସେ ମୁଁ କିଏସେ,
କିମ୍ବା ବନ୍ଧା ପରସ୍ପର ?
ତୁ କିଏସେ ମୁଁ କିଏସେ,
ସମ୍ବନ୍ଧ ନିକଟତର ।
ତୁ କିଏସେ ମୁଁ କିଏସେ
ସ୍ଥାପିଲା ଆମରି ତୁଲେ,
ଏ ପ୍ରେମ ଅପୂର୍ବ ପ୍ରେମ,
ସେ କେଉଁ ଶକତି ଭୁଲେ ।
ତୁ କିଏସେ ମୁଁ କିଏସେ
ଜାଣିନାହୁଁ ସତ, ବନ୍ଧୁ,
ତଥାପି ହେ ପରସ୍ପର
ଯୁକ୍ତ ଯଥା ନଦୀ-ସିନ୍ଧୁ !
ତୁ କିଏସେ ମୁଁ କିଏସେ,
ତୁ ମୋହର ମୁଁ ତୋହର,
ଏହି ଜ୍ଞାନେ ଶାନ୍ତି ଲଭି
ଯୁକ୍ତ ପ୍ରାଣ ପରସ୍ପର ।

(୭୪)

ଆଜି ପ୍ରେମ-ରାଇଜର ରାଜା ପାଶେ
ପ୍ରେମ-ରାଇଜର ରାଣୀ,
ନିଖିଳ ବିଶ୍ୱ ଉଚ୍ଚାର ଆଜି
ମିଳନ ମଙ୍ଗଳ ବାଣୀ ।
ବରଷ କଲ୍ୟାଣରାଶି,
ଯାଅ ହେ ଆଶିଷ ଭାଷି,
ପିଅ ପ୍ରେମାମୃତ, ପ୍ରାଣ ହର୍ଷେ ଗାଅ
ପ୍ରେମଜୟ ସର୍ବପ୍ରାଣୀ ।
ପ୍ରେମର ଜୟ, ମରଣ ଲୟ,
ଉଠୁ ପ୍ରେମଗୀତି ବିଶ୍ୱମୟ ।

(୭୫)

ଯାଉ ମୋ ଜୀବନ ପ୍ରିୟ
ତୁମ୍ଭରି ଧ୍ୟାନରେ
ଆନେ ନ ଚାହେଁ ଜୀବନେ
ଜ୍ଞାନେ ବା ଅଜ୍ଞାନରେ ।
ତବ ନାମ ଗୁଣ ଗାନ ହେଉ ମୋ ସଙ୍ଖାଳି,
ତବ ନାମ ବିନା ମୁହିଁ ଦରିଦ୍ର କଙ୍ଗାଳି,
ତବ ନାମ ହୃଦହାର ନିତି ଜପାମାଳି ହେ ।
ଘେନି ନାମ ଛାପ ଭ୍ରମିବି ଜଗତେ (ମୁହିଁ),
ତରିଯିବି ଭବଧାମ
ନାମ ଭଜନରେ ।
ହରି ହରି କହି ମୋର ଜୀବନ ସାରିବି ହେ,
ହରି ହରି ନାମ ତୁଣ୍ଡେ ଅନ୍ତେ ମୁଁ ମରିବି ହେ;
ହରି ମୋ' ଚିତ୍ତର ବିତ୍ତ,
ହରି ମୋ' ପ୍ରାଣଦୟିତ,
ହରି ମୋ' ପରାଣମିତ,
ସାର ମୋ' ଜୀବନରେ ।



## କବିତା (୧)

ବାଜ ଛିନ୍ନ ବୀଣା    ବାଜଣା ସୁଜିଣା
ରମ୍ୟ ଏ ନନ୍ଦନବନେ
ମାଳୁଣୀ ପରାୟେ    ପଣ୍ଡିତା ନାରୀୟେ
ଯହିଁ ବସି ରମ୍ୟ ଭୂମେ ।
ଗୋଟି ଗୋଟି ଯତେ    ପାରିଜାତ କେତେ
ପାଳନ୍ତି ଯତନ କରି
ପୋତି ଜ୍ଞାନମଞ୍ଜି    ଆଳବାଳ ରଚି
ବୁଦ୍ଧିରେ ବିବେକ ଭରି ।
ରାଜହେମା ସମ    ପାରିଜାତ ସ୍ୱର୍ଣ୍ଣ
ସ୍ୱର୍ଗ ସମ୍ପଦଗୁ ବଳେ
କ୍ଷୁଦ୍ର ଦୀନା ମୁହିଁ    ସେ ପରଶ ପାଇ
ଧନ୍ୟ ଆନନ୍ଦ ବିନ୍ଦୁଳେ ।
ବନ୍ଦନୀୟା ମମ    ଆହେ ଦେବୀଗଣ
ଭକ୍ତିଭରେ ନତ ଶିରେ
ସ୍ୱଦେଶୀ ଏ ପୂତ    ଭାରତୀ ସେବିତ
ଘେନ ପୁଷ୍ପ ଉପହାରେ ।

ତୁମରି କୃପାରେ    ଲଳିତ ମଧୁରେ
ଲଭିଲି ଭାଷାସମ୍ପଦ
ଜନନୀ ଉତ୍କଳ    ମହତ କୋମଳ
ଚିହ୍ନିଲି ତା ପଦ୍ମ ପଦ ।
ଶ୍ରୀପୟରେ ଦୀନା    ବର ମାଗେ କନ୍ୟା
ସଫଳ ହେଉ ଜୀବନ
ମାତୃଭାଷା ପୁଷ୍ପ    ତୋଳିଣ ସହର୍ଷ
ହେବି ବରେଣ୍ୟ ମହାନ ।
ହେ ଭଗିନିକୁଳ    କନକ କୋମଳ
ସମ ତୁମେ ଲୋଭନୀୟା ।
ଏ ଦୀନା ସଖିରେ    ବିଦ୍ୟା ପ୍ରତିଭାରେ
କରିଥିବ ଚିର ଦୟା ।
ତୁମ ସବୁ ସ୍ମୃତି    ଅନ୍ତରେ ସାଇତି
ବିଦାୟ ନେଉଛି ଆଜି
ଉତ୍କଳ ଜନନୀ    ଯଶୋଗୀତେ ଶାଣି
ଏ ଜୀବନ ହେଉ ମାଜି ।



## କବିତା (୨)

କୋଟିକୀର୍ତ୍ତିମୁକ୍ତା-ମାଳିନୀ
କାନ୍ତି-କମଳା କଳାକୁଶଳା ଶାନ୍ତି ଶାଳିନୀ ।

(୧)
କୋଟି ସୁତ ସ୍ନେହଶୀଳା
କୋଟି ତୀର୍ଥ ସ୍ୱର୍ଗଲୀଳା
ରତ୍ନହାରା ଚିତ୍ରୋତ୍ପଳା
ସିନ୍ଧୁଧୌତ ପୁଣ୍ୟବେଳା
ନୀଳାଚଳ-ଚିଲିକା-ପ୍ଳାବିନୀ-
ଶକ୍ତି, ମୁକ୍ତି, ଭକ୍ତିଦାନେ ଭକ୍ତପାଳିନୀ

(୨)
ତାଳ ତମାଳ ତାଳୀନୀଳା
ଶତତଟିନୀ ପୂତ ସଲିଳା
କାବ୍ୟକୁଞ୍ଜ କଳକୋକିଳା
ପୂଜିତ ପାଦ ଉଡ୍ଡ ସାରଳା
ଶୁଭଗୀତ ସୁଧା ସ୍ୟନ୍ଦିନୀ
ବିଶ୍ୱବନ୍ଦନ ଚିତ୍ତନନ୍ଦନ ନୟନହ୍ଲାଦିନୀ ।

(୩)
ବିଶାଳ ଶୈଳ ବିପିନମାଳୀ
କେଦାରଜାତ ପକ୍ୱଶାଳୀ

କାନନ ଫୁଲ୍ଲ ପ୍ରସୂନାଞ୍ଜଳି
ପୂର୍ଣ୍ଣ ପକ୍ଷୀ କଳକାକଳୀ
ରତ୍ନଜ୍ୟୋତି ଉଜ୍ଜ୍ୱଳାନନା
ଚୁଆଚନ୍ଦନ କର୍ପୂର ମୃଗମଦ ମୋହିନୀ ।

(୪)

ଅନଙ୍ଗ ଯଯାତି ବୀର ଜନନୀ .
ବୀର-ରୁଧିର-ସିକ୍ତ ଅବନୀ
ବିଦ୍ୟା ଧର୍ମ ମୋକ୍ଷ ମେଦିନୀ
ଶୂଦ୍ର ବ୍ରାହ୍ମଣେ ସାମ୍ୟବାଦିନୀ
ଜାତିଭେଦ ବନ୍ଧ ଭଞ୍ଜିନୀ
ନିଖିଳ ଭାରତ ଭକତ
ଚରଣ ରେଣୁରଞ୍ଜନୀ ।

(୫)

ଜୟ ଜୟ ବୀର ବରେଣ୍ୟେ
ଜୟ ଭକତ ଚିର ଶରଣ୍ୟେ
ଜୟ ଧନ୍ୟେ ! ଜୟ ପୁଣ୍ୟେ !
କୋଟି ସନ୍ତାନ ଅନ୍ନପୂର୍ଣ୍ଣେ ।
ସର୍ବ୍ବଶୁଭ ଶାନ୍ତିଦାୟିନୀ
ଚିର କାମନା କଳିତ ଲଳିତ
ଚରଣ ନଳିନୀ ।



## କବିତା (୩)

# The Neglected Land

Oh, land of famine, fire, flood,
Thou home of pain and misery,
In all our veins flows warm thy blood,
We sign and shed our tears for thee,
Weep no more, Oh ! weep no more,
children from thy lap long torn,
They gather at thy holy feet
Ever washed with billows blue,
They join their hands in union sweet
With life energetic and new.
The days of woe will not be long,
Soon poverty and pain shall cease,
The smiling face of singing throng
Will fill thy heart with joy and peace.

Why then fall thy tears in shame,
Sinks thy heart in despair deep,
In the desert field of fame,
Do thy sons lie still in sleep?
Dost thou weep for days bygone,
Rends thy heart in smarting pain
When brights as the Sun it shone,
And past th' main was thy domain?
Thy sons were heroes, men were brave,
Life they worked in stone and tree,
In temple, tower, bower, cave,
Wreathed garlands of poetry.
Still in Ekamra's lonely dale,
Beneath the sacred mango tree,
Sweet they sing in southern gale
Thy poet's spirits full and free.
Dear Utkal, our dearest land,
Made in beauty, decked in dream
Stories breathe thy sea and sand
of Upendra and Anangabhima.
The wind resounds the cocky caves,
The birds they cheer the mountain vale,
And kiss thy shores, the foaming waves,
With songs of praise of Great Kharabela.
On flower-lips with drops of dew
Falls so sweetly onthe green,
A heavenly carol ever new
of Purusottam and Padma Queen,
Now all a story, a lovely myth,
The faded golden day's last ray;

But in the deep dark clouds beneath
peeps the gleam of glorious day.
The fragrant hearts of flowers open,
The feathered flock, a hymn they chant,
"The night is gone, the night is gone
The night of woe, the night of want"
Awake, Oh glorious Utkal ! now,
Thy severed limbs are joined at last,
Thy sons are joined in heart so true,
on Future will they build thy Past.
We love thy every leaf and flower,
We love thy breeze, thy stormy gust,
The desert is our oasis bower,
We crave thy humble divine dust,
Cheer, Oh cheer, our mother dear !
Shower on us thy blessing love,
Bring thy children ever near,
Let us men and women prove.
In the battle field of life,
Let us firmly take our stand,
Lift our heads in stormy strife,
With faith in God and Mother-land.

# ଅବହେଳିତ ଦେଶ

## *(ଓଡ଼ିଆ ଅନୁବାଦ)*

ହେ ଦୁର୍ଭିକ୍ଷ, ଅଗ୍ନି, ବନ୍ୟାପ୍ଲାବିତ ଦେଶ
ଦୁଃଖ ଏବଂ ଯନ୍ତ୍ରଣାର ନିବାସ
ଆମରି ପ୍ରତି ଶିରାପ୍ରଶିରାରେ ତୁମରି ଉଷ୍ଣରକ୍ତ ପ୍ରବାହିତ
ଆମେ ତୁମଲାଗି ଦୀର୍ଘନିଃଶ୍ୱାସ ଓ ଅଶ୍ରୁତ୍ୟାଗ କରୁଅଛୁ ।

ଆଉ କାନ୍ଦନାହିଁ, ଆଉ କାନ୍ଦନାହିଁ
ତୁମର ଆଗତ ସୁଖପ୍ରଭାତକୁ ସମ୍ଭାଷଣ ଜଣାଅ
ନିଜର ଦ୍ୱାରଦେଶରେ ତାକୁ ସପ୍ରେମ ସ୍ୱାଗତ ଜଣାଅ
ତୁମ କୋଳର ସନ୍ତାନ ଚିରଦିନର ଦୁଃଖରେ ଅଛନ୍ତି ।
ସେମାନେ ତୁମର ପବିତ୍ର ପଦତଳେ ଏକତ୍ରିତ
ଯାହା ସର୍ବଦା ନୀଳତରଙ୍ଗମାଳାଦ୍ୱାରା ଧୌତ;
ଏ ମଧୁର ଏକତ୍ରୀକରଣରେ ସେମାନେ ହାତ ଧରାଧରି ହୋଇଛନ୍ତି,
(ଏବଂ) ଜୀବନ ସେମାନଙ୍କୁ ନୂତନ ଓ ଶକ୍ତିଦାୟକ ହୋଇଛି ।
ତୁମର ଦୁଃଖର ଦିନ ଆଉ ବେଶି ଦିନ ରହିବ ନାହିଁ
ଶୀଘ୍ର ଦାରିଦ୍ର୍ୟ ଓ ଯନ୍ତ୍ରଣାର ଅବସାନ ହେବ
ଜନତାର ହାସ୍ୟମୁଖର କୋଳାହଳମୟ ସୁଖ
ତୁମ ହୃଦୟରେ ଆନନ୍ଦ ଓ ଶାନ୍ତିଭରି ଦେବ ।
ତେବେ କାହିଁକି ତୁମ ଲୋତକ ଲହରେ ଝରୁଛି ?
ତୁମର ହୃଦୟ ଗଭୀର ନିରାଶାରେ ଦବିଯାଉଛି ?
ତୁମର ପରିତ୍ୟକ୍ତ ପ୍ରଶଂସନୀୟ କ୍ଷେତ୍ରରେ
କଣ ତୁମର ସନ୍ତାନମାନେ ତଥାପି ନିଦ୍ରାମଗ୍ନ ?
ତୁମେ କ'ଣ ଅତୀତ କଥା ଭାବି କାନ୍ଦୁଛ ?
(ଏବଂ) ସେ କଥା ତୁମ ହୃଦୟକୁ ତୀବ୍ର ଜ୍ୱାଳାମୟ ବେଦନାରେ ବିଦୀର୍ଣ୍ଣ କରୁଛି ?
ଯେତେବେଳେ ସୂର୍ଯ୍ୟସମ ଦୀପ୍ତ ହୋଇ ତୁମେ ଶୋଭନୀୟ ଥିଲ,
ଏବଂ ତା'ପରେ ତୁମର ଶକ୍ତିଶାଳୀ ରାଜ୍ୟ ଥିଲା
ତୁମର ପୁତ୍ରମାନେ ଶୂର ଥିଲେ, ଜନସାଧାରଣ ବୀର ଥିଲେ,
ସେମାନେ ପର୍ବତ ତାଡ଼ି, ଗଛ କାଟି, ଜୀବନ ଗଠନ କଲେ,
ମନ୍ଦିର, ସ୍ତମ୍ଭ, ଖିଲାଣ, ଗୁମ୍ଫା ଘେନି କବିତାର ମାଳାଗୁନ୍ଥିଲେ ।
ତଥାପି ଏକାମ୍ରର ଏକାନ୍ତ ଉଚ୍ଚଭୂମିରେ ପବିତ୍ର ଆମ୍ରବୃକ୍ଷ ତଳେ
ଦକ୍ଷିଣାଗତ ମଳୟ ସ୍ପର୍ଶରେ ସେମାନେ ସୁନ୍ଦର ଗାଥାନ୍ତି
ତୁମର କବିମାନେ ଓ ତାଙ୍କର ଆତ୍ମା ପୂର୍ଣ୍ଣ ଏବଂ ମୁକ୍ତ,
ଆଦରର ଉତ୍କଳ, ଆମର ପ୍ରିୟ ସେ ଉତ୍କଳ,
ସୌନ୍ଦର୍ଯ୍ୟରେ ଗଠିତ, ସ୍ୱପ୍ନଶ୍ରୀ ମଣ୍ଡିତ ।
ତୁମର ସମୁଦ୍ର ଓ ସୈକତ ଉପେନ୍ଦ୍ର ଓ ଅନଙ୍ଗଭୀମଙ୍କର କଥା
ନିଃଶ୍ୱାସରେ ଗ୍ରହଣ କରନ୍ତି,
ପବନ ତୁମର ପ୍ରସ୍ତରମୟ ଗୁମ୍ଫାକୁ ନିନାଦିତ କରେ, ପକ୍ଷିଗଣ
ପର୍ବତ ଉପତ୍ୟକାରେ ଥାଇ ଆନନ୍ଦିତ ହୁଅନ୍ତି,

ଏବଂ ତୁମର ପବିତ୍ର ତଟଦେଶକୁ ଫେନୋଦ୍‌ଗାରୀ ତରଙ୍ଗମାଳା ଚୁମ୍ବନ ଦିଏ,
ମହାନ ଖାରବେଳଙ୍କ ପ୍ରଶଂସାର ସଂଗୀତ ଗାଇ ।

× × × × × ×

ପୁଷ୍ପାଧରରେ ନିହାର ବିନ୍ଦୁମାଳାରେ ସବୁଜିମା ଉପରେ ପତିତ ହୁଏ
ଏକ ସ୍ଵର୍ଗୀୟ ମଧୁର ସଙ୍ଗୀତ, ପୁରୁଷୋତ୍ତମ ଓ ରାଣୀ ପଦ୍ମାଙ୍କ ବିଷୟରେ ।

× × × × × ×

ବର୍ତ୍ତମାନ ସବୁ କେବଳ କାହାଣୀ, ଗୋଟିଏ ମଧୁର କିମ୍ବଦନ୍ତୀ
ମଉଳି ଯାଇଥିବା ସୁବର୍ଣ୍ଣ ଦିନର ଶେଷ ରଶ୍ମି ।
କିନ୍ତୁ ଘନ କଳାବାଦଲର ଅନ୍ତରାଳରେ ଉଜ୍ଜ୍ୱଳ ଅତୀତର ପ୍ରଭା ଉଙ୍କି ମାରୁଛି ।
ପୁଷ୍ପରାଜିର ସୁବାସିତ ଅଧର ଉନ୍ମୁକ୍ତ କରନ୍ତି ବିହଙ୍ଗମକୁଳ ।
ସେମାନେ ଗାଆନ୍ତି ସ୍ତବଗୀତି –
''ରାତ୍ରି ଅତିବାହିତ ହୋଇଯାଇଛି, ରାତ୍ରି ଅତିବାହିତ ହୋଇଯାଇଛି,
ଦୁଃଖର ରାତ୍ରି, ଅଭାବ ଅନଟନର ରଜନୀ ।''

× × × × × ×

ହେ ଯଶସ୍ଵିନି ! ଉତ୍କଳ ଜନନୀ ! ଜାଗ୍ରତ ହୁଅ ବର୍ତ୍ତମାନ,
ତୁମର ଛିନ୍ନ ଅଙ୍ଗପ୍ରତ୍ୟଙ୍ଗ ଶେଷରେ ପୁଣି ଯୋଖି ହୋଇଯାଇଛି ।
ତୁମ ହୃଦୟ ସହିତ ତୁମ ପୁତ୍ରଗଣ ମିଶିଯାଇ ଅଛନ୍ତି,
ଭବିଷ୍ୟତରେ ସେମାନେ ତୁମର ଅତୀତକୁ ପୁଣି ରଚନା କରିବେ ।

× × × × × ×

ଆମେ ସ୍ନେହ କରୁ ତୁମର ପ୍ରତ୍ୟେକ ପୁଷ୍ପ, ପ୍ରତ୍ୟେକ (ପୁଷ୍ପ) ଦଳକୁ
ତୁମର ସୁଶୀତଳ ମନ୍ଦାନିଳକୁ, ତୁମର ବାତ୍ୟାକୁଳ ପ୍ରବଳ ଝଞ୍ଜା ବତାସକୁ ।
ତୁମର ମରୁଦ୍ଵୀପ ହେଉଛି ଆମର ମରୁଦ୍ଵୀପ ନିକୁଞ୍ଜ
ଆମେ ତୁମର ପବିତ୍ର ସ୍ଵର୍ଗୀୟ ଧୂଳିକଣା ଭିକ୍ଷା କରୁଛୁ ।

× × × × × ×

ଆନନ୍ଦକର, ଆନନ୍ଦକର, ପ୍ରିୟମାତା ଆମର,
ତବ ପ୍ରେମାଶିଷ ଆମ ଉପରେ ବର୍ଷଣ କର,
ତୁମର ସନ୍ତାନମାନଙ୍କୁ ସର୍ବଦା ନିଜର ନିକଟସ୍ଥ କର ।
ଚାଲ ସ୍ତ୍ରୀ ଓ ପୁରୁଷ ପ୍ରମାଣ କରିବା,
ଜୀବନର ଯୁଦ୍ଧ କ୍ଷେତ୍ରରେ
ଚାଲ ନିଜର ସ୍ଥିତି ଦୃଢ଼ କରିନେବା,
ପ୍ରବଳ ସଂଗ୍ରାମରେ ନିଜର ମୁଣ୍ଡ ଟେକି ଠିଆହେବା –
ଭଗବାନ ଓ ଜନ୍ମଭୂମିଠାରେ ବିଶ୍ଵାସ ରଖି ।

(ଚକ୍ରଧର ମହାପାତ୍ର ଅନୁବାଦ)



## କବିତା (୪)

ସକାଳରୁ ସଞ୍ଜେ ତୁମରି ଲାଗି ମୁଁ ଅନାଇଁ ବସିଛି ପଥେ,
ଛାତି ଥରଥରେ ଆଖି ଝରଝରେ ଆସିଲ ଆସିଲ ସତେ !
ସାରା ପରାଣଟା ତୃଷାରେ ପୂରି
ସାରା ମରମଟା ହେଉଛି ଝୁରି
ଶିରାରେ ଶିରାରେ ଚମକେ ବିଜୁଳି ଛକିଲ ଛକିଲ ପରା
ଝମିଝିମି ଦେହ ଗୋଟାକ ମୋହରି ଅବିଶ୍ୱାସ ଘେରେ ତୁରା ।
ତୁଚ୍ଛାକୁ ତୁଚ୍ଛାକୁ କାନ୍ଦିବସେ ମାନେ ଜୀବନ ରହିବ ସତେ
ଏତେ ଦୁଃଖ ଯଦି ଦେବ ଭାଳିଥିଲ ବେଳୁ ନ କହିଲ ମୋତେ ?



## କବିତା (୫)

ଜୀବନର ସଂଜ ଅନ୍ଧାରେ ଆସି ହେ
ଦେଖାଦେଲ ଯେବେ ବାରେ
ତିତାଇଲ ତୀବ୍ର ଦାରୁଣ ପ୍ରହାରେ
ଗଣ୍ଡଯୁଗ ଅଶ୍ରୁଧାରେ ।
ସାରାଦିନ ଖରା ଖାଇଲି ତୁମରି
କାରଣେ ଜଗି ମୁଁ ବାଟ
ଦାରୁଣ ହୃଦୟେ ଦୟା ନୋହିଲା କି
ମାରୁଛ କୋରଡ଼ା ଛାଟ ।

ତେବେ କିନ୍ତୁ ସଖା ନ ଯିବ ବାହୁଡ଼ି
ଜାଣିଛି ମୁଁ ତୁମ ଛଳନା
ଉପର କଠୋର ବେଶାରେ ଭିତର
ପ୍ରୀତିଟି ଜଗିଛ ଛଳନା ।
କଟୁ ବଚନର ଅନ୍ତରାଳେ ଲୁଚି
ରହି ନ ପାରୁଚି ହସଟି
ମନର ପରଖ ମନ ସିନା ସଖା
ସୁନାର ପରଖ କଷଟି ।



## କବିତା (୬)

କି ଭାବନା ଜାଗେ ପ୍ରାଣେ କବି ଦରଶନେ
ପୂର୍ଣ୍ଣେନ୍ଦୁ ଅର୍ଣ୍ଣବ ହେରି ଅର୍ଣ୍ଣୋଦ ଆସନେ
ବିସ୍ତାରି ବିଶାଳ ବାହୁ ଉର୍ମିଳୀଜାଛଳେ
ବ୍ୟାକୁଳେ ଆକୁଳ ପ୍ରାଣ ଆନନ୍ଦେ ଉଚ୍ଛଳେ ।
ଫୁଟି ଆସେ ଧୀର ଯଥା ନବ ଅରବିନ୍ଦ
ମନ୍ଦ ମଳୟ ମାରୁତ ଚୁମ୍ବନେ ମୋହନ
ଧାଇଁ ଆସେ ଫୁଲ୍ଲ ମଲ୍ଲିମାଳେ କି ମିଳିନ୍ଦ
ବହଟିଯାଏ କି କାନ୍ତ କେତକୀ କାନନ ।
ଉଷା ଅରୁଣିମା ତଳେ ଝଳେ ନବ ରବି
ଅନାଇଁ ଉଲ୍ଲାସେ ହସେ ସୁମନ ସୁନ୍ଦରୀ
ଶ୍ୟାମଳ କୋମଳ ଦଳେ ହିମ ବିନ୍ଦୁ ଛବି
ଝଲକେ ଆଲୋକେ ବର୍ଣ୍ଣେ ଇନ୍ଦ୍ରଧନୁ ସରି ।

ନନ୍ଦିତ ନିଷ୍ପନ୍ଦ ହିଆ ବନ୍ଦି କବି ପଦେ
ଲଭିଲି ଅକ୍ଷୟ ମହା ଗୌରବ ସମ୍ପଦେ ।

।। ୨ ।।

ତାଳ ନାରିକେଳ ମାଳ ସରସ ଶ୍ୟାମଳ
ବିରୂପା ଲହରୀ ଲୀଳା ଲୋଳିତ ଅଞ୍ଚଳ
ବନ ବିହଙ୍ଗ କଳିତ ଲଳିତ କାକଳି
ପଲ୍ଲବ-ପାଟଳପଲ୍ଲୀ କୁଶପୁର ଝଳି ।
ତହିଁ ତବ ନିକେତନେ ହେ କବି ବଳେନ୍ଦ୍ର
ପଡ଼ିଲା ମୋ ପଦଯୁଗ କି ଯୋଗେ ମାହେନ୍ଦ୍ର ।
କି ଛଳେ ବିଧାତା ଛନ୍ଦି ଆଣିଲା ସେ ଟାଣି
କବି ଯେଣୁ କବି ପ୍ରିୟ ବର-ବୀଣାପାଣି ।
ପର୍ଶ ମୋ ଚନ୍ଦନବନ ଦର୍ଶନ ବାସନା
ନନ୍ଦନ ମନ୍ଦାର କୁଞ୍ଜେ ଶୁଭ ଅଭ୍ୟର୍ଥନା ।
ଲୋଟେ ଯହିଁ ନିର୍ଝରିଣୀ ସ୍ୱର୍ଣ୍ଣଶୀଳାତଳେ
ବସନ୍ତକୋକିଳ ଗାଏ ରସାଳ ଗହଳେ ।
ନେତ୍ରମୋହୀ ପଲ୍ଲିଚିତ୍ର ପବିତ୍ର ଗରିମା
ଉତ୍କଳ ପ୍ରାଣର ଜନ୍ମଭୂମି ଶ୍ରୀ ମହିମା
ତହିଁ ଅଭିନବ ଶୋଭା ମଣି କାଞ୍ଚନର
ନାନାବାୟ୍ୟା ଶିଶୁଗୀତେ ଉଚ୍ଛୁଳେ ଅନ୍ତର ।
ଯହିଁ ପୁଷ୍କରିଣୀ ତୀରେ କଳକୁମ୍ଭ କରେ
ପୁଷ୍ପିତା କନକଲତା ମୃଦୁପାଦଭରେ
ଓଢ଼ଣାର ଆଢୁଆଳେ ଶର୍ମ୍ମିଷ୍ଠା ସୁନ୍ଦରୀ
ଶୋଭେ ନବ ନୀରଦରେ ସୌଦାମିନୀ ସରି ।
ତହିଁ ଏକାଦଶଦିନ ତବ ଶାନ୍ତିବାସେ
ପରମ ଆଦର ସ୍ନେହେ ଯାପିଲି ଉଲ୍ଲାସେ
ଶୁଣି କଳ୍ପଲପତ୍ରିର ପ୍ରଭାତ ସଙ୍ଗୀତ
ହେରି ସାନ୍ଧ୍ୟତାରା ଶିରୀ ବିମାନେ ବିସ୍ମିତ ।
ହେ କବି, ହେ କବି-ବଳ, ନନ୍ଦନ ବରେଣ୍ୟ
ଧନ୍ୟ ମୋ ଜୀବନ ତବ ନିୟନ୍ତ୍ରଣେ ଧନ୍ୟ ।



## କବିତା (୭)

ଯେବେ କହୁଥିବ ମନା ମୁଁ ଆସିବି
ତୁମରି ଦୁଆର କତିକି
ତୁମ ଗାଳିମାଡ଼ ସହିବା କାରଣେ
ଦୃଢ଼ କରିଥିବି ଛାତିକି ।
ଫୁଲ ଚାନ୍ଦ ବେନି ହସନ୍ତି କାନ୍ଦନ୍ତି
ଫୁଲ ଚାନ୍ଦ ସରି ନୋହିବି
ତୁମ ଗଞ୍ଜଣାକୁ ତୁମ ଲାଞ୍ଛନାକୁ
ପିଠି ପତାଇଣ ସହିବି ।
ମୃତ୍ୟୁ ରୂପେ ଯଦି ଆସିବ କତିକି
ସୁଖେ ମୁଁ ଘେନିବି କୋଳରେ
ଆଦରେ ମରଣ ବରଣ କରି ଗୋ
ମରିବି ଚରଣ ତଳରେ ।



## କବିତା (୮)

ଯେତେ ପଳାଇବ ଯିବି ଗୋଳାଇ
ନିରମଳ ପ୍ରୀତି ଦେବି ଚଢ଼ାଇ
ପାଦେ ଲୋଟିଥାଇ କରିବି ଗୁହାରି
ତାର ନାଥ ମୋତେ ତାର
ମୋର ବହିଯାଉ ଅଶ୍ରୁଧାର
ଅଭିମାନେ ଜଡ଼ି ପଡ଼ିଥିବି ପାଦେ
ଅଛି ସ୍ନେହ ଅଧିକାର ।

× × × × × × × × × ×

ନିତି ବହି ଦୁଃଖ ଭାର
ଭାଙ୍ଗ ମଝିପିଠି ହାଡ଼
ନିତି ମୋ ଖଟଣି ସାର
ନିତି ଲୋତକ ଲୋଟାନେ ।

ମୁଁ ଦୀନ ବାଟୋଇ ଜଣେ
ଭ୍ରମେ ପଶିଲି ଏ ବଣେ
କାହିଁ ଯିବି କି କରିବି ନଦିଶେ ରାହା ।

× × × × ×



## କବିତା (୯)

"ମୁଁ ତ ଚାହେଁ ହେବି ନୀରଦ ସମାନ
ବରଷି କରୁଣା ଆସାରେ,
ମୁଁ ତ ଚାହେଁ ତୃଣ ପରାୟେ ବିରାଜି
ଅକିଞ୍ଚନ ହେବି ସଂସାରେ ।"



## କବିତା (୧୦)

ଓଡ଼ିଆ ଏଥର ମଣଷ ହୁଅ
ସହିଲୁଣି ବହୁ ଲକ୍ଷଣ ବିପରି
ନିଜ ଗୋଡ଼େ ଏବେ ଛିଡ଼ାହୁଅ,
ଜାତିର କଳଙ୍କ ନିଜ ଗୁଣ ଜଳେ
ଯତନରେ ବାବୁ ମାଜି ଧୁଅ ।
ହୀନ ନୁହଁ ତୁମେ ହୀନ ନୁହଁ
ତେତିଶ କୋଟିରେ ଏକ କୋଟି ବୋଲି
ଆଉ ନ ଗଡ଼ାଅ ନିରାଶା ଲୁହ,
ଅଳସୁଆ ବୋଲି ଅନ୍ଧାର କୁଡ଼ିଆ କୋଣକୁ
ଆବୋରି ଆଉ ନ ଶୁଅ ।
ମନୋବଳେ ସିନା ମଣିଷ ପଣିଆ
ମନେ ଆଣ୍ଠ ବାନ୍ଧି ଦମ୍ଭେ ହୁଅ ଠିଆ
ଗରବରେ କହ ମୁଁ ଟାଣ ଓଡ଼ିଆ
ମହାନଦୀର ମୁଁ ପ୍ରବଳ ସୁଅ ।
କୋଣାରକ ଶିଳା ନୀଳାଚଳ ଲୀଳା
ପଥର ଦେହରେ କୀରତି ଥୁଅ ।
କାହାକୁ ଭୟରେ କାହାକୁ ଭୟ
ମନୋବଳକୁ କେ କରିବ ଜୟ
ଦାନାକନା ସବୁ ଆସିବ ଅଜାଡ଼ି
ଆତ୍ମବଳେ ଯଦି ରଖିବ ଲୟ ।
ଜଗତଯାଜକଟା ଜଗନ୍ନାଥଙ୍କର
ନୁହ ତାଙ୍କ ରାଜ୍ୟେ ଚୋର ତସ୍କର
କୋଳର ସନ୍ତାନ ସେ ଦେବେ ମୁକର
ଯାହା ଲୋଡ଼ା ଭୟେ କାତର ନ ହୁଅ ।
ଅଛି ସତ ଚାରିଆଡ଼େ ଶତଶତ
ପ୍ରବଳ ଆଘାତ ବନ୍ୟା ବିତ୍‌ପାତ
ମଣିଷ ଦଇବ ବଇରୀ ସହିଏଁ
ପଦେ ପଦେ ବାବୁ ନିତି ମର୍ମାହତ ।
ତଥାପି ମଣିଏ ମଣିଷ ହୁଅରେ
ମଣିଷ ହେବୁଁ ହେ କହ ଏକ ସ୍ୱରେ ।
ମଣିଷ, ମଣିଷ, ମଣିଷ ଆସନ
ଭଗବାନ ସଙ୍ଗେ ଆଜି ସରିସମ ।
ମଣିଷ, ଆମର କି ଲାଜ କି ଭୟ
ଜୟ କପାଳରେ ଅଛି ସୁନିଶ୍ଚୟ ।

ମଣିଷ ଆମେରେ କୋଟିଏ ଓଡ଼ିଆ
ନୋହୁ ଜଗତର ଜଞ୍ଜାଳ ଅଳିଆ ।
ଅଛିରେ ଅଛିରେ ତେଜ ଆମ ମନେ
ଦୁଃଖ ନାହିଁ ଆଉ ନିଷ୍ଠୁର ପତନେ
ଉଠିବୁ ଏଥର ଉଠିବୁ ମୁକର
କହ କହ ଆଜି ହୋଇ ସମସ୍ୱର ।
ଗାଅ ଘରେ ଘରେ ସ୍ୱାଧୀନତା ଗୀତ
ସ୍ୱାବଲମ୍ବନରେ ମଜ୍ଜିଯାଉ ଚିତ୍ତ
ଗତିରୋଧ ତବ କରିବ ଏପରି
ନାହିଁ ଜଗତରେ ଶକତି କେଶରୀ ।
ଉଠରେ ଓଡ଼ିଆ ହୁଅରେ ମଣିଷ
ମଣିଷ ମୁଣ୍ଡରେ ବିଧିର ଆଶିଷ
ମଣିଷ ହିସାବେ ପୂଜା ପାଅ ଭବେ
ନାଚିଉଠୁ ରକ୍ତ ମଣିଷ ଗରବେ ।
ଆସିଛିରେ ଫେରି ଯା' ଯାଇଛି ତବ
ଅଧିକୁଁ ଅଧିକ ବଢ଼ିବ ବିଭବ
ଓଡ଼ିଆ ଏଥର ମଣିଷ ହୁଅରେ
ଓଡ଼ିଆ ନାମରେ କାଳିମା ଧୁଅରେ ।



## କବିତା (୧୧)

ସତେ ଏ ଭାରତ ସେହି ପୁଣ୍ୟ ଆର୍ଯ୍ୟଋଷି ଭୂମି
ସଭ୍ୟତାର ଆଦ୍ୟଲୀଳା ସ୍ଥାନ
ସତେ ଏ ଭାରତ ସେହି ନିନାଦିଲା ଯା' ଅମ୍ବର
ପ୍ରାତଃ ସନ୍ଧ୍ୟା ଦେବଗୀତି ଅମୃତ ସ୍ୱତାନ,
ଯା'ର ଗଙ୍ଗା-ସିନ୍ଧୁତୀରେ ଉଚ୍ଛଳିତ ମନ୍ତ୍ରଗୀରେ
କଲ୍ଲୋଳିତ ଜଳେ ବାଜେ ବୀଣାର ପଞ୍ଚମ
ପବିତ୍ର ସମିଧ କୁଣ୍ଡେ ଅନଳ ହିଲ୍ଲୋଳୋତ୍ଥିତ
ଗନ୍ଧେ ଅଭିନନ୍ଦିତ କି ପାବନ ପବନ ।
କଳାନ୍ତକ ମହାଯଜ୍ଞେ ଜୀବନ ଆହୁତି ଦାନେ
କେ ସେ ବୀର ଆସ ଅଗ୍ରେ ଆସ ହେ ମହାନ
ଲଲାଟରେ ଯଶୋଟିକା ଚୈତ୍ରମଣି ଦୀପ୍ତିଶିଖା
ଅମଳୋଜ୍ଜ୍ୱଳ ବିରାଜୁ ଚିର ଜ୍ୟୋତିଷ୍ମାନ ।



## କବିତା (୧୨)

ପଥମଝିରେ କଷ୍ଟ ଦେଖା ଆଉ ନ ଯିବି ବୃନ୍ଦାବନେ
ଏବେ ମନମୋହନ ଶ୍ୟାମଘନ ରାଜେ ହୃଦ-ପଦ୍ମାସନେ ।
ପଥଧୂଳି ହେବି ବୋଲି
ମଥାରେ ମୁଁ ନେବି ତୋଳି,
ଲୋଟିବି ଶ୍ରୀକୃଷ୍ଣ ବୋଲି ଧୂଳିଶେଯେ ଅଯତନେ ।
କାନ୍ଦେ ବହି ନାମଝୁଲି
ପଥେ ପଥେ ବୁଲି ବୁଲି,
କୃଷ୍ଣ ନାମ ସୁଧାପାନେ ମତାଇବି ସର୍ବଜନେ ।



## କବିତା (୧୩)

ନବ ନୀରଦ ଉଦୟେ କେକୀ କିନ ରସିବ
ନବ ମରୀଚିମାଳୀକୁ ଫୁଲ କିନ ଚାହିଁବ ?
ଆକାଶେ ଶୋଭିଲେ ଧନୁ ମେଘରେ
ନ ଚାହିଁବ କହ କେ ଅନୁରାଗରେ
ତେସନ ସୁନ୍ଦର ମନମୋହକର
ଶ୍ରୀପଦ-ସରୋଜେ ମନ-ଅଳି ନ ବୁମ୍ବିବ ?

କହନ୍ତୁ ଲୋ ଲୋକେ ଶ୍ୟାମ କପଟିଆ
କହନ୍ତୁ କାଳିଆ କୁଳ-କଳଙ୍କିଆ
ଗଳାରେମୋହର ଛୁରୀ ଦେଇ ଭଲେ
ରହ ଆନ ଆନନ୍ଦରେ –
ମଥାମଣି ସମ ମଣିଛି ମିତଣୀ
କିସ ପର ବାଛନ୍ଦରେ ?



## କବିତା (୧୪)

ନଥାଆନ୍ତାରେ ଯଦି ଘନ ଅନ୍ଧକାର
କେ ବୁଝନ୍ତା ଦିନମଣି ସନମାନ,
ନଥାଆନ୍ତାରେ ଯଦି ନିଦାଘର ଖରା
ଧରା କି ରସନ୍ତା ବାରିଝରା ତାନ ?

ବିରହ-ଦହନେ ନତାତିଲେ ତନୁ
ମିଳନ ମାଧୁରୀ ପାଯୋରନ୍ତା ମନୁ,
ବଜର ନ ଥିଲେ ବରଷନ୍ତା ଘନୁ
ସୁଧାରସଧାରା କେ କରନ୍ତା ପାନ ?

ନବହତା ଯଦି ନିରାଶାର ଲୁହ
ନପାଟନ୍ତା ଛାତି ନଉଠନ୍ତା କୋହ,
ନଥିଲେ ଟି ବିଷ କୁଳିଶ ବେଦନା
କୋମଳ ସାନ୍ତ୍ୱନା ଚାହାନ୍ତା କି ପ୍ରାଣ ?

ପାପୀର ଅନ୍ତରେ ପୁଣ୍ୟର ଅମୃତ
ନଥାନ୍ତାରେ ସତ୍ୟ ନଥିଲେ ଅନୃତ,
ନଥାନ୍ତାରେ ଧର୍ମ ନଥାନ୍ତାରେ କର୍ମ
ଭକ୍ତ ନଥିଲେ କି ଥାନ୍ତେ ଭଗବାନ ?



## କବିତା (୧୫)

ଏଣିକି କି ଭୟ ଜେଲ ନିର୍ବାସନେ
ଏଣିକି କି ଭୟ ମୃତ୍ୟୁ ଅନଶନେ ।
ସବୁ ସହିବ ରେ ଭାରତର ହାଡ଼
ନଭାଙ୍ଗେ ସହଜେ ଏ ଦୃଢ଼ ପାହାଡ଼ ।

× × × × ×

ସେନାପତି ତବ କଲେଣି ଆହ୍ୱାନ
ଆସ ଆଗ କିଏ ଦେବ ପ୍ରାଣଦାନ ।
ସେ ଏକ ସଙ୍ଗେ ହିନ୍ଦୁ ମୁସଲମାନ
ଶିଖ ପାର୍ଶୀ ବୌଦ୍ଧ ଇହୁଦୀ ଖ୍ରୀଷ୍ଟାନ ।

× × × × ×

ବୀରଗର୍ବେ ନାଚିଉଠେ କା'ର ଛାତି
ଦେଖ ପ୍ରେମମଦେ କେ ଉଠିଛି ମାତି ।

ଅଛ କି, ବୀର ଭାରତ ସନ୍ତାନ
କାହା ପ୍ରାଣ ଜାଗେ ଦେଖାଉ ସମ୍ମାନ ।
ଆଇନ ଅମାନ୍ୟର ଜଳେ ଅଗ୍ନିକୁଣ୍ଡ
ମୁଣ୍ଡମାଳା ତବ ତହିଁ ହେବ ଗୁଣ୍ଡ ।
ପୁରୋହିତ ନିଜେ ଗାନ୍ଧି ଯଜ୍ଞାସନେ
କେ ଦେବ ଆହୁତି ଆସେ ହେ ବହନେ ।

× × × × ×

ଏବେ କି ଯନ୍ତ୍ରଣା ନ ସହୁଚ ଭାଇ
ଅନ୍ନ ବସ୍ତ୍ର ବେନି ନେଲା ଯେ ଛଡ଼ାଇ ।
ଦୁର୍ଭିକ୍ଷ ଦାରିଦ୍ର୍ୟ ବଢ଼ି ରୋଗ ଦାଉ
ରଣ କରଭାର ସାରେ ତୁମ୍ଭ ଆୟୁ । (ଆହ୍ୱାନ)



## କବିତା (୧୬)

## ଗୀୟର୍ସନଙ୍କ ପାଇଁ କବିତା

ଛନ୍ଦି ଚମ୍ପାବୃତେ ମନ୍ଦାର ମଲ୍ଲିକା
କୁନ୍ଦ ଅରବିନ୍ଦ ଶିରୀ ସମ୍ପଦ
ମଞ୍ଜୁଫୁଲ ମାଳି, ପୂତ ଅର୍ଘ୍ୟଥାଳି
ଘେନି ଯେ ପୂଜିଲ 'ଭାରତୀ' ପଦ ।

କଳିଙ୍ଗ କାନନ ସଘନ ବିମଳ
ବିଲ୍ୱଦଳ ତହିଁ ନଭିଲା ସ୍ଥାନ
ତା କି ଭୁଲିପାରେ ଗଜପତି-ଛାତି
କେଶରୀ ପୁରୁଷୋତ୍ତମ ସନ୍ତାନ ।

କୁଞ୍ଜ-କୃଷ୍ଣ-ଅଭିମନ୍ୟୁ-ଜଗନ୍ନାଥ
କବିସୂର୍ଯ୍ୟ ଜୟଦେବ ଜନନୀ
ସାରଳା ସେବିତ ମଧୁ ରାଧାନାଥ
ମେହେର କୀରତି ବରବରନୀ ।
ଚିଲିକାଚୁମ୍ବିତ ନୀଳାଦ୍ରିମଣ୍ଡିତ
ବୈତରଣୀପୂତ ଉତ୍କଳଧାମ
ଭାରତୀ ମନ୍ଦିର ପୁରୋହିତେ ଆଜି
ଅରପେ ଶ୍ରଦ୍ଧାର ସୁମନ ଦାମ ।
ଥିବ ଯେତେ ଦିନ ଏ ଭାରତଭୂଇଁ
ନଭଃ ଛୁଇଁ ହିମ ଶିର ଶୋଭିବ
ମହାଜଳଧିର ଗଭୀର ଗର୍ଜନ
ଲହରୀ ନର୍ତ୍ତନ ଉଛୁଳୁଥିବ ।
ଜାହ୍ନବୀ ଯମୁନା କୃଷ୍ଣା ଗୋଦାବରୀ
ରେବା ମହାନଦୀ ଗାଇବେ ଗାନ
ବୀଣା ଏସରାଜେ ମୁରଲୀ ମୁରଜେ
ମିଶିବ ଖଞ୍ଜଣି ତରଳ ତାନ ।
ଦେବପୂଜା ଲାଗି ପଞ୍ଚବଟିବନେ
କଳିଙ୍ଗେ କାଶ୍ମୀରେ ଫୁଟିବ ଫୁଲ
ଗୁରୁ ଗ୍ରୀୟର୍ସନ ସେହି ଦିନ ସରି
ପୂଜିବୁଁ ଶ୍ରୀପଦ ସ୍ନେହେ ଅତୁଳ ।

ପୂରବ ପଶ୍ଚିମ ଅପୂର୍ବ ମିଳନ
ମଙ୍ଗଳ ଚୁମ୍ବନ ଯଦି ସମ୍ଭବ
ହେବ କେବେ ଭବେ ତୁମରି ଗୌରବେ
ତୁମେ ପୁଣ୍ୟ ଶ୍ରମେ ମହାନୁଭବ !
ଆମେରିକା ଚୀନ ୟୁରୋପ ଜାପାନ
ସନେ ଏକାସନେ ଏ ହିନ୍ଦୁସ୍ଥାନ
ଯେ ଦିନ ବସିବ ସ୍ମରିବ ସେ ତାର
ଭାଷାକୁ ଜଳା ଜେ ମହତ୍ତ୍ୱ ଦାନ ।
ସ୍ୱଭାବେ ସୁନ୍ଦର ଭାରତ ଆମର
ବିଚିତ୍ର ପ୍ରକୃତି ଚିତ୍ରଶାଳିକା
ତହୁଁ ଗୁରୁତର ତା ଭାଷାସମ୍ଭାର
ସଜାଡ଼ିଲା ତବ କର ତୁଳିକା ।
ହେ ଅମର ଶିଳ୍ପ ! ଫଳକିବି କିବା
ଅଳ୍ପ ତୁଚ୍ଛ ଦୂବପତ୍ର ଦିଓଟି
ଭଲ ଲାଗେ ପରା ସ୍ଥବିର ଶ୍ରୁତିରେ
ଗୁନୁଗୁନୁ ଭ୍ରମରରା ଦରୋଟି ।
ଶୋଭୁ ପଛେ ହୀରାମଣି କୋହିନୂର
ମୋତି ପଦ୍ମକାନ୍ତ ପଦେ ଅତୁଳ
ଆପଣା ଗୁଣରେ ଘେନ ହେ ଚରଣେ
ଫୁଲରେଣୁ ଏ ତ ଅମୂଲମୂଲ ।



## କବିତା (୧୭)

ଓଁ
ବୀର ଶ୍ରୀ
ଜୟ ମାଁ

ବୀର ଶ୍ରୀ ବୀରବର ବୀରାଗଗଣ୍ୟେ । ବୀର ଶ୍ରୀ କଳିଙ୍ଗ ଧନ୍ୟେ ।
ବୀର ଶ୍ରୀ ବୀରବର କୀର୍ତ୍ତି ବିଚିତ୍ରେ । ବୀର ଶ୍ରୀ ବୀରବର ଧାତ୍ରୀ ପବିତ୍ରେ ।
ଜୟ ମାଁ ବୀର ଶ୍ରୀ ବୀରବର ଜନନୀ । ଜୟ ମାଁ ବୀର ଶ୍ରୀ ବୀରବର ପାଳିନୀ ।

ଜୟ ମାଂ ବୀର ଶ୍ରୀ ବୀରବର ମୋହିନୀ । ଜୟ ମାଂ ବୀର ଶ୍ରୀ ଶାଳିନୀ ।
ବୀର ଶ୍ରୀ ଉତ୍କଳ ଅତୁଳ ଗୌରବ । କୋଣାର୍କ ଭୁବନେ ଭାସ୍କର ଗରିମା ।
ତବ ପୁଣ୍ୟ କରେ କଳିଙ୍ଗ ଅଙ୍ଗରେ । ଲେଖ ଜଗନ୍ନାଥ ଏ ବୀର ଜାତିର ବୀର ଶ୍ରୀ ମହିମା ।
ହେଉ ଆମେ ନିତ୍ୟ ବୀର ଶ୍ରୀ ମଣ୍ଡିତ । ବୀର ଶ୍ରୀ ସ୍ୱଦେଶ ନ ହେଉ ଖଣ୍ଡିତ ।
କଳିଙ୍ଗ କୁଳରେ ସରବେ ଗରବେ ହୁଅନ୍ତି ବୀର ଶ୍ରୀ । ହେଉ ପଛେ ମୂର୍ଖ ଭିକାରୀ ପଣ୍ଡିତ ।
ହେଉ ସେ ମଳିନ ମ୍ରିୟମାଣ କ୍ଷୀଣ । ବୀର ଶ୍ରୀ ହେଉ ତା ଜୀବନର ଚିହ୍ନ ।
ବୀର ଶ୍ରୀ ଜାତିର ବୀର ଶ୍ରୀ ଉଚ୍ଛିନ୍ନ । ନ ହେଉ କଦାପି ନ ହେଉ ବିଚ୍ଛିନ୍ନ ।
ଆମେ କଳିଙ୍ଗର ବୀର ଶ୍ରୀ ସନ୍ତାନ । ବୀର ଶ୍ରୀ ଆମର ଜାତୀୟ ସମ୍ମାନ ।
ବୀର ଶ୍ରୀ ଜଗତେ ଆମ ଜୟ ଧ୍ୱଜା । ଭାରତର ପ୍ରତି ପ୍ରାନ୍ତେ ପାଉ ପୂଜା ।
ବୀର ଖାରବେଳ ଗଙ୍ଗା ଗଜପତି । ବୀର ଶ୍ରୀ ବୀରର ଜାତି ମହାମତି ।
ମହାଭାରତର ମହା ଉଦ୍‌ବୋଧନେ । ଗାନ୍ଧୀ ଜବାହର ସୁଭାଷ ସଦନେ ।
ବୀର ଶ୍ରୀ ଭୂଷିତ କର ଆଜ ଭାଇ । ସ୍ୱରଦିବଂଗତେ ଅଶ୍ରୁ ବରଷାଇ ।
ମଧୁ, ଗୋପବନ୍ଧୁ, ଚିତ୍ତ, ଲାଜପତ । ମୋତି ଜ୍ୟୋତି, ଯତି ବୀରେନ୍ଦ୍ର ଭଗତ ।
ସ୍ୱର୍ଗୀୟା କମଳା ବୀରଶ୍ରୀ ଶାଳିନୀ । ଭାରତ ଦୁହିତା ବୀର ବିଳାସିନୀ ।
ବୀର ଶ୍ରୀ ଭାରତ ବୀର ହେ ଉତ୍କଳ । ଯଶୋଗାନେ ପୂରୁ ପୃଥିବୀ ମଣ୍ଡଳ ।



# ଉତ୍ସର୍ଗ

ଡାକ୍ତର କୃଷ୍ଣପ୍ରସାଦ ବ୍ରହ୍ମଚାରୀ

ତୁମେ ଗରିବ ଓଡ଼ିଆ ଶ୍ରମିକ ଓ ପତିତା ଓଡ଼ିଆ ଭଉଣୀଙ୍କ ଦୁଃଖରେ ଦୁଃଖିତ ଓ ଉଦାର ବ୍ରତରେ ବ୍ରତୀ । ଅତଏବ ଏ କାନ୍ଦଣା ତୁମେ ଶୁଣ ।

ଦିଲ୍ଲୀ

୧ ତାରିଖ, ଅପ୍ରେଲ୍ ୧୯୩୬ କୁନ୍ତଳା

# ଓଡ଼ିଆଙ୍କ କାନ୍ଦଣା

## ସଙ୍ଗୀତ

କି ବୋଲି ଡାକିବି ମାଆ ଗୋ !
କୋଟି ବଙ୍କାଳମାଳିନୀ,
ଦଳିତା ଲାଞ୍ଛିତା ଭୀତା
ଜଗତର ଜଞ୍ଜାଳିନୀ । ଘୋଷା ।
ଜରେ ଜରେ ଜର ତନୁ
ଶିରୀ ଧରିଚି ବଦନୁ,
ସାହସ ହଜିଚି ମନୁ କଳିଙ୍ଗ ତୁ କାଙ୍ଗାଳିନୀ । ୧ ।
ବରଷେ ବରଷେ ବଢ଼ି-
ପାଣିରେ ଗଲୁଣି ସଢ଼ି,
ଦେହେ ଚିରାକନା ଧଡ଼ି,
ପେଟଭୋକେ ପାଗଳିନୀ । ୨ ।
ଭଙ୍ଗା ତୋର ବାରବାଟୀ
କୋଣାର୍କ ଚୁମୁଚି ମାଟି,
ରୁକ୍ଷ ବକ୍ଷ ପଡ଼େ ଫାଟି କାନ୍ଦିହାନା ଜରାଳିନୀ । ୩ ।
ଚୋର ବିଦେଶୀ ଗାଳୁଆ
ହରିନେଲେ ହୀରା ନୁହା,
ଶୂନ୍ୟ ତୋ ସୁନା ଫରୁଆ, ଭିକ୍ଷାଧାରୀ-ସ୍ୱପ୍ନଳିନୀ । ୪ ।
ଥାମ ଚିହ୍ନ ନେଲେ ବହି,
ନିଜର ସେ ହେଲେ ଜହି,
ପର ପଦାଘାତ ସହି ପାଷାଣ ତୁ ରସାଳିନୀ । ୫ ।



## — ପ୍ରଶ୍ନ —

ମହାନଦୀର ପ୍ରବଳ ବନ୍ୟା ଓଡ଼ିଶାର ପ୍ରଧାନ ସମସ୍ୟା । ଏ ସମସ୍ୟାର ସମାଧାନ ନ ହେଲେ ଓଡ଼ିଆଜାତି କଦାପି ମୁଣ୍ଡ ଟେକିପାରିବ ନାହିଁ । ଲକ୍ଷ ଲକ୍ଷ ଲୋକ ପ୍ରତିବର୍ଷ ମରିବେ ଓ ଘରଦ୍ୱାର ଛଡ଼ା ହେବେ ତ ଦେଶର ଉନ୍ନତି ହେବ କିପରି ? କିନ୍ତୁ ଓଡ଼ିଶାର ଏ ସମସ୍ୟା ପ୍ରତି ଅର୍ଥାଭାବରୁ ହେଉ କି ଆମର ଦୁର୍ବଳତା ଯୋଗୁଁ ହେଉ, କାହାରି ଦୃଷ୍ଟି ପଡ଼ିନାହିଁ । ଅତଏବ ଆମେ ସର୍ବଦା ଦୀନ-ଦରିଦ୍ର ଓ ଜଗତର ଅଜ୍ଞାତ ଜାତି ହୋଇ ରହିବୁଁ ସିନା । ଏହାର ପ୍ରତିକାର ?

କୁନ୍ତଳା କୁମାରୀ

# ସୂଚୀପତ୍ର





## ବାଳୁତ ପୁଅର ଭାବନା

ଆକାଶେ ଉଦୟ ନୀଳ ମେଘର କାନ୍ତି,
ଘରେ ଘରେ ଆଜି ପରା ରଜ ସଂକ୍ରାନ୍ତି ।
ଆସିଲା ଆଷାଢ଼ ସଙ୍ଗେ ଘେନି ବରଷା,
କାମରେ ଗଲେଣି ଲାଗି ଆଜିଠୁଁ ଚଷା ।
କିନ୍ତୁ ମହାନଦୀ କୂଳେ ବସା ମୋହର,
ମେଘ ଦେଖି ତା କଥାକୁ ମାଡୁଛି ଡର ।
ବିଦେଶରେ ଜକା ମୋର କରେ ଚାକିରି,
ବିଧବା ବୋଉଟି ଘର ରହିଛି ଧରି ।
ନୂଆ ବୋହୂ ଖୁଡ଼ୀ ମୋର, ନ ଶୁଭେ ପାଟି,
କରିବୁଁ ମାଟିକୁଡ଼ିଆ ଘେରାଇ ଝାଟି ।
ବାଡ଼ିରେ ବୁଣିଚୁ କିଛି ଶାଗପତର,
କିନ୍ତୁ ମହାନଦୀ କୂଳ, ମାଡୁଛି ଡର ।
ଜମି ତିନିମାଣ, ଧାନ ହୁଏ ନିଅଣ୍ଟ,
ଟଙ୍କି ଟିକସ ତହିଁକି ଖଜଣା କଣ୍ଟ ।
ଘରେ ବନ୍ଧା ଗୋରୁ ଦୋଟି ହେଲେଣି ହଡ଼ା,
ଗୋଚର ଭୂଇଁ ତ ନାହିଁ ଘାସ କି ନଡ଼ା ।
ପଖାଳ ପେଜରେ ଆମେ ଜୀଇଁ ରହିବୁଁ,
ମହାନଦୀ କୂଳେ ପୁଣି ବସା ବାନ୍ଧିବୁଁ ।
ଜକା ପଠାଏ ମାସକୁ ଟଙ୍କା ଚାରୋଟି,
ଦୁଃଖେ ସୁଖେ ଚଳୁଁ ଆମେ ପ୍ରାଣୀ ତିନୋଟି ।
କଲିକତା ବୋଲି କାହିଁ ଦୂର ସହର,
ସହଜେ ଜକା କି କେବେ ଆସଇ ଘର !
ବାଳୁତ ପୁଅଟି ମୁହିଁ, ନାହିଁ ଭରସା,
ମହାନଦୀ କୂଳେ ପୁଣି କରିବୁଁ ବସା ।
ପହିଲି ଆଷାଢ଼ ମେଘ ବରଷେ ପାଣି
ବଢ଼ିବ ଏଥର ମହାନଦୀ ଉଠାଣି ।
ଘୋର ବଢ଼ି ଦିନେ କାହୁଁ ଆସିବ ମାଡ଼ି,
ନେବ ଏକାବେଳେ ଟାଟି କବାଟ ତାଡ଼ି ।
ମହାନଦୀ କୂଳେ ଯେତେ ବାନ୍ଧିବୁଁ ବସା,
କିଏ ରଖିବ ଆମକୁ, କିଏ ଭରସା ?
ଆଜି ଜଗନ୍ନାଥଙ୍କର ସ୍ନାନ ଯାତରା,
ଉଠେ ପରା ମନୁ ଛାଡ଼ି ହେଁସ କତରା ।
କେତେ ପୁନିଅଁ ପରମ ଗୁଣ୍ଡିଚା ଯାତ,
ବଡ଼ ଦେଉଳେ ଭେଟନ୍ତି ସହୀ ସଙ୍ଗାତ ।
ଆମେ ମହାନଦୀ କୂଳେ କରିବୁଁ ଘର,
ଆମ ପାଇଁ ଏ ସୁଖ ତ ସ୍ୱପ୍ନମାତର ।
ମାଆ ବୋଲି ମହାନଦୀ ନାଆଁ ପଡୁଚି,
ଗାଆଁ ଗଣ୍ଡା ବୁଡ଼ାଇ କି ଯଶ ଅର୍ଜୁଚି ?
ଏଡ଼େ ବଡ଼ ରାଜ୍ୟ ପରା ଆମ ଓଡ଼ିଶା,
ଆମ ଲୋକହାତରେ କି ନାହିଁ ପଇସା ?
ଆଉ କି ଅଛନ୍ତି ପୂର୍ବ ଓଡ଼ିଆପୁଅ,
ବନ୍ଧ ବନ୍ଧାଇ ନଦୀରେ ରୋଧିବେ ସୁଅ ?
ଏବେ ଆମେ ଅତି ଦୀନ ଦୁର୍ବଳକାୟ,
ଆସିଲେ ଭୀଷଣ ବଢ଼ି ନାହିଁ ଉପାୟ ।
ଦଣ୍ଡକେ ଭସାଇ ନିଏ ଘରଦୁଆର,
ସେତେବେଳେ କେ କରଇ କା'ଉପକାର !
ଲକ୍ଷ ଲକ୍ଷ ଜୀବନକୁ ନାହିଁ ଭରସା,
ମହାନଦୀ କୂଳେ ଯେତେ ବାନ୍ଧିଚୁଁ ବସା ।
ବଢ଼ିରେ ଉଚ୍ଛନ୍ନ ଦେଶ ପ୍ରତି ବରଷ,
ଶୁଣି ମେଘ ଘଡ଼ଘଡ଼ି ନାହିଁ ହରଷ ।
ଆମ ଫସଲବୁଣା ଯେ ନୁହେ ସାର୍ଥକ,
ଧୋଇଆ ଅଞ୍ଚଳ, ସଦା ମନରେ ଦକ ।
ମହାନଦୀ କୂଳେ ମିଛେ କରିବୁଁ ଘର,
ଛାଡ଼ି ପଳାଇବୁଁ ସର୍ବେ ଗାଆଁ ଏଥର ।
ଗାଆଁରେ ରହି କି ଲାଭ, ବଢ଼ି ମଡ଼କ,
ନିତି ଆମ ମୁଣ୍ଡେ ପଡ଼େ ରାଧାଚଡ଼କ ।
ଆମ ଦୁଃଖ କଥା କହି ନ ଶୁଣେ ପଦେ,
ବିଦେଶ ଗଲେଣି ତେଣୁ ଗାଆଁରୁ ଅଧେ ।
ମହାନଦୀ କୂଳେ ମିଛେ ବାନ୍ଧିବୁଁ ବସା,
ତା' ଟାଣ ସୁଅ ମୁହିଁକୁ ନାହିଁ ଭରସା ।
କହୁଥିଲେ ଆମ ଆଗେ ନନ୍ଦ ମାଷ୍ଟର,
ହେବ ବଡ଼ ରାଜ୍ୟ ଆମ ଦେଶ ଏଥର ।
ବଡ଼ ରାଜ୍ୟ ହୋଇ ଯଦି ଆସିବ ବଢ଼ି,
କେହି ନ ରୋଧିବେ ମହାନଦୀ ଲହଡ଼ି ।
ସେ ବଡ଼ ରାଜ୍ୟରେ କହ କି ଲାଭ ଆଉ,
କେତେ ସହିବୁଁ ଏ ମହାନଦୀର ଦାଉ ?

ହୋଇଥିଲା ସେ ବରଷ ବଢ଼ି ପ୍ରବଳ,
ଯହିଁ ଚାହଁ ଦିଶେ ତହିଁ କେବଳ ଜଳ।
କି କଷ୍ଟେ ଜୀବନ ତେବେ ଥିଲୁଁ ବଞ୍ଚାଇ,
ଯା ଲାଗି ବଞ୍ଚିଲୁଁ ତାଙ୍କୁ ଭୁଲିତ ନାହିଁ।
ଆମ ଲାଗି ବହିଥିଲା ତାଙ୍କରି ଲୁହ,
ନ ମାନିଲେ ମହାନଦୀ ପ୍ରବଳ ସୁଅ।
ଆମ ଗାଆଁରେ କହନ୍ତି, ସେ ଗୋପବନ୍ଧୁ
ଥିଲେ ଏକା ଆମ ଦୁଃଖୀ ଗରିବ ବନ୍ଧୁ।
ଥିଲେ ଅବା ଗୋପବନ୍ଧୁ ଆମ ପାଇଁକି
କରିଥାନ୍ତେ କିଛି ବାଟ, ଆଉ କାହିଁକି
ମନେ ପକାଇ ସେ କଥା ହେଉଛୁ ଘାରି ?
ହେଲେ ହେଉ ମହାନଦୀ ଆମ ଭଗାରି।
ଆମେ ତା କୂଳରେ ଯେବେ ବାନ୍ଧିଚୁଁ ବସା,
ଫେଡ଼ିବୁଁ ଆମରି ହାତେ ଆମ ଦୁର୍ଦ୍ଦଶା
ମେଘକୁ ଅନାଇ ମନେ ମନେ ପାଞ୍ଚଇ,
ବଡ଼ ହେଲେ ଗୋପବନ୍ଧୁ ହେବି ବାଞ୍ଛଇ।

କଳା ଭଳି ନ ଯିବି ମୁଁ କରି ବିଦେଶ,
ପାଞ୍ଚ, ଦଶଟି ଟଙ୍କାରେ ଜୀବନ ଶେଷ।
ବଢ଼ି ନାଗି ଯା' ଦିଶିବ ବାଟ କରିବି,
ଲାଟ କିଳଟର ସଙ୍ଗେ ନିଷ୍ଠେ ଲଢ଼ିବି।
ରାଇଜ ଲୋକଙ୍କୁ ମେଳି କରିବ ଆଣି
ଆମ ଦୁଃଖ କଥା ତାଙ୍କ ଆଗେ ବଖାଣି।
କହ କି ଉପାୟ କର ଭାଇ ସକଳ,
ନୋହିଲେ ଜୀବନ ଘେନି ହେଲୁଁ ବିକଳ।
ଲକ୍ଷ ଲକ୍ଷ ତୁମ ଭାଇ ତେଜିଲୁଁ ପ୍ରାଣ,
ତୁମେ ଆମ ସାହା, ରୋଧ ଏ ସୁଅ ଟାଣ।
ରାଇଜଯାକରେ ଏତେ ମଣିଷ ଥାଇ
ଆମ ଗୁହାରି କେହି କି ଶୁଣିବେ ନାହିଁ ?
ଶୁଣନ୍ତୁ ନ ଶୁଣନ୍ତୁ କେ, ହାତେ ଆମର
ଫେଡ଼ିବୁଁ ଦୁର୍ଦ୍ଦଶା ଯେତେ କରିବୁଁ ଘର।
ମହାନଦୀ କୂଳେ ତେବେ ଆପଣା ସୁଖେ
ବହିଯିବ ବଢ଼ିପାଣି ସମୁଦ୍ର ମୁଖେ।



# ଓଡ଼ିଆ ବୋହୂ

ଲକ୍ଷ ଲକ୍ଷ ଓଡ଼ିଆ ବୋହୂ କ'ଣ ଏହିପରି ନିଃସଙ୍ଗ ନିରାଶ୍ରୟ ହୋଇ କାନ୍ଦୁନାହାନ୍ତି ? ଏମାନଙ୍କ ମଧ୍ୟରୁ କ'ଣ ଅନେକେ ଘରୁ ବାହାରିଯାଇ ପତିତା ହେବେ ନାହିଁ ? ଏମାନଙ୍କ ପାଇଁ ଉପାୟ କ'ଣ ?

କୁନ୍ତଳାକୁମାରୀ

## ଓଡ଼ିଆ ବୋହୂର କାନ୍ଦ

ଆଜି ଯେ ମହୋତ୍ସବ,    ଆଜି ଗୁଣ୍ଡିଚା ଯାତ,
ସଜ ହୁଅ ମାଳତୀ !    ଡାକିଲାଣି ପ୍ରଭାତ ।
କିନ୍ତୁ ମାଳତୀ ମୁହିଁ    ମୋର ପୋଡ଼ା କପାଳ
ସୁଖ ମୁଁ ନଜାଣଇ,    କାନ୍ଦେ ସଞ୍ଜ ସକାଳ ।
ମୋ ସଙ୍ଗେ କାନ୍ଦେ ମୋର ଶାଶୁଟି ନିରିମାଖୀ,
ଭାବନାରେ ଶଶୁର    ଶେଯେ ଗଲେଣି ଲାଖି ।
ଆସେ ଯେବେ ଘରକୁ    କେବେ ନଣନ୍ଦ ଦୁଲୀ
ଭାଇ ସକାଶେ କାନ୍ଦି    ମୁହଁଟି ଯାଏ ଫୁଲି ।
ମାଆ ମୋର ମଲାଣି    ମୋ'ଲାଗି ଭାଳି ଭାଳି,
ବାପା ମୋର ବସିଂଚି    ଛାତିରେ ଚିତା ଜାଳି ।
ହେଲା ପାଞ୍ଚ ବରଷ    ଆସି କଲଣି ଘର,
ପାଞ୍ଚଦିନ ପାଇଁକି    ନ ରହିଲେ ସଙ୍ଗର ।
କି' କରିବୁଁ ଆମେତ    ହେଲୁଁ କରମହୀନ,
ଦିନୁ ଦିନୁ ଶଶୁର    ଦୃଷ୍ଟି ହୋଇଲା କ୍ଷୀଣ ।
ବିଲବାଡ଼ିର ଧାନ    ଦଶ କୁଟୁମ୍ବ ପାଇଁ
ହେଲା ନଅଣ୍ଟ ପୁଣି    କରଜ ଶୁଝା ନାହିଁ ।
ଛୋଟ ଛୋଟ ଦିଅର    ପଢ଼ନ୍ତି ଚାହାଳୀରେ,
ଛୋଟ ଛୋଟ ନଣନ୍ଦ    ବୁଲୁଥାନ୍ତି ସାହିରେ ।
ବଡ଼ ଶଶୁରଙ୍କର    ହୋଇଗଲାଣି କାଳ,
ବିଧବା ବଡ଼ ମାଆ    କୁଟୁମ୍ବର ଜଞ୍ଜାଳ ।
ଘରେ ଦଶ ପରାଣୀ,    ଏକା ପୋଷଣାହାରୀ
ଗାଆଁରେ ଧନ୍ଦା ନାହିଁ,    ଦେଖୁଁ ଗଲେ ବାହାରି ।
ଗଲାବେଳେ କହିଲେ,    ବହୁ ଧନ ଅର୍ଜିବି,
ନ କାନ୍ଦ ଧନ ମୋର    ନିତ ଭାଷା ଲେଖିବି ।
ପଠାଉଥିବ ମୋତେ    ଘର ଶୁଭ ବାରତା,
ଜଗନ୍ନାଥ ଭରସା    ଏକା ଆମ କରତା ।
ଏତକେ କହି ଦିନେ    ସଞ୍ଜ ଗାଡ଼ିରେ ବସି
ଗଲେ ଚାଲି ବିଦେଶ    ରହିଲିମୁଁ ତରସି ।
ଟଙ୍କା ଲାଗି ମୋ ନାଥ    ଗଲେ ବିଦେଶ ଲଙ୍ଘି,
ମୋତେ ଲାଗେ ସ୍ୱପନ    ବଞ୍ଚିବି ମୁଁ କିପରି !
ମାସେ ଦି'ଖଣ୍ଡ ଭାଷା    ଆସୁଥିଲା ପହିଲେ,
ଟଙ୍କା ପାଇ ଶଶୁର    ଦେ'ଣା କିଛି ଶୁଝିଲେ ।
ଏବେ ଦୁଇ ବରଷ    ପାଖ ପାଖ ହେଲାଣି,
ତାଙ୍କୁ ଚାହିଁ ଚାହିଁ    ଆଖିପାଣି ମଲାଣି ।
କୁଆଡ଼େ ଗଲେ ତାଙ୍କ    ଆଦରର ମାଣିକ,
ଶାଶୁ କାନ୍ଦି କହନ୍ତି    ଜନମକୁ ମୋ ଧିକ୍ ।
ଦୂର ବରମା ଦେଶ    ପରାରାଜ୍ୟ ପରା,
କେ ଭୁଲାଇ ରଖିଲା    ଦୁଃଖୀ-ରଙ୍କପସରା ?
ବରମା ନାମ ଶୁଣି    ଛାତି ମୋ ଦକଦକ,
ବୁଢ଼ା ବାହୁନୁଥାନ୍ତି    ପୁଅ ଗୁଣ ଯୋଡକ ।
ଉଠି ବଡ଼ିସକାଳୁ    ନିତି ଦାଣ୍ଡ ଦୁଆରେ
ତାଙ୍କ ହରକରାକୁ    ଚାହିଁଥାନ୍ତି ଆଶାରେ
ଗଲେ ସେ ବାଟ ଦେଇ    ଡାକ ପକାନ୍ତି 'ପୁଅ,
ଅଛି କି ଭାଷା' କହି    ଆଖିରୁ ଗଡ଼େ ଲୁହ ।
କବାଟ ପଛଆଡୁ    ଚାହିଁଥାଏଁ କାତରେ,
'କିଛି ନାହିଁ' ଶୁଣିଲେ    କୋହରେ ଲୁହ ଝରେ ।

ବରମା ଦେଶ କଥା   କରଇ କଳପନା,
ସପନେ ଦେଖେଁ ସେତ   ମାୟାପୁରୀ ରଚନା ।
ତହିଁ ବିଦ୍ୟାସୁନ୍ଦରୀ   ନାରୀମାନେ ମୋହିନୀ,
ମୋ କାନ୍ତ ତାଙ୍କ ବଶେ, ମରେଁ ମୁଁ ଅଭାଗିନୀ ।
ତାଙ୍କୁ ଧାଇ ମନରେ   ଆଉ କି ଏ ଜୀବନେ
ନ ହେବ ଦରଶନ,   କାନ୍ଦି ନିନ୍ଦେ କରମେ ।
ହୋଇ ବିକଳ କାକ   ମୁଖେ ଅଧାର ଥୋଇ
କହେଁ, 'ଶୁଭ ବାରତା   ଦେଇଯା କାକପୋଇ !
ଉଡ଼ିଯା ସେ ଦେଶକୁ   ଯହିଁ ମୋ ପ୍ରାଣକାନ୍ତ
ସାତ ସମୁଦ୍ର ପାରି,   ତହିଁ ଯାଇ ଏକାନ୍ତ
କହିବୁ ତାଙ୍କ ଆଗେ   ମୋ ଦୁଃଖ ରାଶିରାଶି,
ନ ପାଇଲେ ବାରତା   ପ୍ରାଣ ଦେବିଟି ଝାସି
କୂଅ ପୋଖରୀ ଜଳେ,   ନୋହି ମୋ' ପ୍ରତି ବାମ
ଉଡ଼ିଯା'ରେ ବାୟସ   ଯହିଁ ମୋ ପ୍ରାଣାରାମ
ଅଛନ୍ତି ମୋତେ ଭୁଲି,   ତୁ ଗଲେ ଅବା ମିତ
ମନେ ପଡ଼ିବ ମୋତେ   ମୋର ବ୍ୟାକୁଳ ଚିତ୍ତ ।'
କାହିଁରେ ଶାନ୍ତି ନାହିଁ,   ଶାଶୁ ନାହାକ ଡାକି
ପକାନ୍ତି ଖଡ଼ି, ମୁଁ ତ   ଦୁଆର ପଛେ ଟାକି
କାନ ଡେରି ଶୁଣଇ   ପ୍ରଶ୍ନ ଉତ୍ତରତକ,
ସବୁ ମିଛ ହୁଅଇ   ନାହାକଗୁଡ଼ା ଠକ ।
ଶାଶୁ ବାର ବରତ   କରନ୍ତି ପୁଅ ଆଶେ,
ମଙ୍ଗଳ ମନାସନ୍ତି   କେତେ ଦେବତା ପାଶେ ।
ଦେଖନ୍ତି ସପନରେ   ପୁଅ ଫେରିଚି ଘର,
ଜାହିଁ କିଏ ଫେରିଲା ।   ଆଖି ଦମା ଝରଝର ।
ଦିନେ ମୋ କପାଳରେ   ନୋହିଲା ସ୍ୱାମୀସୁଖ,
ବାଳୁତକାଳୁ ବିହି   ଦେଲା ଦାରୁଣ ଦୁଃଖ
ମୁଁ ଯାକୁ ଏତେ ମନେ-   କରୁଛି ନିଶିଦିନ,
ଯା'ଲାଗି କାନ୍ଦି କାନ୍ଦି   ତନୁ ନୟନ କ୍ଷୀଣ,
ସେ ଭଲା ଦିନେ ମୋତେ   କରୁଥାନ୍ତା ମନରେ,
କାହିଁ ଦୂର ବିଦେଶେ   ରହିଲା ମଉଜରେ ।
ଆଜି ମେଳା ଉତ୍ସବ,   କାହିଁ ତହିଁ ହରଷ ?
ନିଆଶ୍ରୀ ନିଃସଙ୍ଗ ମୁଁ   କାଟେ ଯୁବା ବୟସ ।

ମିଛେ ମିଛେ ସିନା ମୁଁ   ହାତେ କାଚ ନାଇଚି,
ବିଧବାଗୁ ହୀନ ମୁଁ   ସଧବା ବୋଲାଇଚି ।
ଘରେ ପିଠାପଣାଟି   ହେଲେ ମୋତେ ନରୁଚେ,
ପରଷି ସଭିଙ୍କି ମୁଁ   ନିଜ କଥା ମୁରୁଛେ ।
ଆଖି ପୋଛି ରୋଷାଇ   ଶାଳେ କଂସାରୁ ଧରି
ଭାବେଁ ବିଦେଶେ ଏକା   ଥିବେ ଅବା କିପରି ?
କିଏ ବା ରାନ୍ଧିବାଢ଼ି   ଥାଳୀ ପରଷୁଥିବ,
ଶେଯ ମସିଣା ପାରି   ପାଦସେବା କରିବ ?
ଦେହ ପାଆକୁ ଜଗି   ଦେଖା ଶୁଣା କରିବ,
ମନ ବୁଝି କିଏସେ   ପଦେ କଥା କହିବ ?
ପୋଡ଼ିଯାଉ ମୋ ଖିଆ, ମୁଁ ତ ହୀନିକପାଳୀ,
'ହତଶ୍ରୀ ଅଲକ୍ଷଣୀ'   ଶାଶୁ ଦିଅନ୍ତି ଗାଳି ।
ତାଙ୍କ ଆଗରେ ପୁଣି   କିପରି ହେବି ସଜ,
ଯମ ଦୁଆର ଯିବା   ତହୁଁ ବଳି ସହଜ ।
ଘର ନ ଚଳେ ଆଉ,   ଶଶୁର ହରବର,
ବିକି ଭାଙ୍ଗି ଖାଇଲେ   ଯାହା ଚିଜ ପତର ।
ଯା' ଥିଲା ଜମିବାଡ଼ି   ବନ୍ଧା ଛନ୍ଦା ହେଲାଣି,
ରଣ ଖଜଣା ଲାଗି   ମହାଜନ ନେଲାଣି ।
ହୋଇଥିଲା କରଜ   ବିଭାବେଳେ ପୁଅର,
ଟଙ୍କା ପଚିଶି ଏବେ   ହେବ ଶହେ ଉପର ।
ମକଦ୍ଦମା କରିବ   ଗରଜେ ଭୀମ ସାହୁ,
ପଦ୍ୟାରୁ ବଳିଲାଣି   ଭଗୁ ପିଆଦା ଦାଉ ।
ଦାଣ୍ଡ ଦୁଆରେ ବସି   ଡାକେ, 'ପଧାନ ପୁଅ,
ଲୁଚିବ କେତେଦିନ,   ଦାଣ୍ଡେ ଦେଖାଅ ମୁହଁ ।
ନେଲାବେଳକୁ ଟଙ୍କା   ନେଇ ହାତ ପତାଇ,
ଦେଲାବେଳକୁ ଏବେ   ବସ ମୁହଁ ଶୁଖାଇ ।
ନ ଚଳିବ ଏ ପାଠ,   ନ ଦେବ ଯଦି ଭଲେ
ସିଧା ଆଙ୍ଗୁଠିରେ କି   ଦେଖୁଛ ଘିଅ ଗଲେ !
ସଲଖିବି ସୁନ୍ଦର   ନ ଜାଣୁ କରାମତି,
ତେଣୁ ଏତିକି ଟାଣ,   ରହିଲୁତୁ ବରତି ।'
ଟଙ୍କି ଟିକସ ଲାଗି   ମାସେ ମାସେ ତାଗଦା,
ମୁଠିଏ ଧାନ ନାହିଁ,   ବିଲ ପଡଚି ପଦା ।

କି କରିମୁଁ ସର୍କାର    କଥାକ୍ ବଳ କା'ର ?
ବିକୁଁ ଥାଳି ଡାଟିଆ,    ନାହିଁ ତ ରୋଜଗାର ।
ଧାନ କୁଟି କୁଟି ମୋ    ଠେଙ୍ଗିଣି ଛିଡ଼ିଲାଣି,
ଚକି ପେଶି ହାତରେ    ବିଣ୍ଡି ପଡ଼ିଗଲାଣି ।
ନିତି ଅନ୍ଧାରୁ ଉଠି    ବାସି ପାଇଟି ସାରେ,
ଗୁହାଳ କାଢ଼ି ଝାଡ଼ି    ଲାଗେ ଲିପାପୋଛାରେ ।
ଗାଧୋଇସାରି ପୁଣି    ରୋଷାଇଶାଳେ ପଶି
ଖଟି ଖଟି ମୋ ହାଡ଼    ମାଉଁସ ଗଲା ଖସି ।
ଘରେ ଭରା କୁଟୁମ୍ବ    ସମସ୍ତଙ୍କ ଅଞ୍ଜଳି
ସହି ସହି ଦେହରେ    ରକତ ଗଲା ଜଳି ।
କେତେ ଶେଳବସର    ଥିଲିଟି ବାପଘରେ,
ଆଜି ଏ ହାଡ଼ଭଙ୍ଗା    ଖଟଣୀ କପାଳରେ ।
ଦେଖନ୍ତା ଯେ ମୋ ଦୁଃଖ, ବାଧନ୍ତା ଯା ଦେହକୁ
ସେ କାହିଁ ଦୂର ଦେଶେ, କାନ୍ଦେ ନିନ୍ଦି ଭାଗ୍ୟକୁ ।
ବାଧିବ ବା କାହାକୁ    କହିଲେ ମୋ କାହାଣୀ ?
ଶାଶୁ କହନ୍ତି, "ଆମେ    କଗୁଁ ପଥର ପାଣି,
ତୋ ଭଳି ଯୁବା ଗଣ୍ଡି    ବହି ଦୁ ଅଳସେଇ
ପାଇଟି ଲାଗି ଅବୁ    ମୋ ହାତକୁ ଅନେଇ !
ରାଣୀ ରାଉତାଣୀକି    ଖଞ୍ଜି ଖଟ ପଲଙ୍କ
ବସି ପୂଜା କରିବି    କିଲୋ ମୁଁ ଦୁଃଖୀରଙ୍କ !
ରାଣୀ ଯା କରମରେ    ହୋଇଥାନ୍ତୁ ଅଭାଗୀ,
ସେ ତ କାହିଁ ରହିଲା    ପୋଡ଼ାମୁହିଁ କି ତ୍ୟାଗି ।
ଲକ୍ଷ୍ମୀ ଗଲେଣି ଛାଡ଼ି    ପଡ଼ିଲା ଦିନୁ ପାଦ,
ଅର୍ଷିତ ପର ଝିଅ    ଜାହିଁରେ କରୁ ସାଧ ?
ବୁଡ଼ାଇଲୁ ମୋ ଘର", ଶୁଣି ଫେରାଇ ମୁହଁ
କାନ୍ଦେ ତୁନିତୁନିକା    ପଣତେ ପୋଛି ଲୁହ ।
କେତେ ନିଶା ରାତିରେ    ଚେଇଁ ମୁଁ ପଡ଼ିଥାଏଁ,
ତତଲା ଆଖି ପାଣି    ଶେଯ ମାଣ୍ଡି ତିନ୍ତାଏ ।
ହାୟ ମୋ ଯୁବାକାଳ    କାଟିବି ମୁଁ କିପରି,
ବରଜି ଗଲେ କାନ୍ତ    ମୁଁ ଯେ ଗଲିଣି ସରି ।
ଲାଞ୍ଛନା ଗଞ୍ଜଣାରେ    କରି ବାର ପାଇଟି
ଦିନ ଯାଉଚି କଟି,    କାଳ ଜିବୁ ରାତିଟି ।

ଏକୁଟିଆ ଶେଯରେ    ହୁଅଇଁ ଛଟପଟ,
କେବେ ତାରା ଗଣଇଁ    ଖୋଲି ଝଟକାପଟ ।
ସାଇଁ ସାଇଁ ଗଭୀର    ନିଶା ଗରଜୁଥାଏ,
ସହସା ରେଳଗାଡ଼ି    ଶବଦ ବାଜିଯାଏ
କାନରେ ଯେବେ ମୋର ନିଶବଦ ରାତିରେ,
ଛନକା ପଶିଯାଏ    ଚମକି ମୋ ଛାତିରେ ।
ଜାକିଜୁକି ବୁକୁଳା    ଭଳି ମୁଁ ପଡ଼ିଥାଏ,
ଦୁଇ ହାତ ପାପୁଲି    ଆଖି ଚାପିପକାଏ ।
ସବୁ ବଳ ଏକାଠି    କରି ଅବା ଗମ୍ଭୀରେ
ଶୁଣେ ମୁଁ କାନ ପାରି, ସତେ କେ ଆସେ ଧୀରେ,
ଶଗଡ଼ଶୁ ଓହ୍ଲାଇ    ଡାକେ ଦାଣ୍ଡ ଦୁଆରେ,
'ମାଆ' ବୋଲି ଶବଦ, ଉଠି ମୁଁ କାନ ପାରେ ।
ଶାଶୁର କେବେବେ କେବେ ଦିଏ ନିଦ ଭଙ୍ଗାଇ,
'କେ ଡାକୁଛି ଦୁଆରେ    ଦେଖନା ଥରେ ଯାଇ' ।
ଶାଶୁ ଉଠି ଆବେଗେ    ଧାଆନ୍ତି ବାହାରକୁ,
କାହିଁ କେହି ନାହାନ୍ତି,    ଫେରିଆସି ଘରକୁ
ମୋତେ ଦିଅନ୍ତି ଗାଳି,    ମୁଁ ତୁନି ତୁନି ଶୁଣେ,
ମୋ ବାୟାପଣ କଥା    ବିକଳେ ମନେ ଗୁଣେ ।
ସିନ୍ଦୁର କଜ୍ଜ୍ୱଳେ ମୋ    ନାହିଁ ମନର ସାଦ,
ନୂଆ ଲୁଗା ଚୂଡ଼ୀରେ · ନାହିଁ କିଛି ଆହ୍ଲାଦ ।
କାହାପାଇଁ ବା ସାଜ-    ସଜ୍ଜା କରିବି ବସି,
ନାହିଁତ ଗଲେ ସେ ମୋ ସୌନ୍ଦର୍ଯ୍ୟ ପଣେ ରସି
ଦିଅନ୍ତା ଆଣି ମୋତେ    ନିତି ନୂଆ ଭୂଷଣ,
ଭୁଆସୁଣୀ ମୁଁ ସ୍ୱାମୀ-    ହୀନା, ମୋ ଲକ୍ଷଣ
କିଏ ବୁଝିବ କେତେ    ଦୁଃଖ ଦାଉ ସହୁଚି,
କେତେ ଦୁଷ୍ଟଙ୍କଠାରୁ    ନିଜ ଧର୍ମ ରଖୁଚି ।
ଦିଅର ନବଘନ    ବଡ଼ ଚଗଲା ଟୋକା,
ତା' ସାଙ୍ଗ ବଗୁଲିଆ    ରାଧୁ, ଗୋବିନ୍ଦ ଲୋକା ।
ତାଙ୍କ ଜାଲରେ ମୋର    ଜୀବନ କଳବଳ,
ଦୈବ ସାହା ଅର୍ଷିତେ    ଏତିକି ମୋର ବଳ ।
ମୋହ ଭଳି ଗାଆଁରେ    କେତେ ବୋହୂ ଅନାଥ,
ନିନ୍ଦନ୍ତି ବିଧାତାକୁ    କପାଳେ ମାରି ହାତ ।

ଗାଧୋଇଗଲେ ତୁଠେ  କହୁଁ ଅନେକ କଥା,
ଲଘୁ ହୁଏ ବହୁତ  ଫେଡ଼ି ହୃଦୟ ବ୍ୟଥା ।
ଶାଶୁର ଅତ୍ୟାଚାର,  କୁଟୁମ୍ବଙ୍କ ଗଞ୍ଜଣା,
ଦିନରାତି ଖଟଣୀ,  ଦୁନି ଦୁନି କାନ୍ଦଣା,
ସବୁ କଥା ପଡ଼ଇ,  ହୁଏ କେତେ ବିଚାର,
ସ୍ୱାମୀ ସଙ୍ଗରେ ଗଲେ  କୁଳୁଁ କିମ୍ବା ବାହାର
ହୋଇଲୁଁ, ଏ କି ଶାସ୍ତ୍ର,  ଏ କି ବ୍ୟବସ୍ଥା ଭଲା,
ଆମ ପାଇଁକି ଏତେ  ଅବିଧି କିଏ କଲା ?
ଏକା ଯାଆନ୍ତି ସ୍ୱାମୀ  ଆମକୁ ଛାଡ଼ି ଘରେ,
ଭୁଲିଯାଆନ୍ତି ସେଠି  ପଡ଼ି ମନ୍ଦ ସଙ୍ଗରେ
ଆମେ ଥିଲେ ପାଖରେ  ଦେଶ ଦଶର ଭଲ,
ଏ କଥା ବୁଝିବାକୁ  ନାହିଁ ମୁଣ୍ଡେ ଅକଲ ।
ପଣ୍ଡିତ ଏ ବୋଲାନ୍ତି  ସ୍ତ୍ରୀ-ହତ୍ୟାକାରୀ ଯମ,
ଯାଙ୍କ ଯୋଗୁ ହୋଇଚି  ବାମ ଆମ କରମ ।

ଏପରି ନାନା ପାଞ୍ଚ  ନାନା କଥା ପକାଇ
ମନକୁ କରୁଁ ଶାନ୍ତି,  ନୋହିଲେ ଶାନ୍ତି କାହିଁ ।
ପୁଣି ଶାଶୁ ଗାଆଁରେ  ଅଘଟନ ଘଟନା,
ସହି ନପାରି ଦୁଃଖ  କୁଟୁମ୍ବଙ୍କ ଲାଞ୍ଛନା
କେତେ ବୋହୂ ଗଲେଣି  ତେଜି ଲାଜ ସରମ,
କେଉଁ ଦୂର ମୂଲକ  ଦାଣ୍ଡେ ବିକି ଧରମ ।
ଶାଶୁ ଶୁଣି ବିକଳେ  କହନ୍ତି ଗୁପତରେ,
'ଲାଜ ରଖିବୁ ମାଆ,  ନ ଯିବୁ ବିପଥରେ ।
ଜାଲି ପରି ଘରକୁ  ଫେରି ଆସିବ ଦାମ,
କପାଳ ଆଦରି ଥା  ପଡ଼ିନା ଜା' ଶିକ୍ଷାରେ,
ଘରେ ମାଆ ବୁଢ଼ୀଟା  ମଲାଣି ଅପେକ୍ଷାରେ ।
ତଥାପି ଜଗନ୍ନାଥେ  ଶୁଣିବେ ମୋ ମାଗୁଣି,
ଫେରି ଆସିବ ଧନ,  ରହିଥା ଗୁଣ ଗୁଣି ।'
ଗୁଣ ଗୁଣି ରହିଚି,  ରହିଥିବି ମୂକର,
ସହି ସହି ଦେହଟା  ହୋଇଯିବ ପଥର ।



# ଚେମୀ

ମୁଁ ଅନେକ ଚାକିରି ବାକିରି ଖୋଜି ହଇରାଣ ହେଲି। ଶେଷରେ ମୋର କିଛି ହେଲା ନାହିଁ। ପାଠଶାଠ ମୋର କିଛି ନଥିଲା କି ଜମିବାଡ଼ି ଧନସମ୍ପତ୍ତି ମଧ୍ୟ ବେଶି କିଛି ନ ଥିଲା। ଏଣେ ଘରେ ପାଞ୍ଚପ୍ରାଣୀ କୁଟୁମ୍ବ। ବାଧ୍ୟ ହୋଇ ମୁଁ କଲିକତା ଗଲି। ସେଠି ଗୋଟିଏମିଲ୍‌ରେ ଚାକିରି କଲି। ଚାକିରି କରିବାର ପ୍ରାୟ ଚାରି ବର୍ଷ ହୋଇଗଲାଣି। କଲିକତାର ପରିବାରହୀନ ଜୀବନରେ ଯାହା ଘଟେ ତା' ମୋ ଜୀବନରେ ମଧ୍ୟ ଘଟିଲା। ମୁଁ ନିଶାବେଶ୍ୟାର ଦାସ ହେଲି।

ଦିନେ ହଠାତ୍ ଗୋଟିଏ ନୂଆ ସ୍ଥାନକୁ ମୁଁ ଯାଇଥିଲି। ସ୍ତ୍ରୀଟି ବେଶ୍ୟା; କିନ୍ତୁ ତାକୁ ଦେଖି ମୁଁ ଚମକି ପଡ଼ିଲି। ସେ ତ ମୋ ମାଉସୀ ଝିଅ ଭଉଣୀ ଚେମୀ; ସେ ଏଠି ! ମୋର ମଥା ଘୂରିଗଲା, ଜ୍ଞାନ ହଜିଗଲା। ଘରକୁ ଯାଇ କେତେ ରାତି କେତେ ଦିନ ବହୁତ ଭାବିଲି ତା'ର ଦୁର୍ଦ୍ଦଶାର କଥା। ସେ ମୋତେ ଚିହ୍ନିଲା, ଗୁପ୍ତରେ ସବୁ କହିଲା, ସେ ନର୍କକୁଣ୍ଡରେ ପଡ଼ି ଘାଣ୍ଟିହଉଚି। ତା'ର ଇଚ୍ଛା ଏ ନର୍କରୁ ତ୍ରାହି ପାଆନ୍ତା। କିନ୍ତୁ ଉପାୟ ? ମୋ କତିରେ ତ କିଛି ଉପାୟ ନାହିଁ। ସେ ଅଜାତି, କୁଳଟା; ସମାଜ ତାକୁ ଗ୍ରହଣ କରିପାରିବ ନାହିଁ। ତା'ଠି କୌଣସି ଏପରି ବିଦ୍ୟା, ଜ୍ଞାନ ନାହିଁ ଯେ ସେ ଭଲରେ ଥାଇ ନିଜର ପେଟ ପାଳିପାରିବ। ହିନ୍ଦୁ ସମାଜରେ ତା ପାଇଁ ସ୍ଥାନ ନାହିଁ। ହତଭାଗିନୀ ଚେମୀର ଉଦ୍ଧାରର ଉପାୟ କ'ଣ କେହି କହିଦେବେ କି ?



# ପତିତାର କାନ୍ଦ

## (କଳହଂସ କେଦାର ବୃତ୍ତେ)

ଭଉଣୀ ! ଜନ୍ମ ମୋର ଆଜି ମୂଳକେ,
ବାପ ଅଜା ମୋ ଶ୍ରେଷ୍ଠ ଜାତି ମାଟକେ।
ନାଆଁ ମୋର ସୁନ୍ଦର ଦେବଜା ମଣି,
ଭାଇ ଡାକେ ମଇନା, ମା ଡାକେ ବଣି।
କିଏ ଡାକେ ଦୁଲଣା, ଚମ୍ପା, ମାଳତୀ,
ରୂପ ଅନ୍ଧାର ଘରେ ଜାଳିବ ବତୀ।
ରୂପ ଗୁଣ ସୁନ୍ଦର, ଗେଲବସରେ
ବିଭା ଦେଲେ ହରଷେ ବାର ବର୍ଷରେ।
ଶାଶୁଘର ଉତ୍ତମ ଧନ ଦରବେ,
ବିଭାଘର ହୋଇଲା କି ମଉଛବେ।
ସୁନା ରୂପାର ଚାରୁ ଭୂଷଣମାନ
ଖଞ୍ଜି ସର୍ବାଙ୍ଗେ ମୋତେ କରିଲେ ଦାନ।
ସଙ୍ଗେ ଦେଲେ ଯୌତୁକ ନାନା ସମ୍ଭାର,
ପୂରିଲା ଶାଶୁଘର ଭାଉକୁ ଭାଉ।
ଶାଶୁ ମୋର ହୀରାଟି, ନଣନ୍ଦ ସୁନା,
ଦିଅରଟି ମାଣିକ କି ଗୁଣେ ଊଣା।
ପାଞ୍ଚ ପଞ୍ଚୁରେ ବସି ଗାଆଁ ଖଣ୍ଡର
ଶଶୁର ନାଆଁ ଟେକ, କି ବଡ଼ ଘର।
ତହୁଁ ପୁଣି ଯା ହାତ ଧରିଲି ଯେହି,
ଧରି ହେବ ତା' ସଙ୍ଗେ ଦେବତା କେହି ?
ରୂପେ ପୁଣେ ଉତ୍ତମ ଡାଲି ଚନ୍ଦ୍ରଣେ,
ପୃଥ୍ୱୀ ମଧ୍ୟରେ ରାମଚନ୍ଦ୍ର କି କଣେ !
ଏପରି ଘର ବର ପାଇ ହରଷେ
ସୁଖେ କଟିଲା ଦିନ, ଚାରି ବରଷେ

ହେଲେ ଦୁଇଟି ପୁଅ ଝିଅ ସୁନ୍ଦର,
ତାଙ୍କ କଳରୋଳରେ ପୂରିଲା ଘର ।
ଏ ସମୟେ ଗାଆଁକୁ ଆସିଲା ସ୍ୱାଇଁ
କଲିକତାରୁ ବହୁତ ଟଙ୍କା କମାଇ ।
ବରମା ଯିବ ବୋଲି କହିଲା ସେହି,
ମୋ ସ୍ୱାମୀ ସାଙ୍ଗ ତା'ର, ସାଥିରେ ନେଇ-
ଯିବ ତାଙ୍କୁ, ଶୁଣନ୍ତେ ହେଲା ମୋ ଡର,
ମୁଁ କହେ କିପାଁ ତୁମେ ଛାଡ଼ିବ ଘର ?
ଘରେ ଅଭାବ କିସ ଧନଦ୍ରବ୍ୟରେ,
କହିଲେ, ନଈବାଲି ଖାଇଲେ ସରେ
ବସି ବସି ଅଳସେ, ହେଲା ବୟସ,
ବିଦେଶେ ଗଲେ କଥା ଶିଖିବି ଦଶ ।
ଟଙ୍କା କମାଇ ଘର ଧନ ବଢ଼ିବ,
ଏଠି ବସି ରହିଲେ ମୂଳରୁ ଯିବ ।
କେଡ଼େ ଗରିବ ପୁଅ ସ୍ୱାଇଁ ଦେଖିଲ,
ଘରେ ନଥିଲା ଚାଳ, ମାଣେଟି ବିଲ ।
ବଡ଼ କଷ୍ଟେ ଚଳନ୍ତି, ଆସି ଏଥର
କଲା ସେ ପକ୍‌କା କୋଠା, ପୁଣି ପନ୍ଦର
ମାଣ ଜମି କିଣିଲା, ମୁଁ ବସି ଘରେ
ଖାଉଛ ବାପ ଧନ କେଉଁ ମୁହଁରେ !
ବଢ଼ିଲା ପରିବାର, ମୁଁ ରୋଜଗାର
ନ କଲେ ସମ୍ଭାଳିବ କେ ଘର ଦ୍ୱାର ?'
ସତ ତାଙ୍କ କଥାକୁ ଅକାଳ ଦାଉ
ଘୋଟିଲା ସେ ବରଷ ଦଣ୍ଡକେ ଚାହୁଁ ।
ଠିଆ କ୍ଷେତ ମରୁଡ଼ି, ଉଡ଼ିଲା ହଂସା,
ଫସଲ ନାଶ ଦେଖିକାନ୍ଦିଲେ ଚଷା ।
ଏହିପରି ବରଷ ତିନି ମରୁଡ଼ି
ହେଲାରୁ ସରେ ସଞ୍ଚା ଧାନ କଉଡ଼ି ।
ଘରର ଦଶା ଦେଖି ଗଲେ ବିଦେଶ
ଟଙ୍କା ଅର୍ଜିବା ଆଶେ, ମୋ ମନ କ୍ଳେଶ
କେ ବୁଝିବ ଜଗତେ, ସ୍ୱାମୀକୁ ଛାଡ଼ି
କପାଳେ ଦୁଃଖ ମୋର ଆସିଲା ମାଡ଼ି ।
ସେ ଗଲେ ଘରୁ ଏଣେ ମଲେ ଶଶୁର,
କ୍ଷେତ ଛଡ଼ାଇନେଲେ ଖୁଡୁତାଶୁର ।

ଘରେ କେହି ମୁରବି ରହିଲେ ନାହିଁ,
ଭଗାରି ହେଲେ ନିଜକୁଟୁମ୍ବ ଭାଇ ।
ତହିଁ ସଙ୍ଗରେ ପୁଣି ବିଧାତା ବାମ,
ନଈରେ ବୁଡ଼ି ମଲା ଦିଅର ରାମ ।
ତା ଶୋକେ ଶାଶୁ ମୋର ଘେନିଲେ ମାଟି,
ଏଥର ଆଶ୍ରାହୀନ ଏକୁଟିଆଟି
ପଡ଼ିଥା'ମି ମୋ ଘରେ ବାର ଦୁଃଖରେ,
ସ୍ୱାମୀ କାହିଁ ଥାଆନ୍ତି ବର୍ମାଦେଶରେ ।
ଲେଖିପଢ଼ି ନ ଆସେ ମୁଁ ନିରକ୍ଷର,
ଭଗାରି ନ ଦିଅନ୍ତି ଭାଷା ପତର ।
ତାଙ୍କ ଖବର ଆଉ ପାଇଲି ନାହିଁ,
ପାଳେ ପିଲା ଦିଓଟି ନିଜେ ନ ଖାଇ ।
ଯା ଥିଲା ଘରେ କ୍ରମେ ଆସିଲା ସରି,
ଚିନ୍ତାରେ ପଡ଼ିଲି ମୁଁ କତରା ଧରି ।
କାନ୍ଦି କାନ୍ଦି ମୋହର ରହିଲା କଣ୍ଠ,
ବାତ ବ୍ୟାଧିରେ ନଇଁ ପଡ଼ିଲା ଅଣ୍ଟା ।
ସେ ବରଷ ହେଲାଟି ଘୋର ବରଷା,
ବରଷା ପଛେ ବଢ଼ି କି କାଳ ଦଶା ।
ବଢ଼ି ଛାଡୁ ନ ଛାଡୁ ପଡ଼ିଲା ବାଡ଼ି,
ଅକାଳେ ଗଲେ କେତେ ସଂସାର ଛାଡ଼ି ।
କେତେ ମାଆ ମଙ୍ଗଳା ଦେବତା ଦିଅଁ
ପୂଜି ପାଇଥିଲି ସେ ପୁଅ ଝିଅ ।
ଅକାଳେ ନେଲା କାଳ ମୋ ଆଖିଆଗେ,
ମରୁ ମରୁ ମୁଁ ବଞ୍ଚିଗଲି ଦୁର୍ଭାଗ୍ୟେ ।
କେତେ ଭୋଗ କପାଳେ ଅଛି ଲେଖନ,
ଘୃଣାରେ ଅବା ଛୁଇଁ ନ ଗଲା ଯମ ।
ସମସ୍ତେ ଗଲେ, ମୋର ଅକାଟ ପ୍ରାଣ,
ବଞ୍ଚିଲି କେମନ୍ତେ ମୁଁ କେଡ଼େ ପାଷାଣ !
ତିନିଦିନ ଅଚେତା, ନ ଗଲେ ପାଣି
ତଣ୍ଡିରେ, ତଥାପି ମୁଁ ବଞ୍ଚିଲି ଜାଣି ।
କପାଳରେ ହୀନସ୍ତା ଅଛି ଅନେକ,
କେ କରିପାରେ ଭିନ୍ନ କପାଳ-ଲେଖ ।
ଛ'ମାସକାଳ ଜରେ ପଡ଼ି ନ ମଲି,
ଶେଷେ ନିଆଶ୍ରୀ ବାପଘରକୁ ଗଲି ।

କେତେ ଦୁଃଖରେ କାନ୍ଦେ, ପେଟଟି ପୋଡ଼ା,
ଜୀବନଅଛି ଯେବେ ଆହାର ଲୋଡ଼ା
ପୋଡ଼ା ପେଟଟି କଲା ଏତେ ହୀନସ୍ଥା,
ବାପଘରେ ଫେରିବ କାହୁଁ ଅବସ୍ଥା ।
ନ ଥିଲେ ଗର୍ଭଧାରୀ ମୋ ବାପା ମାଆ,
କେ ବୁଝିବ ମୋ ଦୁଃଖ ଭୋଗଇ ଯାହା ।
ଘରେ ଦୁଇ ଭାଇର ଅପଡ଼ କଳି,
ଭାଉଜଙ୍କ ଜାଳାରେ ଗଳି ମୁଁ ଜଳି ।
କହନ୍ତି 'ତୋ ପାଇଁକି ଏଠି ଭଣ୍ଡାର
ଖଞ୍ଜା ହୋଇଚି କିଲୋ ବାପମାଆର ?
ଖାଇଲୁ ଶାଶୁକୁଳ, ନିଜେ ନ ମରି
କା'କୁଳେ ଦେବୁ ପାଣି, କିଏ ତୋହରି
ଉଧାର ଖାଇଚି କି ଖାଇବୁ ବସି,
ପାଇଚି କି ନ ପାଉ ଗୋ ଗୋଡ଼ ଘଷି ?
ଦେବୁ କି ସାଆନ୍ତାଣୀ ବାଢ଼ି ତୋ ଆଗେ
ଦଶ ତିଅଣ ନଅ ଭଜା ସୁଆଗେ ।
ଯାଆ ବାହାରି ଯହିଁ ଅଛି ଘଇତା,
ବିଭା ହେଲା ଝିଅ ତ କୁଳକୁ ପିତା ।'
ଭାଉଜଙ୍କ କଥାରେ ପାଟି ଫିଟାଇ
ଦିନେ ପଦେ କହନ୍ତି ନାହିଁ ବି'ଭାଇ ।
ରୋଷେଇଶାଳଠାରୁ ଗୁହାଳଯାଏ
ସବୁ ପାଇଟି ଏକା ହାତେ ତୁଲାଏ ।
ତଥାପି କେହି ତୋଷ ନୁହନ୍ତି ଠୁଳେ,
ଛିଣ୍ଡା ଦରବା ପିନ୍ଧି କାନ୍ଦି ମୁଁ ବୁଲେ ।
ଦିନ ଦିପହରକୁ ଖାଇସାରିଲେ
ସମସ୍ତେ, ମୋତେ ଭାତଗଣ୍ଡାକ ମିଳେ ।
ହାତ ପିଠିରେ ଲୁହ ପୋଛିଣ ଖାଏ,
କେବେ ବାସି ତିଅଣ, କେବେ ନ ଥାଏ ।
କେବେ ମରିଚ କସି, ପିଆଜ, ଲୁଣ
ସଙ୍ଗେ ପଖାଳ ଖାଇ ବାହୁନେ ଗୁଣ ।
ମୋ ଶାଶୁ ଶଶୁରର ପୁଣି ମାଁଆର
ଏଡ଼େ ଗେଲ୍‌ବସର ସେରନ୍ତାସାର
ଥିଲି ଆଖିପିତୁଳା, ଘରମାଣିକ,
ଆଜି ଗାଧୋଇଗଲେ ତେଲ ଟୋପିକ
ପାଇଁ ତରଷ କାନ୍ଦେ ପୋଖରୀକୂଳେ,
ମୋତେ ଯମ କିପାଇଁ ନ ନେଲୁ ଭୁଲେ ?
ଦୁଇ ଭାଉଜ ମୋର ହାକିମ ପରି,
ତାଙ୍କ ବାକ୍ୟବାଣରେ ଜୀଅନ୍ତା ମରି ।
କିପରି ଏ ସଂସାରେ ଦିନ କାଟିବି,
ଏକା ଏ ପୋଖରୀରେ ବୁଡ଼ି ମରିବି ।
ପୋଖରୁ ଦୂରେ ବଡ଼ ଚକା ପଥର,
ସେଠି ବସି କାନ୍ଦଇ ସଞ୍ଜ ପହର ।
ଗୋଟି ଗୋଟି ଆକାଶେ ତାରା ଫୁଟଇ,
ଆଖିରୁ ମୋର ଲୁହ ସୁଅ ଛୁଟଇ ।
କହେ ବ୍ୟାକୁଳ ପ୍ରାଣେ ଆକାଶେ ଚାହିଁ,
'ହେ ମହାପ୍ରଭୁ ମୋତେ ମରଣ ନାହିଁ ?
ମଣିଷ ହେଲେ ସିନା ମୋତେ ବିଚାର,
ତୁମେ କିମ୍ପା ଦଣ୍ଡୁଚ ମୋତେ ଠାକୁର ?
ଏତେ ଜାଳା ମୁଁ ଆଉ କାହୁଁ ସହିବି,
ନିଶ୍ଚେ କହରଖାଇ ପ୍ରାଣ ହାରିବି ।
ଦିନେ କାନ୍ଦୁଚି ବସି ଆସିଲା ତହିଁ
ବେଙ୍ଗ ବୁଢ଼ୀ ଗାଧୋଇ, ମୋ କଇଁ କଇଁ
ଶୁଣି ମୋ ମୁଣ୍ଡ ଟେକି କହିଲା, 'ଝିଅ
କାନ୍ଦୁଚୁ କିମ୍ପା କହ, ବାଧିବ ହିଆ ।'
ବଢ଼େ କାନ୍ଦିଲି ମୁହିଁ, ଟାଣି କୋଳକୁ
କେତେମତେ ପ୍ରବୋଧ ଦେଲା ମନକୁ ।
କହିଲା, 'କି କଥାକୁ କାନ୍ଦୁଚୁ ରାଣୀ,
ଯାଙ୍କ ଘରେ ଏକା ତୋ ପେଟତୋରାଣି ।
ଡରୁଚୁ କିମ୍ପା ତାଙ୍କୁ, ତୋ ବାପଘର,
ପରଝିଅ ସେମାନେ, ନୋହୁ ତୁ ପର ।'
ମୁଁ କହିଲି, 'ମାଉସୀ କହୁଚୁ ସିନା,
ମୋ' ଦୁଃଖ କେ ଜଳିବ ପ୍ରଭୁଙ୍କ ବିନା ?
ନିତି ଭାବେଁ ବିକଳେ କରିବି କିସ,
ନିଶ୍ଚେ ଜୀବ ହାରିବି ଖାଇଣ ବିଷ ।
କି ଜାଣୁ ଦୁଃଖ ମୋର ଫଟାକପାଳ,
ସ୍ୱାମୀ ଥାଉଁ ମୁଁ ରାଣ୍ଡ, ହାଡ଼କଙ୍କାଳ ।
ପରଦୁଆରେ ପଡ଼ି କଂସା ମାଜଇ,
ଖୁନ୍ଦା ଘେଟାକେ ଗୁଣ୍ଡା ଗୋଟା ଘେନଇ ।

ରାତି ପହରୁ ଉଠି କରେ ପାଇଟି,
ଖଟି ଖଟି ମଲିଣି, ଦୟା ନାହିଁଟି।
ବୟସ କିବା ମୋର ହେବ ବାଇଶି,
ତହିଁ ଏତେ ଖଞ୍ଜଣା ଦିବସନିଶି।
ଉଲ ଗଣ୍ଡାଏ ଶିଆ ଖଣ୍ଡେ ପିନ୍ଧାକୁ
ତରଷିଲି ଏ ବାପଘର ନାଆଁକୁ।'
ବେଙ୍ଗ ଶୁଣି ଏ କଥା କହେ, 'ଦୁଲଣା
କିମ୍ପା ତୋହର ଏତେ ତୁଚ୍ଛା କାନ୍ଦଣା।
ଅଛି ଯଦି ତୋ ସ୍ୱାମୀ ରଙ୍ଗୁ ଦେଶରେ
କିମ୍ପା ନଯାଉ ତହିଁ, ଯାଙ୍କ ବଶରେ
ପାଉଚୁ ଏ କଷଣ ଏ ହୀନିମାନ,
ତୋ ଦୁଃଖ ଦେଖି ମୋର ବିକଳ ପ୍ରାଣ।'
ମନର ମତ ଜଣେ ମଣିଷ ପାଇ
ମନରୁ ବହୁ କଷ୍ଟ ଗଲା ମିଳାଇ।
ନିତି ନିତି ସଞ୍ଜକୁ ପୋଖରୀକୂଳେ
ବସୁଁ ଆମେ ଦିଜଣ ଟଗରମୂଳେ।
ଟଗର ଗଛ ଝଙ୍କା ଫୁଲରେ ଭରା,
ତା' ତଳେ ବସି ମୋର ଦୁଃଖପସରା
ବାଢ଼େ ବେଙ୍ଗ ଆଗରେ, ତା'ଆଖିପାଣି
ମିଶାଇ ମୋ ସହିତେ ସାନ୍ତ୍ୱନାବାଣୀ
କହେ କେତେ ଆଦରେ, ଦିନେ ଶେଷକୁ
କହିଲା, 'କିମ୍ପା ଆଉ ସହୁ କ୍ଲେଶକୁ?
ମୋ' ବୋଲ ଯଦି କରୁ ଆଲୋ ବାୟାଣୀ,
ଦୁଃଖ ତୋ ନାଶ ଯିବ, ହୋଇବୁ ରାଣୀ।
ତୋ ସ୍ୱାମୀ ସଙ୍ଗେ ଭେଟ ଦେବି କରାଇ,
ମିଳାଇବି ତୋ ସଙ୍ଗେ ତାଙ୍କୁ ମଣାଇ।
ଚାଲ ତୁ ଛାଡ଼ି ଘର ମୋ ସଙ୍ଗେ ଝିଅ,
ଏଠି କିମ୍ପା ପୋଡ଼ିଲା ପରି ତୋ ହିଅ
ରାଙ୍ଗୁନୁ ଖଟଣୀରେ ଖଟ ପଲଙ୍କେ
ବସି ହୋଇବୁ ରାଣୀ କାଳକାଳକେ।
କେତେ ତୋ ପାଦତଳେ ଖଟିବେ ଦାସୀ,
ଏଠି ନ ମିଳେ ବୁନ୍ଦେ ତୋରାଣି ବାସି।'
ତା' କଥାରେ ଚମକେ ପ୍ରାଣ ମୋହର,
ସତେ ଭେଟ ମୋ ହେବ ସ୍ୱାମୀ ସଙ୍ଗର!

ଅବିଶ୍ୱାସେ କହିଲି, 'ଯିବି ମୁଁ କାହିଁ
କୁଳ ଭୁଆସୁଣୀଟା, ଏ କଥା ପାଇଁ
ନାହିଁ ମୋର ସାହସ, ନ ଜାଣେ ବାଟ,
ଦେଖିନାହିଁ ଦିନେ ଏ ଗାଆଁର ହାଟ।'
ଏ କଥା ଶୁଣି ହସି କହେ ସୁଆଗେ,
'କେଡ଼େ କଥା କହିଲା ଓଲୀ ମୋ ଆଗେ!
ତୁ ଯିବୁ ଏକା କିଲୋ, ଯିବି ସାଙ୍ଗରେ,
କିଛି କଷ୍ଟ ନୋହିବ ତୋର ବାଟରେ।'
କିନ୍ତୁ ମୁଁ କହେ ପୁଣି, 'ରଙ୍ଗୁନ ଦେଶ
ସାତ ସମୁଦ୍ର ପାରି, ଜଗତ ଶେଷ।
ଆମେ ମାଇପୀ ଲୋକ କେଉଁ ସାହସେ
ଯିବୁଁ ସେ ଦେଶକୁ ମୋ' ମନେ ନ ପଶେ।'
'ତୋ' କଥା ଅଦଭୂତ' କହିଲା ବୁଢ଼ୀ,
'ତୋ' ଭଳି ବକା ନୁହେ, ଥିଲେ କଉଡ଼ି
ଅଣ୍ଟାରେ ଯିବି ଚାଲି ବିଲାତି ବୋଲି,
ହେଇଟି ତ ରଙ୍ଗୁନ ଜାଣୁ କି ଓଲୀ!
ସାତ ସମୁଦ୍ର କଥା ଶୁଣିଚି କାନ,
କିଏ ଦେଖିଚି ବୋଲିଦେବ ପ୍ରମାଣ?
ସାତ ସମୁଦ୍ର କଥା ଗପ କାହାଣୀ,
ମୂର୍ଖ ଲୋକଙ୍କୁ ସେ ତ ମିଛ ଡରାଣି।
କେ ନ ଯାଏ ବିଦେଶ, କିମ୍ପା ତୁ ଡରୁ,
ଡରୁ ବୋଲି ଏତିକି କଷଣେ ମରୁ।
ଯିବୁ ନ ଯିବୁ ସେ ତ ଇଚ୍ଛା ତୋହର,
ଏଠି ଥାଇ ଆଲୁଅ କରିଥା ଘର।
ମୋ' କଥା ନ ମାନିଲେ ପଛେ ଚେତିବୁ,
କହୁଥିଲା ବୁଢ଼ୀଟା ପଛେ ହେଜିବୁ।'
ତା' କୂଟ କଥା ଶୁଣି ଗଲି ମୁଁ ଭୁଲି,
ଯିବା ଲାଗି ତା ସଙ୍ଗେ ହେଲି ବାଉଳି।
ଚାଳିଆ ଘରେ ପଡ଼ି ଚାନ୍ଦକୁ ଚାହିଁ
ଭାବିଲି ବୁଢ଼ୀ ସଙ୍ଗେ ଯିବି କି ନାହିଁ।
କେବେ କହିଲା ମନ, ଯାଆ ତୁ ଚାଲି,
ଏଠି ଖାଉଚୁ ଏବେ କଦର୍ଯ୍ୟ ଗାଳି।
ବିବେକ ଦିଏ ବାଧା, ଦେହ ଡରାଏ,
ଘରୁ ବାହାରିଗଲେ ମହତ ଯାଏ।

ଏପରି ହୋ' ହୋ' ପାଞ୍ଚ ହୋଇ ମନରେ
କାଟିଲି କିଛି ଦିନ ଦୁଃଖକଷ୍ଟରେ ।
ଥିଲା ସାନବୋହୂର କୋଳରେ ପିଲା,
ଅତି ସୁନ୍ଦର ସର୍ବେ ଡାକନ୍ତି ନୀଳା ।
ନୀଳମଣିଟି ମୋର ଆଖିପିତୁଳୀ,
ତାକୁ କୋଳେ ନ ନେଲେ ହୁଏଁ ବାଉଳି ।
ତା' ସାନ ମୁହଁ ହସ ହସ ସୁନ୍ଦର,
ମୋ' କପାଳକୁ ତାକୁ ଘୋଟିଲା ଜର ।
ଦିନ ଚାରିଟା ରାତି ଦିନ ଜଗିଲୁ,
ଡାକତର ବଇଦ ଓଷଦ କଲୁଁ ।
କେତେ ଝଡ଼ାଫୁଙ୍କାରେ କିଛି ନ ହେଲା,
ଯମ କଳାନିଧିକି ଛଡ଼ାଇନେଲା ।
ତା' ମରଣ ମୋ ପାଇଁ ହୋଇଲା କାଳ,
ମୋ ଦୁଃଖେ କାନ୍ଦେ ମୁହିଁ, ପୋଡ଼ା କପାଳ ।
ସେଥିରେ ମୋତେ କୁହାଗଲା, ଡାହାଣୀ,
ଖାଇଲୁ ମୋ ପୁଅକୁ ଅଣ୍ଟିଆଣୀ ।
ନିଜ ପୁଅଝିଅଙ୍କୁ ପେଟେ ପକାଇ
ଏଠି ଆସିଲୁ କୁଳ ନାଶିବା ପାଇଁ ।
ଆଲୋ ଜଳଜଳିଟା ଏଠିକି ଆସି
ବାଳୁତ ପୁଅ ପ୍ରାଣ ନେଲୁ ତୁ ଗ୍ରାସି ।
ପୂତନା ରାକ୍ଷସୀ ତୁ ଯମ ଭଉଣୀ,
ଅଲକ୍ଷଣୀ ହତଶ୍ରୀ ତୁ ନିଉଛୁଣୀ ।'
ଏ କଥା ଶୁଣି ମୋର ଫାଟିଲା ଛାତି,
ବେଙ୍ଗ କଥାରେ ମନ ଉଠିଲା ମାତି ।
ନିଶ୍ଚେ ଯିବି ଛାଡ଼ି ମୁଁ ଘର ଯାଙ୍କର,
ମଣିଷ ରକ୍ତ ମାଂସ ନୁହେଁ ପଥର ।
କହିଲି ବେଙ୍ଗ ଆଗେ ସବୁ କାହାଣୀ,
ବେଳ ଜାଣି ଲୁହାରେ ଦେଲା ସେ ପାଣି ।
ଦିନ ବାର ଠିକଣା କଲା ସେ ବୁଢ଼ା,
ନ ଥିଲା କାନିରେ ମୋ' କାଣି କଉଡ଼ି ।
କହିଲି, 'ମାଉସୀ ମୁଁ ସମ୍ବଳହୀନ',
କହିଲା, 'କିପାଇଁ ତୁ ହେଉଚୁ କ୍ଷୀଣ ?
ହେଲୁ ଧରମଝିଅ, କଟି ତୋ' ଲାଗି
ଗଲେ ମୋ ବେକ କେଭେ ନ ଦେବି ତ୍ୟାଗି ।
ଦେଖିବୁ ଧରମର କଳିଯୁଗରେ
ମହତ ବେଙ୍ଗ କେତେ ରଖିଛି ଥରେ ।
ଆସିଲେ ସଙ୍ଗେ ମୋର ଜାଣିବୁ ଯେତେ,
ନିଜ ବଡ଼ାଇ କରି କହିବି କେତେ ?'
ତା' ଦୟା ଧର୍ମ ପୁଣି ଜାଳା ମନର
ବାଟ କଢ଼ାଇନେଲା, ଛାଡ଼ିଲି ଘର ।
ଦିନେ ଅଧରାତିରେ ପୋଖରୀକୂଳେ
ମିଳିଲୁଁ ଦୁହେଁ ଝଙ୍କା ଟଗର ମୂଳେ ।
ମନ ଛକାଉଥାଏ ପ୍ରତି ପାଦରେ,
ଛାଇ ଦେଖି ଛାତିଟା ଭୟରେ ଥରେ ।
ଚାଲି ଚାଲି ଆସିକି ରାତି ପାହିଲା,
ନଈକୂଳରେ ତହିଁ ଜଣେ ମିଳିଲା
ବେଙ୍ଗ କହିଲା, ତାର ଭାଇ ଧରମା,
ଆମକୁ ସଙ୍ଗେ ଘେନି ଯିବ ବରମା ।
ବଡ଼ ଯତନେ ବେଙ୍ଗ ବଡ଼ ଆଦରେ
ମୋ' କଥା ବୁଝୁଥାଏ ପ୍ରତିକ୍ଷଣରେ ।
ନଈ ପାରି ରେଳରେ ବସି କଟକ
ପହଞ୍ଚିଗଲୁଁ ବକ୍‌ସିବଜାର ଛକ ।
ସେଠି ଭେଟିଲେ ଦୁଇ ଜଣ ପଠାଣ,
ନେଲେ ଯହିଁ କି ଅତି କଦର୍ଯ୍ୟ ସ୍ଥାନ ।
ପଚ ପଚ କାଦୁଅ କସେଇ ଗଳି,
ପ୍ରତି ଦୁଆରେ ଛିଣ୍ଡା ଅଖା ଓହଳି
କରିଚି ଅନ୍ଧାରୁଆ, ପ୍ରତି ପିଣ୍ଡାରେ
ଟୋକା ଟୋକୀ ମାଇପେ ବିଡ଼ିବଳାରେ
ଲାଗିଛନ୍ତି, ଅକଥ୍ୟ ଭାଷା ଖୋଲଟି
ଶୁଣି ଭାବିଲି ହେବ ଏ ଗୁନିଖଟି ।
ସତକୁ ସତ ସେଠି ପଠାଣ ଘରେ
ପୂରାଇଲା ସେ ବେଙ୍ଗ, ପୁଣି ମୁହଁରେ
କହିଲା, 'ବଡ଼ ଭଲ ପଠାଣ ଅଳି,
କାରଖାନା ପୂରିଚି ଗଳିକି ଗଳି ।
ନିତି ଶଏ ପଚାଶ ଗୋଡ଼ଡଲକୁ
ଆସେ, ସେ ଜମିଦାର, ସରକାରକୁ
ଦିଏ କେତେ ଟିକସ, ଏକା ଘାଟରେ
ବାଘ ବକୁରି ପାଣି ପିଅନ୍ତି ଡରେ ।'

ତା' କଥା କାନେ ମୋର ପଶିଲା ନାହିଁ,
ହଲକ ଶୁଖିଲାଣି, ସେ ବେଙ୍ଗଟାହିଁ
ବଡ଼ ଚତୁରୀ କହେ, 'କିମ୍ପା ତୋ ଭୟ,
ମୁଁ ଅଛି ସଙ୍ଗେ କିମ୍ପା ହେଉ ଅଥୟ ?
ଏଠି ବରମା ବାଟ ଟିକଟ ପାଇଁ
ବାରମା ଯାତ୍ରୀତକ ଆସି ଓହ୍ଲାଇ
ରହନ୍ତି, ଏ ପଠାଣ ନେଇଚି ଠିକା,
ଦୂରମୂଲକ ଆମେ ଯିବୁ କି ଏକା !'
ତା' କଥାରେ ବିଶ୍ୱାସ ହେଲା ମୋହର,
ଦେଖିଲି ମାଇପିରେ ପୂରିଚି ଘର ।
କେଉଁ ମୂଲକୁ ଆସି ନାନା ଜାତିର
ଗୁଣ୍ଡ ଏଠାରେ କରି ନପାରେଁ ସ୍ଥିର ।
ମୋତେ ଲାଗେ ଡେଲିକି, ବେଙ୍ଗକୁ କହେଁ,
ନେଇଯା ବେଗେ ଏଠୁ, ଦେହ ନ ସହେ
ଏଠି ଦଣ୍ଡେ ରହିବା, କିନ୍ତୁ ମୋ କଥା
ଶୁଣି ନ ଶୁଣି ସେ ତ କଲା ବ୍ୟବସ୍ଥା
ମୋତେ ବିକିବା ନାଗି, ଟଙ୍କା ପନ୍ଦର
ପଠାଣ ସଙ୍ଗେ ମୋର ଛିଡ଼ିଲା ଦର ।
ମୋ' କାନ୍ଦ ବୋବାଳିକି ଶୁଣିଲା ନାହିଁ,
ଗଲା ବାହୁଡ଼ି ତହିଁ କି ଖରେ ଚାହିଁ ।
ଏବେ ବୁଝିଲି ମୋର ଜୀବନ ଧିକ,
କାହୁ ଆଉଛି ବସି ଡୋକେ ରାତିକ
କାନ୍ଦି କାନ୍ଦି କଟିଲା, ହେଲା ସକାଳ,
ଦେଖିଲି ଆଗେ ଛିଡ଼ା ମୂର୍ତ୍ତି କରାଳ
ପଠାଣ ମିଆଁ, ଚେତା ବୁଡ଼ିଲା ମୋର,
ଭାବିଲି, ଯମଦୂତ ନରକ ଘୋର ।
ମୋ' ଆଡ଼କୁ ଅନାଇ ପଠାଣ କହେ,
'କାନ୍ଦିଲେ କୋରଡ଼ାରେ ମାରିବି ଶହେ ।
ଦାତ ତୋହର ଗୋଟି ଗୋଟି ଛେଚିବି,
ଦାଆରେ ଖଣ୍ଡ ଖଣ୍ଡ କରି କାଟିବି ।'
ଡରେ ମୋ ରକ୍ତ ପାଣି, ଆଖି ଅନ୍ଧାର,
ଭୂତ ଦେଖିଲା ଭଳି କରି ଚିତ୍କାର
କଟାଡ଼ି ପଡ଼ି ଚେତା ଗଲାଟି ବୁଡ଼ି,
ଜ୍ଞାନ ଫେରିଲା ଯେବେ ଦେଖିଲି ବୁଢ଼ୀ
ବସିଚି ଜଣେ ମୋତେ କରେ ବିଞ୍ଚଣା,
ମୋତେ ଜାଗିଲା ଦେଖିକହେ, 'କାନ୍ଦ ନା,
ଏଠି ତୋତେ ଆଦରେ ରଖିବି ମୁହିଁ,
କିଛି କଥାରେ କଷ୍ଟ ନ ହେବ, ତୁହି
ମୋ ବୋଲ କର ପାଣି ପିଅ ଟିକିଏ'
ମୁଁ କହେ, 'ପଠାଣର ପାଣିକି କିଏ
ପିଇବ', ହସି କହେ, 'ଆଲୋ ବାୟାଣୀ,
ଜାତି ତୋର ଅଛି କି, ପଠାଣ ପାଣି
ନିତି ପିଇବୁ, ଏଠି ଜାତି କାହାରି
ନାହିଁ, କୁଳରୁ ପରା ଗଲୁ ବାହାରି !
କେ ଏଠି ବାଉରାଣୀ, କେ ଚମାରୁଣୀ,
ଧୋବଣୀ, ଭଣ୍ଡାରୁଣୀ, ତନ୍ତୀ, ଚାଷୁଣୀ,
ସଭିଙ୍କ ସଙ୍ଗେ ଏଠି ଏକା ପତରେ
ଖାଇବୁ, କଥା କହ ନା ଲୋ ତମରେ ।
ଘର ଛାଡ଼ି ଆସି ତୁ ଲାଜ ସରମ
ବିକିଲୁ, ଏବେ ଖୋଜୁ ଜାତି ଧରମ !'
କହିଲି, 'ମାଉସୀ, ତୁ ବୁଝିଚୁ ଭୁଲ,
ବେଙ୍ଗ କଥାରେ ଛାଡ଼ି ଆସିଲି କୁଳ
ବରମା ଯିବାଲାଗି ସ୍ୱାମୀ ପାଖକୁ',
କହେ ସେ, 'ତୁହି ଜାଣିନାହୁଁ ବେଙ୍ଗକୁ,
ପକ୍‌କା କୁଟୁଣୀ ସେ ତ, ଗାଆଁ ଗାଆଁର
ବୋହୂ ଝିଅଙ୍କୁ କୁଳୁଁ କରେ ବାହାର ।
କହେ ମଧୁର କଥା ନାନା ଛନ୍ଦରେ,
ବିକେ ଆଣି ଏଠାରେ କଉଶନରେ ।
ତୋ' ଭଳି କୁଳ ଛାଡ଼ି ମୋର ଏ ଦଶା,
ମାଜଣ ବ୍ରାହ୍ମଣୀ ମୁଁ ପଠାଣ ଫସା ।'
ମୋତେ ଧାଷ୍ଟମ କରି ପାଖେ ବସାଇ
କହିଲା, ଝିଅ ଏଠୁ ଆଉ ପଳାଇ
ନ ଯାଇ ପାରୁ ତୁହି, ତାଲା ଚାବିରେ
ବନ୍ଦୀ କରିଚି, ପୁଣି ଚାରିପିଠିରେ
ଶକ୍ତ ପାଚିରୀ ଘେରା, ଗୁଣ୍ଡା ପଠାଣ
ପଲ ପଲ ଜଗନ୍ତି ତା'ର ଏ ସ୍ଥାନ ।
ବାହାରେ ବିଡ଼ି କାରଖାନା ବୋଲାଏ,
ମାଇକିନା ବିକିବା ଗୁପ୍ତ ଆଡ଼ଡ଼ା ଏ ।

ପଠାଣ ହାତେ ପାଇ କେତେ ଲାଞ୍ଛନା
 ତୋ' ପରି ହିନିମାନୀ କେତେ କହନା।
ଏଠି ପଡ଼ି ପଠାଣ ଭାତ ଖାଆନ୍ତି,
 ବିକ୍ରି ହୋଇଲେ ଦେଶେ ଦେଶେ ଯାଆନ୍ତି।
ଏଠା ଧୋବଣୀ ଟେମୀ ବଡ଼ ଚତୁରୀ,
 ପୁଣି ହୀରା, ପାର୍ବତୀ, ଗେହ୍ଲୀ, ଶଉରୀ;
ଯାଙ୍କ କାମ - ଯାଆନ୍ତି ଘରକୁ ଘର,
 ଓର ଖୋଜ ବୁଝନ୍ତି ବୋହୂଝିଅର।
ଗାଆଁ ଘାଟ ପୋଖରୀ କୂଳ ମୂଳରେ
 କଥାଭାଷା ହୁଅନ୍ତି ଦୁଃଖସୁଖରେ।
ତହୁଁ ଭୁଲାଇ ଆଣି ପଠାଣ ଘରେ
 ପୂରାନ୍ତି ଅତି ଅଳ୍ପ ଟଙ୍କା ଲୋଭରେ।
ଯାଙ୍କ ସଙ୍ଗେଧରମା ଚଣ୍ଡାଳ ପରି
 ଅଛନ୍ତି କେତେ ମର୍ଦ୍ଦ, ସ୍ତିରୀଙ୍କୁ ଧରି
ବିକିବା ତାଙ୍କ କାମ, ଧିକ ଜନମ,
 ବିକନ୍ତି ପଠାଣଙ୍କୁ ବୁଜ ସରମ।
ନିଜ ଘର ଲକ୍ଷ୍ମୀଙ୍କୁ ପଠାଣ କୁଳେ
 ବିକି ବିକି ଏ ଦେଶ ନାଶ ସମୂଳେ।
ବଳେ ଯିବ ବୁଡ଼ି ସେ ମହାନଦୀରେ,
 ଦେଖିଲିଣି ହିନସ୍ତା ଯାହା ଆଖିରେ।
ଥରେ ଥରେ ଭାବଇଁ ଯିବି ପଳାଇ,
 କିନ୍ତୁ ଖରାରେ ମୋତେ କେ ଦେବ ଛାଇ ?
କୁଳରୁ ଆସି ଯେବେ ମ୍ଳେଚ୍ଛ ପତରେ
 ଖାଇଟି ପୂରାଇବ କେ ଆଉ ଘରେ ?
ବାଳୁତ ବିଧବା ମୁଁ ବଡ଼ ଦୁଃଖରେ
 କାଟିଚି କାଳ କି କହିବି ମୁଖରେ !
ଏଠି ଅଣସ ଜାତି କୁଳେ ତଥାପି
 ବୁଢ଼ୀ ହେଲିଣି ଦିନ ସୁଖରେ ଯାପି।
ଥିଲି ନବ ଯୁବତୀ, ଜଣେ ପଠାଣ
 ନିଙ୍କା ହୋଇ ତା' ଘରେ ଦେଲାଟି ସ୍ଥାନ।
କରିମର ହିମ ମୋ ପୁଅ ଦୁଇଟି
 ରେଳ ନାଇନେ କରୁଥିଲେ ପାଇଟି।
କପାଳ ମୋର ବାମ, ରହିମ ଗଲା
 ବାହାରି କଲିକତା, କରିମ ମଲା।
ତା' ପିଲାଝିଲା ପଣେ ବେକେ ବାନ୍ଧିଲି,
 ଟଙ୍କା ଛଅକୁ ଏଠି ଭାତ ରାନ୍ଧିଲି।
ଉପୁରି ଆମଦାନୀ କିଛି ମିଳଇ
 ବିଭାଘର କାହାର ଯେବେ ହୁଅଇ।'
ପଚାରିଲି ଆଶ୍ଚର୍ଯ୍ୟେ, 'ଏଠି କି ବିଭା,
 ଏଠି ପରା ବେପାର ସ୍ତିରୀ ବିକିବା !'
କହିଲା ବୁଢ଼ୀ, 'ଏଠି ଯେ କାରବାର
 କି ବୁଝିବୁ ହୁଣ୍ଡୀଟା ପେଞ୍ଚ ମିଆଁର ?
ଆଣେ ଯାହାଙ୍କୁ ବିଭା ନାମେ ଭୁଲାଇ,
 ଏଠି ଟୋକା ଗୋଟାକୁ ବର ସଜାଇ
ତା' ସଙ୍ଗେ କରେ ବିଭା ଲୋକ ଦେଖାଇ,
 ନିଜ ସୁକର୍ମ ଲୋକ ଆଗରେ ଗାଇ
ମାଗଇ ଚାନ୍ଦା ବଡ଼ ଲୋକ ଦୁଆରେ,
 ଅନାଇ ବିଧବାଙ୍କ କୁଳ ଉଦ୍ଧାରେ।
ପୁଣି ପୋଲିଶ ହାତ ଏଡ଼ିବା ପାଇଁ
 ଏ ତା'ର କଉଶଳ, ନାମ ଭଣ୍ଡାଇ
ବିଭା କରି ପୁରୁଷ ସ୍ତିରୀ ଦୁହିଁକି
 ଦିଏ ବିକି କୁଲୀର ଆଡ଼କାଟିକି।
ସେମାନେ ଟଙ୍କା ଦେଇ ତାଙ୍କୁ କିଣନ୍ତି,
 ବର୍ମା ଆସାମ ଚାହା କ୍ଷେତେ ବିକନ୍ତି।
ସେଠି ତାଙ୍କ ଦୁର୍ଦ୍ଦଶା ଦୁଃଖ କଷଣ
 ପଶୁଠୁଁ ବଳି ଅତି ହୀନ ଜୀବନ।
ଜର ଶୋଥ ପିଳେଇ କଲିଜା ବଢ଼ି
 ଅକାଳେ କାମ ଖଟି ମରନ୍ତି ସଢ଼ି।
ତାଙ୍କ ଖବର କିଏ ରଖେ ଦେଶରେ,
 ମୋ' ପୁଅ ଖବର ମୁଁ ନ ପାଏଁ ଥରେ।
ଭାବେଁ, ଜୀବନେ ଆଉ ନାହିଁ ମୋ' ଧନ,
 ଏସନ ଏ ବୁଢ଼ୀର ପୋଡ଼ା କରମ।
ତୁ କାହୁଁ ସ୍ୱାମୀ ତୋର ପାଇବୁ ଫେରି,
 କିପାଁ କାନ୍ଦୁ ଦୁଃଖ କଣ୍ଢାଳେ ଘାରି ?
ଯୁବା ବୟସ, ରୂପ ଚହଟ ସୁନା,
 ତୋ ଗୋଡ଼ତଳେ କହ କି କଥା ଉଣା !
ଅକୁଳେ ଗଲୁ ଯଦି ଧରମ ବୁଡ଼ି
 ମଉଜ କର ଏବେ ସଂସାରେ ବୁଡ଼ି।'

ତା' କଥା ଶୁଣୁଥାଏଁ, ତଥାପି ମନ
ନ ଜଦେ କରିବାକୁ ହୀନ କରମ ।
ମାତ୍ର ସେ ଘରେ ମୋର ଥିଲା କି ଚାରା,
ବନ୍ଧୁ ନ ଥିଲେ କେହି ସଂସାର ସାରା ।
ନିତି ସଞ୍ଜ ସକାଳେ ଆଖିରୁ ଢାଳି
ଲୁହ ବେଙ୍ଗକୁ ଦିଏ ଅଜସ୍ର ଗାଳି ।
କିଏ ଶୁଣେ ମୋ' ଗାଳି, କିଏ ମୋ' କଥା,
ମୋ ପୋଡ଼ା ଦୁଃଖେ କା'ର ଉଛୁଳେ ବଥା !
କ୍ରମେ ମୋ ସଙ୍ଗେ କଲେ କୁବ୍ୟବହାର,
ଥଟ୍ଟା ତାମସା ରଙ୍ଗ ନାନା ପ୍ରକାର ।
ଯେତେ ଚଣ୍ଡାଳ ସେଠି ଥିଲେ, ମୋହର
ଲାଜ ସରମ ଘେନି ଖେଳ ତାଙ୍କର ।
ତାଙ୍କ ଜାନାରେ ବଡ଼ କଦର୍ଥନାରେ
କାଟିଲି ମାସେକାଳ ଯମଦୁଆରେ ।
ଆଉ ଧୋବଣୀ, ବାଉରାଣୀ ପତରେ
ଏକାବେଳେ ଇଜ୍ଜତ ମହତ ସରେ ।
ମୋ' ପାଇଁକି ଗରାଖ ଶେଷେ ଜୁଟିଲା,
ଟଙ୍କା ଦେଇ ପଠାଣ ହାତୁଁ କିଣିଲା ।
ମୋ' ସାଙ୍ଗେ ନେଲା କିଣି ଆଉ ଗଣ୍ଡାଏ,
ସାବଧାନରେ ନେଲା ଚୋର ପରାଏ ।
ଜାଣିଲି ଜନ୍ମ ଭୂମି ଛାଡ଼ିଲି ନିକ,
ବେଙ୍ଗ ସଙ୍ଗେ ଆସି ଯା'ନ ମଲି ଧିକ ।
ଡାଇ ଡାଉଳ କଥା ସହି ମରଣେ
ଥିଲା ମୋହର ମୁକ୍ତି, ହାୟ କୁକ୍ଷଣେ
ମୋତେ ଜୁଟିଲା ବେଙ୍ଗ, ତା' କଥା ଶୁଣି
କଲିକତାରେ ବେଶ୍ୟା ମୁଁ ଉଆସୁଣୀ ।
ଗଲା ଶଶୁର କୁଳ, ବାପ ଅଢାର
ନାଁ ବିକିଲି ସିନା ବିଟ୍‌ବଜାର ।
ପହଞ୍ଚି ପହିଲେ ସୁନାଗାଛିରେ,
ନାଁ ଡାକ କଦର୍ଯ୍ୟ ବେଶ୍ୟାସାହିରେ ।
ସେଠି ନେଇଛି ଚାନ୍ଦ ବେଶ୍ୟାଙ୍କ ଠିକା,
ଜାଣିଲି ବେଶ୍ୟା ହେବା ଲପାଳେ ଲେଖା ।

ଚାନ୍ଦ ହାତରେ ମୋର ରହିଲା ଚୁଟି,
ଚତୁରୀ-ଶିରୋମଣି ସେ ବୁଢ଼ୀ ଖୁଣ୍ଟି ।
ଅଳତା ପାଦେ ତା'ର, ପାକଲା ବାଳେ
କଳପ ଲଗାଏ ସେ, ଠାକରା ଗାଲେ
ପାଉଡ଼ର ବୋଳଇ, ଦାନ୍ତ ଲଗାଇ,
ମିସି ଘଷି, ପାନରେ ଓଠ ରଙ୍ଗାଇ
ନବ ଯୁବତୀ ରୂପେ ଦେହ ସଜାଇ
ଉପର ମହଲାରେ ଶେଯ ଲଗାଇ
ଶିକାର ଆଶେ ବସିଥାଏ ସଞ୍ଜରୁ,
ଦେଖିଲେ ମନୋମତ ଡାକେ ଉପରୁ,
'ଇଆଡ଼େ ଆସ ବାବୁ, ତୁମ ଘରଣୀ
ଅଥୟ ତୁମ ଲାଗି, ଆସ ଏକ୍ଷଣି' ।
ତା'ଠାରୁ ବୁଝେ ଯେବା ପୁରୁଷ ଧୃଟ,
ତା ପାନ୍ଦେ ପଡ଼ିହୁଏ ନରକ-କୀଟ ।
ଶୋଷେ ରକତ ତାର ବୁଢ଼ୀ ଡାଆଣୀ,
ନିଏ ଧନୀ ଗରିବ ପକେଟ ଛାଣି ।
ନିଆଁକୁ ଡେଇଁ ଯଥା ପତଙ୍ଗ ମରେ,
ଜଳେ ସେ ନରାଧମ ନର୍କକୁଣ୍ଡରେ ।
ଟଙ୍କା ସରିଲେ ଚାନ୍ଦ ଦୁଆର କିଳେ,
ତା' କପାଳକୁ ନିତି ଗରାଖ ମିଳେ ।
ନାନା ଜାତିର ସ୍ତିରୀ, ବୁଢ଼ୀ, ଯୁବତୀ
ସାଇତି ରଖିଥାଏ, କୁକୁର ମତି
ଜଞ୍ଜିରେ ବାନ୍ଧି ରଖିଥିଲା ପରାଏ,
ତାଙ୍କ କମେଇତକ ବଳେ ଛଡ଼ାଏ ।
ଗିଲିଟି ଗହଣାରେ ତାଙ୍କୁ ସଜାଏ,
ରୂପ ବୟସ ଦେଖି ମୂଲ ଲଗାଏ ।
କା' ମୂଲ ଚାରି ଅଣା, ଦି'ଅଣା କା'ର,
ଅଣିକିଆ ଅଛନ୍ତି, ପୁଣି ଉଧାର ।
ଦିଏ କାହାକୁ ପୁଧମୂଳ ହିସାବେ,
ପକା ମହାଜନ ସେ, ଜାଣେ କି ଭାବେ
ସବୁ ଶ୍ରେଣୀ ଗ୍ରାହକ ମିଳିବ ମନ,
ଗରିବ ଓଡ଼ିଆଙ୍କ ଲୁଟିବ ଧନ ।

ସେ ଆସନ୍ତି ବିଦେଶ ଧନ ଆଶାରେ,
ଯେ ତାଙ୍କୁ ନର୍କେ ଫିଙ୍ଗି ମୂଳରୁ ମାରେ।
ମୋତେ ପହିଲେ ଯେବେ ଦେଖିଲା ସେହି
ଗୋଡ଼ଠୁ ମୁଣ୍ଡଯାଏ ଗଲା ଅନେଇ
ମାଇନା ବଳାପରି, ତା ତୀକ୍ଷ୍ଣ ଆଖି
ଗିଳିବ ମୋତେ ଭାବେଁ, ଦାସୀକି ଡାକି
କହେ, ଆସିଚି ଭଲ ଶିକାରଟିଏ,
ମଫସଲିଆଣୀଟା, ଦିନ କୋଡ଼ିଏ
ଲାଗିବ ଯା' ପଛରେ, ରୂପ ମଜାଇ
ଦେବି ମୁଁ ଯାକୁ ନାନା ରଙ୍ଗେ ସଜାଇ।
ତା' କଥାମତେ ମୋତେ ସଙ୍ଗରେ ନେଇ
ରଖିଲେ ଯୁବତୀଏ ପ୍ରବୋଧ ଦେଇ।
ଗହଣା ଲୁଗା ଆଣି ମଣ୍ଡି ଦେହରେ
ନିତି ବାସନା ତେଲ ବୋଳି ମୁଣ୍ଡରେ
ମୋତେ ଗାଧୋଇଦେଇ କରନ୍ତି ସଜ
ପାନ ଅତର ଦେଇ, କେଡ଼େ ନିଲଜ
ସେ ମାଇପିଗୁଡ଼ାଏ, ତାଙ୍କ କାଣ୍ଡରେ
ପିଳେଇ ଚମକେ ମୋ, ବସି ଦାଣ୍ଡରେ
ଯାକୁ ତାକୁ ଡାକନ୍ତି ବେହିଆପଣେ,
ଶେଷେ ତାଙ୍କ ମଧରେ ହେଲି ମୁଁ ଜଣେ।
ଦିନୁ ଦିନୁ ମୋ ଛାଡ଼ିଗଲା ସରମ,
ଶିଖିଲି କ୍ରମେ ନାନା ମନ୍ଦ କରମ।
ଦିନୁ ଦିନୁ ମୋ ରଙ୍ଗ ହେଲା ଉଜ୍ଜ୍ୱଳ,
ମୋ ଅଧିକାର କ୍ରମେ ହେଲା ପ୍ରବଳ।
ଚାନ୍ଦ କଥାକୁ ଏବେ ଖାତର ନାହିଁ
ନିତି ନୂଆ ଗରାଖ ବାବୁଙ୍କୁ ପାଇ।
କରେ ବଡ଼ ଚାକିରୀ ଶ୍ୟାମସୁନ୍ଦର,
ପାଏ ପଚାଶ ଟଙ୍କା କମଲାକର।
ଆର୍ତ୍ତତ୍ରାଣ ପଚିଶି ଟଙ୍କା କମାଏ,
ଗୋବିନ୍ଦ ରାନ୍ଧିବାଢ଼ି ମନ ଯୋଗାଏ।
ପରସ୍ପର ଏମାନେ ମୋ ଲାଗି କଳି
ଭୁଆ ବିରାଡ଼ି ପରି କରନ୍ତି ଚେଳି।

ମୁଁ ଚତୁରେ ସଭିଙ୍କ ମନ ବିଢ଼ଇ,
ତାଙ୍କୁ ଚାହେଁ ବେଶି ଯେ ଟଙ୍କା ଦିଅଇ।
ମୁହେଁ ସଭିଙ୍କ ମିତ, ଅନ୍ତରେ ସ୍ନେହ
ନଥାଏ, ଟଙ୍କା ଲାଗି ବିକଇ ଦେହ।
ହୋଇଲା ଓଡ଼ିଆଙ୍କର ସେ ଆଡ୍ଡାଘର
ନାଟ ତାମସା ମେଳ ମଉଚ୍ଛବର।
ମଦ, ଗଞ୍ଜେଇ, ତାସ, ପଶା ଉଡ଼ିଲା,
କେତେ ପ୍ରାଣୀଙ୍କ ତହିଁ ଭେଳା ବୁଡ଼ିଲା।
କେତେ ନବ ଯୁବତୀ ଶିକ୍ଷାରେ ମୋର
ପଡ଼ିଲେ ପାପ ପଙ୍କେ ନରକେ ଘୋର।
ମୋ ଘର ହେଲା ମହା ପାପର ଖଣି,
କହି ନ ହେବ ଯେତେ ଦୁଷ୍ଟ କରଣି
କଲି ମୁଁ ଅକାତରେ, ଲାଜ ଧରମ
କିଛି ନ ଥିଲା ମୋର, କେବଳ ଧନ
ପାଇବା ଆଶେ ନିତି ନୂଆ ଫିକର
କରି ଲୋକଙ୍କର ମୁଁ ଉଜାଡ଼େ ଘର।
ହୋଇଲେ କେତେ ଘରଦୁଆର-ଛଡ଼ା,
କେତେ ଟୋକୀଙ୍କି ଆଣି ଲଗାଏଁ ଭଡ଼ା।
ତାଙ୍କ କମାଇଁ କରେଁ ହାତପଇଠ,
ମୁଠାଏ ଭାତ ଖଣ୍ଡେ ଲୁଗାରେ ଧିଟ
ପଡ଼ିଥାଆନ୍ତି ମୋର ଗୋଡ଼ତଳରେ,
ଜିବୁ ଜଳାଉଥା'ନ୍ତି କଳିଗୋଳରେ।
ଶାନ୍ତି ନ ଥାଏ ତହିଁ, ନରକ କୁଣ୍ଡ,
ଯେତେକ ଯମଦୂତ ସେଠି ସେ ଗୁଣ୍ଡ।
ଦାଣ୍ଡରେ ଭିଡ଼ାଭିଡ଼ି, ଟଣାଓଟରା,
ମାଡ଼ଗୋଳ, ଫଜିତ୍, ଗାଳି, ଘୋଷଡ଼ା।
ନିତି ମାଲିମାମଲା, ଫଉଜଦାରୀ,
କୋର୍ଟ କଚେରୀ ଚଢ଼ା, ହାରିଗୁହାରି
ଜୀବନକୁ ବ୍ୟାକୁଳ କଲା ମୋହର,
ଧିକ୍ ସେ ପାପଧନ ବଡ଼ ଜହର।
ପାପ ପଣେ କି ସୁଖ ମୁହିଁ ଜାଣଇଁ,
ନିତି କଚେରୀଦ୍ୱାରେ ଟଙ୍କା ଗଣଇଁ।

ପୋଲିଶେ ଦିଏ ଘୁଷ୍, ପାଖ ଲୋକଙ୍କୁ
ଅର୍ଥରେ କରେ ବଶ, ଜଣ ଜଣଙ୍କୁ ।
ଖୋଷାମୋଦ କରି ମୋ ଜୀବନ ଯାଏ,
ଭାତ ନ ଖାଏଁ ମୁଁ ତ ଗରଳ ଖାଏଁ ।
ଏତେ କରି ତଥାପି ଫାନ୍ଦେ ପଡ଼ିଲି,
ଖୁଣୀ ମାମଲା ଗୋଟା ସଙ୍ଗେ ଜଡ଼ିଲି ।
କେତେ ଓକିଲ କଲି, କେତେ ମିଶଲ,
କିନ୍ତୁପ୍ରମାଣ ହେଲା କଥା ଅସଲ ।
ନ ହେଲା ଫଳ ମିଛ ସାକ୍ଷୀ ଗୁଆରେ,
କଠିନ ଜେଲ ଦଣ୍ଡ ହେଲା ବିଚାରେ ।
ତିନି ବରଷ ପାଇଁ ଜେଲର ଭାତ
ଥିଲା କପାଳେ ପୁଣି ଏ ଉତପାତ ।
ନାନା ରୋଗେ ପହିଲୁ ନାଶ ଦେହର
ହୋଇଥିଲା, ସେଥିରେ ଏ ଭୟଙ୍କର
ହାଡ଼ଭଙ୍ଗା ଖଟଣୀ ଜେଲ ଭିତରେ,
କୂଅରୁ ପାଣି କାଢ଼ି ଦିଏଁ ଗଛରେ ।
ଝୋଟ, କତାବାଡ଼ିଆ, ଦଉି, ଚଟେଇ,
ହେଁସ, ମସିଣା ବୁଣା, ସୂତା କଟେଇ.
ଚକି ପେଷା, ବାସନ ମଜା, ରୋଷେଇ,
ଜଉଦିଆଣୀଙ୍କର ଲୁଗା କଚେଇ ।
ପାଇଖାନା ପର୍ଯ୍ୟନ୍ତ ହାତେ କାଢ଼ିଲି,
ମାଆ ପେଟୁ ନ ମରି କିଆଁ ବଞ୍ଚିଲି !
ହାତେ ପଡ଼ିଲା ବିଣ୍ଡି, ଭାଙ୍ଗିଲା ହାଡ଼,
ସେଥିରେ ଓ୍ୟାର୍ଡ଼ରାଣୀ ଦିଅଇ ମାଡ଼ ।
ତଥାପି ଜେଲଖାନା ଥିଲା ଉତ୍ତମ,
କାମ ଘେନି ଦିଅନ୍ତି ବସ୍ତ୍ର ଭୋଜନ ।
ବାହାରେ ଆସି ଦେଖେଁ ସ୍ଥାନ ମୋ' ପାଇଁ
ଆକାଶତଳେ ଆଉ କେଉଁଠି ନାହିଁ ।
ଭଲ ହେବି ଏଥର ପ୍ରତିଜ୍ଞାକରି
ଜେଲରୁ ଆସିଥିଲି, କିନ୍ତୁ ମୋ'ପରି
କଇଦିଆଣୀ ପୁଣି ବେଶ୍ୟା ପାଇଁକି
ଭଲ ହେବାର ବାଟ ଭବେ ଅଛି କି

ସମାଜେ ମୋର ସ୍ଥାନ ନାହିଁ ଜାଣିଲି,
ସୁନାଗାଛିକି ଥରେ ଯାଇ ଚାହିଁଲି ।
ସେଠି ଥିଲା ପୂର୍ବେ ଯେ ବେଶ୍ୟାମହଲ
ଆଉ କେ କରିସାରିଥିଲା ଦଖଲ ।
ଶୁଣିଲି ଚାନ୍ଦବୁଢ଼ୀ ମରିଗଲାଣି,
ତହୁଁ ସେଠାରୁ ଗଲି ମାଗି ମେଲାଣି ।
ଫଟା ପାହୁଲାଟିଏ ନାହିଁ ଅଣ୍ଟାରେ,
ଦୁଃଖେ ବସିଲି ଆସି ସଡ଼କଧାରେ ।
କାହାନ୍ତି ଆଉ ପୂର୍ବ ପାପର ସାଥୀ
ଚାଲୁଥିଲେ ଯେ ସଙ୍ଗେ ଫୁଲାଇ ଛାତି ।
ସଡ଼କ କରେ ବସି ମୁହିଁ ନିରାଶେ
ଚାହେଁ ଚଉଦିଗକୁ ଆଶ୍ରୟ ଆଶେ ।
ସେ ବାଟ ଦେଇ ଗଲା ଜଣେ ଓଡ଼ିଆ,
ଦେଖିମୋତେ ଠାରିଲା, ହେଲି ମୁଁ ଠିଆ ।
ଆସି ନିକଟେ ମୋତେ ଧୀରେ ଡାକିଲା,
କହି ନ ପାରିବି ସେ ଯାହା କହିଲା
କିନ୍ତୁ ମୋର ସରମ ଧରମ ଜ୍ଞାନ
ନ ଥିଲା, ଆଶା ପାଇ ଉଲ୍ଲାସ ପ୍ରାଣ
ପୁଣି କଲି ଆରମ୍ଭ ପୂର୍ବ ଜୀବନ,
ଉପାୟହୀନ ମୋର ମନ୍ଦ କରମ ।
କିନ୍ତୁ ହାବୁଡ଼େ ଯାର ପଡ଼େ ନିଷ୍ଠୁର
ତଣ୍ଟିଚିପା ସେ ଭକ୍ତଖିଆ କୁକୁର ।
ଭଲ ମନ୍ଦର ଜ୍ଞାନ ନ ଥିଲା ମୁଣ୍ଡେ,
ନିଶାରେ ନାଲି ଆଖି, ସର୍ବଦା ଦୁଣ୍ଡେ
ଅତି ଅକଥ୍ୟ ଗାଳି, ଜାତିରେ ପାଣ,
ତା' କତିରେ ସମାନ ହାଡ଼ି ପଠାଣ ।
ଟଙ୍କା ଲାଗି ନ କରି ପାରେ ଏପରି
ମାପ ନ ଥିଲା, ଧାଡ଼ି ଗର୍ମିରେ ସରି
ଦୁର୍ଗନ୍ଧୀ ଘାଆମାନ ସର୍ବାଙ୍ଗେ ଫୁଟି
ରକତ ପୂଜ ପଡ଼ୁଥାଏ ଉଛୁଟି ।
ଘୃଣାରେ ମରୁଥାଏଁ, କିନ୍ତୁ ଭୟରେ
ଧୁଏଁ ସେ ଘାଆ, ପଟି ବାନ୍ଧେ ହାତରେ ।
ଶେଷକୁ ରୋଗତକ ହେଲା ମୋ'ପାରେ,
ଘୋଷାଡ଼ି ଦେଲା ଛାଡ଼ି ଡାକ୍ତରଖାନାରେ ।

ସେଠି ପପର ଉଆର୍ଦ୍ର ପିଣ୍ଡାରେ ପଡ଼ି
ଭଲ ହେଲି ଛ'ମାସ ରୋଗରେ ସଢ଼ି।
ତହିଁ ହାଡ଼ି ଗୋଟାକ ସଙ୍ଗରେ ଭାବ
କଲାରୁ ଦେଲା ଆଣି ଧାପାରେ ଠାବ।
ଧାପା ଅତି ମଇଳା ଜାଗା, ସେଠାରେ
ମଣିଷ ଛାଡ଼, ପଶୁ ରହି ନ ପାରେ।
ଏ ହାଡ଼ି ପୁଣି ଦାରୁ-ଗଞ୍ଜେଇଖୋର,
କାଟିଚି କଳାପାଣି, ନିପଟ ଚୋର।
ସେ ମୋତେ ଛେଚି ଛେଚି ନିଶାଭୋଳରେ
ଭାଙ୍ଗିଲା ହାଡ଼ ଗୋଡ଼, ତହୁଁ ରାଗରେ
ପଳାଇଆସି ରହେଁ ଅନ୍ୟ ଜାଗାରେ,
ମିଲ୍ ଏରିଆ କୁଲିଙ୍କର ପଡ଼ାରେ।
ମିଲ୍‌କୁଲିଙ୍କ ଦେହେ ଭେକ ନ ଥାଏ,
ତଥାପି ଅଧା ଧନ ନିଶାରେ ଯାଏ।
ଅତି ଅଳ୍ପ ଦରମା, ଅଧା ଉପାସେ
ଗୋଟାଏ ଘରେ ଥା'ନ୍ତିଜଣ ପଚାଶେ।
ବଡ଼ ଅନ୍ଧାର ପୁଣି ସେ ଘରଗୁଡ଼ା,
ନାହିଁ ଝରକା ତହିଁ, ମଇଳା କୁଡ଼ା
ଦାଣ୍ଡେ ଦାଣ୍ଡେ, ଗନ୍ଧରେ ଦଣ୍ଡେ ସେଠାରେ
ରହିବ କିଏ, କିନ୍ତୁ ଅଳ୍ପ ଭଡ଼ାରେ
ଥାଆନ୍ତି ଏହିମାନେ, ପଶୁଠୁ ବଳି
ଯାଙ୍କ ଜୀବନ, ନିତି ଗଞ୍ଜେଇ ମଳି
ନାଟ ତାସ ପଶାର ଆଡ୍ଡା ଜମାଇ
ଫୁଙ୍କିଦିଅନ୍ତି ହାଡ଼ଭଙ୍ଗା କମାଇ।
ଯାଙ୍କ ଆଶ୍ରାରେ ବେଶ୍ୟା ଥା'ନ୍ତି ଅନେକ,
ଯା'ଙ୍କ ଭଳି ନ ଥାଏ ତାଙ୍କର ଭେକ।
ମୁଁ ଯାଇ ସେହିଠାରେ ତାଙ୍କ ମେଳରେ
କାଟିଲି କାଳ ପାପ ବ୍ୟବସାୟରେ
ଧିକ ଓଡ଼ିଆ କୁଳେ ପାଇ ଜନମ
ଏତେ କୁକଥା ଦେଖି ଅନ୍ଧ ନୟନ
ନ ହେଲା ଯାହା, ହାୟ ବେଶ୍ୟା ଜୀବନ
ଅତି ହୀନ ପଶୁଠୁ, ସେହି ଅଧମ
ଜୀଅନ୍ତା ନିତି ଭୋଗୁଥାଏ ନରକ,
କୁଟ୍ଟଣୀ ବୁଢ଼ୀ ହାତେ ବନ୍ଦୀ ବାଳକ।

ରୂପ ନାହିଁ ଅଳପ ମୂଲ ଯାହାର
ନାଚ ଗୀତ ବାଜଣା କଥା ବେଭାର,
ତା' କପାଳେ ମିଳନ୍ତି ନିହାତି ହୀନ,
କୁଲି କବାଡ଼ୀ ହାଡ଼ି ରୋଗମଳିନ।
ଅଧା ଦିନ ଡାକ୍ତରଖାନରେ ପଡ଼ି
ନାନା ମନ୍ଦ ବ୍ୟାଧିରେ ଯାଏ ସେ ସଢ଼ି।
ରୂପ ଥିଲେ ଆଦର କରନ୍ତି ଲୋକେ
ରୂପ ସରିଲେ ମରେ ପେଟର ଭୋକେ।
ବେଶ୍ୟା କହି ଘୃଣାରେ ଟେକନ୍ତି ନାକ,
ପାଖେ ନ ପଶନ୍ତି ତା' ପ୍ରେମିକଯାକ।
ଜଗତେ ସ୍ଥାନ ତା'ର କେଉଁଠି ନାହିଁ
ବେଶ୍ୟା ବୋଲି ଯେ ନାମ ଦେଲା ଲେଖାଇ।
ହେଲାଣି ଏଠି ଷୋଳ ବରଷ ଆସି,
କଲିକତା ଖବର ରାଶିକି ରାଶି
ଜାଣେ ମୁଁ, କି କହିବି ଲାଜର କଥା,
ଓଡ଼ିଆ ଝିଅଟକ ବିକିଲେ ମଥା।
ଆସି ଏ ବିଦେଶକୁ ବେଶ୍ୟା ବୋଲାଇ
ବାପ ଭାଇଙ୍କ ନାମ ତଳେ ପକାଇ
ଦଳ ଦଳ କରନ୍ତି ପେଶା ଏଠାରେ,
କିନ୍ତୁ ସବୁଠୁ ହୀନ ଦଶା ବଜାରେ।
ଅନ୍ୟ ଜାତି ବେଶ୍ୟାର ଅଛି ସୁନାମ,
ନାଚ ଗୀତ ବାଜଣା ସିନେମା କାମ।
ଧନୀ ସେମାନେ, ନାନା କଳା ବିଦ୍ୟାରେ
ତାଙ୍କ ନାମ ବିଖ୍ୟାତ ହୁଏ ସଂସାରେ।
କିନ୍ତୁ ଯା'ଙ୍କର ନାହିଁ କିଛି କରଣି,
ଦେହ ବିକନ୍ତି ମାତ୍ର ଏ ଅଲକ୍ଷଣୀ।
ଗଣ୍ଡା ଗଣ୍ଡା ବାଟରେ ବସନ୍ତି ଯାଇ,
ବିକନ୍ତି ଦେହ ପାନ ଖିଲକ ପାଇଁ।
ଗରାଖ ଲାଗି କଳିଗୋଳ କରନ୍ତି,
ନିଲାମ ଭଳି ଛଡ଼ାଛଡ଼ି ହୁଅନ୍ତି।
ଅଧ ଲକ୍ଷରୁ ବେଶି ହେବ ଏମାନେ,
ଯାଙ୍କ ଲାଗି ଓଡ଼ିଆ ସର୍ବେ ଦୁର୍ନାମେ।
ଯାଙ୍କ ପାଇଁ ବେବସ୍ଥା ଦେଶ ନ କରେ,
ଓଡ଼ିଆ ଚାକିରିଆ ଯାଙ୍କ ପାଳରେ

ପଡ଼ି ଧରମ ବୁଡ଼ି ଯାଏ ସେ ବୁଡ଼ି,
ଦିଅନ୍ତା ଘରକୁ ଯା ଟଙ୍କା ଜଉଡ଼ି
ଉଡ଼ାଏ ଯାଙ୍କ ପଛେ, ପିଲା କବିନା
ମନେ ନପଡ଼େ କିଏ ମଲା ଜୀଇଁଲା ।
ଗାଆଁରେ ଭାଗିଯାଚି କୁଟଭ ଧାନ,
ଏଠି ବେଶ୍ୟାଙ୍କୁ ଦିଏ ଅତର ପାନ ।
ଯେତେ ବେଶ୍ୟାଙ୍କ ଆଡୁ ତାର ଚାଳକ
ଥାଆନ୍ତି ଆମ ଦେଶ କୁଳକଳଙ୍କ,
ତାଙ୍କଯୋଗୁଁ ଏ ପାପ ବେପାର ଚଳେ,
ଦେଶୁ ନାରୀ ଚଳଇ ତାଙ୍କ କୌଶଳେ ।
ଏ ଠିକାଦାରଯାକ ଚତୁର ପ୍ରାଣୀ,
ଆଖି ବୁଜି ଏମାନେ ପିଅନ୍ତି ପାଣି ।
ଯାଙ୍କୁ ଜାତିରୁ ସିନା କଲେ ଅନ୍ତର,
ଦେଲେ ଦଣ୍ଡ ଯାଙ୍କର ପାପକର୍ମର
ହୁଅନ୍ତା ଆମ ନାରୀକୁଳର ହିତ,
ଯାଙ୍କ କଥା ଦିନେ କେ ବୁଝୁନାହିଁ ତ !
ଅଛି କି ଆଉ ଧର୍ମ ଓଡ଼ିଶା ରାଜ୍ୟେ,
ଜଗନ୍ନାଥଙ୍କ ଦେଶ କୋଟି ଅକାର୍ଯ୍ୟେ
ଭରା, ଗୋଟି ଗୋଟି ମୁଁ କେତେ କହିବି,
ପୋଥି ହୋଇବ ଯଦି ଲେଖିବସିବି ।
ହାୟ, ସମୟ ଯଦି ଥାଆନ୍ତା ମୋର,
ଉଦ୍ଧାର କରନ୍ତି ଏ ନରକୁ ଘୋର
କେତେ ଯୁବତୀ, ଅନ୍ଧ ଅଜ୍ଞାନ ନାରୀ,
ଭାବିଲେ କି ହେବଟି ଦେଲି ଯା ସାରି
ଜୀବନ ଯଉବନ ଏ ପାପ ପଥେ,
ପାପେ ଭରା ନଉକା ବୁଡ଼ିବ ସତେ
ମହାସିନ୍ଧୁ ଜଳରେ, ନାହିଁ ସମୟ,
କାତର ପ୍ରାଣ ଆଉ କିପାଁ ଅଥୟ ?
ଅସାଧ ରୋଗ ଏବେ ଧରିଚି ଆସି,
ରକ୍ତ-କାଶ ଜ୍ୱର ଶରୀର ଗ୍ରାସି
ହାଡ଼ କଙ୍କାଳ କରି ଦେଲାଣି ଛାଡ଼ି,
ବାହୁନିବି କେତେ ମୁଁ ଧାଡ଼ିକି ଧାଡ଼ି ।
ଯେତେ ଅକର୍ମ କଲି ପୋଡ଼ା ଜୀବନେ
ଏବେ ଦାରୁଣ ରୋଗ ଶେଯ ଶୟନେ
ଭାଳେଁ ଏକା ମୁଁ ଦୋଷୀ ନୁହେଁ କେବଳ,
ଦୋଷୀ ମୋ ଭାଇବନ୍ଧୁ, ମୋ ପାପଫଳ
ଏକା କିପାଁ ଭୋଗିବି, ଦୁର୍ନାମ ମୋର
ଓଡ଼ିଆଙ୍କ କଳଙ୍କକାଳିମା ଘୋର ।
ତାଙ୍କ ମୁହଁରୁ କଳା କିଏ ପୋଛିବ
ମନରେ ସେ ହେଜନ୍ତୁ, ଏ କ୍ଷୁଦ୍ର ଜୀବ
କି କହିବ ତାହାଙ୍କୁ ଦେଶର ଭାଇ-
ଭଉଣୀଙ୍କ ଦୁର୍ଦ୍ଦଶା ଲାଗି ସେ ଦାୟୀ ।
ତାଙ୍କ ପୋଥି ପାଞ୍ଜିରେ ଆମ ପାଇଁକି
ମାନ ମହତ ରଖା ଲେଖାନାହିଁ କି ?
ତାଙ୍କ ପାପ କରମ ଓଡ଼ିଆ ଭାଇ
ଛାଡ଼ନ୍ତୁ ବିଦେଶରେ ଟଙ୍କା କମାଇ,
ନିଶା ପଣାରେ ମିଛେ ମିଛେ ଉଡ଼ାଇ
ନିଜେ ଦେଶ ନାରୀଙ୍କି ଭଡ଼ା ଲଗାଇ,
ନିଜ ଗଳାରେ ଛୁରୀ ଦେଇ ନ ମରି
ରହନ୍ତୁ ଦୁନିଆରେ ମଣିଷ ପରି ।
ତେବେ ସିନା ଦେଶର ହେବ ମଙ୍ଗଳ,
କହିଲି ଏତକ ମୁଁ ଶୋକେ ବିକଳ ।
ହରିନାମ ଅନ୍ତରେ ଭରସା କରି
ପତିତା ନାରୀ ସତେ ଯିବ କି ତରି ?
ମୋ ଭଳି ମହାପାପୀ ତାଙ୍କ କୃପାରେ
ଯିବି କି ଭୀମ ଭବସାଗର ପାରେ !
ଯେତେ ଦିନ ବଞ୍ଚିବି କାନ୍ଦିବି ଖାଲି
ପୋଡ଼ା କରମେ ଦେଇ ଧିକ୍କାର ଗାଳି ।
ମୋ ଦଶା ଦେଖି ସାବଧାନ ହୋଇବ,
ଏତିକି ଶେଷ କଥା ମୋର ଜାଣିବ ।।



## ବକ୍ତବ୍ୟ

ଓଡ଼ିଆ ପୁଅମାନେ ଯାହା କହୁଛନ୍ତି ମୁଁ ସେଥିରେ ସହମତ। ବିଦେଶରେ କୁଲିଗିରି କରିବାଠାରୁ ଦେଶରେ ମରିବା ଭଲ। କିନ୍ତୁ ଏ ମରିବେ କାହିଁକି ? ଯାଙ୍କ ଦେଶ ଧନ ଅନ୍ୟମାନେ (ଯଥା ମାରବାଡ଼ୀ ଓ ବଙ୍ଗାଳୀ) ଲୁଟୁଛନ୍ତି। ଏମାନେ ପରଂ ଦେଶରେ ପଡ଼ି ଏଡ଼େ ହୀନସ୍ତା କାହିଁକି ହେବେ ? ଏମାନେ ଦେଶକୁ ଯାଇ ନାନା ଦିଗରେ ନିଜ ଦେଶର ଉନ୍ନତି କରନ୍ତୁ; ଆଉ ଜାତିର ତେଜ ବଢ଼ାନ୍ତୁ।

**କୁନ୍ତଳାକୁମାରୀ**



## ସଙ୍ଗୀତ

ଏ ବୀର ମାଟି ଭାରତି କଥାଟି
ପୀରତିରେ ଥରେ ମନେ ପକାଅ ଟି। (ଘୋଷା)
ମରକତ, ଭୀମ, ପୁରୁଷ-ଉତ୍ତମ,
କଳିଙ୍ଗ-କେଶରୀ ବୀର ଅବିଦମ,
ମୁକୁନ୍ଦ, ଯଯାତି, ଲଳିତେନ୍ଦୁ ନାମେ
ବାରବାଟି ପୁରେ ବାଜା ବଜାଅ ଟି।
ମୁକୁଟମଣିଟି ଗୋଟିଏ ରଜାର,
ମୁଗଲ ମାଲିକ ଦୂର ଦରିଆର,
ଅରାତି-ଶୋଣିତ-ରଙ୍ଗା ଖଣ୍ଡାଧାର
ବିଜୟସଙ୍ଗୀତ ବାରେ ଶୁଣାଅ ଟି।
ସାଗର ଚିଲିକା ବୋଇତରାଣୀ,
ପାଇକ ତରୁଣୀ ଲାଖବିନ୍ଧାଣି,
ଧନୁଭ ଭଙ୍ଗାର ଲୀଳା କାହାଣୀ
ଓଡ଼ିଆର ଘରେ ଘରେ ଜଣାଅ ଟି।



## ଓଡ଼ିଆ ପୁଅଙ୍କ କଥାବାର୍ତ୍ତା

ଓଡ଼ିଆ ବ୍ରାହ୍ମଣ ପୁଅ ମୁଁ, ଆଜି ଏ ବିଦେଶରେ
ପରର ଗୋଲାମି ଖଟିଣ କାଳ କାଟେଁ ଦୁଃଖରେ।
କି ପରା ବଂଶର ପୁଅ ମୁଁ ହୋଇଅଛି ପୂଜାରୀ,
ଭାତ ରାନ୍ଧି ବାପ ଦାଦିର ନାଆଁ ଦେଲି ଟି ସାରି।
ଚିର ସ୍ୱାଧୀନତା ଯାହାର କୁଳଧରମ ଭାଇ,
ଦଶ ପାଞ୍ଚ ଟଙ୍କା ଦରମା ପାଇଁ ସରମ ନାହିଁ।

ସବୁ ଜାତି ମଥାମଣି ମୁଁ ସେବକ-ବ୍ରତଧାରୀ,
ଏଠି ଗାଳି ଖାଇ ପ୍ରାଣଟା ଲାଜେ ହେଉଛି ଘାରି।
ଶ୍ୟାମଳ ତମାଳ, ପୁନ୍ନାଗ, ଗୁଆ, ନଡ଼ିଆ ଗଛ-
ଘେରା ସେ ସୁନ୍ଦର ଶାସନ, ଯହିଁ ସରସୀ ସ୍ୱଚ୍ଛ,
କୁମୁଦ, କମଳ, କହ୍ଲାରେ ଦିଶେ କି ମନୋରମ,
ବୈଦିକ ବ୍ରାହ୍ମଣ କୁଳରେ ତହିଁ ମୋର ଜନମ।

ମୋ’ ପୂର୍ବପୁରୁଷ କୀରତି ପବିତ୍ର ବରଣୀୟ,
ବିଦ୍ୟାଦାନ ପାଠପଠନେ ଥିଲେ ସେ ସ୍ମରଣୀୟ ।
ନ୍ୟାୟ, ତର୍କ, ସ୍ମୃତି, ଶ୍ରୁତିରେ ପୁଣି ବ୍ୟବସ୍ଥା ଦାନେ
ଥିଲା ତାଙ୍କ ମହା ଅକ୍ଷୟ ଯଶ ଭାରତଧାମେ ।
ଭାଗବତ, ଗୀତଗୋବିନ୍ଦ ତାଙ୍କ କଣ୍ଠଭୂଷଣ,
ପରର ପଡରେ ଖାଇ ମୁଁ ଆଜ କୁଳଦୂଷଣ ।
ପୁରୀ, ଯାଜପୁର, ଭୁବନେଶ୍ୱର, ସାକ୍ଷୀଗୋପାଳ
ଶୋଭଇ ଓଡ଼ିଶା ରାଜାର ଦତ୍ତ ଶାସନମାଳ ।
ଶାସନର ଅଧିକାରୀ ଏ ଦେଶଶାସନ ଲାଗି
ରଜାଙ୍କ ଡାହାଣ ହାତ ସେ, ଭୋଗୀ ମୁଣ୍ଡି ଡିଆଲ୍ଗୀ ।
ପରମ ପଣ୍ଡିତ ଥିଲେ ସେ ସର୍ବ ବିଦ୍ୟାଚର୍ଚ୍ଚାରେ,
ଯାଗଯଜ୍ଞକାରୀ କୁଶଳ ଦେବପୂଜା ଅର୍ଚ୍ଚାରେ ।
ତାଙ୍କ ତେଜେ ଲୋକେ କମ୍ପନ୍ତି, ଆମଠି ତେଜ କାହିଁ,
ବିଦେଶରେ ଆଜି ପଡ଼ିଚୁଁ ମୁଠିଏ ଅନ୍ନ ପାଇଁ ।
ବି.ଏ.ଏମ ପଢ଼ି ବଙ୍ଗାଳୀ ହୋଇଛନ୍ତି କିରାଣୀ,
ଆମେ ଅପାଠୁଆ ତାଙ୍କର ସଜାଡୁଁ ଅନ୍ନପାଣି ।
ନାଆଁକୁ ଠାକୁର ବୋଲାଉଁ, ସେ ତ ଡାକ ଅଚ୍ଛାର,
ଚାକରର ଯାହା ଇଜ୍ଜତ ତାହାକୁ ନମସ୍କାର ।
ଆମ ଠାକୁରଙ୍କ ଦୁର୍ଗତି କହିଲେ ନ ସରିବ,
ଆମଭଳିହୀନ ଜୀବନ ଆଉ କିଏ କରିବ ?

ଭୁଲିବାକୁ ଦୁଃଖଦୁର୍ଦ୍ଦଶା ଆମେ ନିଶାର ଦାସ,
ସମୟ ପାଇଲେ ପଶାରେ ଭୁଲୁଁ ମାଡ଼ ପରାସ ।
ଅଳପ ଦରମାଗଣ୍ଡାକ ଯାଏ ମଉଜେ ଉଡ଼ି,
ଘରକଥା ଭୁଲିଗଲୁଣି ମାଆ ମାଉସୀ ଖୁଡ଼ୀ ।
ସ୍ତ୍ରୀ ସନ୍ତାନ ଥିବେ କିପରି ଗଲାଣି ସେ ପାସୋର,
ଦିନେ ଦିନେ ବୁଡ଼ିଯାଉଚୁଁ ନରକକୁଣ୍ଡେ ଘୋର ।
ପବିତ୍ର ବ୍ରାହ୍ମଣ ସନ୍ତାନ ଭୁଲି ବଂଶସମ୍ମାନ
ମଦ, ବାରାଙ୍ଗନା, ପଶାରେ ହଜାଉଁ ଧନ, ଜ୍ଞାନ ।
ନାନା ବ୍ୟାଧି ଦେହେ ବିକଶେ ନାନା ଉତ୍ପାତେ ପଡ଼ି
ଅକାଳେ ମରନ୍ତି ଅନେକେ ବହୁ ଦୁଃଖରେ ସଢ଼ି ।
ଚରିତ୍ର ବୋଲି ତ ଆମଠି ନାହିଁ କିଛି ପଦାର୍ଥ,
ଘାଣ୍ଟି ହୋଇ ପାପପଙ୍କରେ ଭୁଲିଚୁଁ ପରମାର୍ଥ ।
ଆମକୁ ଦେଖିଲେ ବ୍ରାହ୍ମଣ ବୋଲି କିଏ କହିବ,
ଧର୍ମ-କର୍ମ-ବିଦ୍ୟା-ଚରିତ୍ରହୀନେ କେ ଆଦରିବ ?
ଧିକ ଏ ଜୀବନ ଧିକ ମୋ’, ନ ରହିବି ଏଠାରେ,
ଏପରି ଜୀବନ ବହି ମୁଁ ନ ବଞ୍ଚିବି ସଂସାରେ ।
ନ ହେବି ଆଉ ମୁଁ ପୂଜାରୀ, ଯିବି ବାହାରି ଘର,
ବାପ ଜେଜେ କୁଳେ କଳଙ୍କ ନ ବୋଳିବି ଏଥର ।
ପୂଜାରୀ ନାମରେ ହେଉଚି ମୋତେ ଦାରୁଣ ଲଜ୍ଜା,
ପୂଜାରୀ ହୋଇବାଠାରୁ ମୁଁ ବରିବି ମୃତ୍ୟୁଶଯ୍ୟା ।

ଓଡ଼ିଆ ବ୍ରାହ୍ମଣ ପୁଅ ମୁଁ, ଛାଡ଼ିବି ଏ କୁପଥ,
ଦେଶ ବଂଶ ଟେକ ରଖିବି ହୋଇ ସ୍ୱଧର୍ମେ ରତ ।



## କରଣ ପୁଅ

ଓଡ଼ିଆ କରଣ ପୁଅ ମୁଁ, ପଟ୍ଟନାୟକ ବୁଆ,
ହାୟ ମୋ’ କପାଳେ ବିଦେଶେ ମୁଣ୍ଡରେ ବୋଝବୁହା ।
ସାଆନ୍ତ ଘରର ପିଲା ମୁଁ, କୁଳମାନ ହରାଇ
କୁଲିକାମ କରି ଜୀବନ ହେଉଅଛି ବିତାଇ ।
ମୋ’ ବାପ ଦାଦିର କୀରତି କଥା ନୋହିବ କହି,
କାବ୍ୟକବିତାର ଖଣି ସେ, ଲେଖିଲେ ନାନା ବହି ।
ଆମ କୁଳେ ବିଦ୍ୟା ଚରଚା, ମନ୍ତ୍ରୀ, କିରାଣୀ କାମ,
ଆଜ ଅପାଠୁଆ ଆମେ ତ, ହେଲୁଁ ପର ଗୋଲାମ ।

ପାଠଶାଠ ଚତୁରତାରେ କରଣୁ କେ ଅଧିକ,
ପାତ୍ରମନ୍ତ୍ରୀ ଥିଲୁଁ ରଜାର ଗନ୍ତାଘର ମାଲିକ ।
ଧନ ଦରବରେ ଆମର ଉଛୁଳୁଥିଲା ଘର,
ପୋଡ଼ି ଜଳି ଗଲା ସେ ଘର, ଟଙ୍କା ଦଶ ପନ୍ଦର
ଜୀବନସମ୍ବଳ ଏବେ ତ, ସେ ମହାନ୍ତିପଣିଆ ।
ଗଳ୍ପମାତ୍ର ଆମ ପାଇଁକି, ଆମେ ହୀନ ମୁଲିଆ ।
ଗଜପତି ରଜା ମୁଲକ ଦୂର ଦରିଆ ସରି
ନବ କୋଟି କର୍ଣ୍ଣାଟକର ଶାସନଦଣ୍ଡ ଧରି ।

ଆମେ ଥିଲୁଁ ତାଙ୍କ ମନ୍ତ୍ରଣାଦାତା, ସୁପରାମର୍ଶେ
ଦେଶ ସ୍ୱାଧୀନତା ରଖିଲୁଁ ଟେକ ଭାରତବର୍ଷେ ।
ରାୟ ରାମାନନ୍ଦ ଥିଲେ ସେ ଆମରି ଜାତି ଭାଇ,
ରାଜ ମହାନ୍ଦ୍ରିରେ ଶାସନକାର୍ଯ୍ୟ ଥିଲେ ଚଳାଇ ।
ଆଜି କାହିଁ ଆମ ସାଆନ୍ତ ଢମ, ମାହାନ୍ତି ଶାଠ,
ଆଜି କାହିଁ ଆମ ଶାସନକଳା, କବିତା ପାଠ ?
ଆମେ ଜରି ହୀନ ମୂଳିଆପଣ କୁଳଧରମ
ଏକାବେଳେ ଦେଲୁଁ ବୁଡ଼ାଇ, ଧିକ ଆମ କରମ ।
ଭୋକେ ପଛେ ଘରେ ମରିବି, ଆଉ ନ ହେବି କୁଲି,
ନ ସାରିବି ବଂଶଗୌରବ ଆଉ ବିଦେଶେ ବୁଲି ।
କରଣ ମହାନ୍ତି ସନ୍ତାନ ସାଆନ୍ତପୁଅଙ୍କର
ହାକିମାତି ସିନା କରିବା ଆମ ପାଇଁ ସୁନ୍ଦର ।

ନ ରହିବି ଆଉ ବିଦେଶେ, ଯିବି ମୁଁ ଫେରି ଘର,
ଉଚ୍ଚ ପଦ ମାନ ଲଭିବି ବିଦ୍ୟା ପଢ଼ି ଏଥର ।
ମୋ' ବୁଦ୍ଧିବଳେ ମୋ' ଦେଶର ରଖିବି ସନମାନ,
ମୋ' ଜ୍ଞାନବଳେ ମୋ' ଦେଶର ବଢ଼ିବ ଧନଧାନ ।
ମୁଁ ପୁଣି କିପାଇଁ ବିଦେଶେ କରିବି କୁଲିଗିରି,
ଦଶ ବାର ଟଙ୍କା ପାଇଁ ଏ ଗୋଲାମର ଚାକିରୀ ?
କେତେ ବଡ଼ ଘର ପୁଅ ମୁଁ, ପେଟ ପାଇଁକି ଛାର
ନ ଛାଡ଼ିବି ଆଉ କେବେ ମୁଁ ମୋ କୁଳ ଅହଙ୍କାର ।
ଆସିବି ଯଦି ବା ବିଦେଶ ଆସିବି ବଡ଼ କାମେ,
ହାକିମ, ଡାକ୍ତର, ମାଷ୍ଟର ଅବା ବିଦ୍ୟାର୍ଥୀ ନାମେ ।
ନୋହିଲେ ରହିବି ଦେଶରେ ଗରିବ ଅବା ଧନୀ,
ମୋ' ଲାଗି ନ ପାଉ ଲାଞ୍ଛନା ଜନ୍ମଭୂମି ଜନନୀ ।

ସାଆନ୍ତ ଘରର ପୁଅ ମୁଁ, କୁଳଶ୍ରେଷ୍ଠ କରଣ,
ଯିବି ଫେରି ନିଶ୍ଚେ ସ୍ୱଦେଶେ ଏ ମୋ' ଜୀବନପଣ ।



## ଖଣ୍ଡାଏତ ପୁଅ

ଖଣ୍ଡାଏତ ଘର ପୁଅ ମୁଁ, ପାଇକ ବଂଶଧର,
ଶୋଭୁଥିଲା ଆମ ହାତରେ ଧନୁଶର ସୁନ୍ଦର ।
ଆମ ବାପା ଜେଜ କୀରତି ଅତୁଳ ସେ ଜଗତେ,
ଆଜି ଆମେ କୁଲି ମୂଳିଆ,
କେ ଯିବ ଯା ପରତେ ?
ସାରା ଦେଶଟାକୁ ଶତ୍ରୁର କବଳରୁ ବଞ୍ଚାଇ
ରଖିଥିଲୁଁ ଆମେ ଡରାଇ ତୀକ୍ଷ୍ଣ ଖଣ୍ଡା ଉଞ୍ଚାଇ ।
ହାୟ ସେ ଖଣ୍ଡାରେ ଖେଳିବା, ଲାଛିବା ଧନୁଶର,
ଘୋଡ଼ାରେ ଚଢ଼ିବା ଭୁଲିଚୁଁ,
ଆଜି ଆମେ କିଙ୍କର ।
ଯେଉଁ କ୍ଷତ୍ରୀଙ୍କର ନାମରେ କମ୍ପୁଥିଲା ଧରଣୀ,
ବିଲୁଆଟା ଦେଖି ଡରିଲୁଁ, ଧିକ ଆମ କରଣି ।
ଆମ ବାହାସ୍ଫୋଟ ଶୁଣି କା କମ୍ପୁ ନ ଥିଲା ଛାତି,
ଓଲଟାଉଥିଲୁଁ ରାଇଜ ଯୁଦ୍ଧରେ ଗଡ଼ନ ମାଟି ।
କିନ୍ତୁ ଆଜି ହାୟ ଦି'କଡ଼ା ନୁହଇ ଆମ ମୂଲ,
ଦେହେ ଚିରାକନା ଝୁଲୁଚି,
ପେଟ ଭୋକେ ଆକୁଳ ।

ଦଳ ଦଳ ହୋଇ କରନ୍ତୁଁ ବିଦେଶେ କୁଲିପଣ,
ନାନା ପାପ ଅପକରମେ ସାରିଲୁଣି ଜୀବନ ।
ଆମ ପ୍ରାଣେ ଲଜ୍ଜା ସରମ ଜ୍ଞାନ ରହିଲା ନାହିଁ,
ଯାହା କମାଇଲୁଁ ବିଳାସେ ଦେଲୁଁ ସବୁ ଉଡ଼ାଇ ।
ବସିଚି ମୁଁ ବଡ଼ ଭାବେଣି କି କରିବି ଏଥର,
ଏଡ଼େ ବଡ଼ ଘର ପୁଅ ମୁଁ,
ନ ହେବି କା ଚାକର ।
ଗୋଲାମି ପେଶାରେ କ୍ଷତ୍ରୀର ପୁଅ ବଞ୍ଚିବାଠାରୁ
ନାମ ଲୁଚୁ ତାର ମହୀରୁ,
ଯାଉ ସେ ଏ ସଂସାରୁ ।
ଆମ କୁଳ ଗର୍ବ ଗୌରବ ସ୍ମରି ଆଖିରୁ ପାଣି
ବହିପଡ଼େ ମୋର କିଅର୍ଥେ ବୁକୁରେ କର ହାଣି ।
ଏଡ଼େ ହୀନପଣେ ଜୀବନ ଏ ଦୂର ବିଦେଶରେ
ଆଉ ନ କାଟିବି, କଳଙ୍କ ଲାଗୁଅଛି ବଂଶରେ ।
ବିଦ୍ୟା ଜ୍ଞାନ କାବ୍ୟ କବିତା ସବୁଥିରେ କୁଶଳ
ଥିଲେ ମୋର ପୂର୍ବପୁରୁଷ, ମୁଁ କିପାଇଁ ନିର୍ବଳ ?

ଫେରିଯିବି ଘର ଓଡ଼ିଶା, ମୋ' ନିଜ କୁଡ଼ିଆରେ
ନିଜ ବୁଦ୍ଧିବଳେ ବଞ୍ଚିବି ମଣିଷପଣିଆରେ ।
ବାହୁବଳ କରି ସାଧନା ରଖିବି ଦେଶ ଟେକ,
ନ ଡ଼ରିବି ତିଳେ କାହାକୁ ହାଣ ଖାଉ ଏ ବେକ ।
ଶିଖ ରାଜପୁତ ପଠାଣ ରହିଲେ ସୈନ୍ୟଦଳେ,
ଓଡ଼ିଶା ପାଇକ ପୁଅ କି ଊଣା ମୁଁ ବାହୁବଳେ ?
ମୋ' ବାହୁବଳରେ ଦେଶର ବଢ଼ାଇବି ଗୌରବ,
ମୋ ବାହୁବଳରେ ବ୍ୟାପିବ
ଭବେ ଖ୍ୟାତି ସୌରଭ ।
ଜନନୀ ଜନମଭୂମିର ମୋ' କର୍ତ୍ତବ୍ୟ ପରମ,
ଦେଶରେ ରହିବି ଆନନ୍ଦେ ପାଳି କ୍ଷତ୍ରୀ ଧରମ ।



# ଗୋପାଳ ପୁଅ

ପବିତ୍ର ଗୋପାଳ ସନ୍ତାନ ନନ୍ଦକୁମାର ମୂର୍ତ୍ତି,
ଅମୃତ ଗୋରସେ କିପରି ପୁଣ୍ୟ ଓଡ଼ିଶା ଭୂଇଁ
ପାଳୁଥିଲେ ସବୁ ପ୍ରଜାଙ୍କୁ ଅମୃତ କୁଣ୍ଡକରେ,
ଆଜି ମୁଁ ବିଦେଶେ ପଡ଼ିଚି ହୀନ କୁଲିକାମରେ ।
ଗୋ-ସେବା ନ କରି ଆଜି ମୁଁ ସେବା କରେଁ କଳର,
କଳ କାମ କରି ଶେଷରେ ହେଲି କୁଲି, କିଙ୍କର ।
କୁଲିନାମେ କେଡ଼େ ଲଜ୍ଜିତ ମୁଁ ଯେ ସ୍ୱାଧୀନକର୍ମା
ପଡ଼ିଚି ଏ କଲିକତାରେ, ଦି'ଗଣ୍ଡା ଟଙ୍କା ଦର୍ମା
ପେଟକୁ ଦେହକୁ ନିଅଣ୍ଟ, ପରିବାର ପୋଷଣେ
ଚିର ଅସମର୍ଥ ହେଲି ମୁଁ, ସୁଖ ନାହିଁ ଜୀବନେ ।
ଘରେ ଯେତେ ଗୋରୁ ବାଛୁରି ସବୁ ହେଲେଣି ହଡ଼ା,
ନ ମିଳଇ ପେଜ ତୋରାଣି କୁଣ୍ଡା ଘାସ କି ନଡ଼ା ।
ମୋ କରମ ଅବଳକୁ ଏ ଦଶା ଆସିଲା ମାଡ଼ି,
ଆସିଚି ଘରେ ମୁଁ ଏକାକୀ ପିଲା କବିଲା ଛାଡ଼ି ।
ବିଦେଶରେ ମୁଣ୍ଡେ ମୋହର କୁଲି କାମର ଠେକା,
ତାଙ୍କ ଦେଖାଶୁଣା ପାଇଁକି ଦୈବ ଭରସା ଏକା ।
ବସ୍ତା ବୋହି ମାଲ ବୋଝାଇ ଜାହାଜରେ କରଇଁ,
ବୋଝ ଲଦି ଲଦି ପିଠିରେ ଅଣ୍ଟା ଗଲାଣି ନଇଁ ।
ଧିକ ଯା'ପାଇଁକି ଜନମ ଲଭିଥିଲି ସଂସାରେ
ପବିତ୍ର ଗୋପାଳ କୁଳରେ, ନିତି ଦୁଃଖେ ବିଚାରେ ।
ଆମ ହାତେ ପାଣି ଖାଆନ୍ତି ସବୁ ଜାତି ପାଟକ,
ଜଗତ ପାଳନ-କରତା ଗୋମାତାର ସେବକ ।
ଗୋମାତାକୁ ଅବହେଳି ମୁଁ ଆସି ଦୂର ଦେଶରେ
କୁଲି କାମ କରି ମରୁଛି, ନାଶ କୁଟୁମ୍ବ ଘରେ ।

ପଇସା ପତର ଯା' କିଛି କଲି ବା ରୋଜଗାର,
ମେଳା ମଉଛବେ ସାରିଲି, ନରକର ଦୁଆର-
କଡି ମୋ' ପାଇଁକି, ଅଧମ ଅତି ଗର୍ହିତ କର୍ମ
କରି କରି ଭୁଲିଗଲିଣି ମାନ ମହତ ଧର୍ମ।
ଏ ସତ୍ୟାନାଶିଆ ଗୋଲାମି କାମ ଛାଡ଼ି ଏଥର
ଗୋପାଳର ପୁଅ ଭଳେ ମୁଁ ଫେରିଯିବି ସ୍ୱ ଘର।
ନିଜ କୁଳ ବ୍ୟବସାୟରେ ଅରଜିବି ଯେ ଧନ,
ସ୍ୱାଧୀନ ସୁଖରେ କାଟିବି ମଧୁମୟ ଜୀବନ।



## ସାଧବ ପୁଅ

ସାହୁକାର ଘର ପୁଅ ମୁଁ, ବେପାର ବଣିଜରୁ
ସଞ୍ଚେ ଆଣି ଧନଦରବ ରାଇଜରାଇଜରୁ।
ଆମ କୁଳେ ଲକ୍ଷ୍ମୀ ଅଚଳା, ଆମେ ଧନର ପତି,
କେତେ ମଠବାଡ଼ି ମନ୍ଦିରେ ଖଞ୍ଜା କୋଠସମ୍ପତ୍ତି।
ଆମ ଯୋଗୁ ଆମ ଦେଶର ବଢ଼େ ଶିରୀସମ୍ପଦ,
ମହାଜନ ଘର ପୁଅ ମୁଁ ସେବିବି କାହା ପଦ?
କିନ୍ତୁ ଆଜି କେଡ଼େ ଦୁର୍ଗତି ସେ କୁଳେ ଜନ୍ମ ପାଇ,
ବୋଝ ବୋହି ପେଟବିକଳେ କୁଲି ନାମ ବୋଲାଇ
ଅଛି ମୁଁ ବିଦେଶେ, ଆଉ କି ଦଣ୍ଡ ଦେବୁ ଦଇବ,
ନିର୍ଲ୍ଲଜ୍ଜ ଜୀବନ ଆଉ ସେ କେତେ ଗ୍ଲାନି ସହିବ?
ଜାହାଜରେ ଯେବେ ମାଲ ମୁଁ ଲଦେ ମୁଣ୍ଡେ ମୁଣ୍ଡାଇ,
ଅତୀତ ମୋ' ଆଖି ଆଗରେ ଆସେ ରଙ୍ଗ ଦେଖାଇ।
କେତେ କଥା ପଡ଼େ ମନେ ଟି ପୂର୍ବପୁରୁଷ କଥା,
ଛାତି ଫାଟିପଡ଼େ, ପଥର ହେଲେ ପାଆନ୍ତା ବ୍ୟଥା।
ଆମ ବାପା ସା'ନବାପର କୀର୍ତ୍ତି ଜଗତ ଜିଣି,
ଦୂର ମୁଲକରୁ ଆଣନ୍ତି ଲକ୍ଷ୍ମୀଭଣ୍ଡାର କିଣି
ସପତ ସାଗରେ ବୋଇତ, ଚାନ୍ଦ ସଉଦାଗର,
ଲକ୍ଷ୍ମୀଧର କଥା ଶୁଣିଚ, ପୁଣି ସାଧବଙ୍କର
ବୋଇତ ପହଞ୍ଚୁ ଛୁଇଁଲେ ନଦୀ ମୁଣ୍ଡ ମୁହାଣ,
ସାଧବବୋହୂଙ୍କ ଶରଧା, ବୋଇତର ବନ୍ଦାଣ,
ହୁଳହୁଳି, ସୁନାଥାଳୀରେ ଅର୍ଘ୍ୟଦୀପ ଜଳାଇ
ମଙ୍ଗଳ ମନାସ, ଆନନ୍ଦ ପତି ପୁଅଙ୍କ ପାଇଁ।
ଘରେ ଘରେଆମ କାହାଣୀ ଜେଜେମାଆ ମୁଖରେ
ସଞ୍ଜବେଳେ ବସି ପିଣ୍ଡାରେ ଶୁଣେ ଶିଶୁ ଆଦରେ।

ସେ ଶିଶୁ ପତେ କି ଜାଣଇ ସେହି ବୋଇତ ବାହି
ସାଧବର ପୁଅ ମଲାଣି, ଅଛିପୂର୍ବ ବଡ଼ାଇ।
ଖାଇବାକୁ ପାଏ ନାହିଁ ସେ ପେଟ ଭରି ମୁଠାଏ,
ଧିକ ଏ ଜୀବନ ନ ଯାଇ ରହିବୁ ଆଜିଯାଏ !
ସୁନା ମାଣିକରେ ଅନ୍ଧାର ଘର ଉଜ୍ଜ୍ୱଳ ଯା'ର,
ଯା'ର ଗନ୍ତାଘର ଅମପା ଅସରନ୍ତା ଭଣ୍ଡାର।
ସେହି ସାଧବାଣୀ ଦେହରେ ଚିରା କନାର ଧଡ଼ି,
କାନ୍ଦେ ପତି ପୁଅ ବିହୁନେ ଅନ୍ଧାର କୋଣେ ପଡ଼ି।
ପତି ପୁଅ ଆଜି ତାହାର ବିଦେଶରେ ମୂଲିଆ,
ମହାଜନ କୁଳନନ୍ଦନ ପର ପାଦତଳିଆ।
ପରର ଫଚ୍ଚିତ ଗାଳିରେ ପେଟ ପୂରେ ତାଙ୍କର,
ସାରିଲେ ଇଜ୍ଜତ ମହତ ହୋଇ ରଙ୍କ ଇତର।
ଚାକିରୀ କରିବା ଯେ କୁଳେ ମହାପାପ ଅଧର୍ମ,
ବିଦେଶେ ଏବେ ସେ ହୁଡ଼ିତ ଗଲେଣି ଧର୍ମକର୍ମ।
ଛି ଛି, ମୁଁ ଓଡ଼ିଆ ସାଧବପୁଅ ହୋଇ ଏଥର
କେବେ ନ ହେବିଟି ମୂଲିଆ ସେବାକାରି ଚାକର।
ଚେତନା ପାଇଲି ଯଥେଷ୍ଟ, ଯିବି ଫେରି ମୁଁ ଘରେ,
ମୋ ନିଜ ଗୋଡ଼ରେ ଛିଡ଼ା ମୁଁ ହେବି ବ୍ୟବସାୟରେ।
ବାଣିଜ୍ୟେ ଲକ୍ଷ୍ମୀର ନିବାସ, ମୁଁ ତ ଲକ୍ଷ୍ମୀସନ୍ତାନ,
କରି ନାନା ଫନ୍ଦି ଫିକର ହୋଇବି ଧନବାନ।
ମୋ'ଦେଇ ବଢ଼ିବ ଦେଶର ଧନ ମାନ ସମ୍ମାନ,
କାହାକୁ ଚାହିଁବ ମୋ' ଦେଶ ହେବି ଯଦି ଗୋଲାମ ?
ମୁଁ ଆଜି ମୂଲିଆ ବୋଲି ତ ମୋ' ଦେଶ କଙ୍ଗାଳୁଣୀ,
ରାଣୀ ପଦେ ଥିଲା ଯେ ଏବେ ଜଗତେ ଭିକାରୁଣୀ।
ନାହିଁ ନାହିଁ, ଆଉ ଦଣ୍ଡେ ମୁଁ ନ ରହିବି ବିଦେଶେ,
ସୁନାରୂପା ଧାନ ଚାଉଳ ଉପୁଜାଇବି ଦେଶେ।
ମେଳ ବାନ୍ଧି ବ୍ୟବସାୟରେ ମନ ଦେବି ଏଥର,
ପାଞ୍ଚ ଭାଇ ମିଳି ଏକାଠି ସୁଖେ କରିବୁଁ ଘର।
ଦେଶ ବିଦେଶରେ ବଣିଜ କରି ହେବେ ମଣିଷ,
ସାଧବ ଘରର ପୁଅକୁ ପର ଖଟଣୀ ବିଷ।
ମୁଣ୍ଡ ପଛେ କଟିଯାଉ ମୁଁ ନ ହେବି କା ଗୋଲାମ,
ସାହୁକାର ଘର ପୁଅର ଶୋଭା ଲକ୍ଷ୍ମୀଦୋକାନ।
ବୈଶ୍ୟ ପୁଅ ହୋଇ କା'ବଶେ ନ ରହିବ ସେ ଆଉ,
ଛାଡ଼ିବ ଏ କୁଲିକାମକୁ ଜୀବନ ପଛେ ଯାଉ।
ପଇସାରେ ପୋଡ଼ି ପଇସା ବଢ଼ାଇବି ବେପାର,
ବନାଇବି ବଡ଼ ଦୋକାନ ବୋଲାଇ ସାହୁକାର।



# କାରିଗର ପୁଅ

କାରିଗର ଘର ପୁଅ ମୁଁ ଶିଳ୍ପ ଶାସ୍ତ୍ରେ ପଣ୍ଡିତ,
ମିସ୍ତ୍ରୀ ବୋଲି ନାମ ବିଖ୍ୟାତ ଜଗତରେ ବିଦିତ।
ମୋ ନିହାଣ ବାରସିରେ ମୁଁ ଲୁହାକୁ କରି ଗୁଣ୍ଡ,
ଗଢ଼ିଲି ଗଗନପରଶୀ କେତେ ମନ୍ଦିର ମୁଣ୍ଡ।
ପଥର ଦେହରେ ପଥର ଘଷି ବନ୍ଧରଚନା
କରିଚି ଦେଖି ଯା ହୁଅଇ ବଣା ଲୋକକଳ୍ପନା।
ମନ୍ଦିର ମାଳରେ ଓଡ଼ିଶାଖଣ୍ଡ ଦେଇଚି ଭରି,
ବିସ୍ମୟେ ବିଦେଶୀ ପରଖେ ଶିଳ୍ପକଳା କିପରି।
ହାୟ କି ଦୁଃଖ ମୋ କପାଳେ ଆଜି ମୁଁ ହୀନକର୍ମା,
ପିତା ପରା ମୋର ଜଗତେ ବୋଲାନ୍ତି ବିଶ୍ୱକର୍ମା।
ବିଶ୍ୱକର୍ମା ପୁଅ ହୋଇ ମୁଁ ବୁଲେ ବିଶ୍ୱଦାଣ୍ଡରେ
ଦି'ଗଣ୍ଡା ପଇସା ପାଇଁକି ବୋଝ ବୋହି ମୁଣ୍ଡରେ।
କାହିଁ ମୋର ଶିଳ୍ପଗୌରବ, ହାତୁଡ଼ି ଗଲା ହଜି,
ବିଦେଶେ ପଡ଼ିଚି କୁଲି ମୁଁ ନାନା କୁକର୍ମେ ମଜି।
ଘରେ ମୋର ପୁଅଝିଅଙ୍କୁ ନ ମିଳେ ଦାନାକନା,
ଯା କମାଏଁମୋତେ ନିଅଣ୍ଟ, ତହିଁ କର୍ଜ ଭାବନା।
ଆଉ କି କୁଳରେ ଧରମପଦ ପୁଅ ଅଛନ୍ତି,
ବାପ କାହିଁ ବୋଲି ଦିନେ ସେ ଭୁଲରେ ପଚାରନ୍ତି ?
ବାପ କାହିଁ, ବାପ ବିଦେଶେ ମଣିଷରେ ଅଧମ,
ବୋଝ ବୋହି ଗାଳିମାଡ଼ରେ ସରିଲାଣି ସରମ।
କାଠ ପଥରଠୁ ବଳି ଏ ଦେହ ହେଲାଣି ଟାଣ,
ଏକାବେଳେ ଭୁଲିଗଲାଣି ବଂଶର ଖ୍ୟାତିମାନ।
ସାତ ପୁରୁଷରେ ଆମର ନ ଥିଲେ କେ ଚାକର,
ବୁଡ଼ିଗଲା କୁଳବେଉସା, ଆମେ ତ ହରବର।
ନାହାନ୍ତି ଓଡ଼ିଶା ରଜା ସେ ପ୍ରତାପୀ ଗଜପତି,
ଆମକୁ ଆଉକେ ପଚାରେ, ଘରେ ନ ଜଳେ ବତୀ।
ବଡ଼ ଦୁଃଖେ ପଡ଼ି ବିଦେଶେ କୁଲିଗିରୀ କରିଲୁଁ,
ବଡ଼ ବିକଳରେ ନିଜର ସନମାନ ସାରିଲୁଁ।
ଦୁଃଖେ ଫାଟେ ମୋର କଲିଜା, ନ କରିବି ଏ କାମ,
କାରିଗର ଘର ପୁଅ ମୁଁ ନହେବି କା ଗୋଲାମ।
ନିଜ କାରିଗରୀ ଖ୍ୟାତିରେ ରଖିବି ଦେଶମାନ,
ମୋ' ଯୋଗୁ ମୋ' ଜନ୍ମଭୂମିଟି ଲଭୁ ବହୁ ସମ୍ମାନ।
ଓଡ଼ିଆ ଶିଳ୍ପୀର ଗୁଣରେ ମୁଗ୍ଧ ଜଗତଯାକ,
ମୁଁ ପୁଣି ଗୋଲାମି କରି କି ତଳେ ଘଷିବି ନାକ !
ନାହିଁ ନାହିଁ, ଆଉ ଗୋଲାମି ନ କରିବି ଜୀବନେ,
ଫେରିଯିବି ଏବେ ସ୍ୱଦେଶେ, ଯା'ଥିବ ମୋ' କରମେ।



# କୃଷକ ପୁଅ

କୃଷକ ଘରର ପୁଅ ମୁଁ ଚାଷ ମୋ ବ୍ୟବସାୟ,
ମୋ ବିନା ଅଛି କି ଜଗତେ କା ବଞ୍ଚିବା ଉପାୟ ?
ସୁନ୍ଦର ଶାଗୁଆ କ୍ଷେତରେ ଧାନ, ମୁଗ, ଗହମ
ପାଚିଲା କିଆରୀ ଦେଖିଲେ ଉଲ୍ଲସିତ ମରମ।
ମୋ ହଳ ଲଙ୍ଗଳ ଫାଳରେ କମଳାଙ୍କ ନିବାସ,
ଚାଷ ଅଛି ଘରେ ଯାହାର ଦେଶେ ତାହାରି ବାସ।
କିନ୍ତୁ ଆଜି କାହିଁ ମୋ ବାସ ଏ ଦୂର ବିଦେଶରେ,
ଚାଷ ଛାଡ଼ି କରେଁ ଚାକିରୀ ଥାଇ ପର ବଶରେ।
ଦଶ ପୁରୁଷରେ ଗୋଲାମ କେହି ନ ଥିଲେ ଜଣେ,
ବସୁଥିଲା ସୁନା କଳସ ଧାନ ଲକ୍ଷ ଉରଣେ।
ସେ ଲକ୍ଷ ଉରଣ କଥା ତ ସପନର କାହାଣୀ,
ଚାଷ ଜମି ମାଣେ ନାହିଁଟି, ଘରେ ପାଞ୍ଚ ପରାଣୀ
ମରୁଥିବେ ଭୋକ ଉପାସେ, ମୁଁ ଦୂର ବିଦେଶରେ,
ମୋ କମେଇ ମୋତେ ନିଅଣ୍ଟ, ଦିନ କାଟେଁ କଷ୍ଟରେ।
ବିଲର ଖଜଣା ଲାଗି ମୁଁ ଥାଳୀ କଂସା ବିକିଲି,
ବୁଢ଼ା ହଡ଼ା ବିକି ସାହୁର ସୁଧମୂଳ ଶୁଝିଲି।
ଭାରିଯା ହାତର ଖଡୁକୁ ବନ୍ଧା ପକାଇ ଆଣି
ଟଙ୍କା ଦଶଟାରେ ଚଳିଲି ପିଇ ପେଜ ତୋରାଣି।
ଆଖର ମୋ ଘରେ ରହିଲା ନାହିଁ ଫଟା କଉଡ଼ି,
ଭାବିଲି ଏଥର ଗଳାରେ ଦେବି ଅବା ଦଉଡ଼ି।
ସେହି ସମୟରେ ଗୋବିନ୍ଦା ଆସିଲା କଲିକତା,
କଲିକତା ରୋଜଗାରର କହିଲା କେତେ କଥା।
ତା' କଥାରେ ସିନା ବାହାରି ଅଇଲି ମୂର୍ଖପଣେ,
ଆଜି କିଏ ଅଛି ଜଗତେ ମୋ'ଭଳି ଦୁଃଖୀ ଜଣେ !
ବୋଝ ବୋହି ବୋହି ମୋହର ପିଠି ଗଲାଣି ଫାଟି,
ମାଡ଼ ଗାଳି ଭୋକେ ଗଲାଣି ଶୁଖି ପଞ୍ଜରା କାଠି।
ଘରକୁ ପଠାଇ ଅଧକ, ଅଧକ କମେଇରେ
ଦିନ କାଟେଁ, କିଛି ଉଡ଼ାଏଁ ଅଫିମ ଗଞ୍ଜେଇରେ।
ମୋର ଯେତେ ସଙ୍ଗୀ ସଙ୍ଗାତ ସର୍ବେ ଧରମହୁଡ଼ା,
ନାନା ମନ୍ଦ କର୍ମ କରି ସେ ସହଜେ କୁଳବୁଡ଼ା।
ତାଙ୍କ ସଙ୍ଗେ ପଡ଼ି ଦୁଷ୍କାର୍ଯ୍ୟେ ଯାଉଛି ଦିନରାତି,
ଥରେ ଥରେ ନିଜ ଦୁର୍ଦ୍ଦଶା ଭାବି ବିଦାରେ ଛାତି।
ହା ଅନ୍ନ ହା ଅନ୍ନ କରି ମୁଁ ବିଦେଶେ କେତେକାଳ
ନରକର କୁଣ୍ଡ ଘାଟିବି ନିନ୍ଦୁଥିବି କପାଳ !

କୃଷକ ଘରର ପୁଅ ମୁଁ ଚାଷ କରି ବଞ୍ଚିବି,
କୁଲି କାମ କରି ବିଦେଶେ କିମ୍ପା ମୃଣ୍ଡ ଗୁଞ୍ଜିବି ?
ନିଜ ସୁନା ଖଳା ଭୂଇଁକି ଫେରିଯିବି ଏଥର,
ଚାଷବାସ କରି ସୁଖରେ କରିବି ପୁଣି ଘର ।
ଜନନୀ ଜନମଭୂଇଁ ତ ସ୍ୱର୍ଗୁ ବଳି ମହାନ,
ସେହି ମାଟି ମୋର ସମ୍ପତ୍ତି ମୁଁ ତା ପ୍ରିୟ ସନ୍ତାନ ।
ମୋହରି ନଙ୍ଗଳ ଫାଳରେ ଲକ୍ଷ୍ମୀ କରିବେ ଘର,
ଅମାର ଅମାର ଧାନରେ ପୂରିଯିବ ଏଥର ।
କୁଲିଗିରି କରି ଦେଶକୁ ଆଉ ନ ଦେବି ଲଜ୍ଜା,
କୁଲିଗିରି କଲେ ଏଥର ଘେନିବି ମାଟିଶଯ୍ୟା ।
ପଛେ ସେ ମାଟିର ଶେଯରେ ହାଡ଼ ମୋ' ମିଶିଯାଉ,
ତଥାପି ଓଡ଼ିଆ ଭୂଇଁର ଟେକ ଜଗତେ ଥାଉ ।
ଓଡ଼ିଆ ଚଷାର ପୁଅ ମୁଁ, ମୁଁ ତ ମାଟିସେବକ,
ମୋହରି ବଳିଷ୍ଠ ବାହୁରେ ନିତି ପ୍ରଜାପାଳକ ।
ଦରିଦ୍ର ବୋଲି ମୁଁ ମୋ' ଦେଶ ଦରିଦ୍ର ବୋଲାଇଛି,
ମାଟିକୁ କରିବି ସୁନା ମୁଁ ମନେ ଆଣ୍ଡ ବାନ୍ଧିଛି ।



## ତନ୍ତୀ ପୁଅ

ତନ୍ତୀ ଘର ପୁଅ ମୋ' ହାତେ କାଟଇ ସରୁ ସୁତା,
ନାନା ରଙ୍ଗ ଦେଇ ଧଡ଼ିରେ କରଇ ଫୁଲ ଗୁନ୍ଥା ।
କୁମ୍ଭପକା ଶାଢ଼ୀ ମାଣିଆବନ୍ଧା ମଠା ପାଟରେ
ଭରିଦିଏଁ ପେଡ଼ି ପେଟରା ପତନୀ ପୀତାମ୍ବରେ ।
ଏଡ଼େ ସୂକ୍ଷ୍ମ ସୂତା କାଟଇ ମୋ' ଦକ୍ଷ ଅଙ୍ଗୁଳିରେ,
ଷୋଳ ହାତ ଶାଢ଼ୀ ରହିବ ବାଉଁଶର ନଳୀରେ ।
ସୁରବଲ୍ଲୀ ଶାଢ଼ୀ ପିନ୍ଧିଣ ଦେବକନ୍ୟା ଉଲ୍ଲାସ,
ପଖାଳକରିଆ ପିନ୍ଧନ୍ତି ନାରୀଏ ବାରମାସ ।
ରଙ୍ଗ କସ୍ତା ଧୋତି ଗାମୁଛା ବିକେଁ ସଦା ହାଟରେ,
ମୋ' କଟା ସୂତାର ଚାଦର ଚିରେ ସିନା କଷ୍ଟରେ ।
ତଥାପି ହରାଇ ବସିଲି ମୋର ମାନ ମହତ,
ବିଦେଶୀ ପିନ୍ଧି ଯେ ସରବେ ସାରିଲେଣି ଇଜ୍ଜତ ।
ଏବେ ବିଦେଶରେ କରୁଚି ଲୁଗାକଳରେ କାମ,
ମୋ ନିଜ ତନ୍ତକୁ ଛାଡ଼ି ମୁଁ ପର ଘର ଗୋଲାମ ।
ପଠି ଆବୁ ଆବୁ ହେଲାଣି ଲୁଗା ବୁଦୁତା ବହି
ଦୁଇ ଗଣ୍ଡା ଟଙ୍କା ସକାଶେ ବାର ଗଞ୍ଜଣା ସହି
ଦିନ ଯାଏ ମୋର ଦୁଃଖରେ, କରିଥିଲି କି ପାପ,
ଦୂର ବିଦେଶରେ ମୂଲିଆ, ଦେଶରେ ଅଭିଶାପ ।
ରାଣୀମାନେ ପିନ୍ଧୁଥିଲେ ମୋ' ଝୀନ ବସନ ସୁଖେ,
ଆଜ ସେହି ତନ୍ତୀ ନଙ୍ଗଳା, ଆହାର ନାହିଁ ମୁଖେ ।
ଏଡ଼େ ହୀନସ୍ତାରେ ଜୀବନ ରହିଅଛି ଟି ଧରି,
କୋହ ଉଠୁଅଛି ଛାତିରେ ପୂର୍ବ କଥା ସୁମରି ।
ଧନଦରବରେ ମୋହର ପୂରିଥିଲା ଭଣ୍ଡାର
ଆଜି ମୋ' ପିଲାଏ ଭୋକରେ କରନ୍ତି ହାହାକାର ।
କି ଲାଭ ବିଦେଶ ଚାକିରୀ ପେଟ ପୂରିଲା ନାହିଁ,
ଧରିବି ଅରଟ ଏଥର ଦେଶକୁ ଫେରିଯାଇ ।
ଅରଟ ସୂତାରେ ମୁକତି ଦେଶର ସୁନିଶ୍ଚୟ,
ଖଦଡ଼ ପିନ୍ଧିଲେ ଦେଶରୁ ଯିବ ଗୋଲାମ ଭୟ ।

କୋଟି କୋଟି ଟଙ୍କା ବିଦେଶୀ ଲୁଗା ପଛେ ଉଡ଼ାଇ
ମରୁଚୁଁ ଅକାଳେ ଆମେ ତ ଅନ୍ନବସ୍ତ୍ର ନ ପାଇ।
ଧିକ କୁଳିଗିରି ଆଉ ମୁଁ ନ କରିବି କଦାପି,
ଦେଶ ମାଆ ନାଆଁ ରଖିବି ଘରେ ଅରଟ ଥାପି।
ସ୍ୱଦେଶୀରେ ମୋର ଗରବ, ସ୍ୱଦେଶୀ ଲୁଗା ବୁଣି
ଓଡ଼ିଶାର ଶିରୀ ଫେରାଇ ନିଶ୍ଚେ ଆଣିବି ପୁଣି।
ତନ୍ତୀଘର ପଥ ନୁହେ ମୁଁ କେଉଁ ଗୁଣରେ ଊଣା,
ଜାଣିଚି ଯେ ନିଜ ହାତରେ ସୁନ୍ଦର ଲୁଗା ବୁଣା।
ଲୁଗା ବୁଣି ଲୁଗା ବିକିବି, ଅର୍ଜିବି ଧନ ମାନ,
ଯିବି ଫେରି ଦେଶେ ଏଥର,
ନ ହେବ କା' ଗୋଲାମ।



## ସମସ୍ତେ

ଆଜି ଏଠି ଯେତେ ଓଡ଼ିଆପୁଅ ଅଛୁଁ ସମସ୍ତେ
କୁଳିଗିରି ପାଦେ ଜୁହାର କରୁଁ କୋଟି ନମସ୍ତେ।
କୁଳିଗିରି କରି ହୋଇଲୁଁ ପଶୁଠାରୁ ଅଧମ,
ଭୁଲିଗଲୁଁ ମାନ ମହତ, ତେଜିଦେଲୁଁ ସରମ।
ପଞ୍ଚାନନ ମେଳା, ତ୍ରିନାଥ ମେଳା, ପଶା ପାଲିରେ,
ମଦ ବେଶ୍ୟା ପଛେ ମାତିଲୁଁ ଏ ଅନ୍ଧ କମେଇରେ।
ଘରେ ପିଲା ଭାର୍ଯ୍ୟା ପୋଷିବାଠାରୁ ମକଦ୍ଦମାରେ
ବରଷେ ବରଷେ ଖରଚ କଲୁଁ ଟଙ୍କା ହଜାରେ।
ନାହିଁ ମେଳ ଆମ ମଧରେ ଭଲ କଥାଏ ଲାଗି
ଟିକେ ଟିକେ କଳିଗୋଳରେ ଛିଦ୍ର ଖୋଜିଲୁଁ ଜାଗି।
ପରସ୍ପରେ ତଣ୍ଟି କାଟିଲୁଁ ବିଦେଶେ ଲୋକହସା,
ଫୌଜଦାରୀ ପିଟାପିଟି ତ ହେଲାଣି ଦେହଘଷା।
ଅପମାନ କରି କହିଲେ କେହି ମାଇଲେ ମାଡ଼
ନ ଫୁଟଇ କଥା ତୁଣ୍ଡରେ ଏଡ଼େ ନିଲଜ ହାଡ଼।
ନକଲି କାଢ଼ନ୍ତି ବିଦେଶୀ, ଲାଞ୍ଛନା ନାନା ମତେ
ଚାରିଆଡୁ ପାଇ ପାଇ ଏ ଦେହ ପଥର ସତେ।
ନିଶାରେ ପଥର ଚଳିଜା, ନିଶା ଆମ ମଉଜ,
ନିଶା ଲାଗି ଆମେ ବସିଛୁଁ ହୋଇ ମୂର୍ଖ ଅବୁଝ।
ଫେରିଯିବୁଁ ନିଜ ଦେଶକୁ, ପାଇଲୁଣି ଚେତନା,
ନିଜ ନିଜ ପେଶା କରିବୁଁ, ନାହିଁ ତହିଁ ଭାବନା।
ଆମ ଦେଶ ଅତି ସୁନ୍ଦର, ଚିର ଶସ୍ୟଶ୍ୟାମଳା,
ଚାରୁ ବନ-କ୍ଷେତ୍ର-ଶୋଭିତ, ନଦୀ-ଗିରି-ମେଖଳା।
ଆମ ଦେଶେ ବାର ମାସରେ ଉପୁଜେ ନାନା ଫଳ,
ଆମ୍ବ, ଲେମ୍ବୁ, ଜାମୁ, କଦଳୀ, ନାରିକେଳ, ଶ୍ରୀଫଳ।
ପଣସ, ଡାଳିମ୍ବ, ପିଜୁଳି, ଆତ, ଆଖୁ, ମହୁଲ,
କ୍ଷେତେ ଧାନ, ମୁଗ, ଗହମ, ଚଣା, ହରଡ଼ ଚୂନ।
କପା, ଶଣ, ଝୋଟ, ଶିମୁଳି, ନଳିତା, ଫେଣୀ, ଛତା,
ନାନାଜାତି ପନିପରିବା, ପୋଇ, ପାଳଙ୍ଗ, ଖଡ଼ା।
ଖାଇ ପିନ୍ଧି ବଡ଼ ମଉଜେ ପାରିବୁଁ ଆମେ ରହି
ଦେହରେ ମିହନ୍ତ କରିଣ ଖରା କାକର ସହି।
ଏଠି ଏଡ଼େ ହୀନ କଦର୍ଯ୍ୟ ଖଟଣୀ ଦିନରାତି,
ନିଜ ଦେଶେ କିପାଁ ବସିବୁଁ ବ୍ୟର୍ଥ ଅଳସେ ମାତି ?
ଆଳସ୍ୟ ଆମକୁ ସାରିଲା, ଉଦ୍ୟମ ନାହିଁ ଟାଣ,
ଦାଆ ଖଣ୍ଡ ହେବ କଳଙ୍କୀ ଯଦି ନ ଦିଅ ଶାଣ।
ଆମ ଦେଶ ବନ ପର୍ବତେ ଖନିଜ ଦ୍ରବ୍ୟ ଭରା,
ଲୁହା, ତମ୍ବା, ହୀରା, କୋଇଲା, ସୁନା, ରୁପା ପସରା।
ବିଦେଶୀ ବଣିଆ ବେପାର କଲେ ସେ ସବୁ ନେଇ,
ଆମେ ଗଲୁଁ ପେଟ ବିକଳେ ବିଦେଶକୁ ପଳେଇ।
ମଣି ମୁକ୍ତା ଲୁଣ କଉଡ଼ି ମାଛ ପୂର୍ଣ୍ଣ ସାଗର-
ଘେରା ଆମ ଦେଶ, କି ଦ୍ରବ୍ୟେ ଅଭାବ ଟି ଆମର ?
ହୋଇ ଆମେ କବି, ପଣ୍ଡିତ, ଶିଳ୍ପୀ, କୃଷକ ପୁଅ
ଆମେ ପୁଣି ଦୀନ ଦରିଦ୍ର, ଆମ ଦୋଷ କି ନୁହ ?
ଆଉ ଆମେ ଦଣ୍ଡେ ବିଦେଶେ ନ ରହିବା ଏଥର,
ମଣିଷପଣରେ କରିବୁଁ ନିଜ ଦେଶରେ ଘର।
ଆମ ଘର ଆମେ ଛାଡ଼ି କି କରିଅଛୁଁ ଅନ୍ୟାୟ,
ଆମ ମା' ଭଉଣୀ ବୁଲନ୍ତି କରି କୁବ୍ୟବସାୟ।
ସ୍ୱଦେଶେ ନିଆଶ୍ରୀ ଅର୍ଦ୍ଧିତ ଖାଇବାକୁ ନ ପାଇ
ଶତ ଶତ ଆମ ଘରଣୀ ବିଦେଶକୁ ପଳାଇ
ଆମ ନାଁ ମାଟିରେ ମିଶାଇ କଳଙ୍କ ବୋଳି କୁଳେ
ଦେଶକୁ ଦେଲେଣି କି ଲଜ୍ଜା, ଆମେ କି ଭାବୁଁ ଭଲେ ?

ଧିକ ଧିକ ଆମ ଜନମ, ଆମ ଲାଗି ଦୁର୍ଗତି
ହେଲାଣି ଦେଶର ଅପାର, ରସାତଳକୁ ଗତି ।
ଏ ସବୁ ଭାବିଣ ମନରେ ଚାଲ ଭାଇ ଏଥର
ଦୃଢ଼ ପଣେ ସର୍ବେ ଉଠରେ ଫେରିବା ନିଜ ଘର ।
ନିଜ ଘରେ ନିଜ ଦେଶରେ ରହିବା ସନମାନେ,
ଦେଶର କରିବା ଉନ୍ନତି ଦେହ ଜୀବନ ଦାନେ ।

ତା' ମାଟିରେ ଆମ ଜନମ, ତା' ମାଟି ତୀର୍ଥ ସ୍ଥାନ,
ଆମ ଜନ୍ମଭୂମି ଓଡ଼ିଶା, ଆମେ ତାର ସନ୍ତାନ ।
ଓଡ଼ିଶା ଆମର ସ୍ୱଦେଶ, ଆମ ମାତା, ଜନନୀ,
ତା' ଗୌରବ ଜୟ ସଙ୍ଗୀତେ ପୂର୍ଣ୍ଣ ହେଉ ଅବନୀ
ବୋଲ ହରି ବୋଲ ସମସ୍ତେ ହରି ନାମକୁ ଧ୍ୟାୟି
ସ୍ୱଦେଶ ଫେରିବା ଏଥର ଭାଇ ସଙ୍ଗରେ ଭାଇ ।



## ଗୀତ

ଆଖିରୁ କିପାଁ ବହେ ବାରି,
ସୁମରି ସେ ବୀର ନାଉରୀଙ୍କ କଥା
ଦୁଃଖେ କି କଲିଜା ହୁଏ ଘାରି ?
ନୋହିଚି ମଳିନ କଳିଙ୍ଗ ସଉକ,
ବିଜୟ ନିଶାଣ ଛାଉଣୀର ଚିହ୍ନ,
ବାଲି, ବର୍ମ୍ମ, ଶ୍ୟାମେ, ମଳୟ ଅନାମେ,
ବ୍ରହ୍ମ ମୁଣ୍ଡେ ଦଣ୍ଡଛତ୍ରଧାରୀ ।
ମଣ୍ଡଳନଗରେ କୌଳାଙ୍ଗକାଙ୍ଗରେ
କରିନ ରାଜ୍ୟରେ ଜାଭା ଘରେ
ଆମରି ଓଡ଼ିଆ ଭାଇ ବସିଛନ୍ତି
ପୂରୁବ ଗୌରବ ଅଧିକାରୀ ।

ଟାଣୁଆ ଓଡ଼ିଆ, ଜିଣିଲୁ ଦରିଆ,
କଲୁ କାରିଗରୀ ପଥରରେ ଠିଆ,
ତୋର ଚକ୍ରବର୍ତ୍ତୀ ଗଜପତି ପାଦେ
ପୃଥିବୀ ପଣନ୍ତ ଥିଲା ପାରି ।
ମାଞ୍ଚୁରିଆ, ଚୀନ, ତିବ୍ବତ ନୃପତି
ଆଦରେ କଳିଙ୍ଗ ବୌଦ୍ଧ ଭିକ୍ଷୁ, ଯତି,
ରଚିଲେ ମନ୍ଦିର, ମଠ, ବିଦ୍ୟାପୀଠ
ଅଜ୍ଞାନ ଅଧମ ନରେ ତାରି ।
ହେବାକୁ ବଞ୍ଚିତ ବିଶାଳ ଅତୀତ,
ଜାଗରତି କିଞ୍ଚିତ ଦେବତାବାଞ୍ଛିତ,
ତୋ ବିପରି-ରାତି ପାହାନ୍ତି ହେଲାଣି,
ନୟନେ ନ ଚାହାଁ ତୁ ମୌନ ମାରି ।



# ଗଡ଼ଜାତ କୃଷକ

।। ୧ ।।

ପର ମୂଲ ଖଟି ଖଟି ଗୋବୁଲିଟି
ରାତିକୁ ଫେରେ,
ଅରଜନଯାକ ଭାତକୁ ନଅଣ
ଚାଉଳ ସେରେ।
ବୁଲି ବାର ବାଡ଼ି ବୁଢ଼ୀକାଳେ ଖୁଡ଼ୀ
ଖୋଜନ୍ତି ଶାଗ,
କାନିସିରି, କଣ୍ଟାମରିଷ, ଚାକୁଣ୍ଡା,
ନହଙ୍ଗା ଅଗ।
ଗୋବୁଲି ଅରଜେ ଚାଉଳ ସେରକ
ତୋରାଣି ପାଇଁ,
ଖୁଡ଼ୀ ଅରଜନ ଅନାବନାତକ
ଡୁଣ ହୁଅଇ।
ପୁଅଟିକି ପାଇଁ ତେଲ ହଳଦୀ ବା
କିଏ ପଚାରେ,
ପଗଡ଼େ ଲୁଣ ତ ନ ମିଳଇ ତାଙ୍କୁ
ତିନି ଦିନରେ।
କରମ ଆଦରି ନିଉଛୁଣା ପ୍ରାଣେ
ସେ ଚାରି ପ୍ରାଣୀ
ଦିନକୁ ଦିନ ତ କଟେଇ ଦିଅନ୍ତି
ପ୍ରମାଦ ଗଣି।
କେବେ କେବେ ଖୁଡ଼ୀ କରମକୁ ନିନ୍ଦି
ମନକୁ ମନ
କହନ୍ତି, 'ମୋ' ଯୋଗୁଁ ଦୁଃଖ ପାଇଲା ମୋ'
ରଙ୍କରତନ।
ପର ଝିଅଟୋଟି ଆଣିନି, ତା' ଦୁଃଖ
ମୋ' ଦୁଃଖୁଁ ବଳି,
କେତେ ଦିନ ଛିଣ୍ଡା ଦରବା ପିନ୍ଧିବ
ମୋ' ଧନମାଳି।
ନିଉଛୁଣା ଚଣ୍ଡାଳଜନମ କିପାଇଁ
ଦିଏ ବିଧାତା,
ଜମି ଖଣ୍ଡି ଥିଲା ସେ ତ ପର ନେଲା,
ହେଲି ହିନସ୍ତା।
ନ ଦେଖନ୍ତି କିଛି ଯାଆନ୍ତା ବାହାରି
ପୋଡ଼ା ପରାଣ,
କିସ ପୁଣି ଦେଖା ନ ଯାଏ ବସ୍ଥିଲେ,
ଦଇବ ଟାଣ।'
ଖୁଡ଼ୀ ଦୁଃଖ କେବେ କେବେ ଯେବେ ଶୁଣେ
ବୋହୂଟି କାନେ,
କହେ 'ମାଆ ତୁମେ କିପାଁ ଦୁଃଖ କର,
ଯା' ଥିବ କର୍ମେ।'
ଆଖି ଲୁହ ତାର ଆଖିରେ ମିଶଇ
ନ ଜାଣେ କେହି,
ହସ ହସ ମୁହେଁ ପାଇଟିପତର
ସବୁ କରଇ।
ସାଇପଡ଼ିଶାଏ ଯେଝା ଦୁଃଖେ ଯିଏ
ହୁଅନ୍ତି ଧନ୍ଦି,
ସାଉକାର ଋଣ ଶୁଝିବାକୁ ଯା'ନ୍ତି
କନ୍ଦିକି ଛନ୍ଦି।
ରାଜା କର ଦାଉ ବେଠି କାଠ-ଫାଡ
ଫଟାଏ ବୁକୁ,
ପଚାରେ କେ ସାଙ୍ଗସରିଶା ପରାଣ
ଯା ଦୁକୁ ଦୁକୁ।

।। ୨ ।।

ରାଜା ମହାଜନ ଦାଉ ଛଡ଼ା ଆନ
କେଉଁ କଥାରେ-
ନ ଥିଲା ଖାତର କେବେ ଗୋବୁଳିର
ରାଜ୍ୟଯାକରେ।
ଜମିବାଡ଼ି ନେଲା ମହାଜନ, ଗଲା
ନ ଥିଲା ଚିନ୍ତା,
ହଳକ ଶୁଖିଲା ପିଅନ ପଢ଼ିଲା
ବାକି ତାଲିକା।

ରାଜ-ଦରବାରୁ ଆସିଛି କୋରଖ,
ଡିହ ଖଞ୍ଜଣା
ବରଷକ ବାକି ସୁଧ ଶ୍ରାଦ୍ଧ ମିଶି
ଦି'ଟଙ୍କା ନ'ଣା ।
କୋରଖ ଫିସ ତ ଟଙ୍କାଟିଏ ମୋଟେ,
ଖୋରାକି କିଛି–
ପିଅନ ତ ନେବ ରଜାଙ୍କ ଦୂତ ସେ
ବାଟ ଚାଲିଛି ।
କୁକୁରଙ୍କ ପାଇଁ ସର୍ବେ ତିନିଖଣ୍ଡି
ମଟର ଯା'ର
ସତୁରି ହଜାରେ କିଣା ଅଛି ସେ ଯେ
ତାଙ୍କ ଚାକର ।
ହାତଗେଞ୍ଜା କିଛି ନେବେ ଖାଞ୍ଜଣାରୁ,
ଏକାଣ୍ଡ ବାବୁ,
ତଉଜି ନବିଶ ବାକି ନ ପଡ଼ିବେ
ସବୁରେ ସବୁ ।
ଗୋଳିଆ ନବିଶ ବାଟ ଓଗାଳିବେ
ଚାଲାଣ ନେଖି,
ଛଅ ପଇସାକୁ ଟଙ୍କାକର କଥା
କହିବେ ଯୋଖି ।
× × × × × × ×
ବଳବନ୍ତ ସଙ୍ଗେ ବିରୋଧ ବାନ୍ଧିବ
ଟେକିବ ମଥା,
ଗୋକୁଳି ନାଏକ ଚଷା ବାପୁଡ଼ାର
ଶୁଣେ କେ କଥା ?
କେ ଶୁଣିବ ତାର ମରମ ବେଦନା,
ଅବୁଝା ରଜା,
ଗୁହାରି କରିଲେ ଦୋହରି କଷିବ,
କରିବ ମଜା ।
କୋରଖ ହେଲେ ବି ମହଲତ ମାସେ
ଥିଲା ପୂରୁବେ,
ନୂଆ ରାଜୁତିରେ ବଦଳା ସେ ଧାରା
ହୋଇଛି ଏବେ ।
ଅବାଯବବରଦସ୍ତିରେ ପିଅନ
ପଶିଲା ଘରେ,
ବୋହୂ ବିରାରୀଟି ପଳାଇଲା ଡରି
ବାଡ଼ି ପଚାରେ ।
ଚାରି ଜଣ ଖୋଜି ବାସନ ଦି'ଖଣ୍ଡି
ସର୍ବେ ମିଳିଲା,
କୁନି ପୁଅ ଝିଅ। ଗିନାଟିଏ ଥିଲା
ତା' ଘେନିଗଲା ।
ବିକି ବିକି ସବୁ ସାରିଥିଲେ ଖୁଡ଼ୀ,
ଢାଳ ଗୋଟିଏ-
ସତର ଜଣା ତା' କଙ୍କାଳ ମାତର
ବେଲା ଖଣ୍ଡିଏ,
ତାଙ୍କରି ପହିଲିପାଳିର ଚିଜ ସେ
ଥିଲା ସେତିକି,
ସହି ଦୁଃଖ ଦାଉ ସାଇତିଥିଲେ କି
ଯମ ପାଇଁକି ?
ଟାଟି କବାଟରୁ ବିଖଣ୍ଡି ମିଳିଲା,
ଭାଙ୍ଗି ପିଅନ
ଦାଣ୍ଡେ ଅଣାଇଲା ଢିଙ୍କି ଶିଳ ସହ
ହୋଇ ଦାରୁଣ ।
ପର ଗାଆଁ ଲୋକେ ନିଲାମେ ଧଇଲେ
ଟଙ୍କାଏ ଦେଇ,
ନାଅ ଚାରିଅଣା ସେ ପିଅନ ବାବୁ
କୋପେ ଖସାଇ
ବାଟେ ବାଟେ ଗଲେ, ଗୋକୁଳି ନାଏକ
ମାରେ ନିଃଶ୍ୱାସ,
ନାଅ ଶୁଝିବାକୁ ଦି'ଦିନ ଉପାସୀ
ହେବେ ବଉଁଶ ।

।। ୩ ।।

ଶେଯ କତରାରେ ଦିନା ଚାରି ହେବ
ଗୋଙ୍ଗାଇ ଖୁଡ଼ୀ
ପଡ଼ି ପଡ଼ି ତାଙ୍କ ସାହା ଉଡ଼ିଲାଣି,
ଗଲେଣି ସଡ଼ି ।
ଜର ବାଉଳାରେ କେତେବେଳେ ଘଣ
କହନ୍ତି, କଥା,
ଗୋକୁଳି ଭାରିଯା ସେବା କରିଥାଏ
ନୂଆଁଇ ମଥା ।

ଶୁଖି ଶୁଖି ତାର ପୁଅଟି ହେଲାଣି
କେଙ୍କଟ ପରି,
ଝାଡ଼ା ପୋଛି ପୋଛି ନ କରିବ ସେ ଯେ
ଗଲାଣି ସରି ।
ଖାଇବା ବିହୁନେ କି ନୁହେ ମଣିଷ
ମଥରୁଗିଁରେ,
ସବୁ ରୋଗ ଦୁଃଖ ଓଷଧ ମୌଷଧି
ଖାଇବା ତଳେ ।
ଧନବନ୍ତ ଜନେ ବୁଝୁଥାନ୍ତେ ଯେବେ
ଏଇ କଥାଟି,
ପୋକ ପ୍ରାୟେ କିପାଁ ମଣିଷ ମରନ୍ତା
ଭୁଗିଁ ସାଉଁଟି ?
ଘର କଥା ଭାବି ଭାବି ଗୋକୁଳିଟି
ହେଲା ଆକୁଳ,
କି କରିବ ବୋଲି ନ ଦିଶିଲା ବୁଦ୍ଧି
ଥଳ କି କୂଳ ।
ଅନ୍ନ ବିହୀନରେ ତା' ପିଲାକୁଟୁମ୍ବ
ମରିବେ ଭାବି
ଅଜାଣତେ ମୁଦା ଆଖିକୋଣୁ ଲୁହ
ଯାଉଛି ସ୍ରବି ।
ଏମନ୍ତ କାଳରେ ଫାଣ୍ଡି ପୋଲିଶର
ଧମକ ଶୁଣି
ଆଖି ଫିଟାଇଲା ଚାହିଁଲା ଗୋକୁଳି
କୃତାନ୍ତ ମଣି ।
ବାଜିଗଲା ଧକା ପରେ ଦଶ ଧକା,
ଯାଏ ସେ ଗଡ଼ି,
ଶାଳା ବାହାଁଚୋଦ ଶବଦେ ସେ ଭୁଇଁ
ଗଲା ଉଛୁଳି ।
ଜମାଦାର ବାବୁ ବେଠି କାଠ ପାଇଁ
ଥିଲେ ଡକାଇ,
ପ୍ରାଭବ ପାଇଲା ସକାଳୁ ନ ଗଲା
ସେ ଯେ କିପାଇଁ ?
ନ ଥାଉ ତା ଜମି ରଜା ରାଇଜେ ତ
କରିଛି ଘର,
ଏତେ ବଡ଼ କିଏ ହୁକୁମ ଏଡ଼ିବ
ଜମାଦାରର !
'ପିଅନ କୋରଖ କରୁଥିଲା ଘର'
କହିବ ବୋଲି
ଯେତେ ଉହୁଁ କିଲା କହି ନପାରିଲା
ଗୋକୁଳି ଖୋଲି ।
ତୁଣ୍ଡ ନ ଫିଟିଲା, କେହି ନ ଜାଣିଲା
ଗୁହାରି ତାର,
ଛୋଟ ଲୋକ ପାଶେ ଜବାବ ଦେବାଟା
ଯେ ଅବେଭାର ।
ତିନିକୋଶ ଦୂର ଫାଣ୍ଡି ପିଣ୍ଡାତଳେ
ଖାଇଲା ମାଡ଼,
ମାଡ଼ ଖାଇ ଖାଇ ହେଲା ଅଶକତ,
ଭାଙ୍ଗିଲା ହାଡ଼ ।
ଶ୍ରୀକାନେ ଶୁଣିଲେ ଭାରିଯାଟି ତାର
ଯହୁଁ ସୁନ୍ଦର
ହଉ ହଉ କହି ନିଶ ସଳଖିଲେ
ଶ୍ରୀଜମାଦାର ।
ଘରେ କିଛି ନାହିଁ ଜାଣି ରାଇଟର
ପୋଲିଶବାଲା
ଶ୍ରୀପାଦେ ଧକାଏ ଦେଇ ଦେଲେ ଟଡ଼ି
ଭାଗୋ ରେ ଶାଳା ।

।। ୪ ।।

ପ୍ରାଣ ଧରି ଯେବେ ଚାଲଇ ଗୋକୁଳି
ଅନ୍ଧାରେ ବାଟ
ଡହଳ ବିକଳେ ପଡ଼ିଯାଏ ମନେ
ପୋଲିଶ ଛାଟ ।
ପେଟ ପୋଡ଼ି ସଙ୍ଗେ ଯମ ଦଣ୍ଡ ପୋଡ଼ି
ମିଶିଣ ତାର
ଜ୍ଞାନ ଯାଏ ହଜି, ଥାପେ ଚାଲଇ ସେ
ହୋଇ ସତ୍ୱର ।
ଦେହ ମୁଣ୍ଡ ପାଡ଼ା ଖାଇ ମାଡ଼
ବନ୍ଧୁକ ଡ଼ିହ,

ଭାତ ଭୁଜା ଅବା ଯମପୁରେ କାହୁଁ
ମିଳିବ କହ ।
ଏତେ କଷ୍ଟେ ସେ ଯେ ଫେରିବ ଘରକୁ
ମନେ ମନାସି
ବାହୁନିଲା ଟିକେ ମାଆ ପଟ୍ଟେଶ୍ୱରୀଙ୍କ
ପାଖୁଣେ ବସି ।
'ମାଆ ଭଗବତୀ ପିଲାପିଲି ମୋର
ଥିବେ ଭଲରେ,
ଏ ଦୟା କରିବୁ ପତିତ-ପାବନୀ
ମାଗେଁ ପୟରେ ।'
ପୁଣି ସେ କହିଲା, 'କହିଲୁ ମାଆ ଲୋ
କି ଦୋଷ ମୋର,
କିପାଇଁ ଭୋଗୁଛି ଏତେ ଦୁରଦଶା
କଷଣ ଘୋର ?
ଯେଣିକି ଅନାଏଁ ତେଣେ ଦେଖେଁ ଖାଲି
ରକତ ଆଖି,
ମାରି ଖାଇଯିବେ ଟାକିଛନ୍ତି ଅବା
କାଳ କାମାକ୍ଷୀ ।
କହିଲୁ କହିଲୁ ମାଆ ଲୋ, କହିଲୁ
ଜନମ ଦେଇ
ଏତେ ଦୁଃଖ ଦାଉ କିପାଁ ଖଞିଥାଉ
ଆମରି ପାଇଁ ?
ସହି ସହି ମାଆ ହେଲିଣି ପଥର,
ନେଏ ତୋ କୋଳେ,
ପିଲା କୁଟୁମ୍ବ ମୋ ଜୀଉଁ ଜୀଉଁ ମଲେ,
ଜୀଇଁ କି ଫଳେ ?
ତୋ ଛଡ଼ା ମା ମୋର ନାହିଁ କେ ଭରସା
କହିବି ଦୁଃଖ',
କାନ୍ଦିଲା ଗୋକୁଳି ମାଆ ମାଅ ବୋଲି
ହୋଇ ନିରେଖ ।
କେହି ନ ଶୁଣିଲା ତା ବିକଳ ଡାକ,
ବଢ଼ିଲା ରାତି,
ଅନ୍ଧାର ଶୀତରେ ନାଏକ ପୁଅର
ଥରିଲା ଛାତି ।
କି ଭାବିଲା ଚିତ୍ତେ 'ମାଆ' ଡାକି ଉଚ୍ଚେ
ହେଲା ବାହାର,
ମନେ ପଡ଼ିଗଲେ ଖୁଡ଼ୀ, ସ୍ତିରୀ, ପୁଅ,
ଘର ତାହାର,
ଗୋକୁଳି ନାଏକ ଗୋକୁଳି ନାଏକ
ସବୁ ତୁ ସହୁ,
ମିଛରେ ଡାକୁ ତୁ ଭଣ୍ଡ ଠାକୁରକୁ
ହେ ମହାପ୍ରଭୁ ?
ପଥର ପଥର ଥିବ ଚିରକାଳ,
ବୋଳି ସିନ୍ଦୂର
ଡାକିଲେ ତୋ ଦୁଃଖ ଶୁଣିବ କି ସେ ରେ,
ହେଲୁ ବାତୁଳ ?
ଏ ଦିଆଁ ଦେବତା ଧରମ ତ ସବୁ
ତୁମ ବଇରୀ,
ଗରିବ ଦଳିବା ପାଇଁକି ରେ ବାବୁ,
ଜନ୍ମ ତାଙ୍କରି ।

।। ୫ ।।

ଗୋକୁଳି ନାଏକ ପହଞ୍ଚିଲା ଘର
ନିଶୁନ ରାତି,
କୁଆ ସିନା ସତେ କାଆ କରିନାହିଁ
କିନ୍ତୁ ପାହାନ୍ତି ।
ଜନମମାଟିରେ ପାଦ ନ ପଡୁଣୁ
ଉଠିଲା କୋହ,
ଗୋକୁଳି ବିକଳେ ଟଳି ଟଳି ଯାଏ,
ବୋହିଲା ଲୁହ ।
ରୋଗଶେଯେ ପଡ଼ି କାନ୍ଦୁଛନ୍ତି ଖୁଡ଼ୀ–
ଆହା ମୋ ଧନ,
ବି'ଦିନ ପାଇଁକି କିପାଁ ଦେଖାଇଲୁ
ଚନ୍ଦ୍ରବଦନ ।
ମରମ ଫଟାଇ ବୋହୂଟି କାନ୍ଦଇ
ନିନ୍ଦି କରମେ,
ମଲା ପୁଅଟିକୁ ଧରି ମୁଖ ଚୁମି
ଲୋଟଇ ଭୂମେ ।
ଶୁଖା ପଦ୍ମଫୁଲ ପ୍ରାୟେ ତା ମୁହଁରୁ
ସେ ଲୁହଧାର
ବହିଥିଲା ଆଉ ଦେଖି ନ ଥିବେ ତା'
ଦିଅଁ ସମୀର ।
ଏସବୁ ଦେଖିଣ ଡାଟକା ଗୋକୁଳି
ଚାହେଁ ନିରାଟି,

ଭାବିଲା, ପୂରୁବ ଜନମେ କା' ତଣ୍ଡି
ଥିଲି କି କାଟି;
ତେଣୁ କି ଦଇବ ଶୁଝେ ଏ ଜନମେ
ଦେଇ ଲକ୍ଷଣ–
ମନେ ପାଞ୍ଚି ଗଲା ମଶାଣି ଭୂଇଁକୁ
ନ ହେଉଁ ଦିନ।
ବହୁ କଷ୍ଟେ ରାତି ପାହିଲା, ଉଇଁଲେ
ଦେବ ତପନ,
ଫେରିଲା ଗୋକୁଳି ପୁଅ ଦାହ ସାରି
ମାରି ତା ମନ।
ଶୂନ୍ୟ ଘର ତାକୁ ମହାଶୂନ୍ୟ ହେଲା,
ଜଳିଲା ହୃଦ,
ପୁରୋହିତ ଟାକି ରହିଲେ ଅର୍ଜିବେ
ହୋଇଲେ ଶୁଦ୍ଧ।
ଘରେ ନାହିଁ ଦାନା ଗଣ୍ଡେ ଛିଣ୍ଡା ଜନା
ନ ବୁଝେ କେହି,
ମାଡ଼ ଖାଇ ବୁକୁ ବଥାଏ କେ ଦୁଃଖ
ଜାଣିଲା ନାହିଁ।
କେ ଖୋଜଇ ଜାତି କେ ଖୋଜଇ ଜ୍ଞାତି
କେ ପୁରୋହିତ,
ଧୋବା ଭଣ୍ଡାରୀ ତ ପାଇବେ ପାଉଣା
ସେ 'ସେବେଇତ'।
କେଉଁଠୁ ଆଣିବ କି ଅବା କରିବ
ଭାବେ ଗୋକୁଳି,
ଏଣେ ଖୁଡ଼ୀ ଦେହ ପଥ୍ୟ ଅଭାବରୁ
ଯାଉଚି ବଳି।
ମାଗି ଯାଚି ସିନା ଦିନଟାଏ ଯିବ,
ସେ କି ଚଳିବା ?
ଖୁଣ୍ଡା ଦେଉଥିବେ କାଳକ ଅଛନ୍ତି
କେତେ ମଘବା।
ଭାବି ଭାବି ରକ୍ତ ଶୁଖିଲା ଗୋକୁଳି
ଗରିବ ଦେହୁ,
ପ୍ରାଣ ରଖିଥିଲା କେବଳ ସେ ତାର
ସ୍ତିରୀ ସେନେହୁ।

।। ୬ ।।

ଏଣେ ଦିନା ଚାରି ଯାଇଚି କି ନାହିଁ
ରାଜ ସର୍କାର
ଦିଆନି ପାଟକେ ଧରି ପେନିଗଲେ
ଗୋକୁଳି ଛାର।
ବାକିଆ ଖଜଣା ଅସୁଲ ହେବାକୁ
ନ ଥିଲେ ବାଟ
ରାଜା ରାଇଜର ହାକିମ ହୁକୁମୀ
ଲଗାନ୍ତି ନାଟ।
ରୋଗଶେଯେ ଚେତା ପାଇ ଯେବେ ଖୁଡ଼ୀ
ଶୁଣିଲେ ତାହା,
କାନ୍ଦିଲେ ବିକଳେ କହିବେ କାହାକୁ
ନାହିଁ କେ ସାହା।
ଛାଡ଼ିଗଲା ରୋଗ ଦଣ୍ଡକେ ବୁଢ଼ୀର,
ବୋହୂକୁ ଡାକି
କହିଲେ କଅଁଳେ ଧନମାଳୀ ବୋଲି
କୋଡ଼ରେ ଯାକି,
"ଘରଖଣ୍ଡିକରେ ଥିବୁ ତୁ ମାଆ ଲୋ
ଆସିବି ଫେରି,
ପୁଅକୁ ଆଣିବି ରାଜ-ଦରବାରୁ
ଫେରାଇକରି।
ମୁହିଁ ଥାଉଁ ଥାଉଁ ପୁଅକୁ ମୋର କେ
ଦେବ କିହଳ,
ସମ୍ଭାଳିଥା' ଘର, ଦି'ଦିନ ପାଇଁ ତ
ଅଛି ଚାଉଳ।"
ବାଲୁତ ବୋହୂଟି କି କହିବ ଅବା
ହେଲା ସେ ତୂନୀ,
ହାତୁ ତା' ପିଉଳ ଖଡୁ ଯାହା ଥିଲା
କାଢ଼ି ତକ୍ଷଣି
କହିଲା, "ମାଆ ହେ କେମନ୍ତେ ଯିବାକୁ
କହିବି କହ,
ନ ଯିବ ବୋଲି ବା କହିବି କେମନ୍ତ,
ସବୁ ଦୁଃସହ।
ଏଇ ଖଡୁତକ ବିକିଦେଇ ଆଣ
କିଛି ପଇସା,
ବାଟଖର୍ଚ୍ଚ କରି ଯିବ ଗୋଟେ ଗୋଟେ
ହରି ଭରସା।"
ଖୁଡ଼ୀଙ୍କ ହାତ ତ ନ ଗଲା ତା କେବେ
ବିକ୍ରିବେ ବୋଲି,

ନ ମାନିଲା ବୋହୂ ବିକିଆଣି ଦେଲା
ଦଣ୍ଡକେ ବୁଲି।
କାନ୍ଦି କାନ୍ଦି ବୁଢ଼ୀ ଦୁଇ ଅଣା ଦେଇ
ନେଲେ ଚାରଣା,
କହିଲେ ବୋହୂକୁ ଜଗି ଚଳୁଥିବୁ
ଦୁଃଖୀ ଦୁନଣା।
ସାଥିରେ ଯିବାକୁ ଯେତେମତେ ବୋହୂ
କଲାଟି ଅଳି,
ମରମ ବଚନ ବୁଝାଇ କହିଣ
ଗଲେଟି ଚଳି।
ପତିତପାବନ ଜଗନ୍ନାଥ ଚିନ୍ତି
ଚାଲିଲେ ବାଟ,
ଜରଫର କେଣେ ଦଣ୍ଡକେ ହଟିଲା,
ଦଉଡ଼ ଘଟ।
ପାଚ ଦଉଡ଼ିରେ ବାନ୍ଧିଲେ ତାରେଣି
ମାଆ ମଙ୍ଗଳା,
ଦିନକ ବାଟକୁ ଦି'ଦିନେ ଭେଟିଲେ
ହୋଇ ନିର୍ବଳା।
ଗାଆଁ ସାଇ ଭାଇ ସମସ୍ତେ ଦୁଃଖିତ
ଶୁଣିଲେ ଯେବେ,
କାହା କରମରେ କି ହେବ ବୋଲିଣ
ଭାବିଲେ ତେବେ।

।।୭।।

ଦି'ଦିନକୁ କହି ଗଲା ଚାରି ଦିନ,
ହେଲା ଛ'ଦିନ,
ବୋହୂ ବିଚାରୀର ମନ ଛନ ଛନ
ହୋଇଲା ପୁଣ।
ଶାଶୁ ଗଲା ଦିନୁ ଦାଣ୍ଡକୁ ନ ଆସେ,
କୁଡ଼ିଆ କଣେ
ବସି ଭାବୁଥାଏ ମାଆ ମଙ୍ଗଳାଙ୍କୁ
କାନ୍ଦି ମଉନେ।
ଖିଆ ପିଆ ତାର ନ ଦେଖନ୍ତି କେହି,
ଧୂଆଁ ତା' ଘରୁ
ସେ ଦିନୁ ଛଅରେ ନ ଥିବ ବାହାରି
ମୋଟେ ଜମାରୁ।
କିଏ କେଣେ ଗଲେ ଏକା ଛାଡ଼ି ତାକୁ
ହେଲା ବିକଳ,
ବିଧାତା ଘଟଣ ପଥରକୁ ମୁଣ୍ଡ
ଟାଣ କାହାର!
ଭଏ ମାଆ କିଆଁ ଜମାଦାରବାବୁ
ବୁଲନ୍ତି ଗାଆଁ,
ବୁଲି ବୁଲି ଯାଇ ଗୋକୁଳିଆ ଘରେ
ହୋଇଲେ ଠିଆ।
ସମସ୍ତେ ଛନକା, ସବୁ ମୁହଁ ଫିକା
ଦେଖି ପୋଲିଶ,
ଏଡ଼େ ଟାଣ କା'ର ପଚାରି ବୁଝିବ
କିବା ସନ୍ଦେଶ?
ଗୋକୁଳି ଭାରିଯା ଦେଖି ଜମାଦାର
ପଶିଲା ଘରେ,
କିନ୍ତୁ ଜମାଦାର ଆଡ଼େ ଅନାଇଲେ
ଚାଷୁଣୀଟିରେ।
ହସି ହସି ତାକୁ କହିଲେ, ''କିଇ ଗୋ
'ବର' ତ ଗଲେ–
ଛଅ ମାସ ପରେ ଲେଉଟି ଆସିବେ
ପରାଣ ଥିଲେ।
ବୃଥା କଷ୍ଟ କିପାଁ ପାଇବ ଏଇଠି,
ଆସ ସୁନ୍ଦରୀ,
ବଡ଼ ମଉଜରେ ରଖିବି ସାଇତି
ନେବି ମୁଁ ବରି।''
ଶୁଣିଲା ଗୋକୁଳି ଭାରିଯା ଏକଥା
ଯେବେ ତକ୍ଷଣି
ରାଗ ଗରଗର ହେଲା ତା' ବୁକୁ ଲୋ
ସେ କି 'ନାଗୁଣୀ'।
ଟାଣି ସେ କହିଲା– ''କିଏ ସେ ରେ ତୁଇ
ହେବ ଅଜୀର୍ଣ୍ଣ,
ଚଷା ବୋଲି ଆମେ ଏତେ ତୋ ସାହସ
କହୁ ଅଧର୍ମ?
ମାଆ ଭଉଣୀ କି ନାହାନ୍ତି ତୋହର
କହୁ ଏ କଥା,
ଭଲେ ଭଲେ ଯାଅ, ନୋହିଲେ ଅର୍ଦ୍ଧିତ
ଭାଙ୍ଗିବି ମଥା।''
ଜମାଦାରେ ଶୁଣି ହୋଇଲେ ତଟସ୍ଥ–
ଚାକିରୀ ଦିନୁ,

ଏମନ୍ତ ଜବାବ କରି ନ ଥିଲା କେ
ଏ ଶାଳୀ ବିନୁ ।
କହିଲେ, "ଦେଖ ଏ ବଜାତି ଚାଷୁଣୀ
କେଡ଼େ ସାହସୀ,
ମୋ ସଙ୍ଗେ ଯେବେ ତୁ ବିରୋଧ ବାନ୍ଧିଲୁ
ଦେଉଚି କଷି ।"
ଦିନ ଦିପହରେ ଘରେ ତାର ପଶି
ପୋଲିଶ ସଙ୍ଗେ
କଲେ ଯେ ଅନୀତି ଦେଖି ନ ଥିବେ ତା
ତପନ କେବେ !
କିନ୍ତୁ ଚାଷୁଣୀର ସତୀତ୍ୱ କେବେ ସେ
ନେଇ ନ ପାରି
'ହଉ ଚଣ୍ଡାଳୁଣୀ' କହି ଗଲେ ଚାଲି
ଦାଣ୍ଡେ ବାହାରି ।
ପ୍ରାଣଡ଼ରେ ଯେଝା ଉହାଡ଼େ ଲୁଚିଲେ
ସାଇପଡ଼ିଶା,
ଛ' ଦିନ ଉପାସୀ ନାରୀର ନ ହେଲେ
କେହି ଭରସା ।
ଦିଅଁ ଦେବତାଏ କେହି ନ ଶୁଣିଲେ
ଶୁଣିବା କଥା,
ଆଗତ ଆପଦ ସୁମରି ବୋହୂଟି
ପୋତିଲା ମଥା ।
ସତୀ ସୁକୁମାରୀ ଚଷାର କୁମାରୀ
ସ୍ୱାମୀ ସୁମରି
ମନେ ମନେ ଶାଶୁ ଚରଣେ ପ୍ରଣମି
ଦେଲା ଦଉଡ଼ି ।
ରାତି ନ ହେଉଣୁ ହାରିଲା ଜୀବନ
ହୋଇ ଗୋପନ,
ଗଛ ଫାଙ୍କେ ଖାଲି ସାକ୍ଷୀ ରହିଥିଲା
ରବି-କିରଣ ।

॥ ୮ ॥

ହାତକଡ଼ା ଦେଇ ଗୋକୁଳିକୁ ନେଇ
ରାଜାଙ୍କ ପାଶ
ହାଜର କରାଇ ଫାଣ୍ଡି ପୋଲିଶିଏ
ନେଲେ ସାବାସ ।
କାଠର ପିତୁଳା ପରାଏ ଗୋକୁଳି
କ୍ଷଣେକ ରହି
ଚାରି ଚଉହଦି କୋଠାବାଡ଼ିସବୁ
ନିରାଟି ଚାହିଁ
କହିଲା ଆକୁଳେ, "ହଜୁର ତ ମୋର
ଯା' ଥିଲା ଦେଲି,
ଉପାସ ଭୋକେ ତ ମରିଯାଉଅଛୁଁ,
ସବୁ ସାରିଲି ।
ରଜା ହୋଇ ଯଦି ଆମ ଦୁଃଖ କେବେ
ମଣିମା ତୁମେ
ଶୁଣୁଥାନ୍ତ ତେବେ ଏତେ କଷ୍ଟ କିପାଁ
ଭୋଗନ୍ତୁ ଆମେ ?"
ଛାମୁଙ୍କ ଶ୍ରୀମୁଖୁଁ ଫୁଟିଲା ବଚନ,
"ଚୁପ୍ ବେ' ଯାଅ,
ଦିଆନ ବାବୁଙ୍କ କଚେରୀରେ ଯାଇ
ହାଜିରା ଦିଅ ।"
ଧର୍ମ ଅବତାର ଦିଆନ କହିଲେ,
"ହଇବେ ଶାଳା,
ଖଜଣା ନ ଦେଇ ରଜା ରାଇଜରେ
ଅଛି କେ ଭଲା ?"
ଖୁଡ଼ୀ ବୁଢ଼ୀ ଯାଇ ଚରଣେ ଲୋଟିଲା,
କହିଲା ଗିର,
"ହଜୁର ଏଣିକି ଯାହା ତମ ମନ
ତାହାହିଁ କର ।"
ଉରସି କହିଲା, "ଗୋକୁଳି ରେ ମୋର
ଡରନା କେବେ,
ଦଶଟଙ୍କା ପାଇଁ ଏଇ ତ ପଚାଶେ
ଡ଼ିଗିରି ସେବେ
ଧନୀ ମହାଜନେ ଦେଇଥିଲେ ଖାଇ
ନାଅ ସତୁରି,
ଜମିବାଡ଼ି ଗଲା, ହେଲେଁ ନାରଖାର
କରି ବିକିରୀ ।
ଭଉଣୀକୁ ତୋର ହୋଇଛନ୍ତି ବାହା
ଡାକନ୍ତି ଶାଳା,
ଅଳପ ନୁହନ୍ତି ଆହା ଜଣେ ଯାଙ୍କ
ବିଚାର ଭଲା ।"
ମରମେ ବାଜିଲା କୁନ୍ତ ପରି ସିନା
ହାକିମଙ୍କର,

ଶ୍ରୀଛାମୁ ଛାମୁଆଁ ବାଇଆଣୀ ବୋଲି
ଦେଲେ ପାହାର ।
ଯା' ବିବେକ ଥଳି ଉଇ ହୁଙ୍କା ପ୍ରାୟେ
ଫିଟିଚି ଜାଲି
ସେ କାହୁଁ ଜାଣିବ ଧରମ ଅଧର୍ମ
ଯିବ ତ ଗଳି ।
ଡ଼ିହଖଣ୍ଡି ହେଲା ସରକାରୀ, ନେଲା
ହରିଆ ସାଉ,
ବଡ଼ କୋଟଟ ସେ କଷି କଷି କଲା
ପନ୍ଦର ଭାଉ ।
ଛ'ମାସ ପାଇଲା ଗୋକୁଳି ଜିହଳ,
ଶୁଣିଲା ବୁଢ଼ୀ,
କାନ୍ଦି କାନ୍ଦି ଧର୍ମ ଅବତାର ଆଗେ
ଗଲା ସେ ଗଡ଼ି ।
କେହି ନ ଶୁଣିଲେ ବିଧବା ଗୁହାରି,
ଭାଙ୍ଗି କଚେରୀ
ଯେଝା ଘରେ ଗଲେ, ବୁଢ଼ୀଟି ରହିଲା
ଭୁଇଁରେ ପଡ଼ି ।

।। ୯ ।।

କି ମନେ ଭାବିଲା ଘରକୁ ଫେରିଲା
ଦେଖିବ ବୋହୂ,
କିନ୍ତୁ ବୋହୂ ବେକେ ଦଉଡ଼ାର ହାର
ଦେଖିଲା ଯହୁଁ
ହସି ହସି ବୁଢ଼ୀ ଆଦରେ ଚୁମିଲା
ତା' ମଡ଼ା ମୁଖ,
ଶୁଖିଲା ଆସିବେ କାଲି ଜମାଦାର
କରି ତଦାର୍ଖ ।
ସିଂହ ସମ ବଳ ଅଇଲା ତା' ଦେହେ,
ଭାଙ୍ଗି କୁଡ଼ିଆ
କାଠ ବାଉଁଶକୁ କରିଲା ଏକାଠି
ଅଣଆଡ଼ିଆ ।
ନିଆଁଟିକେ ଦେଇ କହିଲା, "ହେ ଦେବ
ବିଶ୍ୱପାବନ,
ଅରକ୍ଷିତ ପ୍ରାଣୀ କରିବ ଉଦ୍ଧାର
ତେଣୁ ପ୍ରଣାମ ।
ଗଛ ପରବତ ନଈ ନାଳ ପଛେ
କରିବ ମୋତେ,
ମଣିଷ ଜନମ କେବେ ନ ଦେବ ହେ
ମାଗୁଣି ଏତେ ।
ଆହୁରି ଗୋଟିଏ କଥା ମୁଁ କହିବି
ଶୁଣ ଅନଳ,
ରାଜା ରାଇଜରେ ନ କର ପର୍ବତ
ନଇ କି ନାଳ ।"
ଜନମମାଟିକି ଚାହିଁଲା ନିରାଟି
"ଆହା ରେ ଭୁଇଁ,
କେତେ କାଳୁ ସତେ କେତେ ମଣିଷଙ୍କୁ
ରଖିଚୁ ଦୁହିଁ ।
ତୋତେ ମାୟା କରି ହେଲି ଏତେ ସରି
ସଂସାର ଭୋଳେ,
ମୋ ପରି ପାତକୀ ଦେଖି ନ ଥିବୁ ତୁ
କେବେ ତୋ କୋଳେ ।
ତୋହରି ଉପରେ ଏଇ କୁଡ଼ିଆରେ
ମୋର ବଉଁଶ
କେତେ କାଳୁ ଥର ଥର କରିଦେଇ
ହାଡ଼ ପାଉଁଶ
କେତେ ଦୀର୍ଘଶ୍ୱାସେ କେତେ ଦୁଃଖ ତ୍ରାସେ
ତୋହରି ପରେ
ଲୀଳା କରିଯାଇଅଛନ୍ତି, ବନ୍ଦଇ
ତୋ ଚରଣରେ ।
ରଜା ରାଇଜର ଭୁଇଁ ତୁ ବାବୁ ରେ,
ନେଉଚି ବିଦା,
ମଣିଷ ନ ରଖ ମାଗୁଣି ଏତିକି
ହୁଅ ରେ ପଦା ।"
ଏହା କହି ବୁଢ଼ୀ ପ୍ରଚଣ୍ଡ ଅନଳେ
ପକାଇ ଶବ
କି ଭାବିଲା ନିଆଁ ଚାରିପାଖେ ବୁଲି
ହେଲା ଗଦ୍‌ଗଦ ।
'ପ୍ରଭୁ ଜଗନ୍ନାଥ, ଗୋକୁଳି ରେ ମୋର'
ଡାକିଣ ଡାକେ
ନିଆଁରେ ପଡ଼ିଲା, ସାଇ ପଡ଼ିଶାଏ
ନ ଥିଲେ ପାଖେ ।
ଡରି କିଏ କେଣେ ଲୁଚ ଦେଖୁଥିଲେ
ପୋଲିଶ ଯେବେ

ଆସିବ କି ହେବ ଏହି ଗାଆଁ ଖଣ୍ଡ
ଭାବିଣ ହୃଦେ।
ସତକୁ ସତ ତ ଘଟିଗଲା ତାହା
ଅଳପ ଦିନେ,
ମାଡ଼ ଖାଇ ଗାଆଁ ଦେଲା ଜରିମାନା
ଧର୍ମ୍ମ ହାକିମେ।
କଡ଼ା ଖାଇ ଗାଆଁ ଦେଲା ଜରିମାନା
ଧର୍ମ୍ମ ହାକିମେ।
ରଜା ରାଇଜ ମା ପାଟି ନ ଫିଟା ଲୋ
ଦେବେଟି ଖାସା।
।। ୧୦।।
ଛଅ ମାସ ପରେ ଜଇଦଗୁ ଫିଟି
ଗୋକୁଳି ଆସେ,
ମଡ଼ା ପରି ଦିଶେ, ତେବେ ତ ଚାଲଇ
ବଡ଼ ତରାସେ।
ଦେଖିବ ଖୁଡ଼ୀକି ଦେଖିବ ସ୍ତିରୀକି
ଟାଣଇ ମାୟା,
କାୟା ନ ଥାଇ ଯେ ସପନରେ ହେଲେ
ପକାଇ ଛାୟା।
ଦେଖିବ ଜନମ ମାଟିଖଣ୍ଡି ତାର
ଏ ଭାବି ମନେ
ପହଞ୍ଚି ଦେଖିଲା ଯାହା ସେ ନୟନେ
ରହିଲା ଧ୍ୟାନେ।
ଧ୍ୟାନ ନ ଭାଙ୍ଗିଲା ପିଣ୍ଡ ନ ହଲିଲା
ଦେଖିଲେ ଲୋକେ,
ଆହା ଆହା କରି ମଣିପେ ମାଇପେ
ଗଡ଼ିଲେ ଶୋକେ।
ଯମ ପୁଲିଶଙ୍କ ସେ ବିପଦ ଠେଲି
ରହିବା ପାଇଁ
ଗାଆଁ ଖଣ୍ଡକର ଇଜତ ମହତ
ସରିଚି ଭାଇ।
ତଥାପି ସେ ଗ୍ରାମେ ଅଛନ୍ତି ମଣିଷ
ସତ ଏ କଥା,
ଦେବତା ରଜାଙ୍କ ଶାସନେ ନେଉଛନ୍ତି
ଏହି ଅବସ୍ଥା।*



*ମହତୀ ଦେବତା ହ୍ୟେଷା ନରରୂପେଣ - ଇତ୍ୟାଦି।

## ମଙ୍ଗଳା ଚରଣ

ରସରୂପେ ରସମୟ ହୃଦେ ପଡ଼ି ଝରି
ରସସାଗରେ ସରଜି କବିତାଲହରୀ
ବାଣୀରୂପେ ବୀଣାପାଣି
ଭାରତ-ଭାରତୀ,
ମାନସ-ସାରସାନନା ଶ୍ୱେତା ସରସ୍ୱତୀ ।
ଶବ୍ଦରୂପୀ ପରଂବ୍ରହ୍ମ ଓଁକାର ଝଙ୍କାର
ପରଶ ପରଶ ମୋର ମର୍ମ-ବୀଣାତାର ।
ଅପୂର୍ବ ଅଦ୍ଭୁତ ଚିତ୍ର ତୂଳିକାରଞ୍ଜନ
ଲଭୁ ଚରଣରେଣୁକା ଏ ମଣିକାଞ୍ଚନ ।
ଶିଳ୍ପୀ ତୁମେ, ପାତ୍ର ମୁହିଁ, ମୋ ଦୀନ ଲେଖନୀ
ତବ ସଞ୍ଜୀବନୀ ମନ୍ତ୍ରେ ମୋହିବ ଅବନୀ



## ଭାରତ ବନ୍ଦନା

ଭାଇ ରେ !
ଯେ ଦେଶ ମାଟିରେ ଜନମ ଆମର
(ଭାଇ, ସେ ତ) ଆମରି ଜନନୀ-ରାଣୀ,
ଆମରି ସ୍ୱର୍ଗ, ଆମରି ଶାନ୍ତି
(ଭାଇ, ସେ ତ) ଆମରି ଅନ୍ନପାଣି !
ଭଉଣୀ !
ତାହାରି କୋଳରେ ଜନମିଥିଲେ ଲୋ
ସାବିତ୍ରୀ ସତ୍ୟବାନ,
ପତିବ୍ରତେ ସତୀ ! ତୋହରି ଧରମ
ଆଦର୍ଶ ମହାଯାନ !
ଧ୍ରୁ - ଗାଅ ସର୍ବେ ଭାଇଭଉଣୀ ଗାଅ ସତୀଉ ଜୟ,
ସତୀ ମା ସନ୍ତାନ ତେତ୍ରିଶ କୋଟି,
ଆଉ କି ଲଜ୍ଜା ଭୟ !



## ସୂଚନା

ଅଛି ବହୁ ଦେଶ ଧରାଧାମେ,
ନମେ ମଥା କିନ୍ତୁ କାହା ନାମେ ?
ସେ ମୋର ପୁଣ୍ୟ ଭାରତ !
ଅଛି ବହୁ କୀର୍ତ୍ତି ଦେଶାନ୍ତରେ,
ଶ୍ରେଷ୍ଠ କିଏ ତହିଁ ଗୌରବରେ ?
ସେ ମୋର ପୁଣ୍ୟ ଭାରତ !
ଅଛି ବହୁ ବିଦ୍ୟା ଦେଶେ ଦେଶେ,
ପରା ବିଦ୍ୟା ଯହିଁ ନାହିଁ ଲେଶେ,
ଅଛି ବହୁ ଗ୍ରନ୍ଥ, ପୁରାଣ,
ଅଛି ବାଇବଲ, କୁରାଣ,
ଅଛି ଇଲିଅଡ୍, ଇନିଡ୍, ଓଡ଼େସି,
ଡାନ୍ତେ, ଭରଜିଲ୍, ଗେଟେ ହଦିସି;
ନାହିଁ କାହିଁ କିନ୍ତୁ ସେ ରାମାୟଣ,
ମହାଭାରତର ଆଦର୍ଶ ପାବନ;
ଜୀବନ ମହିମା ଗରିମାମଣ୍ଡିତ
ଭାରତୀୟ ନୀତି-ଧରମରଚିତ ।
ନମେ ଶିର ତେଣୁ ପାଦେ ତାର,
'ଭାରତ' ଭାରତ-ଦେଶସାର ।



# ମଣିକାଞ୍ଚନ

## ପ୍ରଥମ ସର୍ଗ

ଯେ ଦେଖେ କହେ ସେ,          ନାହିଁ ତ ମରତେ
ଏସନ ଉଦ୍ୟାନ ଆନ,
ନନ୍ଦନ ଗରବ-          ଖଣ୍ଡନ କାରଣ
ଭବେ ଏ କି ବିଦ୍ୟମାନ ?
ଅଛି ନନ୍ଦନରେ          ପାରିଜାତ ପରା
ଶଚୀ-ରୁଚି ଅନୁସରି,
କିନ୍ତୁ ଏ ଉଦ୍ୟାନ          ଫୁଲ ପସରାକୁ
ସେ ଫୁଲ ହେବ କି ସରି ?
ଶିଳ୍ପ ଚାତୁରୀକି          ଜିଣିପାରେ ହେଲେ
ନିସର୍ଗ-ସୁଷମା ଛବି,
ନୋହିଲା କଥାଁ ତ          ହୋଇଛି ଏଠାରେ
କା ଶିଳ୍ପ କୌଶଳ ଲଭି ?
ଶତ ଶତ ତରୁ-          ବଲ୍ଲରୀ-ବୀଥିକା
ପୁଞ୍ଜୀଭୂତ ସୁଯତନେ,
ଉଦ୍ୟାନ କି ବନ          ଆଦ୍ୟ ଦରଶନେ
ଭ୍ରମ ଉପୁଜଇ ମନେ ।
ଅଗଣିତ ତରୁ-          ବ୍ରତତୀ-ବଗଳ
ବନ୍ଧାବନ୍ଧି, ଛନ୍ଦାଛନ୍ଦି,
ସଘ-ଘଣ-ପତ୍ର-          ଡାଳ ଗହଳରେ
ତିମିର କି ଚିର ବନ୍ଦୀ !
କୃତ୍ରିମ ସରିତ          ମେଲି ଶତ ଶାଖା
ବହିଯାଏ ଦିଶେ ଦିଶେ,
କୃତ୍ରିମ-ଶଇଳ-          କୋଳରୁ ଜନମି
ପ୍ରାକୃତିକ ସତେ କି ସେ !
କାହିଁ ସେତୁବନ୍ଧ,          କାହିଁ ବା କନ୍ଦରା,
କାହିଁ ତୀରେ ତରୁଦଳ,
କାହିଁ ବା ପ୍ରପାତ          ପରାଏ ଝରଣା,
ଶୁଭେ ଜଳ କଳକଳ ।

ଠାବେ ଠାବେ କାହିଁ          ହ୍ରଦ ପରା ସରଃ
ବିସ୍ତାରିତ ନୀଳ ନୀରେ,
ଗହଣେ ପ୍ରବେଶି          ଆନ ପଥେ କାହିଁ
ଶାଖା ମେଲାଏ ରୁଚିରେ ।
ଫୁଟି ତହିଁ ପୁଣି          କମଳ ମୁକୁନ୍ଦ
କହ୍ଲାର ଉତ୍ପଳଦଳ
ଅସ୍ତ ରବି-କର-          କନକ-ରସାଣେ
ଦିଶୁଛନ୍ତି ଝଳମଲ ।
ଅବା ସେ ସଳିଳ-          ବାସିନୀ ଅମରୀ-
ରତନ ଶୋଭା-ବଜାର,
ଶଙ୍ଖ, ମରକତ,          ଇନ୍ଦ୍ର,ପଦ୍ମରାଗ,
କାଞ୍ଚନ, ପ୍ରବାଳ ହାର ।
ମନେ ହୁଏ ପ୍ରତେ,          ତରଳ ତରଙ୍ଗେ
କନକ-କିରଣଜାଳ,
ନୀଳ ସୂତା-ବୁଣା          ସୁବର୍ଣ୍ଣ ଚାଦରେ
ଚିତ୍ର ମଣିଫୁଲ ଡାଳ ।
ହୀରା ଖଣ୍ଡ ପରି          ଉଜ୍ଜ୍ୱଳ ଶଫରୀ
ଖେଳେ କଲ୍ଲୋଳିତ ଜଳେ,
ରୌପ୍ୟ ଶଲ୍କାବୃତ          ବୃହତ ରୋହିତ
ଖେଳୁଥାଏ ତଳେ ତଳେ ।
ସ୍ୱଚ୍ଛ ନୀଳ ନୀର-          ଦରପଣ ପଟେ
ଝଲକିତ ରସ-ଆଖି,
ଅବା ସେ ତାରକା-          ଜ୍ୟୋତି ମୋତିପନ୍ତି
ନୀଳାଭ୍ରେ ରହିଛି ରାଖି ।
ନୀଳ ଅଳି-ଆଳି          କରୁଛନ୍ତି କେଳି
ଚଳି ଚଳି କଞ୍ଜ କୋଳେ,
ଛଳ ମିଳିନ୍ଦ ସେ          ଚୋର ମିଳିଛନ୍ତି
ମକରନ୍ଦ ମଧୁ ଲୋଳେ ।

ମରାଳମାଳିକା ମୃଣାଳ-ଆହାରେ
କରୁଛନ୍ତି କଳନାଦ,
ବିଷ (ସ) ନାମ ବହି ନ ପାଉଛି ତ୍ରାହି,
ପଦ୍ମଗଣେ ପରମାଦ।
ଚଞ୍ଚୁ ଚରଣ କି ଗଢ଼ା ଜମ୍ବୁନଦେ,
ପୁଣଙ୍କେ ଗଢ଼ା କି ଦେହ,
ରବି ନାମେ ନାମ ଏକ ବୋଲି ଅବା
ପଦ୍ମେ ଏ ନିଷ୍ଠୁର ସ୍ନେହ।
ବୁଲି ବାଙ୍କ ବାଙ୍କ ଯାଇଛି ସରିତ
ଉଦ୍ୟାନ ଛନ୍ଦିଲା ପରି,
ତୀରେ ତରୁବଲ୍ଲୀ ବିବିଧ ପ୍ରସୂନ-
ଫଳେ ଉଭା ଶୋଭା ଧରି।
ମୁକ୍ତା-ମଣିମାଳା ଉଦ୍ୟାନ ଆରାମ-
କବରୀ ଛନ୍ଦିଛି ଅବା,
ନନ୍ଦନ-ସୁଷମା- ପ୍ରଭା ବହି କି ରେ
ରାଜେ ଶିରେ ଫୁଲଗଭା !
ଶାଖା ପରସ୍ପର ଜଡ଼ି ନବ ଶାଖା
ପ୍ରସୂତ ଅଦ୍ଭୁତ ରଙ୍ଗେ,
ଭିନ୍ନ ଫୁଲ ଫଳ ଦୋହଲି ପଡ଼ିଛି
ଏକା ଡାଳେ ଏକ ସଙ୍ଗେ
ଏକ ଅନ୍ୟ ଅଙ୍ଗେ କାହିଁ ବା ପାଦପେ
ଫିଙ୍ଗନ୍ତି କୌତୁକେ ଫୁଲ,
କାହା ମୂଳେ ଅବା ଶୋକାକୁଳେ ଝରି
ଫୁଲ-ଅଶ୍ରୁରାଶି ଠୂଳ।
କେ ପୁଣି କୁସୁମ- ଫଳ ଭାରେ ନଇଁ
ବନ୍ଦୁଛି ଚରଣ ଆନ,
ଗୁଣୀ ଆନ ଗୁଣ ପୂଜଇ, ଏ ପରା
ନୀତି-ରୀତି ସୁମହାନ।
କାହିଁ ରୁକ୍ଷ ବୃକ୍ଷ- ବକ୍ଷେ କାନ୍ତ ଲତା
ଫୁଲହାସେ ସୁହାସିନୀ,
ପ୍ରବଳ ପୁରୁଷେ ଆଶ୍ରିଣ ଅବଳା
ସତୀତ୍ୱରେ ସୁହାଗିନୀ।

ଡାଳେ ଡାଳେ ପକ୍ଷୀ ରଚି ନୀଡ଼ ସୁଖେ
ବୁଲୁଛନ୍ତି ଉଡ଼ି ଉଡ଼ି,
କୋଟରେ ବସିଣ କରେ କେ ସଙ୍ଗୀତ,
ନୀରେ କେ ଯାଉଛି ବୁଡ଼ି।
ଅସ୍ତ-ରବି-କର- ପୁଣ୍ୟଶ୍ରୀ-ପରଶେ
ଝକଝକ ପତ୍ରାବଳୀ,
ତଳେ ତଳେ ଛାୟା- ସ୍ନିଗ୍ଧ ମଧୁରତା
ବଚନ ଯାଉଛି ବଳି।
ଶିରପରେ ଶୁଭ୍ର- ଚନ୍ଦ୍ରାତପ ସରି
ଘନୀଭୂତ ସୁନୀଳିମା,
ଅନନ୍ତ ଆକାଶ ତଳେ ସୁବିସ୍ତାର
ତରୁବଲ୍ଲୀ ଶ୍ୟାମଳିମା।
ଶ୍ୟାମଳିମା ସେତ ନୁହେଁ ବିଶ୍ୱପତି-
ଶ୍ୟାମ ରୂପ ମନୋଲୋଭା,
ଫୁଲ ପରିମଳ- ମିଶ୍ରିତ ମଧୁର
ଶ୍ରୀମୁଖ ସୁହାସ-ଶୋଭା।
ଧୀରେ ଧରାପରେ ଓହ୍ଲାଇ ଆସିଲା
ସୌମ୍ୟମୂର୍ତ୍ତି ସାୟନ୍ତନ,
ସତ୍ୱ-ଶ୍ୱେତ ଦିବା ତାମସୀ ତମିସ୍ରା
ମଧ୍ୟେ କି ରଜୋବନ୍ଧନ।
ଛାୟାଲୋକ ଚିତ୍ର- ବସନା ସୁନ୍ଦରୀ-
ଲୋହିତ ରମ୍ୟ ଜଳଦ,
ସଜାଡ଼େ ସୀମାନ୍ତେ ସୀମନ୍ତିନୀ ଶୋଭା
ସିନ୍ଦୁରବିନ୍ଦୁ ସମ୍ପଦ।
ଗୋଧୂଳି କୁଙ୍କୁମ- ଲୁଳିତଲପନା,
ସ୍ୱଚ୍ଛ-ତାରା-ରତ୍ନହାରା,
ବାଳ-କଳାକର- ମୁକୁଟ ମଣ୍ଡିତା,
କାବ୍ୟ-କେଶୀ ନେତ୍ର ତାରା।
ଅସ୍ତାର୍କ-ଅଳକ୍ତ- ରଞ୍ଜିତଚରଣା
ସଜ ଫୁଲହାସେ ହସି
ସୁରଭି ନିଶ୍ୱାସେ ମୋହି ଦଶ ଦିଶ
ଗଲା କି ଉଦ୍ୟାନେ ପଶି !

ଆଲୋକ ଅନ୍ଧାର ବେନି ମଧ୍ୟେ ଉଭା
ବେନିର ସୁଷମା ଲଭି
ପରମାତ୍ମା କୁଳେ ଜୀବାତ୍ମା ପ୍ରୀତିର
ଦିଶଇ ପ୍ରଶାନ୍ତ ଛବି ।
ସନ୍ଧ୍ୟା ନାମ ବହି ଆସି ସନ୍ଧିସ୍ଥଳେ
ମିଳାଏ ଆଲୋକ ତମ,
ବିଭୁ କୋଳେ ଅବା କ୍ଷୁଦ୍ର ମାନବାତ୍ମା
ଲଭେ ପୁଣ୍ୟ ଆଲିଙ୍ଗନ ।
ବଚନେ ବର୍ଣ୍ଣନା ନୁହେଁ ସେ ସୁଷମା
ନୀରବ-ସ୍ୱଭାବ-ଚିତ୍ର,
ପାପ-କଳୁଷିତ କ୍ଷିତିବକ୍ଷେ ସେ କି
ବ୍ରହ୍ମପ୍ରଭା ସୁପବିତ୍ର !
ଅବା ସେ ବିଶାଳ ପ୍ରେମର ବଜାର
ବିଶାଳ ବିଶ୍ୱରାଜାର,
ପବିତ୍ର ପସରା ବସିଛନ୍ତି ମେଳି
ଚଉଦିଗେ ଦିଗବାର ।
ପ୍ରାଚୀନଭଃପଟେ ମେଲିଛି କି ଆହା
ଚନ୍ଦ୍ର ତାରାମଣି ଥାଟ,
ପ୍ରତୀଚୀ ବସାଇ ରଖିଅଛି ପରା
କନକ-କୁସୁମ ହାଟ ।
ଉଦୀଚୀ, ଅବାଚୀ ଉଭା ବିପରୀତେ
ତିମିର ପସରା ଧରି,
ତହିଁ ତାରା ଶିରୀ କଳା-କଉଷେୟ-
ବାସେ ସୁନା ଫୁଲ-ଜରି ।
ପୂରବେ ଚାନ୍ଦନୀ ଧାରା ସରି ଅବା
ପ୍ରେମର ମଧୁର ଶାନ୍ତି,
ବାରୁଣୀ ବଦନେ ଅମଳ, ଉଜ୍ଜ୍ୱଳ,
ପୁଲକ-ପାଟଳ କାନ୍ତି ।
ଉତ୍ତରେ ଦକ୍ଷିଣେ କରୁଣା ଲାବଣ୍ୟ
ଅନୁଗ୍ରହ ବିକଶିତ,
ତାରା ସ୍ମିତ ହାସେ ଦୁଃଖ-ତମ ଭେଦି
ବିଭୁକୃପା ବରଷିତ ।

ଫୁଲତରୁ ତଳେ ଉଭା ଏକାଳେ ଗୋ
ମରତେ ଅମରୀ ପରା,
ଧରା-ଉପବନେ ଝରି କି ପଡ଼ିଛି
ସ୍ୱରଗର ଫୁଲଝରା !
ବିମଳ ସନ୍ଧ୍ୟାର କୋମଳ ଛାୟାରେ
ଅନ୍ଧାରିତ ତରୁ ତଳେ,
ଲଳିତ କୋମଳ କାମିନୀ ମୂରତି
ଉଦିତ କି ଦୈବବଳେ !
କେ ଚାହିଁବ ଥରେ ଚାହିଁଯାଅ ଭଲେ
ପବିତ୍ରିଣ ନେତ୍ର ବେନି,
(ସତେ) ଉଭା ବର ବାମା ତ୍ରିଦିବ ଅବନୀ
ବେନିର ସୁଷମା ଘେନି ।
ବର୍ଣ୍ଣି କି ପାରିବ ଏ ଦୀନ ଲେଖନୀ
ଲବେ ବା ସୌନ୍ଦର୍ଯ୍ୟରାଶି,
ମାଧୁର୍ଯ୍ୟପୂରିତ ଉଷା-ଯୋଷା କାନ୍ତି
ସୁଧା ମାତ୍ର ପ୍ରତିଆଶୀ ।
ବୁଝାଇ ପାରିବି ନାହିଁ ଯଦି ଆନେ
ନିଜ ଭାବେ ହେବି ଭୋଳା,
ପଚାରେ ଯଦି କେ, କହିବି ଏତିକି,
(ସେ ତ) ରୂପ ଗୁଣ ବେନି ଗୋଳା ।
କବି-କବିତାକୁ ବଳିଛି ସେ ରୂପ,
ଅନୁଭବ ବସ୍ତୁ ମାତ୍ର,
ବିଶ୍ୱବ୍ରହ୍ମାଣ୍ଡର ସୌନ୍ଦର୍ଯ୍ୟଧାରଣେ
ଏକା ସେ କି ଯୋଗ୍ୟ ପାତ୍ର !
ସର୍ବାଙ୍ଗ ସୁନ୍ଦର, ସର୍ବାଙ୍ଗ ମଧୁର,
କହନ୍ତି ବା କଳାକର,
କଳାକର କିନ୍ତୁ କଳଙ୍କେ ଅଙ୍କିତ,
କ୍ଷୟବୃଦ୍ଧି ନିରନ୍ତର ।
ସର୍ବାଙ୍ଗେ ଉପମା ହେବ ବା କିପରି,
ମୁଖକୁ ତ ନୁହେଁ ସରି,
ନୟନ-କମଳେ ଯୁଗଳ କମଳ
(ଚନ୍ଦ୍ର) ମୃଗେନ୍ଦ୍ର ରହିଛି ଧରି ।

ଲଜ୍ଜା କ୍ଷୋଭେ ତେଣୁ ଚିବୁକେ, କପାଳେ,
କପୋଳେ ଉପମା ଲଭେ,
ସର୍ବାଙ୍ଗ ସୌନ୍ଦର୍ଯ୍ୟ- ସ୍ନିଗ୍ଧ-ଶୀତଳତା
କଉମୁଦୀ ପରାଭବେ।
ହୋଇବ ଉପମା ଅବା ଏ କାରଣେ
ନିଶାନାଥ, ତାରାପତି,
ସୁନ୍ଦରୀ ତାରକା ଦଳପତି ଯୋଷା
ନିଜ ରୂପେ ରୂପବତୀ
ହୁଅନ୍ତା ବା ଆହା ନିଶାନ୍ତେ ସୁକାନ୍ତ
କୋମଳ କମଳ କଢ଼ି,
ପବିତ୍ର ଏ ଫୁଲ, ସେ ତ ବିଷନାଳ,
ପଙ୍କରୁ ଉଠିଛି ବଢ଼ି।
ସରମେ ସାରସ ମରମେ ମରି କି
ପାଣି ଧରି ପାଦେ ପଡ଼େ,
ବିଷ-ବଳୟିତ ଭୁଜଯୁଗ-ଶିରୀ
କଣ୍ଟ ରୋମ ଶୋଭା ଗଢ଼େ।
ନିରୁପାୟ ପଦ୍ମ ଶ୍ୱେତ ଶତପତ୍ରେ
ଭ୍ରମରେ ଆଣନ୍ତେ ଡାକି
ସୁଲୋଚନା ଲୀଳା- ଚାଳନେ କିନ୍ତୁ ସେ
ନେତ୍ର ପାଶେ ଯାଏ ଲାଖି।
କହନ୍ତି ବା ଆହା ତରୁଣ ଅରୁଣ,
ସେ ତ ଖରଜ୍ୱାଳା-କର,
ଏ ଯେ ମନୋହର, ମଧୁର, ସୁନ୍ଦର,
ଶାନ୍ତ, ସୌମ୍ୟ ପ୍ରଭାକର
କେହି ତ ତୁଳନା ନୁହଁଇ ସଙ୍ଗତେ,
ନିଜର ତୁଳା ସେ ନିଜେ,
ଦିବ୍ୟ ପ୍ରଭା ତେଜ, ପୃଥିବୀ ସୌନ୍ଦର୍ଯ୍ୟ
ମୂର୍ତ୍ତି ଲଭି ଭବେ ବିଜେ।
କାନ୍ତ କିଶଳୟ ଶ୍ୟାମଳ ମାଧୁରୀ
ଫୁଲ-ବାସ ହାସ ଝଳି,
ଚାନ୍ଦର ଚାନ୍ଦନୀ- ଶୀତଳ ସୁଷମା
ଦିଶେ ଏକା ହେଲା ପରି।

ରୂପ ତା ସୁଷମା, ରୂପ ଆବରଣ,
ରୂପ ତା କମଳ ଝଳି,
ଗୁଣର ମାଧୁରୀ ଆସାର ବିକାଶ,
କମଳେ ସୁବାସ ଭଳି।
ରୂପ ତା ସୁନ୍ଦର ଚନ୍ଦ୍ର-ଶୋଭାରାଶି,
ଗୁଣ ତା ଚାନ୍ଦିନୀଧାରା,
ରୂପ ଅବା ତାର ଉଷା ସୁବେଶିନୀ,
ଗୁଣ ତା ଉଜ୍ଜ୍ୱଳ ତାରା।
ସୁଷମା ଆଲୋକେ ଆଲୋକିତ ଦିବା,
ଗୁଣ ଆବରଣେ ନିଶା,
କରୁଣେ କୋମଳେ, ସୁନ୍ଦରେ, ମଧୁରେ,
ସନ୍ଧ୍ୟା ସ୍ନିଗ୍ଧ କାନ୍ତିମିଶା।
ଆଖିଯୁଗ ତାର ଭାସନ୍ତା ମେଘ କି,
କାନ୍ତ ନୀଳ ଶ୍ୱେତ ରଙ୍ଗେ,
ଚାହାଣି ସତେ କି ଶୁଭ୍ର ସୂର୍ଯ୍ୟାଲୋକ
ମିଶିଅଛି ମେଘ ଅଙ୍ଗେ!
ଚରମେ ଦୋଳିତ ଚରଣଚୁମ୍ବିତ
ଚିକ୍କଣ ଚିକୁର ଭାର
ନୀଳାଭ୍ର, ତହିଁକି ତାରାବଳୀ ସମ
ବିଜଡ଼ିତ ମଣିହାର।
ସ୍ଥିର ସୌଦାମିନୀ ଝଲକ ଧରେ କି
ସୁବାସିତ ଶୁଭ୍ର ଫୁଲ,
ଅବା ନୀଳ ବୀଚି କାଳିନ୍ଦୀ କମଳେ
ଶ୍ୱେତକାନ୍ତି ହଂସକୁଳ।
ଅବା ସେ ତାମସୀ ଯାମିନୀ ଉପମା
ମୁଖ-ଚନ୍ଦ୍ର ଶୋହେ ହାସେ,
ସ୍ୱାତୀ ଚିତ୍ରା ବେନି ସ୍ମିତ ଶୋଭା ଘେନି
ଶ୍ରୁତିଯୁଗ ବେନି ପାଶେ।
ସତେ ସଜବାସ- ସରସିଜ ଶୋଭା
ବରବଦନରେ ଝଳେ,
ଚୁମ୍ବିତ ଚିକୁର ରୋଲମ୍ବ ପରାଏ
ଚୁମ୍ବ ଦିଏ ଗଣ୍ଡ-ସ୍ଥଳେ।

ଗଣ୍ଡ ଗୋଲାପ କି    ଚାନ୍ଦ, ଦରପଣ
କମଳ ପାଖୁଡ଼ା ରଙ୍ଗ,
ବର୍ଣ୍ଣୋଜ୍ଜ୍ୱଳେ ଯେଣୁ    ସ୍ନିଗ୍ଧ ସ୍ମିତ ଶୋଭା
ଲଭିଅଛି ଏକସଙ୍ଗ ।
ଅବା ସେ ଲାବଣ୍ୟ-    ସିନ୍ଧୁର ତରଙ୍ଗ
ଅଧର ପ୍ରବାଳ ଆଳୀ,
କି ରଙ୍ଗେ ବିଧାତା    ଖଞ୍ଜିଛି ତହିଁକି
ଦନ୍ତପନ୍ତି ମୋତି ମାଳି ।
ହେବ ବା ସେ ସଜ    ଜବା ଫୁଲ ଗୋଟା,
ଦନ୍ତ କୁନ୍ଦକଳିମାଳ,
ତିଳଫୁଲ ନାସା,    ସୁରଭି ନିଶ୍ୱାସେ
ସୂଚଇ ବସନ୍ତ କାଳ ।
ବସନ୍ତେ ଫୁଟଇ    'ବନମାଳି' ଏ ଯେ
'ନବମାଳି' ମଧୁମତୀ,
ସୁରଭି-ସୁଷମା-    ସମୂହ ବହିଣ
ରୂପ-ରମ୍ୟା ପ୍ରିୟବତୀ ।
ରୂପ ତା ସୁନ୍ଦର    ରୂପ ତା ଉଜ୍ଜ୍ୱଳ
ରୂପ ତା ଅମୃତସିନ୍ଧୁ,
ଗୁଣ ତା ଶରଦ    ଶୀତଳ ଶୋଭନ
ସିନ୍ଧୁ-ପ୍ରହ୍ଲାଦନ ଇନ୍ଦୁ ।
ଧରାଶିରୀସାର    ଲାବଣ୍ୟଲକ୍ଷ୍ମୀ କି
ବାସ-ବୀଚି-ବିଜଡ଼ିତ,
ପଦ୍ମାସନ ଛଳେ    ରଙ୍ଗ ପଦତଳେ
ପଦ୍ମ ସଙ୍ଗେ ବିରାଜିତ !
ତହୁଁ ଅଦଭୂତ    କମଳ ଚମ୍ପକ
ଫୁଟିଣ ଏକତ୍ର ଠୂଳ,
ଭୁଜ ମୃଣାଳ ସେ,    ପାଣି ଶତଦଳ,
ଅଙ୍ଗୁଳି ତ ଚମ୍ପାଫୁଲ ।
ବରବରନୀର    ବର୍ଣ୍ଣସୁଷମାରେ
ସୁବର୍ଣ୍ଣ ବିବର୍ଣ୍ଣ ପରା,
ରୁଚିପତ୍ର ସୂଚୀ-    ପତ୍ର ଆବରଣେ
ବିରସେ ପଶିଛି ଦୂରା ।

ଲାଜେ କି ଶଶାଙ୍କ    ପାରଦସଙ୍କାଶ
କର୍ପୂର କି ଚୂର୍ଣ୍ଣକାୟ,
ତାରାମଣ୍ଡଳ ସେ    ନଭସ୍ତଳତମେ
ଲୁଚି କହୁଛନ୍ତି 'ହାୟ' ।
ସ୍ୱର୍ଗ ମର୍ତ୍ତ୍ୟ ବେନି    ମଧ୍ୟେ ରୂପଡ଼ୋରି
ଉଷା ଭାଳେ କାବ୍ୟ-ତାରା,
ଅନ୍ଧାର ଆଲୋକ    ବେନି ମଧ୍ୟେ ଝଳି
ଜ୍ୟୋତିରେ ନୟନ-କାରା ।
ତୁଚ୍ଛ ଅଳଙ୍କାର    ତୁଚ୍ଛ ତାହାଠାରେ
ମଳିନ ତାରକା ପରି,
ସେ ଯେ ଏକା ତାର    ସୁଷମା ସୁପ୍ରଭା
ପୂର୍ଣ୍ଣମାସୀ ଶରବରୀ ।
ଭୂଷଣ-ଭୂଷଣ    ଭୂଷଣ ତା'ଠାରେ
ବଢ଼ାଇଛି ନିଜ ଟେକ,
ବିଦ୍ୟାର ଭୂଷଣେ    ଭୂଷିତ ଯେସନେ
ଜ୍ଞାନଶୀଳ ସୁବିବେକ ।
ସୀମନ୍ତେ ସୀମନ୍ତେ-    ମଣି ଧନମଣି
ନିଜ ଭାଗ୍ୟ, ଦର୍ପ ହରେ
ନିଶାରେ ଉଦିତ    ପାହାନ୍ତି ତାରାର,
ସେ ଲୁଚଇ ସୂର୍ଯ୍ୟ-କରେ ।
କର୍ଣ୍ଣ ଶୋହି ବେନି    ମଣି କର୍ଣ୍ଣପୁର
ଶ୍ରବଣା ନକ୍ଷତ୍ର ସେ କି,
ମଧ ତାରା ନାସା-    ମଣିରେ ବିରାଜି
ମଥା ସେ ରହିଛି ଟେକି ।
କଣ୍ଠେ ମଣିମାଳା    ତାରାମାଳା ସଙ୍ଗେ
ରଙ୍ଗେ କି ଭିଆଏ କେଳି ?
ମେଘ ଅନ୍ତରାଳେ    ଲୁଚନ୍ତି ତାରକା
ଲାଜେ ଶୋଭାକୁ ନ ବଳି ।
ବାହୁରେ ଅଙ୍ଗଦ    ପ୍ରକୋଷ୍ଠ ଉଜ୍ଜ୍ୱଳ
ଇନ୍ଦ୍ରନୀଳମଣି ଚୂଡ଼ୀ,
ନାଗରୂପୀ ହେମ    ମଣି ମଳୟ କି
ପାଣି ପଦ୍ମତଳେ ବୁଡ଼ି ।

ଚମ୍ପକ-କୋରକ- କରରେ ଅଙ୍ଗୁରୀ
ବେନି ସେ ସୁବର୍ଣ୍ଣଶିରୀ,
କେ କା'କୁ ଜିଣିବ କଳି ନ ପାରିଣ
ବଢ଼ାନ୍ତି ବେନିର ଶିରୀ ।
କଟିରେ କନକ- କାଞ୍ଚିଦାମ ଶୋଭେ
ନାନା ରତ୍ନବିଜଡ଼ିତ,
ଛାୟାପଥ ସେ କି ଆକାଶ ଉରସେ
ମଧ୍ୟେ ଯେଣୁ ବିରାଜିତ !
ଚରଣେ ନୂପୁର ମଧୁର ନିକ୍ୱଣେ
ଭାବେ ମୁହିଁ ବୀଣାଜିଣା,
ଚରଣ ଚାଳନ ଭଙ୍ଗିମା ସତେ କି
ବିଶ୍ୱଜନ-ମନ-କିଣା !
ଫୁଲ୍ଲ ତରୁତଳେ ଡାଳଟି ଧରିଣ
ଉଭା ସେ ସୁନ୍ଦରୀବର,
ଦିଏ ପରିଚୟ ସ୍ନିଗ୍ଧ ନେତ୍ର ତାର
ସ୍ୱଭାବ କି ସୁମଧୁର !
ଆକୁଳ ଆଦରେ ଝରିପଡ଼େ ଫୁଲ
ଶୀର୍ଷେ, କେଶେ ଅବତଂସେ,
ଅପୂର୍ବ ନନ୍ଦିନୀ କା ମନୋନନ୍ଦିନୀ,
ଜନମିଛି କେଉଁ ଦେଶେ ?
ସାଧାରଣ ନାରୀ ପରି ତ ନ ଦିଶେ,
ଦେବୀ-ବରଦତ୍ତା କନ୍ୟା,
କଉଶଲ୍ୟା ରାଣୀ ଗରଭେ ଧରିଣ
ନାରୀକୁଳେ ହେଲେ ଧନ୍ୟା ।
ସ୍ୱଭାବେ ସୁନ୍ଦର ମଦ୍ରଦେଶ, ତହିଁ
ନରେଶ ବୀରେଶ, ଜ୍ଞାନୀ,
ଧାର୍ମିକ, ସୁଶୀଳ, ସଂଯମ-ଆଚାରୀ,
ଯୋଗବ୍ରତ, ମହାଦାନୀ ।
ଷୋଳକଳା ପୂର୍ଣ୍ଣ ନାରୀଶିରୋମଣି
ପାଟରାଣୀ ତାହାଙ୍କର,
ସୁଶୀଳା ସୁପତି- ବ୍ରତା, କିନ୍ତୁ ବନ୍ଧ୍ୟା,
ଦୁଃଖେ ହୃଦ ଜରଜର ।

ବିଶାଳ ସମ୍ପଦ- ପୂରିତ ସୁନ୍ଦର
ରାଜ୍ୟ ଥାଇଁ ଥାଇଁ ଆହା
ଗୋଟିଏ ସନ୍ତାନ ବହୁ ବର୍ଷଯାଏ
ରାଣୀ ନ ଲଭିଲେ ଯାହା ।
ଈଶଭକ୍ତି ଦୃଢ଼ ଧରି ସେ ହୃଦୟେ
ସେବିଲେ ସାବିତ୍ରୀ ପୂତ-
ଚରଣକମଳେ, ଦେବୀ ଯଥାକାଳେ
କଲେ ତାଙ୍କୁ ଭାଗ୍ୟଯୁତ ।
ଅପୂର୍ବ ନନ୍ଦିନୀ- ରତନ ଯତନେ
ଦେଲେ ସେବକର କରେ,
ନେଲେ ଅଙ୍କେ ତୋଳି ରାଜାରାଣୀ ହର୍ଷେ
ଅପୂର୍ବ ସେ ଦେବୀ ବରେ ।
ଦେବୀଦତ୍ତା, ତେଣୁ 'ଦେବୀ' ନାମ ଘେନି
ଅମରୀ ସେ ବରରମା,
'ସାବିତ୍ରୀ' ଆଦରେ ଡାକିଲେ ଜନନୀ,
ସାବିତ୍ରୀ ସେ ସର୍ବୋତ୍ତମା ।
ଆଜି ତ ସାବିତ୍ରୀ ଫୁଲ ଉଦ୍ୟାନରେ
ବୁଲୁଅଛି ଏକାକିନୀ,
କି ଭାବନା ତାର କିଶୋର ପରାଣେ
କରେ ତାକୁ ଉନ୍ମାଦିନୀ ।
ପ୍ରଶାନ୍ତ, ଆୟତ, ନୀଳ ନେତ୍ର ତାର
ଜଣାଏ ସେ ଭାବବତୀ,
ତରୁଣେ ଯୌବନ ପଦାର୍ପଣ କରି
ଶୁଭ୍ରାଙ୍ଗୀ ଶୋଭାଙ୍ଗୀ ଅତି ।
ସଖୀମେଳେ ତାର ନ ମିଶଇ ମନ
ତୁଚ୍ଛ ହାସ ପରିହାସେ,
ଦୃପ୍ତ ନୁହେଁ ସେ ତ ରତ୍ନ ଆଭରଣେ
ମଣି କଉଷେୟ ବାସେ ।
ଅଯତ୍ନେ କବରୀ ଖସିପଡ଼େ ତାର,
ନ ଖୋଷେ ନିଜେ ସେ ଫୁଲ,
ସରାଗେ, ଆଦରେ ନିରେଖେ ଆରାମେ,
ସଜ ଫୁଲରାଶି ଠୁଳ ।

ଛିଣ୍ଡାଇ କେ ଦେଲି ବିଛଲେ କୁସୁମ
ଆକୁଳେ କାନ୍ଦେ ତା ଆଖି,
ଫୁଲର କୋମଳ ପରାଣବ୍ୟଥା କି
ଯାଏ ତାର ହୃଦେ ଲାଖି !
ଲାବଣ୍ୟପିତୁଳା କୋମଳା ସେ ବାଳା,
କୋମଳ ପରାଣ ତାର,
କ୍ଷୁଧିତ, ତୃଷିତ, ଦୀନ ଜନନୀ ସେ
ଅନ୍ନପୂର୍ଣ୍ଣା ଅବତାର ।
ପିତୃ ପ୍ରିୟତମା ଆଦରିଣୀ ଜେମା,
ମାତାଙ୍କ ନୟନମଣି,
ଗୁଣରେ ସତେ କି ଧରଣୀଧାମରେ
ରମଣୀ-ସୀମନ୍ତମଣି !
କଣ୍ଠେ ତାର ସତେ ଉଦିତା ଭାରତୀ
ଅମୃତ ବଲ୍ଲକୀ ଯୋଗେ,
ରୂପେ ଗୁଣେ ପୂଜା- ଫୁଲଟି ପରାଏ
ଲାଗିବ କି ଦେବଭୋଗେ ?
ସନ୍ଧ୍ୟା ଗାଢ଼ତର ହେଲାଣି ତଥାପି
ସେ ପଟେ ନାହିଁ ତା ଆଖି,
ନୀରବେ ନିଶ୍ଚଳେ ଶୂନ୍ୟ ନଭୋଭାଲେ
ରହିଛି କିମାଇ ନାଖି ?
ବାହ୍ୟନେତ୍ରେ ସେ ତ ଦେଖେ ବିଶ୍ୱଶୋଭା,
ମନୋନେତ୍ରେ ଦେଖେ ଆନ,
ମଧୁର, ସୁନ୍ଦର, ଉଜ୍ଜ୍ୱଳ ରାଜ୍ୟର
ସ୍ୱପ୍ନ, ଶୁଣେ ସୁଧାତାନ ।
ଜଡ଼ ବିଶ୍ୱ ତାର ଦେଖେ ଜଡ଼ ଆଖି,
ଦେଖେ ଆତ୍ମା ଆତ୍ମାସରା,
ନବୀନ ଯୌବନେ ନବୀନା ବାଳିକା
କି ଭାବମାଦକେ ମତ୍ତା ?
ସଖୀ ସହଚରୀ ଦେଖନ୍ତି ଅନାଇ
ସଖୀ ତାଙ୍କ ଦେବୀସମା ।
ନ ମଜିଣ କ୍ଷୁଦ୍ର ତୁଚ୍ଛ ରଙ୍ଗରସେ
ରହିଥାଏ ଉନମନା ।

ଧୀର ସ୍ୱରେ ଅତି କଥା ସେ କହେ ଗୋ
କଳକଣ୍ଠ-କଣ୍ଠ ଜିଣି,
କଷ୍ଟ କାହା ମନେ ନ ଦିଏ କ୍ଷଣକ
ସ୍ନେହେ ନିଏ ସର୍ବେ କିଣି ।
ସଙ୍ଗୀତେ ସାବିତ୍ରୀ ରତା ଅତିରେକେ,
ସଙ୍ଗୀତେ କି ସରସ୍ୱତୀ,
ରୂପେ ଯେଣୁ ସମା ଶଚୀ, ଶିରୀଙ୍କର,
ଗୁଣେ ପୁଣି ହୈମବତୀ ।
ରୂପେ କି ଯମୁନା, ଗୁଣେ କି ଜାହ୍ନବୀ,
ବେଦମାତା* ଧର୍ମମତି,
ଅଙ୍ଗେ ଗଙ୍ଗାଶିରୀ, ସୁକେଶେ କାଳିନ୍ଦୀ
ସରସ୍ୱତୀ ଭୂଷାବତୀ ।
ରୂପେ, ଗୁଣେ, ଶୀଳେ, ରେବା ସଙ୍ଗେ କୃଷ୍ଣା,
କାବେରୀ ମିଳିତ ପରା,
କେଉଁ ଦିବ୍ୟ ଶୈଳୁଁ ଅବତରି ତ୍ୱରା
ମଣ୍ଡିଅଛି ମଦ୍ର-ଧରା !
ଅନ୍ତଃପୁରେ ଏଣେ "କାହିଁ ଗୋ ସାବିତ୍ରୀ",
ପଚାରିଲେ ରାଣୀ ଆସି,
କହିଲେ କିଙ୍କରୀ, "ଉଦ୍ୟାନ ଭ୍ରମଣେ,
ଯାଇଛନ୍ତି ମୃଦୁହାସୀ" ।
"ସଞ୍ଜ ତ ହେଲାଣି, ନ ଫେରିଲା କିମ୍ପା ?"
କହିଲେ ଆକୁଳେ ରାଣୀ,
"ଗହଣେ ସଖୀଏ ଯାଇଛନ୍ତି", କେହି
କହିଲାକ ପ୍ରତିବାଣୀ ।
ଦାସୀ ଜଣେ ଏଣେ ଫୁଲତରୁମୂଳେ
ସାବିତ୍ରୀ ପାଶକୁ ଯାଇ
କହିଲା କୋମଳେ, "ଆସ ଜେମାମଣି,
ଗଲେଣି ଜନନୀ ରାଇ ।"
ଡାକେ ଜନନୀର ଭାଙ୍ଗିଲା ଚମକ,
ଗମେ ଧୀରେ ଇଭଗତି,
ପ୍ରତେ ହୁଏ ସତେ ଧରଣୀ ଉରସେ
ସ୍ଥିର ଶମ୍ପା କରେ ଗତି !

* ସରସ୍ୱତୀ ନଦୀ

କ୍ଷଣକେ ଜନନୀ ଚରଣେ ପ୍ରଣମେ
ଆଦରିଣୀ ଶୋଭାଯୁତା,
ବାହୁଯୁଗେ ମାତା ଆଲିଙ୍ଗି ଆଦରେ
କୋଳ କରିନେଲେ ସୁତା।
ପୋଛି ଗଣ୍ଡଯୁଗ ସ୍ନେହ ହସ୍ତେ ଦେଲେ
ଆଦରେ ଚୁମ୍ବନ ଥରେ,
ସହସା ସହସ୍ର ଚିନ୍ତା ଗଲା ବହି
ହୃଦାର୍ଣ୍ଣବେ କ୍ଷଣକରେ।
କ୍ଷଣେ ଚାହିଁ ମୁଖ ଭାବିଲେ କି ରାଣୀ
"ସୁଖ ଆଉ କେତେ ଦିନ,
ଘୋର ଅମାନିଶି ଆସୁଛି ତ, ହେବ
ଅଙ୍କନଭ ଇନ୍ଦୁହୀନ।
ଅବା ମୋ ଆଦର- ସାଗର-ସଦର୍ନ୍ନୁ
ଇନ୍ଦିରା ସେ ଯିବ ଚାଲି,
ମେନକା କୋଳରୁ ଉମା ଗଲା ପରି,
ଝୁରିବି ମୁଁ ଭାଳି ଭାଳି।
ଜନକ ଜନନୀ କନ୍ଦାଇ ସାବିତ୍ରୀ
ଯିବି ଚାଲି ପତି ଘରେ,
କିପରି ଧରିବି ତେବେ ଜୀବନ ମୁଁ-
ହୃଚାଇ ଦୀର୍ଘଶ୍ୱାସରେ"
ପୁଣି ପରକ୍ଷଣେ ଭାବିଲେ, "ଧନ ମୋ
କରୁ ସୁଖେ ଘର ତାର,
ଭାଗ୍ୟେ ତା ସୁପତି ଦିଅନ୍ତୁ ଘଟାଇ
ବ୍ରହ୍ମାଣ୍ଡର ମୂଳାଧାର।
ହେଉ ପତିବ୍ରତା, ଶାଶୁ ଶ୍ୱଶୁରଙ୍କୁ
ସେବି ରଖୁ କୁଳମାନ,
ସୁଯୋଗ୍ୟ ସନ୍ତାନ- ସମ୍ପଦେ ତାହାର
ବଢ଼ୁ ବଂଶ ସନମାନ।"
ରାଣୀ ମନୋରାଜ୍ୟ ଦୁଃଖେ ସୁଖ ବେନି
ଆଲୋଡ଼ିଲେ, ଏହି କାଳେ
ରାଜକାର୍ଯ୍ୟ ସାରି ରାଜା ଅଶ୍ୱପତି
ପ୍ରବେଶିଲେ ନତ ଭାଳେ।

ବିଷର୍ଣ୍ଣ ବଦନ ନିରେଖି ତାଙ୍କର
ବିରସ ହୋଇଲେ ରାଣୀ,
ଦେଖି ଜେମା ମୁଖ ସହସା ରାଜାଙ୍କ
ଦୁଃଖ ଭଜିଗଲା ମ୍ଳାନି।
ପିତୃ ସ୍ନେହଭରା ନୟନେ ଚାହିଁକି
ବିଚାରିଲେ ମନେ ମନେ,
"ସ୍ୱର୍ଗ ପାରିଜାତ ଫୁଟିଲା କିପରି
ଏ ଦୀନ ସଦନ-ବନେ ?
ପୂଜାରେ ତୋଷେ କି ଦୟା ବହି ଦେବୀ
ସାବିତ୍ରୀ ବହିଲେ ତନୁ,
ଅଧମ ସନ୍ତାନ ଦୁଃଖ ନ ସହିଣ
ନାଶିବାକୁ କଷ୍ଟ ମନୁଁ।
ଏ ମୋର ନନ୍ଦିନୀ ବୃଥା ଭାବେଁ ମନେ,
ଅହଙ୍କାର ମୋର ବୃଥା,
ଜନନୀ ଅମୃତ- ରୂପିଣୀ କମଳା
କି ଭାଗ୍ୟେ ମୋହର ସୁତା।"
"ମା" ବୋଲି ଆଦରେ ଡାକିଲେ କୋମଳେ
ସାବିତ୍ରୀ ନମିଲା ଯହୁଁ,
"ମା ମୋ ଲକ୍ଷ୍ମୀ କିବା ସାକ୍ଷାତେ ଶଙ୍କରୀ!"
ରୁଦ୍ଧ କଣ୍ଠ କହୁଁ କହୁଁ।
ନତ ନେତ୍ରେ ରହେ ସାବିତ୍ରୀ ସୁନ୍ଦରୀ
ଚରଣସେବାରେ ରତା,
ଚାହିଁ ଚାହିଁ ରାଜା ବିଷାଦେ ହରଷେ
ଭାଳୁଥାନ୍ତି କେତେ କଥା।
ଦିନ ଆଉ ନାହିଁ ଯିବ ଧନମଣି
ତା ନିଜ ସଂସାର କରି,
ଯା ମୁଖ ଦେଖି ମୋ ରହିଚି ଜୀବନ,
ଯିବି ତ ତା ବିନା ମରି।
ଜନକର କୃତ୍ୟ ନ ପାଳିଲେ ମୁହିଁ
ନରକେ ବୁଡ଼ିବି ସିନା,
ଅମାନିଶା ସମ ଅନ୍ଧାରେ ଭାଦିବି
କିନ୍ତୁ ମୋ ଚନ୍ଦ୍ରମା ବିନା।"

ଉଠି ଦୁହୁଁ ବିଜେ ଶୟନସଦନେ
ହେଲେ ରାଜା ଅଶ୍ୱପତି,
ଗଲେ ପଛେ ପଛେ ପାଟ ମହାଦେଈ
ସ୍ୱଭାବେ ସୁଧୀରା ଅତି।
ରତନ ପଲଙ୍କେ ସୁବାସିତ ଶେଯେ
ଆଳଟ ଧରିଣ କରେ
ବସି ମଧୁ ସ୍ୱରେ ମଧୁରଭାଷିଣୀ
ପଚାରିଲେ ନରବରେ,
"କଥାଏ କହିବି ଶୁଣ ମହାରାଜ!
ସାବିତ୍ରୀକୁ ଚାହିଁ ମୋର
ଫାଟିଯାଏ ହିଆ, କହ ହେ କିପରି
କାଟିବି ତା ମାୟାଡ଼ୋର?
ପେଷିଅଛ ଆଜ୍ଞା ପାତ୍ର ଅନ୍ୱେଷଣେ
ନାନା ଦେଶେ ଚାରଗଣ,
କି ହେଲା ସେ କଥା ଶୁଣିବାକୁ ଅତି
ଉତ୍ସୁକ ମୋହରି ମନ।"
"କି କହିବି ରାଣୀ! ଦୁଃଖର କାହାଣୀ,"
ଭାଷିଲେ ନୃପତିବର,
"କନ୍ୟାଯୋଗ୍ୟ ବର ନ ମିଳେ ସଂସାରେ,
ହେଲିଣି ତ ହରବର।
ବୟସ୍କା କୁମାରୀ ଘରେ ରଖି ପୁଣି
ହେଉଥାଇଁ ପାପଭାଗୀ,
ରୂପ ଗୁଣ ଶୁଣି ଭୀତ ରାଜସୁତେ,
କି କରିବା କନ୍ୟା ଲାଗି?
ଅଙ୍ଗ, ବଙ୍ଗ, ମତ୍ସ୍ୟ, ମିଥିଳା ମଗଧ,
ଅବନ୍ତୀ, କର୍ଣ୍ଣାଟ, କାଞ୍ଚି,
ବିଦର୍ଭ, ପାଞ୍ଚାଳ, କଳିଙ୍ଗ ଅଞ୍ଚଳ
ସବୁ ସାରିଲିଣି ବାଛି।
ନିଜ ଅଯୋଗ୍ୟତା ହେଜି ରାଜସୁତେ
ନୁହନ୍ତି ସାହସୀ କେହି,
ତେଜୋମୟୀ ଦେବୀ- ବରଦରା କନ୍ୟା
ଦାର ସେ କରିବେ ନେଇ?
ସ୍ୱୟମ୍ବର ସଭା ବସାଇବି ଭାବି
କରିଥିଲି ଆୟୋଜନ,
ନିମନ୍ତ୍ରଣେ କେହି ନୋହିଲେ ସାହସୀ
କରିବାକୁ ଆଗମନ।
ସୌର ତେଜେ ଯଥା କ୍ଷଣେ ଭଜେ ମ୍ଳାନି
ଜ୍ୟୋତିର୍ମୟ ଭାରଗବ,
କନ୍ୟା ରୂପ ଗୁଣ ତେଜେ ସେହିପରି
ନୃପସୁତେ ହୀନପ୍ରଭ।
ଭୀତ ଲଜ୍ଜାନତ ବଦନେ ସରବେ
ଭାଳନ୍ତି ନୁହନ୍ତି ଯୋଗ୍ୟ,
ପୁଷ୍ପ ସୁକୁମାରୀ ଧରା-ସାର ପୁଷ୍ପ
ହେବ ଅବା ଦେବଭୋଗ୍ୟ।
ପେଷିବି କନ୍ୟାକୁ ପାତ୍ର ଅନ୍ୱେଷଣେ,
ନାହିଁ ତ ଉପାୟ ଆନ,
ଅନୂଢ଼ା ଯୁବତୀ କନ୍ୟା ରଖି ଗୃହେ
ଯିବ କୁଳ ସନମାନ।"
"ଏ କି ଅଦଭୂତ, କ୍ଷୁଦ୍ର ଶିଶୁ ମୋର
ନ ଜାଣେ ସଂସାର କିଛି,
ପାତ୍ର ଅନ୍ୱେଷଣେ ପଦାରେ ବୁଲିବ,
ଲୋକେ ତ କହିବେ ଛି ଛି!
ଅତି ସେ କୋମଳା ଲଜ୍ଜାବତୀ ଲତା
ସଙ୍କୁଚିତା ଭୀତମତି,
ନାନା ଦିଗଦେଶେ କହ ମୋତେ ନାଥ,
କିପରି କରିବ ଗତି?
ଯେ ଯା'ର, ସେ ତା'ର ଖଞ୍ଜି ପ୍ରଜାପତି
ଆଗରୁ ଥୁଅନ୍ତି ପରା,
କନ୍ୟା ମୋର ଶିଶୁ, ତା' ପାଇଁ କିମ୍ପାଇ
ଆଜହୁଁ ଏଡ଼ିକି ତ୍ୱରା!"
କହନ୍ତି ରାଜା, "ସେ ସ୍ନେହ ତବ ଶିଶୁ,
ନୁହେଁ ଶିଶୁ ଲୋକନେତ୍ରେ,
ଅଧର୍ମ ଆଚରି କିପରି ବର୍ତ୍ତିବି
କହ ଏ ପବିତ୍ର କ୍ଷେତ୍ରେ?

ଏ ପରା ଭାରତ ଧରମେ ବିଖ୍ୟାତ,
ପୁଣ୍ୟ ଆର୍ଯ୍ୟଋଷି-ଭୂମି,
ଧରମ-ତୁଷାର- କିରୀଟୀ ହିମାଦ୍ରି
ଉଠିଛି ଅମ୍ବର ଚୁମ୍ବି।
ପବିତ୍ରସଳିଳା ଜାହ୍ନବୀ, ଯମୁନା,
ସରସ୍ୱତୀ, ଦୃଷଦ୍ୱତୀ
ଯେ ପବିତ୍ର କ୍ଷେତ୍ରେ ପ୍ରବାହି ଅମୃତ
ସାଗରେ କରନ୍ତି ଗତି,
ପୁଣ୍ୟଶ୍ରୀ-ସମୃଦ୍ଧି- ଶାଳିନୀ ଏ ଭୂମି,
ଏଥି ଜନ୍ମ ଲଭି ରାଣୀ,
ସତୀ, ସନ୍ଥ ବେନି ପାଳନେ କ୍ଷତ୍ରିୟ-
ଧରମ ବିହିତ ଜାଣି।
ରାଜା ଅଶ୍ୱପତି ଲୋକେ ସୁବିଦିତ
ନ୍ୟାୟ ଧର୍ମ ଆଚରଣେ,
କନ୍ୟାସ୍ନେହ-ଅନ୍ଧ ଅଧର୍ମ ବିହିଲେ
କହିବେ ତ ବିଶ୍ୱଜନେ।
'ସନାତନ ପ୍ରଥା ଲଙ୍ଘିଲେ ନୃପତି'
କହିବେ ମୋ' ପ୍ରଜାକୁଳ,
କଳଙ୍କଭାଗିନୀ ହେବ ମୋ' ସୁଶୀଳା
ସୁତା, ଯିବ ନାଶ କୁଳ।
ସତ୍ୟ ଲାଗି ରାଣୀ, ଅସାଧ ସାଧନ
କରନ୍ତି ଧାର୍ମିକ ଜନ,
ମାୟା, ସ୍ନେହ, ମୋହ ଅସାରଟି ଦେବୀ,
ସେ ସବୁ ଭବୋବନ୍ଧନ।
କେ କା'ର ସନ୍ତତି, କେ କାହାର ପିତା,
କେ ମାତା, କେ ସୁତ କହ,
ମାୟାନେତ୍ରେ ସବୁ ଦିଶେ ଛନ୍ଦାଛନ୍ଦି,
ମାୟା ଅନ୍ତେ ଶୂନ୍ୟମୟ।
ଶୃଙ୍ଖଳେ ଶୃଙ୍ଖଳ ଛନ୍ଦିଥିଲା ଭଳି
ମାୟାଡୋରେ ଛନ୍ଦାଛନ୍ଦି,
ପିତା, ମାତା, ଭ୍ରାତା, ଭଗିନୀ, ସନ୍ତାନ,
ପତି, ପତ୍ନୀ ବନ୍ଧାବନ୍ଧି।

ମାୟା ନ କାଟିଲେ ନାହିଁ ତ ମୁକତି
ଶାସ୍ତ୍ର ପାଠେ ଅଛ ଜାଣି,
ମାୟାରେ ଅଧୀରା ହୁଅ ଏବେ କିପାଁ
ମଦ୍ରଦେଶ ମହାରାଣୀ !
ଆମ୍ଭେ କି ଛାର ଗୋ, ଲୋକହିତ ଅର୍ଥେ
ଆମ୍ଭର ଜନମ ସିନା,
ପ୍ରଜା କି ପାଳିବେ ଧରମର ବିଧି
ଆମ୍ଭ ଆଦରଶ ବିନା ?
ସିଂହାସନେ ନୃପ ନୁହଇ ସ୍ୱାଧୀନ,
ପ୍ରଜା ସେବି ପ୍ରଜା-ଦାସ,
ଆମ୍ଭେ ଅନାଚାରୀ ହୋଇଲେ କମଳା
ତେଜିବେ ଏ ରାଜ୍ୟବାସ।
ନିର୍ମଳ ଉଜ୍ଜ୍ୱଳ ନିର୍ବିକାର ଶୁଦ୍ଧ
ନିରାକାର ବ୍ରହ୍ମପଦ
ହେଜି ମିଥ୍ୟାମାୟା ବରଜ ଗୋ ରାଣୀ,
ସେ ସିନା ପରମ ପଦ।
ଯେତେ 'ମୋର' 'ମୋର' କହୁଥିବ ଦେବୀ,
ତେତିକି ଛନ୍ଦିବ ମାୟା,
ମୋର ନୁହେଁ, ବିଭୁ- ପ୍ରସାଦେ ପ୍ରଦତ୍ତ
ସନ୍ତାନ ସନ୍ତତି ଜାୟା।
ଆତ୍ମଶୁଦ୍ଧି ହେତୁ ମୁକ୍ତିପଥେ ଦେବୀ,
ମିଳିଛୁଁ ପଥିକ କେତେ,
ଦୁଇ ଦିନ ପରେ ହେବୁଁ ଭିନ୍ନ ଭିନ୍ନ,
ତା'ପାଇଁ ଚିନ୍ତିତ ଏତେ !
କର୍ତ୍ତବ୍ୟ ସାଧନେ ମୋକ୍ଷଲାଭ ଲାଗି
ପ୍ରତିଆଶୀ ପରସ୍ପରେ,
ସୂତ୍ରେ ମଣିମାଳା ଭଳି ଛନ୍ଦା ସିନା,
କେ କା'ର ଛିଣ୍ଡିଲା ପରେ ?
ରାଜା ଅଶ୍ୱପତି- ଗୃହିଣୀ ତୁମ୍ଭେ ଗୋ,
ରାଜ୍ୟ ପାଟେ ପାଟ-ରାଣୀ,
ଦୁର୍ବଳତା ତେଜି କର ନିଜ କୃତ୍ୟ
ଜଗତ ଅସାର ଜାଣି।"

ରାଜ-ବାକ୍ୟେ ରାଣୀ ଦୀର୍ଘଶ୍ୱାସେ ଏକ
ସମ୍ବରିଣ ମନୋବ୍ୟଥା
ନୀରବ ନିଶ୍ଚଳ ରହି କେତେକ୍ଷଣ
ପୁଣି ଆରମ୍ଭିଲେ କଥା-
"ପଦେକ କହିବି ଶୁଣ ନରନାଥ,
କନ୍ୟା ବୁଲି ଦେଶ ଦେଶ
କିପରି ଖୋଜିବ ନିଜ ଯୋଗ୍ୟ ପତି,
ଚିନ୍ତା ଲାଗେ ସବିଶେଷ।"
"ଅପତ୍ୟ ବାତ୍ସଲ୍ୟେ କ୍ଷୁଦ୍ର ମଣ ତାକୁ"
କହିଲେ ଉତ୍ତର ନୃପ,
"ଜ୍ଞାନଭଣ୍ଡାର ସେ, ଅନପ ବୟସେ
ପଢ଼ିଅଛି ଶାସ୍ତ୍ରସ୍ତୂପ।
ସୁବିବେକବତୀ, ସୁଗମ୍ଭୀରା ଧୀରା
ପ୍ରବୀଣାଙ୍କ ବୁଦ୍ଧିଜିଣା,
ସରସ୍ୱତୀ ଯଦି ନୁହେଁ ମୋ ସାବିତ୍ରୀ
ନିଶ୍ଚେ ବାଣୀ-ପୂତ-ବୀଣା।
ବିଦୁଷୀ, ସୁରଭି, ଜନପ୍ରଶଂସିତା,
ଅନିନ୍ଦିତା ପୁଣ୍ୟମତି,
ଏ କାର୍ଯ୍ୟେ ନିଯୋଗ ଲାଗି ପାତ୍ରମିତ୍ରେ
ଦେଉଛନ୍ତି ସନମତି।

ବୃଦ୍ଧ ମନ୍ତ୍ରୀ ଆମ୍ଭ ଯିବେ ସଙ୍ଗତରେ
ପ୍ରାଚୀନ ସଦସ୍ୟେ ଘେନି,
ବାସନ୍ତୀ, ମାଧବୀ ଯିବେ ଗୋ ଗହଣେ,
ଯିବେ ରମା, ଉମା ବେନି।
ଦେଶାଟନେ କଷ୍ଟ ନୋହିବା କାରଣ
କିହିଅଛୁଁ ଆୟୋଜନ,
ଦେଶଭ୍ରମଣେ ସେ ଜ୍ଞାନ ତ ଲଭିବ,
ସଙ୍ଗେ ଘେନି ବିଦ୍ୱଜ୍ଜନ।"
"ଯାହା ଇଚ୍ଛା ତମ ସମ୍ବାଦ ହେ ନାଥ,
ତହିଁ ମୋର ମହାନନ୍ଦ,
ସୁଜ୍ଞାନ-ସମ୍ପଦେ କେ ବା ତୁମ୍ଭ ପରି,
ମୋ' ଧର୍ମ ସେବା ଶ୍ରୀପଦ।"
"ସାଧୁ ସାଧୁ ଦେବୀ ! ଶୁଭାନୁମୋଦନ
ପ୍ରତୀକ୍ଷାରେ ଥିଲି ଚାହିଁ,
ତୁମ୍ଭ ସାହଚର୍ଯ୍ୟ ବିନା କେଉଁ କାର୍ଯ୍ୟ
କରିଛି କି କେବେ କାହିଁ ?
ତୁମ୍ଭ ଅଜଣାରେ କରମ କରିଣ
ହେବି ଶେଷେ ଶାସ୍ତ୍ରଦ୍ରୋହୀ,
କୁପଥେ କିପରି ନେବି ବା ତୁମ୍ଭକୁ
ତୁମ୍ଭ ଆଦରଣ ହୋଇ ?"



# ଦ୍ୱିତୀୟ ସର୍ଗ

ଦିନେ ସନ୍ଧ୍ୟାଗମେ ସାରି ସ୍ନାନବିଧି
କେମା ଅଗ୍ନି-ଆୟତନେ
ପୂଜା ସାରି ଶୁଚି- ପ୍ରସାଦ ପ୍ରଧୂନ
ଘେନିଲେ ଭକତିମନେ।
ଦେବ ବିତାନରୁ ବାହାରି ବରାଙ୍ଗୀ
କାଚି ଦିଶେ ଊର୍ଜ୍ଜସ୍ୱଳ,
ମର୍ତ୍ତ୍ୟର କୁସୁମ ନୁହେଁ ଅବା ବାଳା,
ସ୍ୱରଗର ଶତଦଳ।

ଶୁଚି ଶୁଭ୍ରବାସ ଆବରି ବରାଙ୍ଗେ
ଜିତଘନ ମୁକ୍ତକେଶୀ
ଦିଶେ ସ୍ୱୟଂ ଦେବୀ ବରଦା ଉଭା କି,
ଅବା ସ୍ୱାହା ଅଗ୍ନିବେଶୀ।
ଉଜ୍ଜ୍ୱଳ ଲୋଚନେ କଜ୍ଜଳରେଖା ସେ
ଜ୍ୟୋତିଃ ପାଶେ ତମ ସରି,
ନୁହଇ ଲୋଚନ, ଉଭା କି ମରତେ
'କରୁଣା' ମୂରତି ଧରି।

ଶଶାଙ୍କରେ ଅଙ୍କ ଅଙ୍କା ସରି ଶୋଭେ
ମୃଗମଦ ବିନ୍ଦୁଭାଲେ,
ଚନ୍ଦନଚର୍ଚ୍ଚିତ ବରକଳେବରା
ଦୀପ୍ତ ମଣିଜ୍ୟୋତିଜାଲେ ।
ଘରନ ସୁଚିକ୍କ ଶାଳ ଲତା ଅଙ୍ଗୁ
ଜ୍ୟୋତି କି ବାହାରେ ଫୁଟି,
ସନ୍ଧ୍ୟା ମୃଦୁଛାୟା ଭେଦି ଅଗ୍ରସରେ
ଅନ୍ଧାର କି ଯାଏ ଛୁଟି !
ପ୍ରବାଳମାଳିକା- ଅଧର ବିମ୍ବ କି
ତୂଳିକାରେ ଲେଖା ଗଲି,
ଢଳିଥିଲା ସମ କଳା ଅଳିଶ୍ରେଣୀ
ମୁଖପଦ୍ମେ ଭ୍ରୁରୁ ଛଳି !
ଶ୍ରୀକରକମଳେ ଲଳିତ ସୁମନ,
ଶୋଭା ସେ ନୁହଇ କଳି,
ମରାଳଗାମିନୀ ମଞ୍ଜୁ ମୋତି ମତି
ଚାଲେ ସୁବଙ୍କିମେ ଚଳି ।
ପିତୃ ପଦତଳେ ଅରପିଣ ଫୁଲ
ନମିଲା ଭକତିଭରେ,
ସ୍ନେହାର୍ଦ୍ର ନୟନେ ରାଜା ଅଶ୍ୱପତି
ଅନାଇଲେ ମୁଖେ ଥରେ ।
ଝଟକ ହାଟକ ଦେବୀ ପ୍ରତିମା କି
ସୁରଭି ମୂରତି ମତି,
ନିଦାଘ ତପନ ସମ ଦିବ୍ୟତେଜଃ
ପ୍ରଭାସ୍ୱାନେ ଜ୍ୟୋତିଷ୍ମତୀ ।
କରୁଣଲୋଚନା ଦୟାଶୀଳଚିତ୍ତା
ସୁକେଶୀ ଜଳଦପତି
ହିମବିନ୍ଦୁସ୍ନାତ ତରୁମୂଳେ ଝରା
ଶେଫାଳୀ ସୌରଭବତୀ ।
ଅବା ସେ ହେମନ୍ତ- ନିଶାନ୍ତେ ଫୁଟନ୍ତା
ନବୀନ ନଳିନ-କଢ଼ି,
ବାଳାର୍କ-କନକ- କିରଣ ରେଖା କି
ବଦନେ ରହିଛି ପଡ଼ି ।

ଶିଶିର-ପ୍ରଭାତ- ଶତବର୍ଣ୍ଣ ଶୋଭା
କଳଧୌତ କାନ୍ତିହର,
ଶୋଭାସଦନାର ଶରୀର ସୁକାନ୍ତି
ତହୁଁ ବଳି ମନୋହର ।
କ୍ଷୋଭ ରାଜାମନେ ଭଜିଲା ସହସା-
ଏପରା ତନୟା ସମ,
ବର ନ ମିଳନ୍ତେ ବର ଅନ୍ୱେଷଣେ
କରିଯିବ ଦେଶାଟନ ।
ନୁହେଁ ତ ଦୁର୍ବଳ ହୃଦୟ ତାଙ୍କର
ଯୋଗବଳେ ବଳବାନ,
ସହସା ସହସ୍ର ଶୋକ ମାରି ମନେ
ଅର୍ପିଲେ କର୍ତ୍ତବ୍ୟେ ପ୍ରାଣ ।
ନିବଦ୍ଧଅଞ୍ଜଳି ବାଳାକୁ ସମ୍ବୋଧି
କହିଲେ କୋମଳ ଗିର,
"ଧର୍ମବିଧି ସବୁ ଜାଣୁ ତୁହି ବତ୍ସେ,
ପ୍ରଥା ଯେ ଆମ୍ଭର ଚିର ।
ଜାଣୁଁ ଆମ୍ଭେ ତୋର ବିଦ୍ୟା ବୁଦ୍ଧି ଗୁଣ,
ପ୍ରଶଂସା କି ପ୍ରୟୋଜନ ?
ମହତ କରମ ଏକ ଆଜି ତୋତେ
କରୁଅଛୁଁ ଅରପଣ ।
ଜାଣୁ ବତ୍ସେ ତୁହି, ନିନ୍ଦନୀୟ ପିତା
ଯା ଗୃହେ କୁମାରୀ ସୁତା,
ହେଳାଭାବେ ତାକୁ ନ କରେ ସମୟେ
ଗୁଣବାନ ପାତ୍ରଯୁତା ।
ନିନ୍ଦନୀୟ ସେହି ସନ୍ତାନ ଯେ ତାର
ଜନକ ମରଣ ପରେ
ବିମୁଖ ଜନନୀ- ପାଳନେ, ତ୍ରିକାଳେ
ଗତି ତାର ନରକରେ ।
ଦାର ପରିଗ୍ରହେ ନରପତି ଯଦି
ନ ବଳାନ୍ତି ନିଜ ମନ,
ନିନ୍ଦନୀୟ ସେହି, ବିୟୋଗାନ୍ତେ ତନୁ
ଶୂନ୍ୟ ରହେ ସିଂହାସନ ।

ପୂଜ୍ୟପାଦ ଆର୍ଯ୍ୟ- ଋଷିବୃନ୍ଦଗିର
ହେଲା କି କରିବୁଁ ମନେ,
ନ ପାଇଲୁଁ ଯେଣୁ ଯୋଗ୍ୟ ବର ତୋର
ଶାନ୍ତି ନ ଲଭୁଛୁଁ କ୍ଷଣେ।
ଦିବାନିଶି ଆମ୍ଭ ଚିନ୍ତା ତୋହଲାଗି,
ମନରେ ବିଚାରୁଁ ଏବେ,
ନିଜ ପତି ନିଜେ ବରି ତ ପାରିବ
କନ୍ୟା ଗୁଣବତୀ ଯେବେ।
ସ୍ୱୟଂବର ପ୍ରଥା ଧର୍ମ କ୍ଷତ୍ରକୁଳେ,
ଶ୍ରେଷ୍ଠ ରାଜସୁତାଗଣ
କରିଥିଲେ ପତି ନିଜ ବୁଦ୍ଧି ଜ୍ଞାନେ,
ରୀତି ଏ ତ ପ୍ରଚଳନ।
ମା ତୁହି ଧାର୍ମିକା ସୁଶୀଳା ଜାଣି ଲୋ,
ଆଦେଶୁଛୁଁ ତୋତେ ଆଜି,
ବର ନିଜ ପତି ସ୍ୱଚ୍ଛନ୍ଦେ ସୁମନେ
ଭ୍ରମି ଜନପଦରାଜି।
ବରିବୁ ତୁ ଯାକୁ ସାନନ୍ଦେ ଆମ୍ଭେ ଗୋ
ବରିବୁଁ ଜାମାତୃପଦେ,
କରିଛୁଁ ସିଦ୍ଧାନ୍ତ ଚିନ୍ତି ବହୁଦିନ
ଯୋଗ୍ୟା ତୁ ସ୍ୱନିରବନ୍ଧେ।
ସଖୀ ଚେଟୀ ମେଳେ ହୁଅ ଗୋ ବାହାର
ଶୁଭଦିନେ ଆଜ୍ଞାମତେ
ଗୁରୁଦେବଙ୍କର, ବୃଦ୍ଧ ମନ୍ତ୍ରୀ ପାତ୍ର
ପ୍ରବୀଣା ଯିବେ ସଙ୍ଗତେ।
ଭ୍ରମିବୁ ହରଷେ ନାନା ଦିଗଦେଶ,
ତୀର୍ଥ ଦରଶନ ଶେଷେ
ଅଭୀଷ୍ଟ ସିଦ୍ଧିରେ ତୁରନ୍ତେ ବାହୁଡ଼ି
ଆସି ପହଞ୍ଚିବୁ ଦେଶେ।
କରିବା କାରଣେ ଇଚ୍ଛାମତ କର୍ମ
ଦେଲୁଁ ଆମ୍ଭେ ଅନୁମତି,
ଧର୍ମନେତ୍ରେ ହୀନ ତୋ କାର୍ଯ୍ୟେ ମାଆ ଲୋ,
ନୋହୁ ରାଜ୍ୟ ଅଶ୍ୱପତି।

ଏପରି ଜନକୁ ବରିବୁ ଲୋ ଜେମା,
ଦେବେ ନ କରିବେ ରୋଷ,
ନୋହିବୁଁ ପତିତ ଅଧରମ ହେତୁ,
ନରେ ନ ଧରିବେ ଦୋଷ।''
ନତନେତ୍ରେ ଜେମା ଯୋଡ଼ି କରଯୁଗ
କହିଲେ ''ତଥାସ୍ତୁ'' ଧୀରେ,
ଆଶୀର୍ବାଦ ଶତ ଜଗୁଁ ଜଗୁଁ ରାଜା
ହସ୍ତ ଅରପିଲେ ଶିରେ।
ଲଗିଛନ୍ତି ଜେମା ରାଜ-ଅନୁମତି
ଯିବେ ବର ଅନ୍ୱେଷଣେ,
ହେଲା ପ୍ରଚାରିତ କ୍ଷଣେ ଅନ୍ତଃପୁରେ
ଦାବାନଳ ଯଥା ବନେ।
କିଛି ନ କହିଲେ ସ୍ନେହଶୀଳା ମାତା
ଗଣ୍ଡ ପାଣ୍ଡୁ ଗଲା ଦିଶି,
ପୁଣି ପରକ୍ଷଣେ ଜେମା ବିଭା କଥା
ସୁଖ ଗଲା ଦୁଃଖେ ମିଶି।
ମନେ ମନେ କେତେ ଡାକିଲେ ଦେବତା,
ସାବିତ୍ରୀ ଲଭୁ ମୋ ବର,
ନ ଥାନ୍ତୁ ସେପରି ତ୍ରିଭୁବନେ କେହି
ଗୁଣବାନ ଶ୍ରେଷ୍ଠ ନର।
ହେଉ ସେ ନିଜର ତୁଲା ନିଜେ, ଆନ
ନ ଥାଉ ତା ପଟାନ୍ତର,
ତଥାପି ଜେମାର ଭବିଷ୍ୟ ବିଚ୍ଛେଦ
ଭାବି ଅନ୍ତର କାତର।
ବହୁ ତପସ୍ୟାର ଫଳ ସେ ନନ୍ଦିନୀ
ନେତ୍ରମନବିନୋଦିନୀ,
ଦେବୀଦତ୍ତା, ଦେବୀ କୃପା କରି ଏବେ
କରନ୍ତୁ ଗୋ ସୌଭାଗିନୀ।
ଯା ନାମ ସ୍ମରଣେ ଆଣିବା କାରଣ
ସାବିତ୍ରୀ ବହିଲେ ନାମ
ସେ ଦେବୀ ଏକ୍ଷଣେ ବରଦାରୂପିଣୀ
ପୂରାନ୍ତୁ ଗୋ ମନସ୍କାମ।

ପ୍ରଭାତିଲା, ରାତି, ବାହାରିଲେ ହେମା
ସଖୀବୃନ୍ଦ ସଙ୍ଗେ ମିଳି,
କାନ୍ଦିଲେ ନୀରବେ ରାଣି କଉଶଲ୍ୟା
ହୃଦୟ-କବାଟ କିଳି।
ହେମା ପଥେ ବିଘ୍ନ ହେବ ଭାବି ଭୟେ
ନେତ୍ରୁ ନ ବୁହାଇ ବାରି
ଉପାଧାନେ ମୁଖ ହେମ ପଲଙ୍କରେ
ଗୁଞ୍ଜିଲେ ମନକୁ ମାରି।
ସେ ତ ଥିଲେ ଦିନେ ମାତାଙ୍କ ନନ୍ଦିନୀ
ପିତୃଚିତ୍ତ ପ୍ରହ୍ଲାଦିନୀ,
ବିବାହାନ୍ତେ ପୁଣି ପତିନିକେତନେ
ହେଲେ ସ୍ୱାମୀସୁହାଗିନୀ
ହେମା ମଧ୍ୟ ତାହା ହୋଇବା ବିହିତ,
କରିବେ କିମ୍ପା ସେ ଦୁଃଖ,
ନ ବୁଝି ତଥାପି ମନଟା କିଜାଣି
କିମ୍ପାଇଁ ବିଷାଦେ ମୂକ ?
ଯାଇନାହିଁ ହେମା ଶ୍ୱଶୁର ଘରକୁ,
ଯାଇଛି ତ ଦେଶ ଭ୍ରମି,
କି କରିବ କହ ସମ୍ପ୍ରଦାନ ଅନ୍ତେ
ତା'ର ଦୁଃଖିନୀ ଜନନୀ ?
ଆନ୍ଦୋଳି ଗୋପନେ କେତେ କଥା ମନେ
ମଉନେ ରହିଲେ ରାଣୀ,
ଶୁଦ୍ଧାନ୍ତେ ଦିନାନ୍ତେ ରାଜା ପ୍ରବେଶନ୍ତେ
ମୁଖ ଦେଖି ନେଲେ ଜାଣି।
"କହ କି କାରଣେ ଶୋକ କର ରାଣୀ,
ଏତ ଅତି ଅନୁଚିତ",
ରାଜାଙ୍କ ବଚନେ ସଲଜ୍ଜେ କହିଲେ,
"ଶୋକ ମୁଁ କରୁ ନାହିଁ ତ।
ନିତି ଥାଏ ପାଖେ, ଲାଗେ ଏକା ଏକା,
ତେଣୁ ମନେ ଏହି ଦୁଃଖ,
ଝିଅ ଘରେ କିଏ ରଖିଛି କି ନାଥ,
ହେବି କିମ୍ପା ଅନିଚ୍ଛୁକ ?
ସୃଜିଛି ବିଧାତା ପରଘର ପାଇଁ,
ମୋ ନିଜ କଥାକୁ ଭାଳି
ମନ କଷ୍ଟ ମନେ ରହିଛି ମାରିଣ
ବୃଥା ନେତ୍ରବାରି ଢାଳି।"
"ସତ୍ୟ ସତ୍ୟ ଦେବୀ ! ତୁମ୍ଭ ଯୋଗ୍ୟ କଥା
ଶ୍ରବଣେ ତୋଷ ମୁଁ ଅତି,
ବହୁଭାଗ୍ୟ ମୋର ପତ୍ନୀରୂପେ ପ୍ରାପ୍ତ
ତୁମ୍ଭ ତୁଲ୍ୟ ଗୁଣବତୀ।
ତୁମ୍ଭ ଯୋଗୁଁ ଦେବୀ, କଠୋର ସାଧନା
ସଂଯମେ ଲଭିଛି ସିଦ୍ଧି,
ଧର୍ମପଥେ ଭାର୍ଯ୍ୟା ସହାୟ, ସେ ବିନା
ଦୈବ ଅନୁକୂଳ ବିଧି।"
ଏଣେ ହେମାମଣି ସଖୀଙ୍କ ଗହଣେ
ଶିବିକା ଆରୋହି ଭ୍ରମେ,
ଘନ ଘନ ମାତୃ- ମ୍ଳାନ ମୁଖଛବି
ଦିଶିଯାଉଥାଏ ମନେ।
କରୁଣ ନୟନ- ସ୍ନିଗ୍ଧ ଚାହାଣୀରେ
ଶୁଭାଶିଷ ଛଳେ ଚାହିଁ
କୋଳୁଁ କି ହେମାକୁ ବିଦାୟ ଦେବାକୁ
ମନ କରୁଥାଏ 'ନାହିଁ' !
ତଥାପି ହେମାର ମଙ୍ଗଳ ଭାବି ସେ
ପାସୋରିଣ ଥିଲେ ସ୍ନେହ,
ରହି ରହି ହେମା- ମନେ ପଡ଼ି ସବୁ
ଜଡ଼ ଭଳୁଥିଲା ଦେହ।
ସୁଗମ୍ଭୀରା ଯେଣୁ ଅନପହାସିନୀ
ସୁକାର୍ଯ୍ୟେ ନିହିତ ମନ,
ଭ୍ରମେ ଦିଶେ ଦିଶେ ନାନା ଜନପଦେ
ତୀର୍ଥରାଜି ଅଗଣନ।
ଦେଶଭ୍ରମଣେ ତା ତୃପ୍ତ ଅତି ମତି
ନିରେଖି ପ୍ରକୃତି ଶୋଭା,
କିନ୍ତୁ କାହିଁ କେଉଁ ନର ତ ନୋହିଲା
ହେମାମଣି-ମନୋଲୋଭା।

ବାହାରିଣ ଘରୁ ଭ୍ରମିଲା କେତେ ସେ
ବନ ଗିରି ଜନପଦ,
ହିମ-ଉର୍ଜ୍ଜସ୍ୱଳ କାଶ୍ମୀର ଅଞ୍ଚଳ,
ଭବେ କି ସେ ବିଷ୍ଣୁପଦ !
ମରତେ ଅମରା- ବତୀ ଶୋଭାବତୀ
ନିବାସ ଲକ୍ଷ୍ମୀର ଯହିଁ,
ଚିର ନିକେତନ ରଚନା ମାନସେ
ସୁରଭି ଶିଶିର ତହିଁ ।
ଦ୍ୱନ୍ଦ୍ୱ ପରସ୍ପରେ ବିରଚି ବିଶେଷେ
ଶିରୀ ବଢ଼ାଇଲେ ବେନି,
ଏକ ଫୁଲ ଫଳେ ବିରାଜିଲା, ଆନ
ଶୋଭିଲା ତୁହିନ ଘେନି ।
ତହିଁ ନରପତି ବିଶାଳ ସମ୍ପତ୍ତି
ନ ରସିଲା ହେମା ମନ,
ଦିବ୍ୟ ମୁକ୍ତାଲୋଭୀ ଭୁଲିବ କି କାହିଁ
ଦର୍ଶନେ ଶିଶିର-କଣ ?
ହୃଦଶୋଭୀ-ସିନ୍ଧୁ- ନଦ ସୁପଦକ
ପଞ୍ଚହାର ପଞ୍ଚନଦ,
ରତ୍ନାକର ଯାର ଶ୍ରୀପଦ କିଙ୍କର
ରମ୍ୟ ଲବଣାମ୍ବୁ ହ୍ରଦ;
ଯହିଁ ବେଦମାତା ଦୃଷ୍ଟ ବେଦଗାତେ
ବିରାଜି ନରଦା ସମା,
ତହିଁ ନରପତି ସୁତେ ନ ରସିଲା
ମଦ୍ରଦେଶୀ ମନୋରମା ।
ହୀରା କାଚ ବେନି ମୂଲ୍ୟ ଯେ ବୁଝଇ
କାଚେ କି ଭୁଲିବ କେବେ,
ରୂପ ଚକ ଚକ, ଗୁଣର ପରଖ
ସଳିଳେ ବୁଡ଼ଇ ଯେବେ ।
ସରଯୂ-ସୁହାରୀ ଅଯୋଧ୍ୟା ନଗରୀ
ନିରିଖିଲେ କି ନାଜ ଶିରୀ,
ନବୀନ ନୃପତି ନରୋତ୍ତମ ରଣ-
କୁଶଳୀ ଦୁଷ୍ଟ ବଇରୀ ।

ପ୍ରତାପେ କମ୍ପଇ ବାସୁକିର ଶିରେ
ଅବନୀ ସାଗରାମ୍ବରା,
ମଦ୍ରମହୀମଣି ହେମା ମନ କିନ୍ତୁ
ନିମିଷେ ନ ଦେଲା ଧରା ।
ଜିଣି ନୀଳିମାରେ ଜୀମୂତ ପଟଳ
ଅଳକା ଅବଳା ଶିରେ,
ଚିତ୍ର ଶତପତ୍ର- ପ୍ରଫୁଲ୍ଲ ତରଙ୍ଗ
ଯମୁନା ବହଇ ଧୀରେ ।
ଦେବ ଉପବନ ସମ ବୃନ୍ଦାବନ
ମଥୁରା ତହୁଁକି ତୋରା ?
ନମିଳିଲା କିନ୍ତୁ
ସେହି ସେ ଖଣ୍ଡକେ
ହେମାମଣି ମନଚୋରା ।
ଜିଣି ଅବହେଳେ ଜାହ୍ନବୀ-ଜୀବନ-
ସିଞ୍ଚିତ ସୁଚାରୁ ମହୀ-
ନିବାସୀ ନରେଶ- ନନ୍ଦନନିକର
ବୃଥା ହତାଶ୍ୱାସେ ବହି
ଫେରିଲା ସୁଚାରୁ- ହାସିନୀ କଳିଙ୍ଗେ
ତ୍ରଇଲଙ୍ଗେ, ଅଙ୍ଗେ, ବଙ୍ଗେ,
ମିଶିଛି ଆଦରେ ଯହିଁ ଭାଗୀରଥୀ
ଲବଣାମ୍ବୁ ପତି ଅଙ୍ଗେ ।
ତହୁଁ ହରିଣାକ୍ଷୀ ଦକ୍ଷିଣେ ଭ୍ରମିଣ
କଙ୍କଣେ, ମାଳବେ ବୁଲେ,
ଗୋଦାବରୀ, ରେବା, କୃଷ୍ଣା ତଟଦେଶେ,
ବିନ୍ଧ୍ୟାଟବୀ ପାଦମୂଳେ ।
ଗୁର୍ଜ୍ଜରେ, ସୁରାଷ୍ଟ୍ରେ ସାରି ଦେଶାଟନ
ଫେରିଲା ଦକ୍ଷିଣାପଥେ,
କିନ୍ତୁ ଯୋଗ୍ୟ ପାତ୍ର ଏକ ନ ମିଳନ୍ତେ
ବିଫଳିତ ମନୋରଥେ ।
ବିଫଳ ଉଦ୍ୟମେ ବାହୁଡ଼ିବେ ଘରେ,
ନ ବରିବେ ହୀନ ବର,
ହେମାର ଅଭୀଷ୍ଟ ସିଦ୍ଧି ନୋହିଲାକୁ

ପାତ୍ରମିତ୍ରେ ହରବର ।
ଚିନ୍ତିଲେ ଅନେକ ସଚିବ ପ୍ରାଚୀନ
ବାଳା ଅତି ଅଦଭୁତ,
ଦେବୀକନ୍ୟା ପରା, ଯୋଗ୍ୟ ସେଥିପାଇଁ
ନୋହିଲେ କି ରାଜସୁତ !
ଦେବତା ମହତ ନିଶ୍ଚେ ପତି କେହି,
ଆସିବେ ସମୟେ ସେ ତ,
ଜେମାସମ ବର ନ ମିଳିବା ତେଣୁ
ବିଧାତାର ଅଭିପ୍ରେତ ।
ଦିନେ ପ୍ରାତଃ କାଳେ କହିଲେ ସଚିବ,
''ଅବଧାନ ଜେମାମଣି,
ସ୍ୱଦେଶେ ଏଥର ଫେରିବା, ଏବେ ତ
ଦେଶାଟନ ସାରିଲଣି ।''
''ଦେଖିନାହିଁ ବନ, ଉତ୍ସୁକ ମୋ ମନ
ବିନ୍ଧ୍ୟାଟବୀ ଦରଶନେ,
ଗିରି ଚିତ୍ରକୂଟ ଋଷିଙ୍କ ନିବାସ-
ପବିତ୍ର ମୁନି ଆଶ୍ରମେ
ଫଳମୂଳାତିଥି ହେବା ମୋ ବାସନା,
କହ ଏଥି କିବା ଦୋଷ ?
ଦେବପୂତ ଗୀତ ଋଷି ଶ୍ରୀମୁଖରୁ
ଶୁଣି ତ ଲଭିବି ତୋଷ ।''
ଏତେ ଭାଷି ଜେମା ନୀରବନ୍ତେ ବୃଦ୍ଧ
କହିଲେ ସମ୍ଭ୍ରମେ ଅତି,
''ହେବ ସାହସିନୀ ବନଭ୍ରମଣେ କି,
ନୋହିବ କି ଭୀତ ଅତି ?''
''ପବିତ୍ର ସେ ବନ ତୀର୍ଥଶିରୋମଣି,
ତୀର୍ଥ ଦରଶନ ଲାଗି
ପିତୃ ଅନୁମତି ଲଭିଅଛି, ତେଣୁ
ବାଞ୍ଛା ମୋ ନ ପାରେ ତ୍ୟାଗି ।''
କହିଣ 'ତଥାସ୍ତୁ' ପାତ୍ରମିତ୍ର ଆଦି
ବାହାରିଲେ ଭ୍ରମି ବନ,
ଖଣ୍ଡିମାରେ କେହୁ ବିଧିଲିପି କହ,
ହେଉ ସେ ମହାନ ଜନ ।
ସାବିତ୍ରୀ ସୁଶୀଳା ରାଜରଷିବାଳା
ଦେବୀ ସ୍ୱଭାବେ ସେ ପୂତା,
ବନର ନିସର୍ଗ ଛବି ଅବଲୋକି
ହେଲା ଅତି ହର୍ଷଯୁତା ।
ବନ ସେ ସୁନ୍ଦର ବନ ସେ ଉଦାର
ବନ ସେ ମହତ ଅତି,
ତରୁଲତା-ଜଟା- ଭାର ବହି ଶିରେ
ଉଭା ନଗ ବୃଦ୍ଧ ଯତି ।
ମଉନ ବରତେ ଅୟୁତ ଅୟୁତ
ବରଷ ତପିଛି ଗିରି,
ଜିଣିନାହିଁ ଇନ୍ଦ୍ର- ପଦ ଯଦି ହେଲେ
ଜିଣିଛି ଅମର-ଶିରୀ ।
ପ୍ରବାଦ ତ ଚିର- ବିସମ୍ବାଦୀ ନଗ-
ରାଜ ସ୍ୱର୍ଗରାଜ ବେନି,
ବିଚ୍ଛେଦି ଅଦ୍ରିର ପକ୍ଷ ସହସ୍ରାକ୍ଷ
ବିଭୀଷଣ ବଜ୍ର ଘେନି
ଅଚଳ ନାମ ତା ଚଳାଇଲେ ବଳେ
ବଳାରାତି ବସୁଧାରେ,
ଶୈଳେଶ୍ୱର ସୁତ ପଶିଲା ମୈନାକ
ଆତଙ୍କେ ବରୁଣାଗାରେ ।
ହିମ-ଉର୍ଜ୍ଜସ୍ୱଳ ବିଶାଳ ବପୁ ତା
ନିଜେ ଜଳଦଳପତି
ପାତାଳ ଗରଭେ ଲୁଚାଇ ଲଭିଲେ
ଭବେ ବିଶାଳ କୀରତି ।
କ୍ଷୋଭେ ଅଭ୍ରଭେଦୀ ଅଦ୍ରି ଅଦ୍ୟାବଧି
ସ୍ମରିଣ ପୁରୁବ କଥା
ତପୁଛି ଆତପେ, ନିର୍ଝର ପରାଏ
ଝରୁଛି ତା ହୃଦବ୍ୟଥା ।
ରୁକ୍ଷବକ୍ଷ ଶୈଳ ଶିଳା ପାଟ ତଳେ
ଝରିପଡ଼େ ସ୍ୱଚ୍ଛ ଝର,
ରୁକ୍ଷ ସିନା ଦେହ, ଅନ୍ତର ଭିତର

ସ୍ନେହେ ସ୍ୱତଃ ଜରଜର ।
କମ୍ବୁକମ୍ର କଣ୍ଠେ ଶାଣିତ ଛୁରିକା
ଭେଦି ନ ଲଭିଲା ବ୍ୟଥା,
ନିର୍ଝର ନିରେଖି ମନେ ପଡ଼େ ଦୁଷ୍ଟ
ଦସ୍ୟୁ ରତ୍ନାକର କଥା ।
ତୁଚ୍ଛ ଅର୍ଥ ହେତୁ ବାନ୍ଧିଲା ବ୍ରାହ୍ମଣେ
ଚୋର କଳଙ୍କିତ କରେ,
କ୍ରୌଞ୍ଚ ମିଥୁନର ବିଚ୍ଛେଦ ଦୁଃଖେ ତ
ତା ନୟନୁ ନୀର ଝରେ ।
କୈଳାସଶିଖରୁ ଜାହ୍ନବୀଜୀବନ
ଜିଣି ଯା ଶ୍ଳୋକଲହରୀ
ପ୍ଲାବିଲା ଭାରତ ଓହ୍ଲାଇ ତା କଣ୍ଠୁ
ପବିତ୍ର କାବ୍ୟଶିଖରୀ ।
କାହିଁ ସେ ବାଲ୍ମୀକି କବିକୁଳଗୁରୁ
ପକ୍ଷୀଗୁରୁ ପିକ ସରି
ଭାରତ ବସନ୍ତ- ମୁକୁଳିତ ଚୂତ-
କାନନକୁଞ୍ଜବିହାରୀ ?
ନୀରବ ସେ ବୀଣା- ନୀରବ ନୁହେ ତ
ଝର୍ଝରେ ବନ୍ଧୁର ଶୈଳ-
ଭାରତ ବିଦୀର୍ଣ୍ଣ ଶିଳାବକ୍ଷେ ସ୍ରୋତ
ରାମାୟଣ ଅନାବିଳ ।
ନିଭିଛି ଭାରତ- ପୂରୁବ ଗୌରବ-
ଜ୍ୟୋତି, ଏବେ ଅମାରାତି,
ଅତୀତ ସ୍ମରଣେ କି ଲାଭ ହେ କହ,
ଦୁଃଖେ ମାତ୍ର ଫାଟେ ଛାତି ।
ଯାଅ ଗୋ ଅତୀତ ସ୍ମୃତିପଟୁଁ ମୋର,
ଦେଖାଅ କେବଳ ଚିତ୍ରି
ମହନୀୟ ଦୃଶ୍ୟ ସେ ମହାବନର
ଭ୍ରମିଲା ଯହିଁ ସାବିତ୍ରୀ
ବନେ ଫୁଲଫଳ ରାଶି ରାଶି ଠୁଳ,
ବର୍ଣ୍ଣନା ହାରିଛି ତହିଁ,
ବିବିଧ ଶୋଭା ଗୋ ମେଳ ଏକାଧାରେ,
ଅଳକା କି ଶୋଭେ ମହୀ !
କାହିଁ ମାଳ ମାଳ ବନସ୍ପତିଦଳ
କାହିଁ ମାଳ ମାଳ ଲତା,
ଅତର ଅନ୍ଧାର ପୂରି ରହି କାହିଁ
ଗ୍ରାସାଉଛି ଆତ୍ମସତ୍ତା ।
ପ୍ରଶାନ୍ତ ସରସୀ- . ନୀଳ ବାରିରାଶି
ମଣ୍ଡିଛି ସୁମନବ୍ରଜ,
ବିମଳ କୋମଳ ମଳୟ ମାରୁତେ
ଉଡ଼ି ପଡ଼େ ଫୁଲରଜ ।
କାହିଁ ଗୁଣୁଗୁଣୁ ଗାଉଛି ଭ୍ରମର,
କାହିଁ ପିକ କୁହୁକୁହୁ,
କାହିଁ କାକସ୍ୱନ, ଝିଙ୍କାରୀ ଝଙ୍କାର,
କପୋତ କରୁଣ ହୁଁ ହୁଁ ।
ମେଳ ନଦୀକୂଳେ ନଦୀକୂଳବନ୍ଧୁ
ବକାବଳୀ ମାଳ ମାଳ,
ବୃକ୍ଷେ ତୀକ୍ଷ୍ଣଚଞ୍ଚୁ ବସିଅଛି ଶୁକ
ଆଶ୍ରିଣ ଶ୍ୟାମଳ ଡାଳ ।
କାହିଁ ବେତ୍ର ବନ କାହିଁ କିଆ କୁଞ୍ଜ
କାହିଁ ଚୂତ ତରୁବୀଥି,
କାହିଁ ନାଗଲତା ପୂଗ ଅଗଣରେ
ଜଡ଼ି ବଢ଼ାଉଛି ପ୍ରୀତି ।
ଜୀବନେ ମରଣେ ସାଥୀ ପରସ୍ପର
ଏ ସିନା ବିଶୁଦ୍ଧ ପ୍ରେମ,
ସରି କି ସଙ୍ଗତେ ତୁଳା ଲଭିବାକୁ
ରାଜକୋଷ ମଣି ହେମ !
ଶିମୁଳ, ପଳାଶ, ଶାଳ, କେନ୍ଦୁ, ଜାମୁ
ଫୁଲ-ପ୍ରଫୁଲ୍ଲିତ ଡାଳ,
କୁର୍ମ, ଦେବଦାରୁ, ଶିଶୁ, ପିଆଶାଳ,
ପଣସ ତ ମାଳ ମାଳ ।
କାହିଁ ବୃଦ୍ଧ ବଟ ଓହଳ ଗହଳେ
ଅନ୍ଧାର ରହିଛି ବାନ୍ଧି,
ପ୍ରାଚୀନ ଅଶ୍ୱତ୍‌ଥ ପିପ୍‌ପଳ କାହିଁ ବା

ପରସ୍ପରେ ବିସମ୍ବାଦୀ ।
ପତର ଶ୍ୟାମଳ ତେନ୍ତୁଳୀ ତରୁରେ
ଆସିଲାଣି ଫୁଲ ଫୁଟି,
ରଙ୍ଗଣୀ, ଅଶୋକ ବଢ଼ାଇଛନ୍ତି କି
ସ୍ନେହରଙ୍ଗ ଫୁଲ ମୁଠି ।
ଘନ ମହାବନେ ଶୁଭେ ଦୂରେ ଦୂରେ
ବ୍ୟାଘ୍ର ଭୀମ ଗରଜନ,
ଚଞ୍ଚଳେ ଚଞ୍ଚଳେ ପକାନ୍ତି କୁରଙ୍ଗେ
ସୁଚକିତ ସୁଲୋଚନ ।
ବହେ କ୍ଷୁଦ୍ର କ୍ଷୁଦ୍ର ଗିରିପାଦେ ନଦୀ,
ଜଳ ସ୍ୱଚ୍ଛ ହୀରାଧାରା,
ତୀରତରୁଦଳ- ଝରା ଫୁଲବ୍ରଜ
ଯତେ ନୀଳାକାଶେ ତାରା !
ଲୁଚି ବୃକ୍ଷକାଣ୍ଡେ ଖେଳୁଛି ଗୁଣ୍ଡୁଚି
ରମ୍ୟ ଲୁଚକାଳି କିବା,
ଅର୍ଦ୍ଧଭୁକ୍ତ ଫଳ ଖସିପଡ଼େ ମୁଖୁଁ,
ପକ୍ଷୀ ଗିଳେ ଟେକି ଗ୍ରୀବା ।
ବିସ୍ତାରିତ-ଛତ୍ର- ପତ୍ର-ଦଳଶିର
ତାଳ-ତଳେ ଭୀମ ଅହି
ଦୁଲେ ଫଣା ଟେକି, ତା ଅଦୂରେ ପୁଣି
କରୁଛି ନାଟ ବରହୀ ।
କି ଗରବୀ କେକୀ ପୁଚ୍ଛ ଉଚ୍ଚେ ଟେକି
ଦେଖାଉ କି ଚନ୍ଦ୍ର-ଶିରୀ,
ପାଦକୁ ଅନାଇ ମନ ମରୁଥାଇ,
ବିଧାତା ଏଡ଼େ ବଇରୀ !
କାହିଁ ବା ବିକଚ କମଳ କୁସୁମ-
କାନନଶୋଭିତ ସରେ
ଶଙ୍ଖ ମଳମଳ ହଂସୀ ଦଳଦଳ
ହଂସରାଜ କେଳି କରେ ।
ତୁଣ୍ଡ ମୁନେ ଟାଣି ମୃଣାଳ ସହସା
ପଡ଼େ ଘୋର ପରମାଦ,
ଅମୃତ ଭୋଜନୁଁ ଉଠେ କି ଉପାସୀ
ନ ପୂରୁଣୁ ମନ ସାଧ ।
ମହା କୋଳାହଳେ ପୂରାଇ ଦିଗନ୍ତ
ଦନ୍ତାବଳ ଦଳେଶ୍ୱର
ସରସେ ପଶିଣ ଦଳଇ ଦରପେ
ପଦ୍ମଦଳ ମନୋହର ।
ଉଡ଼ି ତ ପଳାନ୍ତି ହଂସ, ହଂସରାଳୀ
ବକାଳି, ବାଗିକୁକ୍କୁଟ,
ଆନନ୍ଦଅମୃତେ ନୈରାଶ୍ୟବିଷ କି
ମିଶାଇବା ବିହି କୂଟ !
ବାପୀତଟବନ ବଟବିଟପୀରେ
ବାୟସ, କଜ୍ଜଳପାତି,
କୋକିଳ, ମଇନା, ହଳଦିବସନ୍ତ
ନୀଡ଼େ କ୍ଷଣେ ଲୁଚିଯାନ୍ତି ।
ପ୍ରଶାନ୍ତ ପବିତ୍ର ବନ ଆଶ୍ରମର
ଦୂରୁଁ ଦିଶେ ନାରିକେଳ,
ଦ୍ରୁମଶ୍ରେଣୀ ଶୋଭା ବଂଶକୁଞ୍ଜ ଛବି
ନିମ୍ବ, ଆମ୍ବ ତହିଁ ମେଳ ।
ଚନ୍ଦନ ସୁବାସ- ବାସିତ କାହିଁ ବା
ବନାବଳୀ ମନୋହର,
ବଦରୀ, ଦାଡ଼ିମ୍ବ, ନୀପ, ନାରଙ୍ଗ ତ
କାହିଁ ବନ୍ଧୁ ପରସ୍ପର ।
ଦେଖୁଁ ଦେଖୁଁ କେମା ଭାବରେ ବିଭୋର
ପୁଲକାଶ୍ରୁ ନୟନରେ,
ମିଳିଲେ ଆସିଣ ପ୍ରାତେ ଦିନେ କେଉଁ
ଋଷି ପୁଣ୍ୟ ଆଶ୍ରମରେ ।
ଋଷିଆଶ୍ରମ ସେ ମରତେ ତ୍ରିଦିବ,
ପଙ୍କସରେ ପଦ୍ମ ଯଥା,
ହଜିଛି ତହିଁ କି ଶୋକ-ଦୁଃଖ-ତାପ,
କାମନା, ବାସନା ବ୍ୟଥା ।
ବନ ମଧ୍ୟେ ଅତି ବିସ୍ତୃତ ଭୂଖଣ୍ଡ
ପରିଷ୍କୃତ ପରିଚ୍ଛନ୍ନ,
କ୍ଷୁଦ୍ର କ୍ଷୁଦ୍ର କୁଟୀ ମୁନିଋଷିଙ୍କର

କି ପାବନ ଶୋଭାବନ !
ସ୍ୱଭାବେ ସନ୍ତୁଷ୍ଟ ତାପସ ତାପସୀ
ସଂଯମୀ ସୁଧୀର ଶାନ୍ତ,
ପୁଣ୍ୟଶ୍ରୀ ବିସ୍ତାରି ଆବାସ ତାଙ୍କର
ଶୋଭିଛି କି ବନପ୍ରାନ୍ତ !
ସରସ କୁସୁମ ଫଳ ପର୍ଣ୍ଣେ ପୂରି
ସରସ ପାଦପପନ୍ତି,
ସୁଷମା ନିରେଖି ମନେ ହୁଏ ସତେ
ସ୍ୱୟଂ ଲକ୍ଷ୍ମୀ ନିବସନ୍ତି ।
ତୃଣ ଆସ୍ତରଣେ ଚରେ ମୃଗଶିଶୁ
ମେଷଶିଶୁ ବତ୍ସତରୀ,
କାହିଁ ତୃଣ ମୁଖେ ଦିଏ ଶାବକର
ମୁନିକନ୍ୟା କରେ ଧରି ।
ସ୍ୱଭାବେ ସରଳା ତାରବ-ବଳ୍କଳା
ଅଳଙ୍କାରଶୂନ୍ୟ-ବେଶୀ,
ମଣ୍ଡି ଫୁଲମାଳେ କଳେବର କାନ୍ତି
ବଢ଼ାଇଛି ମଞ୍ଜୁକେଶୀ ।
ତାପସୀ ତରୁଣ ପଶିଣ ଉଦ୍ୟାନେ
ତୋଳୁଛନ୍ତି ପୂଜାଫୁଲ,
ହୋମପୂତ ଗନ୍ଧ ମିଶଇ ସମୀରେ,
ସେ କି ପୁଣ୍ୟାମୃ ତୁଳ !
କାହିଁ ବୃଦ୍ଧ ଯତି ଧ୍ୟାନମଗ୍ନ ଯୋଗୀ
ନେତ୍ର ବେନି ନିମୀଳିତ,
କାହିଁ ବା ତାପସ ମାଳା ଜପି ଜପି
ସ୍ତୋତ୍ରପାଠେ ଅବହିତ ।
ନିରେଖୁଁ ନିରେଖୁଁ ଇଚ୍ଛିଲା ସାବିତ୍ରୀ
ଅନ୍ତରେ ଆଶ୍ରମ ବାସ,
ଇଚ୍ଛିଲା ବଳ୍କଳ- ବସନେ ନାଶିବ
ଅଙ୍ଗୁ ଅଳଙ୍କାର ପ୍ରାସ ।
ପିନ୍ଧି ଫୁଲଭୂଷା ଫୁଲରାଣୀ ପରି
ପ୍ରାତଃ ସନ୍ଧ୍ୟା ଦେବାର୍ଚ୍ଚନେ
କଟାଇବ ଦିନ ବାସନା ପ୍ରବଳ
ଉଠିଲା ତାହାରି ମନେ ।
ତେଜିଣ ଶିବିକା ପଡ଼ିଲେ ଓହ୍ଲାଇ
ସଖିମେଳେ ରାଜସୁତା,
ପିଞ୍ଜର ପକ୍ଷୀ କି ଆଜି ଏତେଦିନେ
ହୋଇଲା ବନ୍ଧନମୁକ୍ତା !
ବୁଲି ବୁଲି ବନ- ଶୋଭା ଦେଖିବାର
ଉଦେ ମନେ ଅଭିଳାଷ,
ସଚିବ ସାମନ୍ତ ବସି ବୃକ୍ଷମୂଳେ
କଲେ ସୁଖେ ଶ୍ରମ ନାଶ ।
ମାଧବୀ, ମାଳତୀ, ରମା, ଉମା ସଖୀ-
ଚତୁଷ୍ଟୟ ସଙ୍ଗେ ଘେନି
ଭ୍ରମନ୍ତି ସାବିତ୍ରୀ ଏଣେ ତେଣେ ଯଥା
ଭ୍ରମିଥିଲେ ଯାଜ୍ଞସେନୀ ।
ପାଣ୍ଡବଙ୍କ ମେଳେ ବୁଲିଥିଲେ ସେହି,
ଏ ବୁଲନ୍ତି ସଖୀମେଳେ,
ନୀରଦବରଣା ଯାଜ୍ଞସେନୀ ଏ ତ
ସୁରତ୍‌ଶମ୍ପା ଗତିବେଳେ ।
ପ୍ରଫୁଲ୍ଲ-କମଳ- କୋମଳବଦନୀ
କୁନ୍ଦକଳି-ସୁରଦନୀ
ସ୍ମିତ ମୁଖେ ସୁଖେ ଚିହ୍ନାନ୍ତି ସଖୀଙ୍କି
ବୃକ୍ଷଲତା ଅଗଣନା ।
ଅଶେଷ ବିଜ୍ଞାନ- ଜ୍ଞାନେ ସୁପଣ୍ଡିତା
ସୁରଭି ନାରୀଲଲାମ
ବଖାଣନ୍ତି ସଖୀ- ବୃକ୍ଷ ସମୀପରେ
ଫୁଲ ଫଳ ପର୍ଣ୍ଣ ନାମ ।
ସ୍ୱଭାବେ ବସନ୍ତ ସୁକାନ୍ତ ପ୍ରଶାନ୍ତ
ରଞ୍ଜିଛି ସେ ବନସ୍ଥଳୀ,
ଫୁଟିଛି ତେଣୁ କି ଗଞ୍ଜି ଶୋଭାରାଣୀ
ନନ୍ଦନର ଶୋଭାବଳୀ !
ଫୁଲ୍ଲ ନାଗେଶ୍ୱର କେଶର ବିକାଶ
ହେବ ହର-କରୀ ଅବା,
ହରି-ହୟ ପ୍ରିୟ ପାରିଜାତ ଜିଣି

ମୁଣ୍ଡରେ ମଞ୍ଜୁଳ ଜବା ।
ଜଗତଜନନୀ- ରଞ୍ଜିତ ରାଜୀବ
ଯୁଗଳ ଚରଣ ତଳେ
ସେବା ଅଧିକାର ଲଭି କି ମନ୍ଦାର
ବର୍ଣ୍ଣ ବଢଭବେ ଝଳେ !'
ଶୋକନାଶୀ ଶୁଚି- ପୁଷ୍ପପୁଞ୍ଜେ ମଞ୍ଜୁ
ଅଶୋକ କି ରକ୍ଷି ସରି,
ଦୟାବତୀ ନେତ୍ର- ନୀରବିନ୍ଦୁ ଅବା
ବକୁଳ ମୂଳେ ସେ ଝରି !
ବସନ୍ତରସିକ ପିକ ପିକବଧୂ
କେଳିକୁଞ୍ଜ ସହକାର
ନବ ସୁପଲ୍ଲବ ବଲ୍କଳ ବସନେ
ବନ୍ଦେ ପାଦ ବିଧାତାର ।
ମଞ୍ଜୁ ଗୁଞ୍ଜରଣେ ଗୁଞ୍ଜି ମଧୁବ୍ରତ
ପ୍ରଚାରେ କି ମଧୁ ଯଶ,
ମଳୟ ମାରୁତେ ମାଧବୀ ନିଆଳୀ
ଫୁଟି ମୁଖ ହସହସ ।
ନିକାଞ୍ଚନ ବନ- ଶୋଭିତ ଆଶ୍ରମେ
ଉଭା ସତେ ଶୋଭାରାଣୀ,
ଭୋଳ ହେମାମଣି ସେ ଶୋଭା-ସୁଧାରେ
ନିଜର ଶୋଭା ନ ଜାଣି ।
ବସନ୍ତ-ବସନ ଫୁଲଜରିଦିଆ
ପିନ୍ଧିଛି କି ବର ଅଙ୍ଗେ,
ଦିନାନ୍ତ-ରଞ୍ଜିତ ବାରୁଣୀ ଗଗନ-
ଝଲକ କି ଫୁଲ ରଙ୍ଗେ !
ନୀଳ ମେଘେ ରମ୍ୟ ଇନ୍ଦ୍ରଚାପ ସରି
ପତ୍ରଦଳେ ଫୁଲହାର,
ଧାତକୀ ତିନେଇ ଧଳା ପାଟଳିମା
ମିଶି ରଙ୍ଗ ଏକାକାର ।
ଜଳେ ସ୍ଥଳେ ପଦ୍ମ ଫୁଟଇ, ଏକାଳେ
ଆକାଶେ ଫୁଟିଛି ଅବା,
ଉଜ୍ଜ୍ୱଳ ଉଜ୍ଜଳ, ଶିମୁଳ, ପଳାଶ
ଶିରେ ବହି ଫୁଲଗଭା ।
ପୀତ ଗନିଆରୀ କାଞ୍ଚନ ସୁନାରୀ
ସୁନାଶିରୀ ଫୁଲଝରା,
ସୁନାସୀର-ପଦ- ସାର ପଦ୍ମସମା
ସୁନାରୀ ରୂପପସରା ।
ଶଚୀ ଶୋଭାବୀଚି ରାଗସାଗରର
ଗୁଚି ପାରିଜାତେ ଯାର
ତା ବରାଙ୍ଗ ରଙ୍ଗ ଦରପ ଭଙ୍ଗାଇ
ବୋଲାନ୍ତି ସେ ସୁନାହାର
ବାତାବୀ ବାସଙ୍ଗ ଲଭି ମଧୁସଙ୍ଗ
ଫୁଲେ ଦିଶୁଛନ୍ତି ଡୋରା,
(ସେ କି) ମାଧବ ବରାଙ୍ଗେ ଫୁଲ ଶୋଭା-ଅଙ୍ଗୀ
ରାଈମଣି ଚମ୍ପାଗୋରା !
ଫୁଲ୍ଲ ଶୋଭାଞ୍ଜନ ପ୍ରସୂନ ଶୋଭାରେ
ବିକସୁଛି ଫୁଲଚୂର୍ଣ୍ଣ,
ଦାସୀ ସହଚରୀ ଫୁଲବେଶେ ଏବେ
ସଜାଡ଼ନ୍ତି ବନଭୂଇଁ ।
ପଲ୍ଲବପାଟଳ କାନନ ଶୋଭାରେ
ପାଟଳୀ ମିଶିଛି ପୁଣି,
ପତରେ ପତରେ କୁଞ୍ଜେ କୁଞ୍ଜେ ଆହା
ଫୁଲ କେ ଦେଇଛି ବୁଣି ?
ବନଭୂମି ଅନ୍ତେ ଆଶ୍ରମସରଣୀ,
ବେନିପାଶେ ଫୁଲକୁଞ୍ଜ,
ସେବତୀ, ରଙ୍ଗଣୀ, କାମିନୀ, କରବୀ,
ତରାଟ, ତୁଳସୀପୁଞ୍ଜ ।
ଫୁଲ ପେନ୍ଥା ପେନ୍ଥା ନଇଁ ସେ ଓହଳି
ଛୁଇଁ ଛୁଇଁ ପଡ଼େ ଡାଳ,
କଣ୍ଟା ଫୁଲ ବେନି ଘେନି କୁରୁବକ
ବାଡ଼ କରେ ମାଳମାଳ ।
ତା ସଙ୍ଗେ ସଙ୍ଗାତ ନିମ୍ବ, ଆଷାଢୁଆ
ପିନ୍ଧି ଫୁଲ ଧଳା ଧଳା,
ବରକୋଳି, କେନ୍ଦୁ, ଜାମୁ, ଆମ୍ବ ଗଛ

ତାଳେ ଛନ୍ଦି ଛନ୍ଦି ଗଳା ।
ପକ୍ୱ ଫଳ ଧରି କେ ବଡ଼ ସୁହାଗୀ
ଧରିଛି କେ ଫଳ କସି,
ନିଜ ଶୋଭା ଅଙ୍କ ମନୋଜ୍ଞ ଭାବିଣ
ଅପରେ ଅଛନ୍ତି ରସି ।
ଖରା ଝିକି ଝିକି ମାରୁଛି ପତରେ
ଫୁଲୁଁ ଖସେ ହିମହାର,
ଠାବେ ଠାବେ ଆହା ନଇଁଛି ଭଇଁଚ
ନ ସହି ପତରଭାର ।
ଏ ଗଛୁଁ ସେ ଗଛୁଁ ସିନ୍ଦୂରମୁଣ୍ଡୀ କି
ଉଡ଼ିବୁଲେ ରାବି ରାବି,
ଗୀତ କି ଗାଉଛି ହଳଦୀବସନ୍ତ
ବସନ୍ତ ବନ୍ଦନା ଭାବି !
ମୁନିଟି ପରାଏ ଆଖି ମୁଦି ଶୁଜ
ଜାଗ୍ରତେ ଶୋଇଛି ପରା,
ଆହାର ଖୋଜଇ ଏଣେ ତେଣେ ବଣି,
କାକ ଡାକିଉଠେ ତ୍ୱରା ।
ଖୁଣ୍ଟେ ଖୁଦକଣା ପୋଷା ପାରାବତ,
ବାଜଇ ଝୁମୁକା ପାଦେ,
ଅନୁକରି ପିକ- କୁହୁ କୁହୁ କିବା
ବୁଲେ ହର୍ଷେ ହୁଁ ହୁଁ ନାଦେ ।
ରୂପ ଗରବରେ ମୟୂର ମୟୂରୀ
ପୁଚ୍ଛ ଟେକି ଫରଫର,
ଘରଘଟିଆ ସେ ଏ ଗଛୁଁ ସେ ଗଛୁଁ
ଉଡୁଥାଏ ତରତର ।
ବାଆ ପାଣି କଲେ କି ଯାଏ ବାୟାର,
ବସା ତ ଝୁଲଇ ତାଳେ,
ପଲ ପଲ ହୋଇ ଉଡ଼ି ବସୁଛନ୍ତି
କି ଦକା ସଞ୍ଜେ ଏକାଳେ ?
କଜ୍ଜଳପାତୀଟି ବସିଛି ନୀରବେ
ବୃକ୍ଷ ଅଗ ଡାଳେ ଯାଇ,
ଲାଜେ ମରେ କି ସେ ନିଜ କଳା ରୂପେ
ଜେମାମଣି ରୂପ ନାହିଁ !
ହାତ ଧରାଧରି ଚାଲିଛନ୍ତି ଜେମା,
ଚାଲିଛନ୍ତି ପ୍ରିୟ ଆଳୀ,
ନମନ୍ତି ସମ୍ଭ୍ରମେ ମୁନିକୁମାରୀଏ
କେ ନୃପକୁମାରୀ ଭାଳି ।
ଲାଜେ ଘୁଞ୍ଚି ଜେମା ମଉନେ ଶିରକୁ
ନୁଆଇଁ ବନ୍ଦନ୍ତି ତ୍ୱରା,
ଆସିଅଛି କାହିଁ ନ ପଚାରେ କେହି,
ବାଚାଳତା ହେବ ପରା ।
ସୁଚାରୁଚାଳିତ ଆଶ୍ରମ ନିୟମେ
ତାପସ ତାପସୀ ସଂଘ,
ଶାସନ୍ତି ଋଷିଏ ବିହି ଦଣ୍ଡ ଗୁରୁ
କଲେ କେ ନିୟମ ଭଙ୍ଗ ।
ଅତିଥିର ସେବା କରିବାର କିନ୍ତୁ
ନ ଥିଲା କାହାରି ମନା,
ଫୁଲ ଫଳ ଜଳ ଘେନି ଜେମାପାଶେ
ଉଭା ହେଲେ ଋଷିକନ୍ୟା ।
ସରମେ ଆଦରେ ନମି ତାପସୀଙ୍କି
ଫଳଟି ଘେନିଲେ ହାତେ,
ପଚାରିଲେ ଆସି ବୃଦ୍ଧା କେହି, "ମା ଗୋ,
ଭ୍ରମ କିମ୍ପା ବନେ ପ୍ରାତେ ?"
"ତୀର୍ଥ ଦରଶନେ ଆସିଅଛି ମାତା"
କହିଲେ ସାବିତ୍ରୀ ନମି,
କହେ ସଖୀ, "ମଦ୍ର- ରାଜଜେମା, ପିତା
ଅଶ୍ୱପତି ପରାକ୍ରମୀ ।"
'ମଦ୍ରରାଜଜେମା ସାବିତ୍ରୀ' ଶ୍ରବଣେ
ବିସ୍ମିତା ତାପସୀ ଅତି,
ପୁଚ୍ଛିଲେ ସମ୍ଭ୍ରମେ ଘେନିଯିବେ ଅବା
ଆଶ୍ରମେ ଋଷିଙ୍କ କତି ।
ସମ୍ଭ୍ରମ-ସରମେ ଆଦର ଆହ୍ୱାନ
ପ୍ରତ୍ୟାଖ୍ୟାନି କଉଶଳେ
ଶିଷ୍ଟ ଭାଷେ ତୋଷି ତାପସୀନିଚୟେ

ଭ୍ରମିଲେ ସଖୀଙ୍କ ଦଳେ ।
କିଛି ଦୂର ଯାଇଁ ପଥ ଆନ ପ୍ରାନ୍ତେ
ନିରେଖେ ମାଧବୀ ଫେରି,
ଉଭା ସେ କେ ସୂର୍ଯ୍ୟ- ମଣ୍ଡଳସନ୍ନିଭ
ରଶ୍ମିସୂତ-ଗ୍ରହ ଘେରି ।
କରକେ ଧରିଣ କ୍ଷୁଦ୍ର ଆମ୍ରଶିଶୁ
ଆନ କର ସଖା ସ୍କନ୍ଧେ
ଉଭା ସେ ମୂରତି, ଉଭେ ବିଭେ ଅବା
ନାରାୟଣ ମହାନନ୍ଦେ !
ଫେରିଣ ସହସା ଚାହିଁଲେ ସାବିତ୍ରୀ
ପଲକେ ପୁଲକେ ଭାସି
ଦିବ୍ୟ ଜ୍ୟୋତିଷ୍ମାନ ଉଦାର ସୁନ୍ଦର
ଯୁବା ସେ କି ସ୍ୱର୍ଗବାସୀ !
ଆନତ ଆନନେ ଜଡ଼ିତ ସରମେ
ସାବିତ୍ରୀ ମରମ ବାଜି
ବିନ୍ଧିଲା କାହାର ବିଶାଳ ବିମଳ
ନେତ୍ର-ଜ୍ୟୋତିଃ-ଶରରାଜି ।
ସାବିତ୍ରୀ ! ସାବିତ୍ରୀ ! ଆତ୍ମାସରା ତୋର
ହଜିଲା କି ଏହି କାଳେ,
କହେ ତେଣୁ ଆଗୋ, ବିଧିଲିପି କେହି
ଖଣ୍ଡିଛି କି କାଳେ କାଳେ ?



## ତୃତୀୟ ସର୍ଗ

ବିଧାତାର ସୃଷ୍ଟି- ସାର-ନରସାର
ଯୁବାବର ଗୁଣମଣି,
ରୂପଗୁଣ ବେନି ଘେନି କି ଦିଶନ୍ତି
ନର ଶିର-ଶିଖାମଣି !
କବି କଳପନା ଯିବ କେତେ ଦୂର
ଉଚ୍ଚ କଳପନା ବଳି,
ରୂପ କଳିବି କି ଗୁଣକୁ କଳିବି
ଏ ତାରା ସେ ତାର ଝଳି ।
ରୂପ ସୁରସାଣେ ଗୁଣ ସୁହାଟକ
ଦ୍ୱିଗୁଣ ଝଟକ ବଢ଼େ,
ରୂପ ସୁନାହାରେ ଖଞ୍ଜା ଗୁଣମଣି
ହୀରାଗଢ଼ ମୋତିକଢ଼େ ।
ରୂପ ସେ ସୁନ୍ଦର, ରୂପ ସେ ଉଦାର,
ରୂପ ତାରକିତ ନିଶା,
ଗୁଣ ପୁଣି ତାର ତାରକା ଭାତିରେ
କୋମଳ କୌମୁଦୀ ମିଶା ।
ରୂପ-ଜଳ ଘନ- ସମାବେଶେ ଗୁଣ
ନୀଳିମା ପରାୟେ ଝଳେ,
ରୂପ କାନ୍ତ ନବ ବସନ୍ତ, ଗୁଣ କି
ଫୁଲବାସେ ପ୍ରତିଫଳେ !
ରୂପ-ରାଜୀବକୁ ଗୁଣ-ରବିରାଗ
ସରାଗେ ଦେଇଛି ଚୁମ୍ବ,
ରୂପ-ଶ୍ୟାମପର୍ଣ୍ଣେ ଗୁଣ-ଫୁଲପଟି,
ଶାନ୍ତି ସହ ଶୋହେ ଧ୍ରୁବ ।
ରୂପ ଗୁଣ ସେ କି ଯୁବାବର ଅଙ୍ଗେ
ଗଙ୍ଗା ଯମୁନା ସେ ମିଶା,
ଛନ୍ଦ ସୁଲଳିତେ ଛନ୍ଦା କି କବିତା,
ଗୀତ ସଙ୍ଗେ ଅବା ଦିଶା !

ଚାହିଁଲାବେଳକୁ ଚମକ ମୂରତି
କମ୍ପେ ମନେ ଧଇରଯ,
ପ୍ରେମ ଭକ୍ତେ ହେମ- ଅଙ୍ଗ ଆଲିଙ୍ଗନ,
ଭକ୍ତି ଲୋଡ଼େ ପାଦରଜ।
ଚାହିଁଲା ସାବିତ୍ରୀ, ଚାହିଁଲା କ୍ଷଣକ
କ୍ଷଣକେ ନିଜକୁ ଭୁଲି,
କମଳକୋମଳ ବଦନ କି ଲାଜ-
ସଞ୍ଚାରେ ଗଲା ମଉଳି !
ଶ୍ରୀପଦପଙ୍କଜ ପବିତ୍ର ତୀର୍ଥ ସେ
ମଣିଲା ମନେ ସରାଗେ,
ଆସନ ସେ ପଦ୍ମ- ପୟର ଛାୟାରେ
ଭଜିଲା କି ଅନୁରାଗେ !
ଚଞ୍ଚଳ ତା' ମନ, ଚଞ୍ଚଳ ତା' ନେତ୍ର,
ଚିତ୍ରକର ତୂଳି ପରା,
ଆଙ୍କିନେଲା କ୍ଷଣେ ମାନସପଟରେ
ଯୁବାର ଶୋଭାପସରା।
ମୃଗାଙ୍କ-ଲାଞ୍ଛନ- ବଦନ ମୋହନ
ମୃଗାକ୍ଷି-ଲାଞ୍ଛନ ଆଖି,
ଲଳିତ ଲାବଣ୍ୟ- ସୁଧା ସୁଷମାରେ
ଜେମା ମନ ରହେ ଲାଖି।
ଆଖି ନୁହେଁ ଅବା କ୍ଷୀରାବ୍ଧି କି, ତହିଁ
ମନ୍ଦର ପଡ଼ିଛି ଢଳି,
ଦିନାନ୍ତେ ଫୁଟନ୍ତ ମଲ୍ଲିକା କୋରକେ
ନୀଳ ଭୃଙ୍ଗ ଅଛି ଗଳି !
ଅବା କଇରବେ ଭ୍ରମୁଛି ଭ୍ରମର,
ଚାହାଣୀ ଚାନ୍ଦିନୀ ଝଳେ,
ଶାନ୍ତ ସରସେ ବା ଉଷା ଆଗମନେ
ସଜ ସରସିଜ ଢଳେ !
ମାତ୍ର ଜେମା ଆଖି ଦେଖେ ତହୁଁ ବଳି
ଆନ ଶୋଭା ଉଜ୍ଜଳତର,
ମୁଖେ ପବିତ୍ରତା, ଶୁଭ୍ର ସରଳତା,
ଦିବ୍ୟ ତେଜ ମନୋହର।

ପ୍ରଶାନ୍ତ ଗଭୀର ଚାହାଣୀରେ ଫୁଟି
ରହିଛି ପ୍ରତିଭାରାଶି,
ଅନ୍ତର ଆକାର ମହତ୍ତ୍ୱ ଗରିମା
ନୟନେ ଉଠେ ଉଭାସି।
ସୁଦୂର ଅତୀତ ସ୍ୱପନରେ ଦିନେ
ଦେଖିଥିଲା କି ସୁମତି,
କ୍ଷୀଣ ସ୍ମୃତିପଟେ ରହିଛି କି ଲେଖା
ଏ ସେହି ପ୍ରିୟ ମୂରତି ?
ଅଚିହ୍ନା ଅଜଣା, ତଥାପି ଜେମାର
ପ୍ରାଣୁଁ ବଳି ପ୍ରିୟତର,
"ନିଜ ନିଜ" ବୋଲି କହେ ଜେମାମନ
ଚିରବାଞ୍ଛିତ, ସୁନ୍ଦର।
ବିଶାଳ, ସରଳ ଶାଳ ତରୁବର
ବରବପୁ ଉପମିତ,
ଆଜାନୁଲମ୍ବିତ ବଳିଷ୍ଠ ଭୁଜଶ୍ରୀ
ଶତ୍ରୁ-ଦର୍ପ-ବଳଜିତ।
ସୁବିଶାଳ ବକ୍ଷ ଅଙ୍ଗ ଶୋଭାରାଶି
ସମ କ୍ଷତ୍ରସୁତ ଦିଶେ,
ବେଶ ତାପସର, ଚନ୍ଦ୍ର ଚଉପାଶେ
ଶୁଭ୍ରାଭ୍ରମଣ୍ଡଳ କି ସେ !
ପାଦପବଲ୍କଳ- ବିଜଡ଼ିତ ତନୁ,
ହେମଗୌର ଦୀପ୍ତ କାନ୍ତି,
ସ୍କନ୍ଧେ ଉପବୀତ, କରେ ଫଳପାତ୍ର,
ମୂର୍ତ୍ତିମନ୍ତ ପୂତ ଶାନ୍ତି।
ଅବା ମୂର୍ତ୍ତିମନ୍ତ କାନ୍ତ ହେମବନ୍ତ
ଗିରୀଶ ହିମଶଇଳ,
ଉପବୀତ ସୂତ୍ର- ସମା ସରସ୍ୱତୀ
ଜଳଧାରା ଅନାବିଳ।
ସୁର-ତେଜ ନର- ସୁଷମା ସମୂହ
ସମାବେଶ ଏକାଧାରେ,
ପରିମଳମୟ ଫୁଲମାଧୁରୀ କି
ମିଶିଛି ପ୍ରାତଃ ଶୋଭାରେ !

ବୃମିଛି କୁଞ୍ଚିତ କୁରଳ କପାଳେ,
କାଦମ୍ବିନୀ କୋଳେ ଶଶୀ,
କିବା ସେ କମଳ- କୁସୁମ ପାଖୁଡ଼ା,
ଭୃଙ୍ଗ ରହିଛନ୍ତି ବସି;
ଅବା ସେ ଲାବଣ୍ୟ- ଲହରୀ ଶୋଭନ,
ଲଲାଟପଟ କି ତଟ,
ନିଶୀଥ ଉପମା ସେ କୃଷ୍ଣ ସୁଷମା,
ଭାଳ ଦିବା ଚିତ୍ରପଟ ।
ଭ୍ରୂରୂପେ ସେ କି ସ୍ମିତ ଚନ୍ଦ୍ରମୁଖେ
ରମ୍ୟ କଳଙ୍କର ରେଖା,
ଅବା ସେ ଉଜ୍ଜ୍ୱଳ କପାଳଫଳକେ
ଦିବ୍ୟ ବର୍ଣ୍ଣାବଳୀ ଲେଖା !
ରୁଚିର ବଦନ ବରରୁଚି ରଶ୍ମି
ରବିରଶ୍ମି ସମତୁଲ,
ତହିଁ ପୁଣି ସ୍ନିଗ୍ଧ ନୟନ ବେନି କି
ଚାନ୍ଦର ସୁଷମା ଠୁଳ !
ଶିରାପ୍ରଶିରାରେ ତଡ଼ିତ ପ୍ରବାହ
ନିମିଷେ ଗଲା ସଞ୍ଚରି,
ହୃଦପାରାବାରେ ଦୁମୂଳ ଝଟିକା
ଭାଙ୍ଗିଲା କି ଧୈର୍ଯ୍ୟତରୀ !
ହେମା ଭାବଭଙ୍ଗୀ ନିରେଖି ସଖୀଏ
କହିଲେ ଆଦରେ ଛଳି,
''ବଶୀକରଣର ମୋହନ ମନ୍ତର
ଜାଣେ କି ଏ ବନସ୍ଥଳୀ;
ପାଦତଳ ବାନ୍ଧି- ଦେଲା କି ଏ ମାଟି,
ବାନ୍ଧିଲା କି କାହା ମନ,
ଆନତ ଆନନେ ଛିଡ଼ା କାହିଁପାଇଁ,
କିମ୍ବା କମେ ଅପଘନ ?''
ସରମେ ସାବିତ୍ରୀ ନ କହିଲା କଥା,
ରହିଲା ଭୂଇଁକି ଚାହିଁ,
ଏଣେ ସହସା ସେ ତାପସକୁମାର
ଅନାଇଲା କାହିଁ ପାଇଁ ?

ସହସା ତା ଆଖି ରହିଗଲା ଲାଖି
କାହାର ସୁନ୍ଦରାନନେ,
ଶୋଭିନୀ ସେ ବର- ବର୍ଣ୍ଣିନୀ, ମୋହିନୀ
ପଦ୍ମିନୀ କି ନାରୀ-ବନେ ।
ନୟନେ ନୟନ ମିଶିଲା ସହସା,
ମନରେ ମିଶିଲା ମନ,
ଟାଣିନେଲା ଯୁବା ଅୟସ ଅନ୍ତର
ଚୁମ୍ବକଶଳାକା ସମ ।
ସର୍ବାଙ୍ଗେ ପୁଲକ- ସ୍ୱେଦ ଗଲା ବହି,
ଲାଜେ ଉପୁଜିଲା ସୁଖ;
ବିବେକ ପୀଡ଼ନେ ରାମମତି ଧୀରେ
ନତ କଲା ପଦ୍ମମୁଖ ।
ନିମିଷକ ଆଗେ ଥିଲା ସେ କି ଆନ,
ନିମିଷେ ହେଲା ସେ ଭିନ୍ନ,
ଗଲା ବହୁଦୂରେ ମନ ପୁରାତନ
ପୂରୁବୁଁ ଯଥା ପଶ୍ଚିମ ।
କି କୁସୁମ ତୋଳି ଆସିଥିଲା ବନେ
ତୋଳିଲା ଭ୍ରମେ କି ଫୁଲ,
ଗରଳ ସୁଧାର ସଦନ ତହିଁ କି
ସୁଖ ଦୁଃଖ ଦୁଇ ଠୁଳ !
ନବାଲୋକ ଆଜି ଯୁବା ଲୋଚନରେ,
ନବଭାବ ହୃଦୟରେ,
ନବପ୍ରେମ ଆଜି ନବୀନ ପ୍ରାଣରେ,
ନବଶୋଭା ଚରାଚରେ ।
ନବ ସଙ୍ଗୀତରେ ହୃଦତନ୍ତ୍ରୀ ଆଜି
ବାଜିଲା ମୋହନ ସ୍ୱନେ,
ଉଲ୍ଲସିତ ଦେହ, ଉଚ୍ଛୁଳିଲା ସ୍ନେହ
ଧରା, ସାଗର, ଗଗନେ ।
ସଖୀବେନି ମେଳେ ସ୍ନିଗ୍ଧ ପ୍ରାତଃକାଳେ
ଆସିଥିଲେ ବୁଲି ବନ,
ତୋଳି ଫୁଲକଳି ଦେବପୂଜା ପାଇଁ
ନେବେ ପରା ତିନିଜଣ ।

ପଛରେ ଗୋଡ଼ାଇ ଆସିଥିଲା ଏକ
କ୍ଷୁଦ୍ର ତୁରଙ୍ଗମ ଶିଶୁ,
ସତ୍ୟର ଜୀବନ- ଅଧିକ ସେ କି ଗୋ,
ସ୍ନେହରେ ମାନବଶିଶୁ।
ଆଉଁସି ଆଉଁସି ପୃଷ୍ଠଦେଶ ତାର
କୋମଳ କରପରଶେ
ଭାସୁଥିଲା ଯୁବା ବେନି ସଙ୍ଗୀ ସହ
ଗନ୍ଧକ୍ଷୀରାର୍ଣ୍ଣବ ରସେ।
ବସନ୍ତ, ସୁରଥ, ସତ୍ୟ-ସଖାତ୍ରୟ
ବୁଲିଁ ବୁଲିଁ ବନପ୍ରାନ୍ତେ
ସହସା ଅସଂଖ୍ୟ ଲୋକଙ୍କୁ ନିରେଖି
ହେଲେ ବିସ୍ମିତ ଏକାନ୍ତେ।
ମୁନିକୁମାର ସେ କି କାର୍ଯ୍ୟ ତାଙ୍କର
ଘେନି ଆନ ପରିଚୟ,
ବନେ କି କାରଣ ଭ୍ରମନ୍ତି ଏମାନେ
ସଙ୍ଗେ ଘେନି କରୀ, ହୟ।
ପାରିଧି କରି କେ ଆସିଥିବେ ନୃପ
ଏପରି ବିଚାରି ମନେ
କିଛିଦୂର ଯାଇଁ ଦେଖିଲେ ଅଦୂରେ
ଉଭା ଶୋଭା ବାମାଗଣେ।
ମରତ ମାନବୀ ନୁହଁନ୍ତି ସେ ଅବା
ସୁରପୁର ଅପସରୀ,
କିମ୍ବା ଉଭା ଆଜି ନିକାଞ୍ଚନ ବନେ
ନାରୀକଳେବର ଧରି।
ବସନ୍ତ, ସୁରଥ- ମୁନିକୁମାର ସେ,
ନ ଥିଲା ତହିଁକି ମନ,
ମାତ୍ର ସତ୍ୟବାନ- ସେ ରାଜନନ୍ଦନ,
ଅନାଇଲା ଘନଘନ।
ବସନ୍ତ, ସୁରଥ ବେନି ଜନେ ସତ୍ୟ
ପଚାରିଲେ ତଥ୍ୟ କରି,
"ଜାଣ କି ଏମାନେ ଆସିଛନ୍ତି କାହୁଁ?"
"ନ ଜାଣେଁ ହେ ତୁମ୍ଭପରି।"

କହିଲେ ବେନିଏ, ବାଟ ଚାଲୁଁ ଚାଲୁଁ
ବିଚାରିଲେ ସଖାତ୍ରୟ-
ଜାଣିବା ନିଶ୍ଚୟ କେଉଁ କଉଶଳେ
ଏହାଙ୍କର ପରିଚୟ।
କହଇ ବସନ୍ତ, "ପାରିଧି କରି କେ
ନୃପ ଆସିଥିବେ କାହୁଁ,
ଆସିଥିବେ କେମା ଗହଣେ, ସତ୍ୟ କି
ସତେ ଭୋଳ ଚାହୁଁ ଚାହୁଁ?"
ଲାଜେ ସତ୍ୟବାନ କହେ ମଥା ପୋତି,
"ରଖ ସଖା ରଙ୍ଗରସ,
କିଜାଣି କିପାଇଁ ଅତର୍କିତେ ଆଜି
ମନ ମୋ ହୋଇଛି ବଶ।
କି କୁକ୍ଷଣେ ଆଜି ଘରୁ ବାହାରିଲି
ସହସା ଏ କି କୁମତି,
ଦୃଢ଼ତା ମୋହର ନାହିଁ ତିଳେ, କ୍ଷୋଭେ
ହୃଦୟ ହୁଏ ଜରତି।
ମୋ ନେତ୍ର ଅଗ୍ରତେ ବିସ୍ତାରେ କେ ଆଜି
ଦିବ୍ୟ ଇନ୍ଦ୍ରଜାଲ ମାୟା,
ପ୍ରତି ପଦକ୍ଷେପେ ଚମକେ ମୋ ପ୍ରାଣ,
ଡ଼ରେଁ ମୁଁ ଦେଖି ମୋ ଛାୟା।
କିଏସେ ସେ ନାରୀ ମନେ ନ ବିଚାରି
ରହି ତାପସଙ୍କ ମେଳେ
କଲି କି ଅଧର୍ମ!" ସଖା କହେ, "କାକ-
ନୀଡ଼େ ପିକ ଧର୍ମ ହେଲେ?
ତୁମ୍ଭେ ରାଜସୁତ, ରାଜନନ୍ଦିନୀର
ପାଣିଗ୍ରହି-ଯୋଗ୍ୟ ବର,
ତୁମ୍ଭପରି ରାଜ- ଯୁବାବୃନ୍ଦେ କିଏ
ଅଛି ଜ୍ଞାନୀ ବୀରବର?"
"ବୃଥା ସେ ପ୍ରଶଂସା, ଜାଣ ତୁମ୍ଭେ ସଖା
ଗୁଣେ କେ ହୋଇବେ ବାଇ?
ରାଜ୍ୟହୀନ ପିତା ବନବାସୀ, ମୋର
ରାଜଘରବେ କାହିଁ?

କି ଅଛି କପାଳେ ଜଣାନାହିଁ ଭାଇ,
କିମ୍ବା ଏ କୁଟିଳ ଆଶା,
କୂପ କେ ଖୋଳନ୍ତା ମରୀଚିକା ଜଳେ
ଶମନ୍ତା ଯଦି ପିପାସା ?
ରମଣୀ ରଚନ୍ତି ହୀରା, ମଣି, ସୁନା,
କେ ରସିବ ଲୁହା ଖଣ୍ଡେ,
ଚୂତ ତରୁ ଥାଉଁ କହ କି କାରଣେ
ପୂଜିବ କେହୁ ଏରଣ୍ଡେ ?''
କହଇ ସୁରଥ, ''କେତକୀ କାନନେ
କିପାଁ ବୁଲୁଥାଏ ଅଳି ?
ସୁବାସ ଥିଲାକୁ, ମାତ୍ର ମଧୁଲୋଭୀ
କଣ୍ଟାରେ ନ ପାରେ ଗଳି ।''
''ଉଚିତ ଉପମା ନୋହିଛି'' ବସନ୍ତ
କହିଲା ପ୍ରତିବଚନେ,
''କେତକୀ-ସୁବାସ ଆସବ ବିହୁନେ
ଭ୍ରମର ନଯାଏ ଭ୍ରମେ ।
ରଙ୍ଗ ଟହ ଟହ ପଳାଶ କୁସୁମ
କହ କେ ଆଦରେ ଭାଇ,
ପତର କୋଣରେ ଫୁଟନ୍ତା ଜାମିନୀ
ବାଳୀଏ ତୋଳନ୍ତି ଧାଇଁ ।
ବାହାର ଝଲିରେ ଭୁଲେ କି ମନସ୍ୱୀ,
ନରୁଁ ବଳି ନାରୀବୁଦ୍ଧି,
ହୀରା ଛାଡ଼ି କାଚ କରେ କେ ପସରା,
ଗୁଣ ଛାଡ଼ି ରଙ୍ଗେ ରଦ୍ଧି ?''
''ସ୍ୱପନେ ଅଥବା ସୁରଲୋକେ ଭାଇ
ଅଛି ପ୍ରକୃତ ଆଦର,
କୃତ୍ରିମ ମୋହରେ ମହୀ ବିମୋହିତ,
ସୁନାକୁ ବଳେ ପିତଳ ।
ମାଣିକ୍ୟ ଆସନେ ବସେ କଟା କାଚ,
ରୂପାକୁ ହରାଏ ରସ,
ଅନ୍ତର କପଟ ଚାତୁରୀ ଘୋଡ଼ାଏ
ମୁଖର ଶୁଖିଲା ହସ ।''

''ନାରୀ ମାୟାବିନୀ ନାରୀ କୁହୁକିନୀ
ବିଶ୍ୱାସଘାତିନୀ ଅତି
କହିଛନ୍ତି ପରା ଋଷି ପରମ୍ପରା,
ତୁମେ ନ ଯାଅ ତା କତି ।''
''ତଥାପି ହେ ଭାଇ, ନାରୀ ଇଷ୍ଟଦେବୀ,
ଗୃହଲକ୍ଷ୍ମୀ, ଧନସାର,
ତୁମ୍ଭ ଭାଗ୍ୟେ ତାହା ଘଟନ୍ତା କି ସଖା
ରାଜ୍ୟ ଧନ ତ ଅସାର ।
ମୋତିମାଳ ଫିଙ୍ଗି ଗୁଞ୍ଜାକୁ ଆଦରେ
ଶବରୁଣୀ ଯେଉଁପରି
ସେପରି ଦୁଃଶୀଳା ହୀନମତି ଜାୟା
ମିଳିଲେ ତ ଯିବ ସରି !
ଇକ୍ଷୁରସଜାତ ମଧୁର ଶର୍କରା
ରସନା-ଆନନ୍ଦକର,
ପଚି ସେ ଉପୁଜେ ତୀବ୍ର ସୁରାସାର,
ଏ ସୁଧା, ସେ ହଳାହଳ ।''
କହଇ ସୁରଥ, ''ରଖ ଯୁକ୍ତିତର୍କ,
ମୁଁ ମନେ ରଖିଛି ଗଣ୍ଠି,
ସତ୍ୟବାନ ସରି ବରବାଳା ଏକା
ଇନ୍ଦ୍ରଙ୍କୁ ଯେସନେ ଶଚୀ ।
ସତ୍ୟ କରି କହ ସତ୍ୟ, ବେନିଜନେ
ନ ଭୁଲିବ ଆମ୍ଭ ସଙ୍ଗ,
ପ୍ରଜାପତି ତୁମ୍ଭ ସମ୍ବନ୍ଧ ବାନ୍ଧିଛି
ନୁହେଁ ଏ ତ କଥାରଙ୍ଗ ।''
''କି କହ ସୁରଥ, ଅତି ଅସମ୍ଭବ''
କହେ ସତ୍ୟବାନ ଲାଜେ,
''ଯାହାକୁ ତାହାକୁ ଘେନି ରଙ୍ଗରସ
ଏ ପରା ତୁମ୍ଭଙ୍କୁ ସାଜେ ।''
''ଗଳ୍ପ ଶୁଣ'' କହେ ସୁରଥ ଆଦରେ,
''ସପତ ବରଷ ବେଳେ
ଯାଉଥିଲି ଏକ ନୃପତି ସଭାକୁ
ବହୁ ମୁନିଋଷି ମେଳେ ।

କରିଥିଲେ ରାଜା ମହା ମହୋତ୍ସବ
ଜେମାମଣି ଜନ୍ମଲାଗି,
ଭୁଲି ପାରିନାହିଁ ସେଦିନ କଥା ହେ
ରହିଛି ମୋ ମନେ ଜାଗି ।
ଏତେ ଦାନ ଧ୍ୟାନ ଦେଖିନାହିଁ କାହିଁ
ଏତେ ସାଧୁସମାଗମ,
ଭଜନ କୀର୍ତ୍ତନ ବିଷ୍ଣୁ ନାମ ଗାନ
ଏତେ ଦାନ ବିତରଣ ।
ପୂର୍ବତନ ଆମ୍ଭ ଆଶ୍ରମକରତା
କପିଧ୍ୱଜ ମହାମୁନି
ବିହିଥିଲେ ନାମ 'ସାବିତ୍ରୀ' ଜେମାର
ଦେବୀଙ୍କ ମହିମା ଶୁଣି ।
ଶୁଣିଥିଲି ସଖା, ମଦ୍ରପତି ଜେମା
ସାବିତ୍ରୀ ଅଦ୍ଭୁତ ନାରୀ,
ନାରୀ ନୁହେଁ ସେ ତ ଦେବୀ ବୀଣାପାଣି,
ଅତି ବିଦୁଷୀ କୁମାରୀ ।
ଦେଶଦେଶାନ୍ତରେ ସଞ୍ଚରେ ତା ଯଶଃ
ତୁମ୍ଭେ ଶୁଣିଥିବ ପରା,
ସାକ୍ଷାତ ଶଙ୍କରୀ ଓହ୍ଲାଇ ଆସି କି
ମଣ୍ଡିଛନ୍ତି ମଦ୍ରଧରା !"
କହିଲା ବସନ୍ତ, "ହେଲା ତେବେ ହେଲା
ସତ୍ୟଯୋଗ୍ୟ ବନନାରୀ",
ଲାଜେ ସତ୍ୟବାନ ରୋଷ କହିଲା ସେ
"ଲଜ୍ଜା କି ନାହିଁ କାହାରି ?
ବିବାହ କଥାରେ ଖେଳ କଉତୁକ
ତୁମ୍ଭେ ପରା ମୁନିସୁତ,
ବକ ନେଇ କଣ୍ଠେ ଖଞ୍ଜୁଛ କିପାଇଁ,
ହଂସ ଯଦି ଉପଯୁକ୍ତ ।
ବସନ୍ତ, ସୁରଥ, ତୁମ ଯୋଗୁଁ ଆଉ
ବରତି ନପାରେଁ ଠୁଳେ,
କାହିଁ ସେ ସାବିତ୍ରୀ, କାହିଁ ସତ୍ୟବାନ,
ଅଙ୍ଗାର କି ହୀରା ତୁଲେ ?

ନୋହିଲା କଥାକୁ ହୋଇଲା କରିଣ
କରୁଥିବ ପରିହାସ,
ମଦ୍ରରାଜ ଜେମା ଆସିବ ମୋ ସଙ୍ଗେ
କରିବାକୁ ବନବାସ ?
ଥାଉଁ ଅଙ୍ଗ, ବଙ୍ଗ, କଳିଙ୍ଗ, ତୈଲଙ୍ଗ,
ଚେଦି, ଭୋଜରାଜ୍ୟପତି,
ବିରାଟ, ବିଦେହ, ପାଞ୍ଚାଳ, କୋଶଳ,
କର୍ଣ୍ଣାଟ, କାଞ୍ଚି ନୃପତି,
ମହା ମହାରାଜ ଜେମାମଣି ଦୂରେ
ବରିବେ ବନବାସୀକି,
କିପାଁ ପରିହାସ କର ନ ଜାଣି ମୋ
ମନ ଜଳେ ଧିକି ଧିକି ।
ନୃପସୁତ କେହି ନୋହିଲେ ସାହସୀ
ଧରିବାକୁ ଯାହା କର,
ଶୁଣି ନଥିଲେ କି କହୁଥିଲେ ଦିନେ
ମୁନିବର ଶ୍ୱେତାମ୍ବର ।
ତୀର୍ଥ ପର୍ଯ୍ୟଟନୁଁ ଫେରି ସେ ଆସନ୍ତେ
ପଚାରନ୍ତେ ପିତା ମମ,
ନାନା ଜନପଦ ସନ୍ଦେଶ କହିଣ–
ଥିଲେ ସେ ମୁନିସତ୍ତମ ।
ସ୍ୱୟଂବର ସଭା ଭଗ୍ନ ହିବା କ୍ଷୋଭେ
ରାଜା ଅଶ୍ୱପତିଙ୍କର,
ନିମନ୍ତ୍ରଣେ କେହି ନ ଆସିଲେ ନୃପ
'ଅଯୋଗ୍ୟ' ବିହି ଉତ୍ତର ।
ଏଥୁଁ ବଳି କଥା ଅଛି କି ହେ ସଖା
କ୍ଷତ୍ରକୁଳେ ଅଭିନବ !
ଅଭିନବ ଲୋକେ କହନ୍ତି ସାବିତ୍ରୀ,
ଦେବୀଅଂଶୁ ଉଦ୍ଭବ ।
ଯଥାର୍ଥ ଯଦି ତା, ଦେବତା କେହି ତା'
ପତିପଣେ ହେବେ ସରି,
ନୋହିବ ତ ସରି କିଙ୍କରପଣକୁ
ଛଅଗଣ୍ଡା ମୋହ ପରି ।

ମୁଁ ପୁଣି ଦରିଦ୍ର କାନନନିବାସୀ
ହେଲି ତାର ଯୋଗ୍ୟ ବର,
ମରୀଚିକା ଜଳ- ଭ୍ରମ ଏ କି ଅବା
ଆକାଶେ ତୋଳିବା ଘର !
ରଙ୍ଗ ଦେଖ କେତେ, ବୃଥା କଷ୍ଟ ଦିଅ
ରାଜ୍ୟହୀନ ଭାବି ଭାଇ,''
କହିଲେ ସଖାଏ, ''ଏଡ଼େ ରୋଷ ତବ,
ତା ଆମ୍ଭ ମନରେ ନାହିଁ।
ସତ୍ୟ କଥା ଲାଗି କିପାଁ ପେଟବ୍ୟଥା,
ଚିହ୍ନରା ଚିହ୍ନଇ ମଣି,
ଗୁଣୀ ଚିହ୍ନେ ଗୁଣ, କହୁଁ ସେଥିପାଇଁ
ଗୁଣବତୀ ହେମାମଣି।''
''ତୁମ୍ଭ ହେମା କଥା ରଖ ତୁମ୍ଭ ଘରେ,
ହେମାରେ କି କାର୍ଯ୍ୟ ମୋର,''
ଭାଷିଲା ବସନ୍ତ, ''ଏବେ ତେବେ କହ
ହୋଇଛ କିମ୍ପାଇ ଚୋର।
ବନ ଭ୍ରମି ଦେବୀ ଆସି ତାର ତୁମ୍ଭ
ଆଖିରୁ ନିସ୍ତାର ନାହିଁ,
ପରିଚୟ ଜାଣି- ପାରିବା କାରଣ
କୌତୂହଳ କାହିଁ ପାଇଁ ?''
ପରିଚୟେ ଦୋଷ ଅଛି କି ବିଶେଷ,
ମୁଁ ତ ଭାବିନାହିଁ କିଛି।''
''ତୁମ୍ଭେ ନ ଭାବିଛ,'' କହିଲା ବସନ୍ତ,
''ସେ ରାଗସାଗର ବୀଚି।
ରତ୍ନ ଲାଭ ସିନା ହେବ ପରେ, ଏବେ
ବୁଡ଼ ଆଗେ ସିନ୍ଧୁ ଜଳେ,
ରତ୍ନ କି ଭାସୁଛି ଲହରୀ ପ୍ରବାହେ ?
ରହିଛି ଅତଳ ତଳେ।
ଶାମୁକା ଫିଟାଇ ମୁକୁତା କାଢ଼ିବ,
ଖଣି ଖୋଳି ସିନା ହୀରା,
ବିନାୟାସେ ସିଦ୍ଧି କାହିଁ, କାଢୁଥିଲେ
କଥାରେ କୀରାରୁ ଶିରା।''

ସମାପି ବଚନ ଧାଇଁଲେ ବେନିଏ,
ମିଳିଲେ ସାବିତ୍ରୀ ପାଶେ,
ଖୋଜେ ଯାହା ମଲ୍ଲୁ କହେ କି ବଇଦ
ମଲ୍ଲୁର ଅରୁଚି ନାଶେ।
ମଞ୍ଜୁଆତୀ ତରୁ ମଞ୍ଜୁ ଫୁଲପୁଞ୍ଜେ
ହେମା ହେଉଁ ଅଭିଳାଷୀ
ଡାଳ ନୁଆଁଇଣ ଛିଣ୍ଡାଉଣଥିଲେ
ତାଙ୍କ ସହଚରୀ ଦାସୀ।
କମ୍ପେ କଳେବର ଭାବାବେଶେ, ଲାଜେ
ମନ ଆନନ୍ଦେ ଅଧୀର,
ଭାବୀ ଭାବନାରେ ମିଶି କଳପନା
ସ୍ୱଜେ କି ଚିତ୍ର ରୁଚିର !
ନ ଚଳୁଁ ଚରଣ ବାଜିଲା ଶ୍ରବଣେ
କାହାର ଚରଣଧ୍ୱନି,
ପଛକୁ ଅନାଇ ବେନି ମୁନିସୁତେ
ଆସିବା ଦେଖିଲା ଧନୀ।
ଛାତିରେ ଛନକା ପଶିଗଲାପରା,
ଚମକିପଡ଼ିଲା ଚାହିଁ,
ଖସିଗଲା ସତେ ନୟନରୁ ତାରା,
ଦେହଯାକ ଝାଇଁ ଝାଇଁ।
ପଲକେ ସମ୍ଭାଳି- ନେଲା ଭାବାବେଗ
ନ ଦେଖୁଣୁ ଆନ ଆଖି,
ଫୁଲ ତୋଳିବାରେ ହେଲା ତତପର
ଫୁଲ୍ଲମୁଖେ କମଳାକ୍ଷୀ।
ଆସିଣ ଅଗ୍ରତେ ଛିଡ଼ା ହେଲେ ଧୀରେ
ବସନ୍ତ, ସୁରଥ ବେନି,
ହେଲେ ଆସି ଭଭା ହରି ହର କିବା
ତୀରା ମିଥୁନ ଏ ବେନି।
ଧମ୍ମେ ସୁଶୀଳ ବିହି ନମସ୍କାର
ଭାଷନ୍ତି ବିନମ୍ର ସ୍ୱରେ,
''ଆଶ୍ରମବାସୀଏ ନ ଫେରାନ୍ତି ଦେବୀ,
ଅତିଥିଙ୍କୁ ଅନାଦରେ।

ଦେବୀ ବା ମାନବୀ ହୁଅନ୍ତୁ, ଆମ୍ଭର
ଆଶ୍ରମ ଦୁଆର ମେଳା,
ପୂତ ପଦଧୂଳି ଅର୍ପଣ ପ୍ରସାଦେ
ନ କରିବେ କେଭେଁ ହେଳା ।
କଥାଟିଏ ମାତ୍ର ନିବେଦନ ଲାଗି
ଉଦବିଗ୍ନ ଆମ୍ଭ ମନ,
ଦେବୀ କି ମାନବୀ କେ ହେବେ ଆପଣ
ପବିତ୍ରିଲେ ତପୋବନ ?''
ହେମାମୁଖ ଚାହିଁ ଭାଷେ ହେମାସଖୀ
''ମଦ୍ର ମହୀପତି ସୁତା,
ମହୀମଣ୍ଡନା ଏ ସାବିତ୍ରୀ, ସୁଶୀଳା
ମହତ ସଦ୍‌ଗୁଣଯୁତା ।''
ଚାହିଁଲା ବସନ୍ତ ଚାହିଁଲା ସୁରଥ,
କ୍ଷଣେ ଭଜି ମହାସ୍ତମ୍ଭ,
ସାବିତ୍ରୀ, ସାବିତ୍ରୀ- ଦେବୀଙ୍କ ସନ୍ତତି
ଅଗ୍ରେ ଉଭା, ଅସମ୍ଭବ !
କ୍ଷଣେ ନେଲେ ଜଳି ଅପୂର୍ବ ଲାବଣ୍ୟ
ଦେବୀତେଜ ଜିଣି ଜ୍ୟୋତି,
ସତ୍ୟଚିର କିପାଁ ଭଜଇ ବିକାର
ନିରେଖି ଏ ମହାଦ୍ୟୁତି ।
ନୁହେଁ ତା ଯୌବନ- ସୌନ୍ଦର୍ଯ୍ୟ ମହିମା
ନେତ୍ରସ୍ନିତ ବୀଚିରଙ୍ଗ,
ଶତ ସୂର୍ଯ୍ୟ-ଶଶି- ପ୍ରଭା ରାଶିରାଶି
ସ୍ଫୁରେ ବାମା ଦିବ୍ୟ ଅଙ୍ଗ ।
ଗଭୀର ସାଗର- ନୀଳିମ ଲହରୀ
କି ଭାବସୁଷମାଭରା,
ଶତ ସ୍ନେହରତ୍ନ ପ୍ରଚ୍ଛନ୍ନ ଲୋଚନ
କଟାକ୍ଷେ ଜିଣିବ ଧରା ।
ଯୁକ୍ତ କରପୁଟେ ପ୍ରଣମି ସୁରଥ
ବସନ୍ତ ସଙ୍ଗତେ ଭାଷେ,
''ଦେବୀ, ତବ ପୂତ ଚରଣ ଦର୍ଶନେ
ଧନ୍ୟ ଆଜି ମହୋଲ୍ଲାସେ ।

କୃତାର୍ଥ ଆମ୍ଭେ ଗୋ ଯେଣୁ ଆମ୍ଭ ସଖା
କୌତୂହଳୀ ସତ୍ୟବାନ
ଦେବୀ ପରିଚୟ ପ୍ରାପ୍ତି ପ୍ରତ୍ୟାଶାରେ
ପ୍ରେରିଲେ ଆମ୍ଭଙ୍କୁ ଜାଣ ।
ଶାଲ୍ୱ ନରପତି ଋଷି ଦ୍ୟୁମତ୍‌ସେନ
ମହିଷୀ ମହିମାବତୀ,
ସୁତ ସତ୍ୟବାନ ଘେନି ବନାଶ୍ରମେ
ରହିଛନ୍ତି ମହାମତି ।
ସ୍ୱଭାବେ ପ୍ରଶାନ୍ତ ଉଦାର ଅନ୍ତର
ମହାତେଜା, ଅରିତ୍ରାସୀ,
ହରାଇ କୁକ୍ଷେଣେ ସେବକ କୁଚକ୍ରେ
ରାଜ୍ୟ, ଆଜି ବନବାସୀ ।
ଅନ୍ଧ ମହାରାଜା ବେନି ନେତ୍ର ଦେବୀ,
ଏଡ଼େ କଷଣ ତାଙ୍କର,
ବିଭୁ ଧ୍ରୁବ ପଦେଁ ଭକତି ବିଶ୍ୱାସ
ଠୁଳ ନ ହେଲା ଅନ୍ତର ।
'ଦୟାମୟ ହରି ହରିନେଲେ ରାଜ୍ୟ
ସୁଖ, ନେତ୍ର, ପବିତ୍ରିଣ,
ଚିର କଳୁଷିତ, ଉଜ୍ଜ୍ୱଳି ଅନ୍ତର-
ଅନ୍ଧାର ମହାମହିମ ।'
ସଦା ଏହିପରି ଆନନ୍ଦ ବଚନ,
ରାଜା ତ ନୁହନ୍ତି, ଋଷି,
ମହିଷୀ ତାଙ୍କର ଦେବୀ ମାଳବିକା
ଧରମ ଶାସ୍ତ୍ରେ ବିଦୁଷୀ ।
ସତୀ ଶିରୋମଣି ପତି ସାର ମଣି
ନ ସୁମରି ପିତୃଗୃହ-
ସୁଖ ସମୃଦ୍ଧିକି, ପତି ବିପତ୍ତିକି
ବରିଲେ ନ ଢାକି ଲୁହ ।
ସୁତ ସତ୍ୟବାନ ତେଜେ ଅପ୍ରତିମ
ସତ୍ୟନିଷ୍ଠ, ଧର୍ମମତି,
ସତ୍ୟେ ଆସ୍ଥା ଜାଣି ରଖିଲେ ଏ ନାମ
ଚିତ୍ରରଥ ମହାଯତି ।

ସ୍ୱଭାବେ ସୁଶୀଳ, ନିର୍ମଳ ଚରିତ୍ର
କ୍ଷାତ୍ର ତେଜେ ପୁରନ୍ଦର,
ଜନକ ଜନନୀ ଚରଣକମଳ
ନିତ୍ୟ ସେବା ତତପର।
ଅଶେଷ ସଦ୍‌ଗୁଣ- ସମ୍ପନ୍ନ ମନୀଷୀ
ସର୍ବବିଦ୍ୟାବିଶାରଦ,
ଅମୃତାଂଶୁ ଅଙ୍ଗେ କଳଙ୍କ ପରାଏ
ଏକା ସେ ହୀନସମ୍ପଦ
ବନଦେବୀ ଭାବି ବନ୍ଦିବା କାରଣ
ହେଲେ ଅବା ଅଭିଳାଷୀ,
କଲେ ବହି ଦୟା ଧୃଷ୍ଟତା ମାର୍ଜନ
ହେବୁଁ ହେ ପରମୋଲ୍ଲାସୀ।''
''ନମସ୍କାର ମୋର ଜଣାଅ'' କହିଲେ
ବିନମ୍ରେ ରମଣୀମଣି,
''ତୁମ୍ଭ ବନ୍ଧୁ ପାଦ- ପଦ୍ମତଳେ, ଯେଣୁ
ସେ ସର୍ବ ସଦ୍‌ଗୁଣ ଖଣି।
ରାଜା ତ ପୂଜିତ ସ୍ୱଦେଶେ ପଣ୍ଡିତ
ପୂଜିତ ସକଳ ଦେଶେ,
ଉଚିତ ଆମ୍ଭର ଶ୍ରୀପଦବନ୍ଦନା,
ଜାଣ ତୁମ୍ଭେ ସବିଶେଷେ।
ହେ ମୁନିନନ୍ଦନ, ଜଗ୍ଦବନ୍ଦନ
ତୁମ୍ଭେ ଯେଣୁ ବ୍ରହ୍ମଚାରୀ,
ନ ଭୁଲିବେ ଯେହ୍ନେ ତୁମ୍ଭ ସଖା ମଣି
ଆମ୍ଭଙ୍କୁ ସାମାନ୍ୟ ନାରୀ।
ତୁଚ୍ଛ ଭୋଜ୍ୟ ଧନ ଚରିତ୍ର ତୁଳନେ,
ସଖା ତବ ପୁଣ୍ୟବାନ,
ପ୍ରଭାତେ ସ୍ମରଣ କରୁଥିବୁଁ ଆମ୍ଭେ
ପବିତ୍ର ମହତ ନାମ।''
ନୀରବିଲେ ଜେମା ଫେରିଲେ ତାପସ
ସଖା ତ୍ରୟ ଗଲେ ଘର,
ଆକୁଳ ହୃଦୟ- ଭାର ବହି କ୍ଷଣେ
ଗତି ହତ ଚରଣର।
ଅଦୃଶ୍ୟ ହୁଅନ୍ତେ ଆଶା-ଚକ୍ରବାଳେ
ଦିନାନ୍ତ ତପନ ଯଥା,
ଫେରିଲେ ସାବିତ୍ରୀ ଶିବିକା ଉଦ୍ଦେଶ୍ୟେ
ମନେ ବହି ପ୍ରେମ ବ୍ୟଥା।



# ଚତୁର୍ଥ ସର୍ଗ

ନୀରବ ନିଶ୍ଚଳ ଦିବା ଦ୍ୱିପ୍ରହର
ରୌଦ୍ର ହେଲା ଖରତର,
ପତ୍ର ଅନ୍ତରାଳେ ନୀରବ ପତତ୍ରୀ.
ଶୁଭେ ମାତ୍ର ବାତ ସ୍ୱର,
ଏହି କାଳେ ତରୁ ତଳେ
ବସନ୍ତ ସୁରଥ ସହ ସତ୍ୟବାନ
ଶଯ୍ୟା ରଚି ଦୂର୍ବାଦଳେ
ଭାବନ୍ତି ସେ କେତେ କଥା,
ରହି ରହି ତହିଁ ଉଚ୍ଛୁଳି ପଡ଼େ କି
ଅନ୍ତର ଅବ୍ୟକ୍ତ ବ୍ୟଥା!
ସୁବିସ୍ତାର ବଟ- ବିଟପୀ ଛାୟାରେ
ଶାୟିତ ସୁରଭିକୁଳ,
ଚରା ଛାଡ଼ି ମୃଗୀ ଶାବକ ସହିତେ
ଆଶ୍ରିଛନ୍ତି ଦ୍ରୁମ ମୂଳ;
ଚମ୍ପା ଚୂତ ବେନି ଯହିଁ

ଭୃଙ୍ଗ ଛନ୍ଦାଛନ୍ଦି ତାଳ ବନ୍ଧାବନ୍ଧି
ଫୁଲେ ପଡ଼ିଛନ୍ତି ଟଳି.
ନବୀନ ମୁକୁଳ ମାଳେ
ଆଲିଙ୍ଗନ ଛଳେ ଚାହାନ୍ତି ବେନିଏ;
ନିରେଖି ସତ୍ୟ କି ଭାଳେ ?
ବେନି ମନ ରସି ପିକ ସୁରସିକ
ହେଲେ ତହି ପଞ୍ଚ ସ୍ୱର.
ଆକୁଳେ ଦକ୍ଷିଣା ପବନ ପରଶେ
ଚମ୍ପା କି ବଢ଼ାଏ କର !
ଚମ୍ପା ଚହଟ ସୁଷମା
ଦେଖିଥିଲା ଆଖି ରହିଥିଲା ନାଖି
ବୁଡ଼ି ତ ଥିଲା ଚେତନା;
ଶୁଭ ପ୍ରଭାତେ ନବୀନା
କାହିଁ ହଜିଗଲା, କାହିଁ ଲୁଚିଗଲା
କିପାଁ ଜରିଗଲା ଦୀନା
କୋକିଳର କୁହୁ ପ୍ରାଣେ ବାଜି ତାର
ଉଲ୍ଲସି ଉଠଇ ଶ୍ରୁତି.
ଛାତି ଚମକଇ ରକ୍ତ ଥମକଇ
ଲହସି ପଡ଼ଇ ଧୃତି ।
ଏ ତ ଅଧୀର ଅଶାନ୍ତ ଯୌବନ
ତାପସ ସଂଯମେ ଋଷିର ଆଶ୍ରମେ
କରିଛି ସିନା ଶାସନ
ତଥାପି ମନ କି ମାନେ ?
ରହି ରହି ତା'ର ରୂପ-ରାଜୀବଟି
ଫୁଟି ତ ଉଠୁଛି ପ୍ରାଣେ ।
ଫୁଲେ ଫୁଲେ ଆଜି ଝରେ ନବ ଶୋଭା
ନବ ଶ୍ୟାମ ଶଷ୍ପଦଳେ,
କାହାକୁ ନିରେଖେ ଆକୁଳ ପରାଣେ
ନୀଳ ନଭେ, ଜଳେ. ସ୍ଥଳେ;
କିଏ ତା'ର ଗଳା ହାର ?
ମନୋମରୁ ଶୀତ ମନ୍ଦାକିନୀ ଧାରା
ମରତ ମାଧୁରି ସାର ।
କିପାଁ ଜରିଗଲା ପର
ଧାରକରା ଛୁରୀ ଗଳାରେ ଦେଇ ସେ
ଚାଲିଗଲା ନିଜ ଘର ।
କାହାକୁ କହିବ ଏ ବ୍ୟଥା ତରୁଣ
ସାଥୀ ବେନି ମିତ୍ର ବିନା,
କ୍ଷତ ଗଭୀରତା ନ ବୁଝି ସେହି ତ
ପରାସେ ହସିବେ ସିନା !
ସାବିତ୍ରୀ କଏ ସେ ତା'ର ?
କାହା ପାଇଁ ସେହି ମଉନେ ଝୁରଇ
ଗୋପନେ ଲୋତକ ଧାର
ବହଇ ନୟନୁ ନିତି ?
ଉଷ୍ଣ ହୃଦଶ୍ୱାସେ ଶ୍ୱାସ ମିଶାନ୍ତି କି
ଫୁଲଝରା ତରୁବୀଥି ।
କେ କାହାର ଭାବେ କେ ଜାଣଇ ନବେ
ତଥାପି ତା' ବିନା ମନ,
ସରଗ ସମ୍ପଦ ଏଡ଼ିପାରେ ହେଲେ
ତା' ବିନା ଶୂନ୍ୟ ଭୁବନ;
(ତା) ପାଦ ପରଶ କୋମଳ
ଛାଡ଼ି କରତିଳା, ରନ୍ତ ତରପଣେ
ମରଇ ପଳକୁ ପଳ ।
ବନବାସୀ ରାଜକୁମର
ନାମ ଜପାମାଳି ସାର ସିନା ଲାଭ
ଆଶା ମାତ୍ର ବାତୁଳର ।
କି ଥିଲା କି ହେଲା; ଏହି କେତେ ଦିନ
ସତ୍ୟବାନ ଜ୍ଞାନୀ ଧୀର
ଛି ଛି ! ଛାର ପ୍ରାଣ, ଛାର ବିଦ୍ୟା ବୁଦ୍ଧି
ନୁଆଁଇଲା ଯାହା ଶିର;
ସାମାନ୍ୟ ବାଳା ଚରଣେ,
ଏ ଦୁଃଖ କିପରି ଘୁଞ୍ଚିବ ରେ କହ
ପାପିଷ୍ଠ ବିନା ତୋ ମରଣେ !
କାହିଁ ତୋର ସୁଖ ଶାନ୍ତି
ଗାୟତ୍ରୀ ଜପିଲା ଭଳି ସାବିତ୍ରୀକୁ
ଜପୁ ନିତି ଏ କି ଭ୍ରାନ୍ତି !

ସତେ ସେ ତୋହରି ପାଇଁ ଝୁରିମରେ
ଶତ ରାଜସୁତ ଥାଇଁ,
ନ ହେଲା କଥାକୁ କୋଟିନିଧି କରି
ବୃଥା ଆକାଶେ ଅନାଇ ।
ଆକାଶ କୁସୁମ ମାଳାରେ
ବରଣ କରିବୁ କି ସେ ରୂପସୀକୁ
ମରିବୁ ତା ବିଷ ଜ୍ୱାଳାରେ;
ଆହା ସେ ପବିତ୍ର ସୁନ୍ଦର
ସାକ୍ଷାତ ଶଙ୍କରୀ, ଦେବୀ କ୍ଷେମଙ୍କରୀ
କରୁଣାନିଳୟ ଶ୍ରୀକର ।
ଚିର ବ୍ରହ୍ମଚାରୀ ରହିବ କି ସତ୍ୟ
ତା ଶୁଭ୍ର ସୁଷମା ଧ୍ୟାନେ,
ଚିର ଯୋଗୀ ହୋଇ ବୁଲିବ କି ବନେ
ନିତି ନାମ ସ୍ତବ ଗାନେ ?
ଲାଜେ ମରୁଛି ମରମେ,
କାହା ଆଗେ ବ୍ୟଥା କହିବ ସରାଗେ
ଜିହ୍ୱା ଜଡ଼ିତ ସରମେ,
ପୁଣି, ନ କହିଲେ ଫାଟେ ଛାତି
ପର ପାଦେ ପ୍ରାଣ ଅରପଣ ହେତୁ
ଏ କି ଅହେତୁକ ଶାସ୍ତି ?
ସତୀ ସିନା ପତି ପାଦପଦ୍ମ ଧ୍ୟାୟେ
ସତୀରୁ ବଳିଛି ସତ୍ୟ,
ନାମେ କର୍ମେ ଏକ ଧର୍ମ ରଖି ଟେକ
ମନରେ ଧରିଛି ତଥ୍ୟ;
ପ୍ରେମେ ସମ ନର ନାରୀ
ଥରେ ଯାରେ ଗଳା- ମାଳା ମଣି ସୁଖେ
ଘେନିଅଛି ବନଚାରୀ ।
ହେବ ତା'ପାଇଁ ବୈରାଗୀ
ତଥାପି ତାହାର ସ୍ମୃତି ଫିଙ୍ଗିବାର
ହେଲେ ,ନ ପାରିବ ତ୍ୟାଗି ।
ବଚନ ସାଧୁର ନ ଟଳଇ ଚିର
ପଶ୍ଚିମେ ଉଇଁଲେ ରବି,
ଥରେ ହୃଦ-ସରେ ଫୁଟିଛି ରାଗରେ
ଯାହାର ରାଜୀବ ଛବି;
ରୁଚିର ସେ ବରରୁଚି,
ବରବରଣୀକି ନ ପାଇଲେ ନିଜି
ମନୁ କି ଯିବ ତା ଘୁଞ୍ଚି !
ହୀରାରେ କଟିଛି କାଚ
ଗାର ତା' ଅମର ନୁହେଁ ଲିଭିବାର
ଅଯୋଗ୍ୟତା ପଛେ ବାଛ ।
ନୁହେଁ ସରି ସିନା ଫସାର ଫସପଦେ
ପ୍ରେମିକ ପଦେ କି ଊଣା,
ଚନ୍ଦନ ସୁବାସ ନାହିଁ ବୋଲି କାହିଁ
ଲୋକେ କି ଫିଙ୍ଗନ୍ତି ଝୁଣା !
କୋକିଳୁଁ ବଳେ ତ ସାରୀ
ବନେ ବନେ ବୁଲି ଗୀତ ସେ ଗାଇବ
ମନ ଦୁଃଖ ମନେ ମାରି ।
ଚିର ଜୀବନ-ଯାମିନୀ
ନ ହେଉ ପ୍ରଭାତ ନ ଉଦୁଁ ତପନ
ନ ଫୁଟୁ ଫୁଲ କାମିନୀ ।
ନାରୀର ଏକା କି ଲୋଡ଼ା ସତୀଧର୍ମ
ପୁରୁଷ କି ସ୍ୱେଚ୍ଛାଚାରୀ !
ଥରେ ହୃଦ ଯଦି ଫିଙ୍ଗି ଦେଇଛି ସେ
ଆଉ ନୁହଇ କାହାରି ।
ଝପିବ ଜୀବନ ସାରା,
ଚିର ନିଦାଘେ ସେ ଜଳିପୋଡ଼ି ମରୁ
ନ ବରଷୁ ପ୍ରେମ ଧାରା;
ନ ଫୁଟୁ ଜୀବନ ଫୁଲ
ପତର କୋଣରେ ମରିବ ମଉଳି
ନ ଗାଆନ୍ତୁ ଅଳିକୁଳ ।
ତାହାରି ନାମରେ ବୀଣା ସେ ବାଇବ
ନ ଶୁଣୁ ପଛେ ତା କାନ,
ତାହାରି ସ୍ୱରୂପ ମାନସେ ଧ୍ୟାଇବ
ନ ବୁଝୁ ପଛେ ତା ପ୍ରାଣ ।
ନ ପଡୁ ତାହାର ଆଖି,

ହୃଦ କଟା କ୍ଷତେ ନିତ୍ୟ ରହୁ ଥାଉ
ନୈରାଶ୍ୟ ଲବଣ ଲାଖି;
ସେ ପରା ଭାରତ ସୁତ
କଥା କର୍ମ ଯାର ସତ୍ୟର ଆଧାର
ଧରମ ଆଦର୍ଶପୂତ।
ନିଜର ବୀରତ୍ୱେ ନିଜେ ବୀର ସେହି
ଧୀର ଶାନ୍ତ ସ୍ନେହମୟ,
ସାନ ଶିଶୁ କାଳୁଁ ସଂଯମ ସାଧନା
ଶିଖିଛି କାମନା ଜୟ।
ଆକୁଳ ଉଦ୍ଭ୍ରାନ୍ତ ଚିରେ
ଯଶୋମାନ ତେଜି ନ ଯିବ ସେ ଖୋଜି
କର୍ମେ ନ ଲଭିବା ବିଭେ।
ସାଧନାରେ ସର୍ବ ସିଦ୍ଧି
ଆତ୍ମଜୟୀ ଶୂର ଦେବତା ବୋଲାଏ
ଚିର ପୁରାଣ ପ୍ରସିଦ୍ଧି।
ଧ୍ରୁବତାରା ଚାହିଁ ଆକୁଳ ଅର୍ଣ୍ଣବେ
କର୍ଣ୍ଣ ଧରେ ତରଣୀର,
ତରଙ୍ଗ ତାଡ଼ିତ ମନେ ନୋହି ଭୀତ
ଯେସନେ ନାବିକ ଧୀର
ପ୍ରେମ ଧ୍ରୁବତାରା ଚାହିଁ
ତେସନେ ତାହାର ସରିବ ସଂସାର
କ୍ଷୋଭ ତହିଁ କାହିଁପାଇଁ?
ବୃଥା ନ ଯିବ ଜୀବନ
ଜନକ ଜନନୀ ପଦ ଅର୍ଚ୍ଚନା
ମଣିବ ବ୍ରତ ପରମ।
ଦିବୁଁ ବଡ଼ ପିତା ପୃଥିବୀଠୁଁ ମାତା,
ଇଷ୍ଟଦେବତା ଯୁଗଳ,
ଆତ୍ମା ପ୍ରାଣ ଢାଳି ସେବିବ ତପସ୍ୱୀ
ପୂତ ପଯର କମଳ।
ଲଭି ଚତୁର୍ବର୍ଗ ଫଳ
ତରିବ ତୁରନ୍ତେ ତ୍ରିତାପ ତାପିତ
ସଂସାର ସିନ୍ଧୁ ଗରଳ।
କିବା ଛାର ମାଟି ଦେହ
ଚଉଷଠୀ ରୋଗ ଭୋଗ ଯା ମନ୍ଦିର
ତହିଁରେ କିପାଁ ଏ ସ୍ନେହ?
ଶତ ଶାସ୍ତ୍ର ପାଠେ ବହିଯିବ ଦିନ
ପ୍ରାତଃ ସନ୍ଧ୍ୟା ବେଦଗାନେ,
ଦେବତା ବେଦୀରେ ନଇବେଦ୍ୟ ସମ
ଦୁଃଖ ସେ ଅର୍ପିବ ଧ୍ୟାନେ।
ଆଚରି ନିଷ୍କାମ ବ୍ରତ,
କର ଚରଣ ତା ଜଗତର ହିତେ
ଲାଗିଥିବ ଅନୁବ୍ରତ।
କିବା ସୁଖ କିବା ଦୁଃଖ
ଏକ ଧର୍ମେ ଜାଣି ବେନି ବାଣୀ ନିଜ
ମନକୁ କରିବ ମୂକ।
ଅନନ୍ତ ଆକାଶ ଅନାଇ ଅନାଇ
ଅରୁଣ ନୟନ କୋଣେ,
ଅଶ୍ରୁ ବିନ୍ଦୁଟିଏ ସଞ୍ଚିଥିଲା ତାହା
ପଡ଼ିଗଲା କି କୁକ୍ଷଣେ
ସୁପ୍ତ ସୁରଥ ବକ୍ଷରେ;
ତପତ ଲୋତକ ପରଶି ତାହାର
ନିଦ୍ରା ଭାଙ୍ଗିଲା ସତ୍ୱରେ।
ଛାଇ ଛାଇ ନିଦ ପରା
ଦିହି ପହରିଆ ମଧୁର ତାତିରେ
ଆଖି ବୁଜିପଡ଼େ ତ୍ୱରା।
ଅଳପ ହସିଲା ଚାହିଁ ସତ୍ୟବାନେ
ମର୍ମ କଥା ନେଲା ଜାଣି,
କ୍ଷୀର ନୀର ମିଶା ପାଣିରୁ ମଧୋଳ
କ୍ଷୀର ଯଥା ନିଏ ଛାଣି।
ରଙ୍ଗ ଲୋଚନ ନିରେଖି
ଛଳି କହିଲା ସେ ଚପଳ ତରୁଣ
ସତ୍ୟର ବ୍ୟଥା ଉପେକ୍ଷି;
ରମଣୀ ପରାୟେ କାନ୍ଦ
କି ଛଳେ ଛଳନା- ମୟୀ ପାତି ଦେଲା
ତୁମ ପଦତଳେ ଫାନ୍ଦ!

କି ଧୀର କି ବୀର କି ତେଜି ତରୁଣ
କେତୋଟି ଦିନରେ ଆହା,
ପ୍ରେମ ପାଗଳଙ୍କ ଭଳି ହତାଶ୍ୱାସେ
କାନ୍ଦି ବୁଲୁଅଛ ରାହା।
ଏ କଥା ତୁମକୁ ସାଜେ
ଅତି ଉଥଳିତ ବ୍ୟଥାରେ ଶେଷକୁ
ସରିବଟି ଲୋକ ଲାଜେ।
ସାବିତ୍ରୀ କି ମନ୍ତ୍ର ଜାଣେ,
ହୃଦତନ୍ତ୍ରୀ ତବ ବାଜେ ଆଜିକାଲି
କେବଳ ତା ସ୍ତୁତି-ଗାନେ।
ସଖା ଛଳ କଥା ସହି ନ ପାରିଣ
ସତ୍ୟବାନ କହେ ଧୀରେ,
କିପାଁ ଏ ଅଦ୍ଭୁତ ଅପୂର୍ବ କଳ୍ପନା
ପଶିଅଛି ତବ ଶିରେ ?
ନୁହେଁ ମୁଁ ଚଞ୍ଚଳମତି,
ପ୍ରୀତି-ତଟିନୀରେ ବୁଡ଼ି ମରିବାର
ନୁହଇ ମୋ' ଶେଷ ଗତି।
ପ୍ରୀତି କି ଜାଣେ ତାପସ ?
ଚିର ବନଚାରୀ ନୁହେଁ ସ୍ୱେଚ୍ଛାଚାରୀ
ନ ଦିଅ ଏ ଅପଯଶ।
ପୂଜା ମୁଁ କରଇ ତାର,
ଦେବୀ ରତନର ଯତନେ ଅର୍ଚ୍ଚନା
ଅଛି ତହିଁ ଅଧିକାର।
ଥରେ ଯଦି ହୃଦେ ଆଙ୍କିଛି ସେ ରୂପ
ଥରେ ଯଦି ଦେଲି ପ୍ରାଣ,
ଆଉ ଥରେ ତାହା ଫେରାଇ ପାରେ କି
ସତ୍ୟଭାଷୀ ସତ୍ୟବାନ ?
କେତେ ତ ବୁଝାଅ ମୋତେ,
ଆକୁଳ ଅଧୀର ନୁହେଁ କିନ୍ତୁ ଭାଇ
ନ ଭାସଇ ଆଶା-ପୋତେ,
କର୍ତ୍ତବ୍ୟଟି ବଡ଼ ମୋର
ଆସୁ ପଛେ ଅମା ଅନ୍ଧାର ଯାମିନୀ
ବହୁପଛେ ଝଞ୍ଜା ଘୋର।

ପୁରୁଷ-କେଶରୀ ସବି ସିନା ତାର
ଧର୍ମ ତେଜ ବଳିଆର,
କଥା ଆନ ଆନ ଯାହାର ସେ ମର୍ତ୍ତ୍ୟେ
ଅତି ହୀନ ଅତି ଛାର।
ଜାଣିବ ଚିର ମୋ ଧର୍ମ,
ସାବିତ୍ରୀ ଧିଆନେ ସତ୍ୟବାନ ତାର
କରିବ କର୍ତ୍ତବ୍ୟ କର୍ମ।
ନ ଶୁଣିବ କେବେ କର୍ଣ୍ଣେ,
ପାଳିନାହିଁ ମୋର ପୁଣ୍ୟ ପ୍ରତିଶ୍ରୁତି
ଚିର ଦିନ ବର୍ଣ୍ଣେ ବର୍ଣ୍ଣେ।
କର ନେଉଟାଇ ଭାସିଲା ବସନ୍ତ
ନିଦ୍ରା ହୋଇଥିଲା ଦୂର,
ସ୍ୱଭାବେ ସୁରଥ ବିପରୀତ ସେହି
ପ୍ରକୃତି ଅତି ମଧୁର।
ଧୀରେ ଚିନ୍ତେ ସବୁ କଥା,
ତେଣୁ ମନେ ମନେ ନେଇଥିଲା କଳି
ସାଥି ସତ୍ୟ ଚିତ୍ତ ବ୍ୟଥା
ଆଦର ମୁନିକୁମାର
ଶାସ୍ତ୍ର ଆଲୋଚନେ ବିଦ୍ୟା ଉପାର୍ଜ୍ଜନେ
ନ ଥିଲା ତା ଅହଂକାର।
ସତ୍ୟ ନାମ ବହି- ନାହିଁ ମିଛେ ସଖା
ସତ୍ୟର ମୂରତି ସେହି,
କଥା କର୍ମେ ପ୍ରେମେ ଧର୍ମେ ମର୍ମେ ଚିର
ସତ୍ୟ ଅନୁଗତ ସ୍ନେହୀ;
ଦ୍ୟୁମତ୍ସେନ ଯୋଗ୍ୟ ସୁତ
ଆଶ୍ରମେ ଆସିଲା ଦିନୁ ଏ ଆଶ୍ରମ
ହୋଇଅଛି ଶାନ୍ତିପୂତ।
ଭାଷିଲା ସତ୍ୟ ଉତ୍ତର
ବୃଥା କିପାଁ କର ପ୍ରଶଂସା ମୋହର
ମୁଁ ଅଯୋଗ୍ୟ ସହଚର।
ଲଭି ତବ ସଙ୍ଗ ଅଙ୍ଗମୋ ପବିତ୍ର
ଚିତ୍ତଶୁଦ୍ଧି ହେଲା ଜାଣ,

ଚିତ୍ରାଶ୍ୱ ନାମରୁ ନିସ୍ତାର ନଥିଲି
ବୋଲାଇଲି ସତ୍ୟବାନ;
ମନେ ପଡ଼େ ପୂର୍ବକଥା,
ରାଜ୍ୟ ବିତାଡ଼ିତ ହୋଇ ଯେଉଁଦିନ
ଲାଜେ ନୋଇଁଥିଲା ମଥା।
ସେ ଦିନ ପରମ ସ୍ନେହେ
ବେନି ସାଥି ମୋତେ କଲ ଆପଣାର
(ଆଜି) ଏକ ଆତ୍ମା ତିନି ଦେହେ।
"ଜାଣୁ ସବୁ ଭାଇ," ଭାଷିଲା ବସନ୍ତ,
"ଭାଳେ ମୁଁ ଦୃଢ଼ ବିଶ୍ୱାସେ"
ତୁମରି ଗଳାରେ ବରମାଳା ଦେବ
ସାବିତ୍ରୀ ଶେଷେ ଉଲ୍ଲାସେ।
କି ଜାଣି କାହିଁକି ମୋର
ସବୁବେଳେ ମନେ ବାଜେ ପନେ ଘନେ
ସାବିତ୍ରୀର ମନଚୋର
ହୋଇଛ ନିଶ୍ଚୟ ଭାଇ,
ନୋହିଲେ କିପାଁ ସେ ତବ ମୁଖ ପ୍ରତି
କୁଟିଳେ ଥିଲା ଅନାଇ।
ମଞ୍ଜୁ ମଞ୍ଜୁଆତୀ ଫୁଲ ତୋଳୁଥିଲେ
ସଖୀଦଳ ହସି ହସି,
ତୁମକୁ ନିରେଖି ଦୁନ୍ତୁ କିପାଁ ତାର
ବଦନ ଗଲା ଉଲ୍ଲସି !
କହିଥିଲା ଯେଉଁ ବାଣୀ
ମରମ ତାହାର କରିଛି ବାହାର
କେତେ କଥା ମନେ ଆଣି
ମନେ ଅଛି ତ ସୁରଥ ?
ତୁମ୍ଭ ଆଗେ ପରା କହିଥିଲୁ ଆସି
ମନେ ହେଜ ସେହି ତଥ୍ୟ।
"ନମସ୍କାର ମୋର ଜଣାଅ ତୁମର
ସଖା ପାଦପଦ୍ମ ତଳେ,
ସରବ ସଦ୍‌ଗୁଣ- ଖଣି, ସେ ପଣ୍ଡିତ
ପୂଜିତ ମହୀମଣ୍ଡଳେ।
ତୁଚ୍ଛ ରାଜ ସିଂହାସନ,
ପ୍ରଭାତେ ସ୍ମରଣ କରୁଥିବୁ ନିତି
ସେ ପରା ସାଧୁ ସୁଜନ।
ମନେ ରଖିଥିବେ ଚିର",
"ଏଥିରେ ଆଉ କି ସନ୍ଦେହ ହେ ସଖା,
ଏ ନୁହେଁ କି ପ୍ରେମଗିର ?"
ଚପଳାର ଚିତ୍ତ ଚପଳା ଲୀଳାର
କ୍ଷଣ ମାଧୁରୀ ବିକାଶ,
ଏତ ନୁହେଁ ଏହା ପତର କୋଣରେ
କେତକୀ ମଧୁର ବାସ !
ଲାଜ କଣ୍ଟା ଆବରଣ
ଦିନେ ଶ୍ରୀଚରଣେ ହେବ ନିବେଦିତ
ତେଜ ଚିନ୍ତା ଅକାରଣ।
ଧନହୀନ ଭାବ ଭାଇ
"ଚରିତ୍ର ତୁଳନେ ତୁଚ୍ଛ ଧନ" ସେ ତ
କହିଛି ମନରେ ନାହିଁ।
ଦୀର୍ଘଶ୍ୱାସ ତେଜି କହେ ସତ୍ୟବାନ
"ଗୁଣଧରୀ ବିଦ୍ୟାଧରୀ"
କି ଗୁଣେ ଚରଣେ ଏ ଅକିଞ୍ଚନ ହେ,
ସାହସେ ହୋଇବ ସରି !
"ତୁମେ ପରା କ୍ଷତ୍ର-ସୁତ,
କହଇ ସୁରଥ କ୍ଷତ୍ରିୟ ସନ୍ତାନ
ବାକ୍ୟ ଏକ ଉପଯୁକ୍ତ,
ବଳେ ଯେ ହରଇ ନାରୀ,
"ଛି ଛି ନ କୁହ ତା ମୋ କାନେ ସଙ୍ଘାତ
ନୁହେଁ ମୁଁ ନୀଚ ଅଚାରୀ।
ଛଳେ ବଳେ କଉ- ଶଳେ ନାରୀ ଚୋରି
ନୁହେଁ ତା ମୋହର ଧର୍ମ,
ଗୁଣବତୀ ସତୀ ଚରଣ ପୂଜା ମୋ,
ହସ ପଛେ, ମହା ଧର୍ମ।
ସୁରଥ- ନାରୀକୁ ପୂଜିବ ଭଲ,
ସ୍ତୈଣ ବୋଲି ସର୍ବେ ହସିବେ ସଂସାରେ
କହିବେ ତା ଲଜ୍ଜା ନାହିଁ।

କହିଲା ବସନ୍ତ ଧୀରେ,
ଯହିଁ ନାରୀ ପୂଜା ରାଜନ୍ତି ଦେବତା
ଶୁଣିଛକି ଶାସ୍ତ୍ର-ଗିରେ ।''
ଆର୍ଯ୍ୟଭୂମି ଚୂମି ହିମାନୀ ଉଜ୍ଜ୍ୱଳ
ବିରାଜିବ ଯେତେ ଦିନ,
ନଗ ରାଜ, ଆର୍ଯ୍ୟ ନ ଭୁଲିବେ କେବେ
ହେଲେ ହେଁ ଭବେ ସ୍ୱଦୀନ ।
ନାରୀ ପୂଜା ମହାମନ୍ତ୍ର,
ଆଦ୍ୟାଶକ୍ତି ରୂପେ ଅରୂପ ମୋହିନୀ
ସର୍ବ ସିଦ୍ଧ ସାର ତନ୍ତ୍ର ।
ଲକ୍ଷ୍ମୀ ସତୀ, ଭଗବତୀ
ଦେବୀ ନାମେ ନାରୀ ପୂଜା ପ୍ରଚଳିତ
ନାରୀ ତ ନରର ଗତି ।
ହୀନ ଅର୍ଥେ ମିତ୍ର ନ ଘେନ ମୋ କଥା
ଅଛି ସୁଗଭୀର ତତ୍ତ୍ୱ,
ସାରା ଚରାଚରେ ଯୁଗଳ ମିଳନେ
ଶୋଭେ ସୁନ୍ଦର ଜଗତ ।
ତେଣୁ ଆର୍ଯ୍ୟ ଶାସ୍ତ୍ରକାର
ବ୍ୟବସ୍ଥା ବିହିଲା ଚାରି ଆଶ୍ରମରେ
ଗୃହସ୍ଥ ଆଶ୍ରମ ସାର ।
ଶିକ୍ଷାସ୍ଥଳୀ ତପୋବନ
ବ୍ରାହ୍ମଣ ତନୟ ହେଲେ ହେଁ ଆମର
ଅଛି ତ ଗୃହସ୍ଥାଶ୍ରମ ।
କହିଲା ସୁରଥ, ''ଆମର ନିୟମ
ଆମରି ସମାଜ ପାଇଁ,
କ୍ଷତ୍ରିୟ ସମାଜେ ବାହୁ ବଳେ ରାଜ
କହେ କେ କରଇ ନାହିଁ ?''
''ଥାଉ ଥାଉ ତବ କଥା,''
କହି ସତ୍ୟବାନ ଉଠିଲା ଆସନୁ
ଦୀର୍ଘଶ୍ୱାସେ ସୂଚି ବ୍ୟଥା ।
ମରମଚିରା କ୍ଷତର
ତର୍କ ଅସ୍ତ୍ରାଘାତେ ବଢ଼େ ସିନା ତାହା
ବହେ ରକ୍ତ ଝର ଝର ।

ଅନୁ କରି ସତ୍ୟେ ସଖା ବେନି ଗଲେ
ଦିନାନ୍ତେ ଆଶ୍ରମ ପୁରେ,
ଅନ୍ଧ ପିତା ସେବା ଶୁଶ୍ରୂଷା କରଣେ
ସତ୍ୟବାନ ଗଲେ ଦୂରେ ।
ମାତା ମାଳବିକା ବସି
ଶାଳ ମୂଳେ ଯହିଁ ଇଙ୍ଗୁଦୀ ତଇଳ
ପଦେ ଦେଉଥିଲେ ଘଷି ।
ପ୍ରଣମିଲେ ପଦ ତଳେ,
ଆଶୀର୍ବାଦ ଶତ ଅବ୍ୟକ୍ତେ ଉଚ୍ଚାରି
ଚାହିଁଲେ ନୟନ-ଜଳେ ।
ବିମଳ ବଦନେ ନବୀନ ବୟସୀ
ରାଜକୁମାର ମଣିର,
କି ପାପେ ଜନମି ଥିଲା ଏ ରତନ
ଗରଭେ ଅଭାଗିନୀର !
ଦିନେ ନ ଜାଣିଲା ସୁଖ,
ଶତ ଦାସଦାସୀ ହାତେ ବଢ଼ିଥିଲା
ଭୁଞ୍ଜିବାକୁ ଏତେ ଦୁଃଖ ?
ନିତି ଆସେ କାଠ ହାଣି,
ପାଦେ ଫୁଟେ କୁଶ- କଣ୍ଟା, ପୀଡ଼ା ପାଏ
ପଦ୍ମ ସୁକୋମଳ ପାଣି ।
ଏହା ବି କପାଳେ ଲିହିଲା ଦଇବ
ରହିବ ଚିରକୁମାର,
ଯୁବକ ଜୀବନେ ଏ ଶୋକ ମାତାର
ବଢ଼ିଲା ହୃଦୟ ଭାର ।
ଜଳା କୁବଳ ଲୋଚନୁଁ
ସୁପାଣି ସାରସେ ନିବାରି ଅସାର
ବିଷାଦ ବରଜି ମନୁଁ ।
କହିଲେ ବାବୁ ରେ, ନିତି
ବୁଲୁ କିମ୍ପା ଏତେ ଖରାରେ ବନରେ
ଝାଳେ ତ ଯାଉଛୁ ତିତି ।
ନାହିଁ ମା, ମୋର କି କଷ୍ଟ, ମୁଁ ସବଳ
କାମ ନ କରିବି କିପାଁ ?
ସାରା ଦିନେ ଆଜି ସପ୍ତାହର କାର୍ଯ୍ୟ
ସାରି ଅଛି ଘର ଲିପା;

ନୀବାର ଆଣିଛି ଭରି,
ବଡ଼ ବଡ଼ ପାତ୍ରେ, କୁଶ ସମିଧର
ଚିନ୍ତା ନ ଥିବ ତୋହରି।
ଦୁହିଁଛି ଗୋରୁ ଯେତେକ
ଦୂରବନୁଁ ଆଜି ସକାଳେ ଆଣିଛୁ
ସୁପକ୍ୱ ଫଳ ଅନେକ।
ତିନି ବନ୍ଧୁ ଆମେ ଆନନ୍ଦେ କାଟିଲୁ
ଦ୍ୱିପ୍ରହର ତରୁ ତଳେ,
ମିଷ୍ଟ ଫଳ ଭୁଞ୍ଜି ନିବାରିଲୁ ତୃଷା
ଝରଣାର ସ୍ନିଗ୍ଧ ଜଳେ।
ତୁ କିପାଁ ଭାବୁ ମୋ ପାଇଁ
ସୁରଥ, ବସନ୍ତ, ଜନକ ଜନନୀ
ନ ଭାବନ୍ତି ଦୂରେ ଥାଇ।
ଅଛି ତ ପାଶେ ତୋହର
ଦିନେ ନ ଭାବନ୍ତି ଆତ୍ମୀୟ ତାଙ୍କର
କେଉଁ ଦୂର ଦେଶେ ଘର।
ଦ୍ୟୁମତ୍‌ସେନ ତହିଁ ଯୋଗ ଦେଇ ସ୍ନେହେ
କହିଲେ, "କୁମରମଣି,
ଏ କାର୍ଯ୍ୟ ତୋହର କୁଳର ନୁହେଁ ତ
ତୁ ପରା ମୋ ଆଶା-ଖଣି
ଚାନ୍ଦ୍ର ସିଂହାସନ ପତି!
ଭୂପେ କେବେ ପୂଜା ପାଇବୁ ମୋ ଧନ,
କେବେ ଫେଡ଼ିବେ ଶ୍ରୀବତି!
କଷ୍ଟ ତୋହର ଦାରୁଣ
ପିତା ଦୀର୍ଘଶ୍ୱାସ ବ୍ୟଥା ଲଭି ଚିତ୍ତେ
କହିଲା ଶାନ୍ତ ତରୁଣ।
କିବା ପ୍ରୟୋଜନ ରାଜ୍ୟେ ପିତୃଦେବ
ତବ ଶ୍ରୀପୟର ପୂତ,
ରାଜସିଂହାସନ ମଣେ ମୁଁ ମାନସେ
ସତତ ସେବା ନିଯୁକ୍ତ।
ଥିଲେ ମୋର ମହା ଶାନ୍ତି
ତୁଚ୍ଛ ସୁଖୈଶ୍ୱର୍ଯ୍ୟ ଏ ମାୟା ସଂସାରେ
ଅଳୀକ ଅସାର ଭ୍ରାନ୍ତି।

କହିଛ ତ ବାରମ୍ବାର,
ଶ୍ରୀଚରଣ ପୁଣ୍ୟ କମନ ପ୍ରକାର
ଦିଅ ଚିର ଅଧିକାର।
ନବ ଯୁବକର ଏ ରୁଚିର ଗିର
ଶୁଣି ଅନ୍ଧରାଜ ମୁନି,
ଉପଯୁକ୍ତ ପୁତ୍ର ପବିତ୍ର ଗୁଣରେ
ହରଷେ ହୋଇଲେ ଦୁନି।
ଟେକି ଜ୍ୟୋତିହୀନ ଆଖି,
ଦରଶନ ଲାଗି ଚାରୁ ଚନ୍ଦ୍ରମୁଖ
ଦେହଟା ଦେଲେ କି ଝାଙ୍କି?
ବିଫଳ ପ୍ରୟାସେ ଆହା,
ମରମେ ମରମେ ଅନୁଭବୁ ଥିଲେ
ନେତ୍ରେ ନ ଦେଖିଲେ ଯାହା।
ଟାଣି ବସାଇଲେ ପ୍ରେମପୂତ କୋଳେ
ଚୁମ୍ବିଲେ କମଳାନନ,
ପିତୃସ୍ନେହ ତୁଳା କାହିଁ ସେ ଜଗତେ
କି ମହାନ କି ମୋହନ!
ଅଞ୍ଚଳେ ପୋଛିଲେ ଦେହ
ଜନନୀ ଆଦରେ ଶ୍ରୀକର-କଞ୍ଚୁକି
ଝରିପଡୁଥିଲା ସ୍ନେହ!
ସ୍ୱର୍ଗାଦପି ଗରୀୟସୀ
ଜନନୀ ବାତ୍ସଲ୍ୟ- ବର୍ଣ୍ଣନେ ମୋହର
ହାରିଛି ଲେଖନୀ ମସି।
ବିବାହର କଥା ମନେ ଘନେ ଘନେ
ପଡୁଥାଏ ଜନନୀର,
ରାଜ୍ୟହୀନା ସୁତେ କେ ଦେବ ଦୁହିତା
ତେଣୁ ଝରେ ଆଖିନୀର।
କି ବୁଝିବ ଆହା ସତ୍ୟ,
ସାନ ପିଲା ପରି ଖେଳେ ଧୂଳିଖେଳ
କି ବୁଝେ ଜଗତ ତତ୍ତ୍ୱ?
ନାହିଁ ଯହିଁ ଆଶା ଆଉ,
ସନ୍ତାନ ମନରେ ମାତା ହୋଇ କିପାଁ
ଜାଳିବେ ସେ ଅଗ୍ନି ଦାଉ!

ନୀରବେ ଭାବିଲେ ଶତ ଶତ କଥା
ମନ ଦୁଃଖ ମନେ ମାରି
ସାନ୍ଧ୍ୟ ସ୍ତୁତି ଲାଗି କ୍ଷଣ ଅନ୍ତେ ତହୁଁ
କୁମାର ଗଲା ବାହାରି।
ଦୂରୁ ଶୁଣିଲେ ତା ସ୍ୱର,
କି ମଧୁର କଣ୍ଠେ ଗାଏ ସାମ-ଗାଥା
ବାଣୀ ଜିଣି କୋକିଳର।
ସମାଳି ନ ପାରି ରାଣୀ
ଦୀର୍ଘଶ୍ୱାସ ତେଜି କହିଲେ ରାଜାଙ୍କୁ
କାହୁଁ କନ୍ୟାଦେବା ଆଣି ?
ଚିର ବ୍ରହ୍ମଚାରୀ ଥିବ କି ମୋ ସୁତ ?
ମୋ' ଶ୍ୱଶୁରକୁଳ ବତୀ,
ଜୀବ ଧରି ଦେହେ ଥାଉଁ ଥାଉଁ ଆମ୍ଭେ
ଲଭିବା କିହେ ନୃପତି।
କପିଧ୍ୱଜେ ରାଇ ପାଶେ,
ପରାମର୍ଶ କରି ପଚାର ହେ ରାଜା,
ସତ୍ୟ ବିବାହ ସକାଶେ;
ନ କର ବିଳମ୍ବ ଆଉ
ଦୀନ କନ୍ୟା ଏକ ହେଉ ପଛେ ବୋହୂ
ପୁଅଟି ମୋ ସୁଖେ ଥାଉ।
ସବୁ ତ କରିବେ ଶ୍ରୀହରି ମୋ' ପାଇଁ
ଅରପିଛ ସବୁ ଭାର,
କିପାଁ ହରବର ହୁଅ ରାଣୀ କ୍ଷଣେ
ତେଜ ନିଜର ବିଚାର।
ସାହା ଆମର ଶ୍ରୀପତି,
ତାଙ୍କ ପୁଣ୍ୟାଦେଶ ନ ଲଭିଲେ ମୁହିଁ
କାହିଁରେ ନ ଦେବି ମତି।
ଧରିଛୁ ତ ଆଶ୍ରା ଏକ,
କାଳେ କାଳେ ଭକ୍ତ-ବତ୍ସଳ ନିଜର
ନାମର ରଖିବେ ଟେକ।
ନୀରବିଲେ ରାଜା ନୀରବରେ ରାଣୀ
ଅନାଇଲେ ସନ୍ଧ୍ୟାକାଶେ,
ଦଳେ ଦଳେ ଉଡ଼ି ଯାଆନ୍ତି ବାଦୁଡ଼ି
କାକ, ବକ ନିଜ ବାସେ।
କେ ଫେରଇ ଚରା ସାରି,
କେ ବାହାରେ ଖୋଜି ତରୁଫଳ ରାଜି,
ଚିନ୍ତା ନାହିଁ ତ କାହାରି।
ନିୟନ୍ତା ନିୟମେ ବନ୍ଧା,
ସରବେ ସଂସାରେ ସୁଖୀ ନିଜ କାର୍ଯ୍ୟ
କିପାଁ ତାଙ୍କର ଏ ଧନ୍ଦା !
ମାଡ଼ି ମାଡ଼ି ଆସେ ନିଶା ତମୋରାଶି
ଛାଡ଼ି ଛାଡ଼ି ଆସେ ଦିନ,
ଗୋଟି ଗୋଟି ତାରା ଫୁଟି ଫୁଟି ନଭ-
ସରେ ନବୀନ ନଳିନ-
ଶ୍ରେଣୀ ନୀଳ ନୀର-ବେଣୀରେ
ଶୋଭିଲେ ସୁଆଗେ, ଚାହିଁଲେ ସରାଗେ,
ରାଣୀମଣି ଭାଳେଣିରେ।
ଥିଲା ଦିନ ଏହିପରି
ଜଗତୀ ଉପରେ ସୁପାତି ଶୟନେ
ସେବିକା ଶତ କିଙ୍କରୀ।
କରଙ୍କେ ଶ୍ରୀକରେ କେତକୀ-ବାସିତ
ତାମ୍ବୁଳ ଯୋଗାଏ ଆଣି
କିଙ୍କରୀ କାଞ୍ଚନା, କମଳ ରଚନା
ଫୁଲମାଳା ମାଳି ଆଣି।
ସେବତୀ ସତ୍ୟର ଦାସୀ
ସୁବର୍ଣ୍ଣ ଶଯ୍ୟାରେ ଦୋଳାଇ ଶିଶୁକୁ
ଶୁଆଏ ସଙ୍ଗୀତ ଭାଷି
କେତେ ମଧୁର ଛନ୍ଦରେ।
ବାରଟି ବରଷ ବିତିଲାଣି ଆସି,
ବୁଡ଼ିଛି ପୂର୍ଣ୍ଣିମା ଚାନ୍ଦ ରେ।
ସେନାପତି କୂଟ- ଚକ୍ରାନ୍ତେ ଆଜି ସେ
ରାଜ୍ୟହୀନା ଦେଶାନ୍ତରୀ,
ହରିନେଲେ ପୁଣି ନୟନ ତେଜି ଯା'
ରାଜାର ପାଷଣ୍ଡ ଅରି।

ଦଇବ ଧରମ-ଦଣ୍ଡେ
ଉଚ୍ଚାସନେ ବସେ ଚୋର ନରହନ୍ତା
ଶାସଇ ଧରଣୀ ଖଣ୍ଡେ ।
ଏକି କୂଟ ଅବିଚାର !
ଭାବୁଁ ଭାବୁଁ ଯୁଗ- ନୟନ-କୋଣରୁ
ବହିଗଲା ଅଶ୍ରୁଧାର ।
ରୋଦନ ଶବଦେ ଅଧୀରେ କହିଲେ
ଅନ୍ଧ ରାଜରଷି ରାଣୀ
ଏହି କି ତୁମର କର୍ତ୍ତବ୍ୟ ବିଚାର
ନେତ୍ରୁ ବୁହାଉଛ ପାଣି !
ହରି ହରି ନେଲେ ସବୁ
ଜଗତର ମାନ ଧନ ପରିବର୍ତ୍ତେ
ନିଜକୁ ଦେଲେ ସେ ପ୍ରଭୁ ।
ମୋ ସମ୍ପଦ ପୁଣ୍ୟ ପଦ
କିଣା କିଙ୍କର ମୁଁ ତାଙ୍କରି ପୟରେ
କାହିଁ ମୋ ଦୁଃଖ ବିପଦ !
ସୁବିଶାଳ ଶାଳ ତରୁ ତଳେ ବସି
ନିର୍ବାସିତ ରାଜାରାଣୀ,
ପ୍ରଭୁଙ୍କ ପୟରେ ପୁଣି ଅରପିଲେ
କ୍ଳେଶ କଷ୍ଟ ଦୁଃଖ ଗ୍ଳାନି ।
କ୍ଷଣକେ ତୁଟିଲା ତମ
ବିରାଜିଲା ରାଣୀ- ମାନସେ ମୋହନ
ନନ୍ଦନ ଶାନ୍ତି ସୁମନ ।
ଗଳାରେ ଅଞ୍ଚଳ ଦେଇ
ପ୍ରଣମି ଉଦ୍ଦେଶ୍ୟେ ଇଷ୍ଟ ଦେବତାର
ଭକ୍ତିରେ ବୁଡ଼ିଲେ ସେହି ।
ପତି-ପଦ ସାର ଧରମ ଆଧାର
ଥିଲା ଯେଉଁ ରମଣୀର
ବନବାସ କ୍ଳେଶେ ସହାସେ ବରିଲେ
କେବଳ କୋଳନିଧିର ।
ଭାବି ଜୀବନ ଭାବନା
କରିଥିଲା ଏତେ ବ୍ୟାକୁଳ ବିମର୍ଷେ
ବିଷାଦ-ଭାରେ ବିମନା ।
ଆଜି ହରି ପଦେ ଥୋଇ
ସତ୍ୟବାନ ସୁତ ଚିନ୍ତା, ଚିନ୍ତମନ
ଅଶ୍ରୁ-ଜଳେ ଦେଲେ ଧୋଇ ।
ଆଶ୍ରମ ବାସିନୀ ସୁହାସିନୀ ମୁନି
କୁମାରୀବୃନ୍ଦ ନନ୍ଦିକା,
ଫୁଲ୍ଲ ତାରା ଦଳ ଶୋଭିତ ନିଶୀଥ
ଶରଦ ଶୀତ ଚନ୍ଦ୍ରିକା ।
ଥିଲେ ଅତି ନିଷ୍ଠାବତୀ,
ବିଦୁଷୀ ଧର୍ମିଷ୍ଠା ଶୁଚି ସତ୍ୟପ୍ରିୟା
ସୁକୋମଳ ସ୍ନେହମତି;
ପତି ସହ ସନ୍ୟାସିନୀ
ପୁତ୍ର ସୁକୁମାର ଚିନ୍ତାରେ ସତତ
ଥିଲେ ଅତି ବିଷାଦିନୀ ।
କୁପୁତ୍ର କୋଟିରେ କୁମାତା ଗୋଟିଏ
ସହଜେ ନ ମିଳେ ଭବେ,
ସନ୍ତାନ ଚିନ୍ତାରେ ପୂତ ମାତୃ-ପ୍ରାଣ
ନିବେଦିତ ଲବେ ଲବେ ।
ମର୍ମଝରା ରକ୍ତଧାର
ଢାଳି ପାରେ ମାତା ସୁଖେ ହସି ହସି
କାହିଁ ତୁଳନା ତାହାର ?
ନିଃସ୍ୱାର୍ଥ ନୀରବ ପ୍ରେମ,
ପ୍ରେମ ସାର ଯଥା ଧାତୁ ରାଜ୍ୟେ ସାର
ଶୁଦ୍ଧ ସୁନିର୍ମଳ ହେମ ।
ମାଳବିକା ଗଳା- ମାଳିକା ମଣିର
ମଙ୍ଗଳ କାମନା କରି
ଧୀରେ ଧୀରେ ଉଠି ଗଲେ ଆଶ୍ରମକୁ
ନୀବାରାନ୍ନ ଦୁଗ୍ଧ ଭରି ।
କୋମଳ ରସାଳ ଫଳ
ପାତ୍ରେ ଦୂତ ପତି ପୁତ୍ରେ ପରଶିଲେ
ଚିତ୍ତ ସ୍ନେହର ସମ୍ବଳ ।
ଏ ବେନି ପ୍ରାଣ ତାଙ୍କର
ଆଦର ପ୍ରତ୍ୟାଶି ପ୍ରେମ ସେବା ଆଶା
ଭାଳି ପୂରିଲା ଅନ୍ତର ।
ଏହି ତ ଜଗତ ମାୟାରେ ମାନବ
ମାୟା କି ମନୋମୋହନ.

ମୋହର ମୋହର ବୋଲି ମୁଁ ମରୁଛି
ମୋର ନୁହେଁ ମୋ ଜୀବନ।
କର୍ମ ପଥେ ବୁଲୁଥାଇ,
ଲକ୍ଷ ଜନମରେ ଲକ୍ଷ୍ୟ ନ ମିଳଇ
ମିଳନ୍ତି କୁଟୁମ୍ବ ଭାଇ।
ପିତା ମାତା ଜାୟା ପତି
ସନ୍ତାନ ସନ୍ତତି ଧନ ଦରବରେ
ପୂରେ ମୋ ମାଟି ବସତି।



## ପଞ୍ଚମ ସର୍ଗ

ଝର ଝର ଝର ଭରା ବଉଦରୁ
ଝରି ପଡୁଥିଲା ଧାର,
ଥର ଥର ଥର ଥରି ଉଠୁଥିଲା
ତନୁ ତରୁ ଲତିକାର।
ସର ସର ବହେ ସମୀର
ମରମର କଥା– ମରମେ ଲନ୍ଦସି
ଉଠେ କି ସାବିତ୍ରୀ ଶରୀର।
ଜର ଜର ପ୍ରେମ-ପାଣିରେ
ଝର ଝର ଆଖି ଯୋଡ଼ିକ ନିରେଖି
କହିଲା ଚପଳା ଠାଣିରେ
ତରଳ ଗଳାରେ ମାଳତୀ,
ଗରଳ ପିଇଲୁ ଏତେଦିନେ ସଖୀ
ଜଳାଇଲୁ ପ୍ରେମ ଆଳତି।
ଛନ ଛନ ମନ କିମ୍ପା ଲୋ ତୋହର
ଛାର ବନବାସୀ ପାଇଁ କି ?
ଛପନ କୋଟିରେ ଗୋଟିଏ ନୃପତି-
ନନ୍ଦନ ମିଳିବେ ନାହିଁ କି ?
ଛତ୍ର ଧରିଥିବେ ଶିରେ,
ଛତ୍ରିଶ ପାଟକ, ଚରଣ ପୂଜାରେ
ଥିବେ ନିତି ସବିଧିରେ।
ଛାମୁରେ ବନ୍ଧାଇ ଖଟଣି
ଛଣା ପାୟୁଷକୁ ବଳି ସୁଖ ତୋର
ହୋଇବ ଲୋ ଜେମାମଣି।

ଛଟକ ବିଜୁଳିହାସୀ,
ଛି ଛି ଭୁଲ ତାହା କଥା ଲୋ ସୁନ୍ଦରୀ,
ସେ ଦରିଦ୍ର ବନବାସୀ।
ସବୁ ସଖୀଯାକ ମାଳତୀ କଥାରେ
ମଥା ନୁଆଁଇଲେ ହସି;
ଶର ସମ ସାବି ମରମେ ବାଜିଲା
ଧୈର୍ଯ୍ୟ ତା ପଡ଼ିଲା ଖସି।
ସରୋଷେ ଚାହିଁଣ ସଖିଙ୍କି
ସୁଗମ୍ଭୀର ସ୍ୱରେ ସଂଯତେ ଭାଷିଲା
ଲାଜ ତୁମର ନାହିଁକି ?
ସମାନ ସବୁରି ବୁଦ୍ଧି,
ସତ୍ୟ ସାର ହେଲି, ବଳାଅ ମୋ ମନ
ଭଜିବା ପାଇଁକି ଶୁଦ୍ଧି,
ସହୀ ଏକି ସଙ୍ଗ ଫଳ ?
ଶ୍ରବଣେ ଶୁଣିଲି ଏ ପାପ ବଚନ,
ନ ପିଇଲି ହଳାହଳ !
ବନବାସୀ ବୋଲି ଅନାଦର ଯା'ରେ
କରୁଛି ତୁମରି ମନ,
ବହୁ ତପସ୍ୟାର ଫଳ ମୁଁ ଭାବିଛି
ତା'ର ତିଳେ ଦରଶନ।
ବିମଳ ବଦନ ଜ୍ୟୋତିରେ
ବସୁମତୀ ମାତା ପୂତ ହୋଇଲେ କି
ଭାଳେ ମନେ ଦିନରାତିରେ।
ବାରିଜ ରଜ ଶ୍ରୀପଦର
ବାରେ ଲଭିଲେ ମୋ ଜୀବ ଭଜିବ ଲୋ,
ଚତୁର୍ବର୍ଗ ଫଳ ଜନ୍ମର
ବୀଣାଜିଣା ବାଣୀ କଣ୍ଠର
ବାରେ ଶୁଣିଲେ ଏ ଶରୀର ତରିବ
ତ୍ରିତାପ ଜ୍ୱାଳାରୁ ଭବର।
କହିଲା ମାଧବୀ, ବାନ୍ଧବୀ ନ ଧର
ରୋଷ ଆମ କଥା ଛଳରେ,
କରୁଣା କୋମଳ ମନଟି ତୋହର
ଚିରକାଳ ଜାଣୁ ଭଲ ରେ।
କପଟ ନ କର ସଖିଙ୍କି

କି ଗୁଣ ଦେଖି ତୁ ଭୁଲିଲୁ କମଳା,
ଅରପିଲୁ ପ୍ରାଣ କାହିଁକି ?
କନ୍ଦରପ ରୂପ ଦରପେ
କଳାକର ଜିତ- ବଦନା କହ ନା
କିମ୍ବା ଭୁଲିଗଲୁ ଅଳପେ ?
କଳେ କଉଶଳେ କେହି ତ
କେବେ ପାରି ନାହିଁ, ମନ କିଣି ତୋର,
ଦୂରୁ ଦେଖି ହେଲୁ ମୋହିତ ?
ନୟନେ ନୟନ ପଡ଼ିଲା ମାତରେ
ଛାତି ଧଡ଼ ଧଡ଼ ତୋହରି,
ନ ଶୁଣିଲୁ କାହା ବିନୟ ବଚନ
ଆଶ୍ରମେ ନ ଗଲୁ ସୁନ୍ଦରୀ ।
ଚୋରିକ କଲା ଲୋକ ପରାଏ
ଚଞ୍ଚଳ ଚରଣେ ବାହୁଡ଼ି ଅଇଲୁ
କି କଥା କହନି ଭଲା ଏ ?
କିଏ ଜାଣିଥିଲା ତୋ ମନ ?
କୁଣ୍ଠିତ ହେଲୁ ତୁ ଆଶ୍ରମ ଦର୍ଶନେ
ଆସି ଏ ସୁଦୂର କାନନ ।
ଆସିଥିଲୁ ଯାହା ପାଇଁକି
ଆନନ୍ଦରେ ଥରେ ଦେଖି ନେଇଥିଲେ
କିଏ କହିଥାନ୍ତା ନାହିଁ କି ?
କହିଲା ସାବିତ୍ରୀ ଆଶ୍ରମ ବାସ ତ
ଅଛି ମୋ କପାଳେ ଦିନେ
କିପାଁ ପରିଚୟ କରିଥାନ୍ତି ଆଗୁଁ
ଦୁଃଖ ଦେଇ ଧନହୀନେ ।
ରାଜକୁମାରୀର ବେଶେ
ସୁରଙ୍ଗ ରାଜୀବ- ଚରଣ ଭେଟିବା
ବ୍ୟଥା ଦେବ ସବିଶେଷେ ।
ଯେ ଦିନେ ବନବାସିନୀ-
ବେଶେ ସୁବିଧିରେ ବସିବି ପୟରେ
ଆସେ ସେଦିନ ସଙ୍ଗିନୀ ।
ଓହ୍ଲାଇବି ଅଳଙ୍କାରେ,
ସାଜିବି ଶରୀର ତରୁ ବଳକଳେ
ପିନ୍ଧି ସଜ ଫୁଲହାର ।
ନୀରବ ନୟନେ ନଳିନ-ନୟନା
ବଦନେ ଚାହିଁଲେ ଧୀରେ,
ଅତି ସୁକୁମାରୀ କୁମାରୀ ପଣରେ
ବୁଡ଼ିଲେ କି ଭାଳେଣିରେ ।
ଏ କଷ୍ଟ ଦେବ ଦଇବ
କୁଶାଙ୍କୁର ପ୍ରାସ ପଙ୍କଜ ପୟର
କହ କିପରି ସହିବ ?
କର୍କଶ ବଲ୍କଳେ ପୁଣି
ଝୀନ କଉଷେୟ ବସନ ଧନୀର
କ୍ଳେଶ ରାଶି ହେଲେ ଗୁଣି ;
ଏ କି ଅଦଭୁତ କଥା,
କିଛି କହିବାକୁ ନୋହିଲା ସାହସ
ଦେଖି ସଖୀର ଦୃଢ଼ତା ।
ସ୍ୱଭାବେ ଗମ୍ଭୀରା, ସଖୀଙ୍କି ସାବିତ୍ରୀ
ନ କହିଲେ ଆଉ କଥା,
ଦୂର ଗଗନକୁ ଚାହିଁ ନିବାରିଲେ
ନୟନ ମନର ବ୍ୟଥା ।
ଫେରୁଛନ୍ତି ନିଜ ଘର
ସ୍ୱୟମ୍ବର କଥା ଶୁଣି କି ଭାବିବେ
ବସଳ ମାତା ପିଅର !
ବରିଲା ବନବାସୀ କି
ଅନୁମତି ପରା ଦେଇଥିଲେ ପିତା
ଦେବେ ଦୋଷ ସେ କାହିଁକି ?
ଗୁଣବାନ ସତ୍ୟବାନ
ଧର୍ମ-ଧୀର-ମତି ବୀର ପ୍ରାଜ୍ଞ ଯତି
ଆଦର୍ଶ କ୍ଷତ୍ର ସନ୍ତାନ ।
ମାତାର ମୁଖଟି ମନେ ପଡୁଥାଏ
ବଢୁଥାଏ ବ୍ୟାକୁଳତା,
ମରମେ କାନ୍ଦିବେ ଶେଷେ ସ୍ନେହମୟୀ
ଭାଳି ଦୁହିତାର ବ୍ୟଥା ।
ବନବାସ କ୍ଳେଶ-ରାଶି
ମିଳିଲା କପାଳେ ମହାନିଧି ଆହା
ଅବଧି ଦେଲା ବିନାଶି ।
ଅମା ନିଶି ଯଥା ଶଶୀକି,
ମିଳିନ୍ଦ ମାଗଇ ମକରନ୍ଦ ପାନ
କମଳ କୋଳରେ ପଶିକି ?
ପୀୟୁଷ ପାତ୍ରରେ ବିନ୍ଦୁଟି

ବିଷ ପରଶିଲା ବିହି କି ବିଚାରେ
ଲୁଣି କଲା ନୀଳ ସିନ୍ଧୁଟି ।
ସୁଖ ଦୁଃଖ ବେନି ଘେନି ଏ ଅବନୀ
ଏଡ଼େ ମାୟାମୟ ମରତେ,
ସୁଖ ଖୋଜି ଖୋଜି ଶୋକରେ ସଢ଼ନ୍ତି
ସୁଖ ଆଶାଟି ତ ବରତେ;
ପୂରୁ କି ନ ପୂରୁ କାମନା
ସମ୍ପତ୍ତି ସନ୍ତତି ସବୁରି ବାସନା
ସହି ପଛେ ଶତ ଯାତନା ।
କି ମାୟା ଅଞ୍ଜନ ନୟନେ-
ସାର ତେଜି ଗଲା- ହାର କରିଛନ୍ତି
ଯା ଲାଗି ମରନ୍ତି ଜୀବନେ ।
ରାଜ୍ୟ ସିଂହାସନ ନ ଥାଉ
ସତ୍ୟବାନ କେଉଁ ଗୁଣେ ଊଣା କିନ୍ତୁ
କେହି ନ କରେ ତା ବଡ଼ାଇ ।
ବଡ଼ ଜଗତରେ ପଦ ଗଉରବ
ସୁନା ରୂପା ମାଟି ବିକାର,
ବଡ଼ ଜଗତରେ କନକ ଆସନ
ରାଜଛତ୍ର ସୈନ୍ୟ ସମ୍ଭାର;
ଗୁଣ ମଣି ଚିହ୍ନେ ବଣିଆ
ବାହାର ଝଟକ ପରଖି ନେବାର
ଏକା ସେ ମଣିଷ-ପଣିଆ ।
କିଂପା ମନ ଏଡ଼େ ବିରସ ?
ବରିଲି କାନନ- ଚାରୀ କୁମାରକୁ
କଣ୍ଟକିତ ଫୁଲ ସରସ ।
କଣ୍ଟକିତ କିଆ କେତକୀ
ବନେ ଫୁଟି ବନେ ମଉଳେ ବୋଲି କି
ନ ରସିବି ବନମଲ୍ଲୀ କି ?
କି ତେଜ-ପୁଞ୍ଜରେ ଝଲସାଇ ଆଖି
ଉଭା ହୋଇଥିଲେ ସେଦିନ,
ରୂପ ଗରିମାରେ ନୃପକୁମାରୀ ମୁଁ
ନିଜକୁ ମଣିଲି କି ହୀନ ।
ସହଚର ବେନି ମଝିରେ
ପର୍ବ-ଶର୍ବରୀଶ ପରାଏ ଶୋଭିଲେ
ଜବା କି ଯୂଥିକା କତିରେ ?

ଆହା ସେଦିନର ଠାଣିକି
ଭୁଲିପାରିବ କି ଏ ନୟନ ମୋର
ପିଇଛି ଯେ ସୁଧା ଛାଣି ଟି ?
କି ଥିଲି କି ହେଲି ନିମିଷେ,
ନବ ନୀରଧର ନୀଳ ଇନ୍ଦୀବର
ଶୋଭା ଚାହିଁ ମରେ କୁଳିଶେ ।
ପ୍ରେମ ପୁଲକରେ ନ ପଡ଼େ ପଲକ
ଅକଳଙ୍କ ବାମା ନୟନେ,
ଶ୍ରାବଣର ଧାରା ବାଢେ ଘନ ଘନ
ସରମ-ସରସ ମରମେ ।
ସ୍ୱଭାବେ ତ ବନ ଭୂଇଁ
ବରଷା ସକାଶେ ଆଶା ଘେନିଥିଲେ
ପଡ଼ିଥିଲା ମହୀ ଛୁଇଁ ।
ଯହିଁ ଗହନ ଓହଳ
ବିଶାଳ ବଟର, କୁଟୀର ରଚନା
କରିଥିଲେ ସଙ୍ଗୀ ଦଳ ।
ଫେରୁଥିଲେ ଦେଶେ ପରା ?
ସେନାପତି ସାତ- ବାହନ ପୁରୁଷୋତ୍ତମ
ମନ୍ତ୍ରୀ ଅତି ତ୍ୱରା ।
ଜାଣି ନେଇଥିଲେ ସରବେ ସାବିତ୍ରୀ
ସତ୍ୟବାନର ବରଣ,
କିଛି ନ କହିଲେ ସଚିବ ପ୍ରାଚୀନ
ଭଳି ନରେଶ ବାରଣ ।
କିନ୍ତୁ ସେନାପତି ସଙ୍ଗରେ
କହିଲେ ଗୋପନେ, ବନବାସ କେଳି
କିପରି ବହିବେ ଅଙ୍ଗରେ ?
ସୁକୁମାରୀ ରାଜକୁମାରୀ,
କହେ ସପ୍ତରଥୀ ଶ୍ୱେତ-ବାହନ
ମନରେ ଦେଖ ହେ ବିଚାରି ।
ଏକମାତ୍ର ସୁତ ପିତାର
ଗୃହ ଜାମାତାର ପଦରେ କରିବେ
ନାହିଁ ତହିଁ କ୍ଷୋଭ ଧିକ୍କାର ।

(ଅସମ୍ପୂର୍ଣ୍ଣ)



# ସୂଚୀପତ୍ର








## ଜାତୀୟ ସଙ୍ଗୀତ (୧)

ବିତର ବିତର ଶ୍ରୀ ମହାପ୍ରସାଦ
ବିଶ୍ୱ ସଭା ଅଙ୍ଗନେ,
ଆଣ ଆଣ ଟାଣି ବ୍ରାହ୍ମଣ ଚଣ୍ଡାଳେ
ପବିତ୍ର ପ୍ରେମାଲିଙ୍ଗନେ । ଧ୍ରୁ ।
ଉତ୍କଳ ତୁ ପରା ହରି ଶିରୀକ୍ଷେତ୍ର
ଜାତି ଭେଦ-ଧ୍ୱଂସୀ ତୁ ମହା-ପବିତ୍ର
ତୋ ସ୍ନେହ-ଅଞ୍ଚଳେ ନାହିଁ ବ୍ୟବଧାନ
ବିସ୍ତାରିତ ବିଶ୍ୱଧାରଣେ ।
ହିନ୍ଦୁ ମୁସଲମାନ, ଖ୍ରୀଷ୍ଟିଆନ, ଜୈନ
ନାହିଁ ଭିନ୍ନଭାବ ନାହିଁ ସ୍ନେହେ ଦୈନ୍ୟ
ସରବେ ସନ୍ତାନ ତୋ ଆଦରେ ମାତଃ
ତୋହରି ଯତନେ ପାଳନେ । ୧ ।
ତୋର ନଦୀ ଜଳ, ତୋର ଫୁଲ ଫଳ
ତୋ ଶ୍ୟାମଳ କୋମଳ ସବୁରି ସମ୍ବଳ,
ତୋର ନଦୀ ନୀରେ ତୋର ସିନ୍ଧୁ ତୀରେ
ତୋର ଗିରି ତୋର କାନନେ—
ହାତ ଧରାଧରି ପ୍ରେମେ କୋଳାକୋଳି
ବସିବେ ତୋହରି ସନ୍ତାନ-ମଣ୍ଡଳୀ
ଆଣି ସ୍ୱର୍ଣ୍ଣଥାଳି ଦେବୁ କି ଗୋଳ ଢାଳି
ମାତ, ସ୍ନେହ ଅନ୍ନବ୍ୟଞ୍ଜନେ । ୨ ।
ବ୍ୟଜନିବ ଆସି ମଳୟ ମାରୁତ
ଉଚ୍ଛୁଳିବ ବନେ ବନେ ପିକରୁତ
ଭକ୍ତି ପ୍ରୀତି ଶୁଭ ଶରତ ବସନ୍ତ
ଓହ୍ଲାଇବେ ତୋର ଗଗନେ,
ତୋ ଗୋଲାପ ଗନ୍ଧେ ଶେଫାଳି ସୌରଭେ
ଜରମ, ଶକତି ମିଶିବ ଗୌରବେ
ବିଶ୍ୱ ସଭାଜନେ ଦେଖି ମୁଗ୍ଧ ମନେ
ଜମିବେ କି ପଦବନ୍ଦନେ । ୩ ।

(ଭ:ସା:୨୮/୯-ପୃ:୩୧୨)



## ସଙ୍ଗୀତ (୨)

ଜୀବନ ନୁହେଁ ମୋ ସ୍ୱପନ-ଛଳନା
ଜୀବନ ଆନନ୍ଦମୟ ହେ,
କରମ ଲାଗି ଜନମ ଲଭିଛି
କରମେ ଲଭିବି ଲୟ ହେ । ଧ୍ରୁ ।
ଶୁଭ କରମେ ହୋଇବି ଛିଡ଼ା
ବାଧୁ ଯେତେ ମୋତେ ଯାତନା ପୀଡ଼ା,
କରମ ମୋହର ଜପ ଯନ୍ତ୍ରସାର
ଜ୍ଞାନ-ଧ୍ୟାନ-ସୁଖମୟ ହେ । ୧ ।
ନ ଲୋଡ଼େ ଆଉ ଅସାର ମୁକ୍ତି
ଶୁଭ କର୍ମ ଲାଗି ଯାଚେ ନବଶକ୍ତି
କର୍ମ ମୋ ଭକତି କର୍ମ ମୋ ଆରତି
କର୍ମ ଶାନ୍ତି ବରାଭୟ ହେ । ୨ ।

(ଭ:ସା:୨୮/୩-ପୃ:୧୦୭)



## ସଙ୍ଗୀତ (୩)

ଦେଖୁଛ ସରବେ ପଳାଶ ଫୁଲଟି
ତାର କି ରକତ ଶିରୀ !
ସଉରଭ ବିନା ତୋରା ତନୁ ସିନା
ଯଉବନ ସେହିପରି ।
ଯଉବନ ଦେଖି ନ ଭୁଲା ତୋ ଆଖି
ଦୁନିଆରେ ଦୁଇ ଦିନିଆ ଖେଳ,
ମୁକୁତା ନୁହେଁ ଏ ଶିଶିର ବିନ୍ଦୁ
ଜଡ଼ ଅନ୍ଧାର ଏ ପୂର୍ଣ୍ଣିମା ଇନ୍ଦୁ
କାଞ୍ଚନ ନୁହଇ ତେଲ
ଏତ ମହାକାଳ ଫଳ ।
ଦୁଇଦିନ ପାଇଁ କିମ୍ପା ଉଷତ
ବନ୍ଧୁ ନୁହେଁ ଏତ ବଇରୀ ସତ
ମଣି ଦେଖି ଯଦି ଧରିବୁ ଫଣୀକୁ
ସାର ହେବ ହଳାହଳ ।

(ଉ:ସା:୨୮/୧୨-ପୃ:୪୫୩)



# ମେଡ଼ିକାଲ ସ୍କୁଲ୍

ଶୁଣ ଲୋ ସରଳା, ଶୁଣ ନିଥ ସାମୁଏଲ୍,
କି କଠିନ ପଢ଼ା ଚାଲେଁ ମେଡ଼ିକାଲ ସ୍କୁଲ୍ ।
ଦିନଯାକ କ୍ଲାସେ ଖଟି ଖଟି ଡ଼ିସେସ୍ସନେ,
ରାତ୍ରି ପଢ଼ା ନ କରିଲେ ନ ଚଳଇ ଦିନେ ।
ଶୋଇଥାନ୍ତି ସା'ନ୍ତ ମାଆ, ପ୍ରଫୁଲ୍ଲକୁମାରୀ,
ଏକାଟିଆ ଚେଇଁ ପଢୁଥାଏ ବତି ଧରି ।
ପାଳେ କାନି ବିଛାଇ ମୁଁ ଘୋଡ଼ିହୁଏ ପାଳେ.
'ଆନାଟମି' ବହିଟାକୁ ରଖି ମୁଣ୍ଡ ତଳେ ।
ବହିଗୁଡ଼ା ଛଡ଼ାଛଡ଼ି ସଉପ ଉପରେ,
ପୁସ୍ତକଟି ଧରି ହାତେ ପଢୁଥାଏ ଧୀରେ ।
କେବେ ପଢୁଥାଏ ପାଠ କେବେ ମାଡ଼େ ନିଦ,
କେବେ ଚେଇଁଉଠେ ଖରେ ମଣି ମୁଁ ପ୍ରମାଦ ।

ପଢ଼େ ଆନାଟମି ଆଗେ ପରେ ଆଉ ବହି,
ତେବେ ପଢ଼ାହେଲା ପରି ଦିନେ ନ ଲାଗଇ ।
ଧରମ ପୁସ୍ତକ ରଖିଥାଏ ଶିର ପାଶେ,
ପଢ଼େ ଦୁଇ ତିନି ପର୍ବ ପଢ଼ା ଆଗେ, ଶେଷେ ।
ସକାଳେ କେଜାଣି ଆଉ ଶୁଏ ଘଣ୍ଟା ଏକ,
ନିଦଟି ଭଙ୍ଗାଇଦିଏ ପ୍ରଫୁଲ୍ଲର ଡାକ ।
"ଉଠ୍ ଦିଦି, କ୍ଲାସେ ଯିବୁ ହେଲାଣି ସମୟ,"
ଜୟନ୍ତ ବାବୁଙ୍କ କ୍ଲାସ୍ ଡ଼େରିହେଲେ ଭୟ ।
ଆପ୍‌ସେଣ୍ଟ କରିଦେବେ, ଉଠେ ଧଡ଼ପଡ଼.
ହାଜର ହୁଅଇ କ୍ଲାସେ ଭୟେ ଜଡ଼ସଡ଼ ।
କଷ୍ଟେମଷ୍ଟେ ପଢ଼ା ଜହି ପାଏ ପରିତ୍ରାଣ,
ଦଶଟାରେ ଆସି ପୁଣି ଧନ୍ଦାର ଭିଆଣ ।
ଗାଧୁଆପାଧୁଆ ମୁଣ୍ଡବନ୍ଧା ଖିଆପିଆ,
ସାଢ଼େ ଏଗାରଟାଯାକେ ନସରେ ଅଡୁଆ !
ଡ଼ିସେସ୍ସନେ ଧାଇଁ ତହୁଁ ହୁଏ ମୁଁ ହାଜର,
ସେ ସିନା ମଜାର କ୍ଲାସ କି ଭଲ ଟିଚର !

ରାମବାବୁ ପରି ଲୋକ ଶହେଙ୍କରେ ଜଣେ,
ମିଳିବାର କଷ୍ଟ ଆହା ଭାଗ୍ୟବାନ ଆମେ ।
ବଡ଼ ଭଲ ଟିଚରଟି ବଡ଼ ପରିଶ୍ରମେ.
ପଢ଼ାଟି ବୁଝାନ୍ତେ ଲାଗି ରହିଯାଏ ମନେ ।
ତାଙ୍କ ପଢ଼ା ଯେଉଁଦିନ କରିଥାଏ ଭୁଲ,
କଷ୍ଟ ଲାଗେ ମନେ ବଡ଼ ହୁଏ ଜଳବଲ ।
ଏତିକି ଅଡୁଆ ଯେଉଁ ଦୁର୍ଗନ୍ଧ ଭୀଷଣ,
ବଡ଼ ବାନ୍ତିମାଡ଼େ ମୋର ଛାଡ଼ିଯାଏ ପ୍ରାଣ ।
କେବେ ବ୍ୟବହାର କରି ନଥିଲି ମୁଁ ସେଣ୍ଟ୍
ହଜାର ସେଣ୍ଟ୍ କିନ୍ତୁ ସେ ଗନ୍ଧକୁ ନିଅଣ୍ଟ !
କରି କରି ଏବେ ମୋର ଆସିଲାଣି ସହି,
ନ ଜାଣଇ ଚାରି ଘଣ୍ଟା କେଣେ ଯାଏ ବହି ।
ଚାରିଟା ବାଜିଲେ ଆସି ଜଣାଏ ଜଣାଏ,
ଡ଼ିସେସ୍ସନ ସୁବାସରୁ ପ୍ରାଣ ତ୍ରାହି ପାଏ ।
ବଡ଼ ଶାନ୍ତି ଲାଗେ ଫେରି ଘରକୁ ଆସିଲେ,
ତେବେ ସୁଦ୍ଧା ସମୟଟି ନ ଯାଏ ମୋ ଭଲେ ।
ଟିଚର ଘରକୁ କେବେ କାର୍ଯ୍ୟବଶତରୁ,
କେବେ ବୁଲିବା ସକାଶେ ବାହାରଇ ଘରୁ ।
ଫେରିଲା ବେଳକୁ ହୋଇଥାଏ ଘଡ଼ି ଛଅ,
ବଡ଼ କ୍ଲାନ୍ତି, ଶୋଇପଡ଼େ ନଅ ସାଢ଼େ ନଅ ।
ପରେ ଉଠି ଖିଆ ପିଆ ସାରି ପଢ଼ା କରେ,
ସକାଳ ଚାରିଟାଯାକେ ମରେ ଅବା ସରେ ।
ଆହା ଏଡ଼େ ପରିଶ୍ରମ ହେବି ଯଦି ଫେଲ,
ପରିତ୍ୟାଗ କରିବି ମୁଁ ମେଡ଼ିକାଲ ସ୍କୁଲ ।
ବଡ଼ ଆଶା ଅଛି କିନ୍ତୁ ପାଶ୍ କରିବାର,
ଯାହା କରିବେ ସେ ପରମେଶ୍ୱର ।

ସ୍ନେହର ଭଗ୍ନୀ

୩୦ । ୧ । ୧୯୧୮ କୁନ୍ତଳା

# କାଳି

କେତେ କାଳି କହୁ ମନ କାଳି କେବେ ଆସେ,
କାଳି କି ହୁଅଇ କେବେ ତୋହରି ସକାଶେ ?
କାଳି କାଳି କହି କହି ଭୁଲାଉ ତୋ' ଚିତ୍ତ,
କାଳି କହି ରଖି ଦେଉ ଆଜି ଯା' ବିହିତ ।
କାଳି ବୋଲି ଭୁଲେ ନିତି ମାନବର ମନ,
କାଳି ହୁଏ ନାହିଁ ବୋଲି କେ କଲା ମନନ !

ଆସ ହେ ତ୍ରିଦିବଧନ୍ୟା ଅମର-ନନ୍ଦିନୀ,
ବଜାଅ ହେ ବୀଣା ତବ ସୁଧା-ନିସ୍ୟନ୍ଦିନୀ ।
କଳ୍ପନା ସୁନ୍ଦରୀ ତୁହି କବି ସହଚରୀ,
ଉଦ ମୋ' ହୃଦୟେ ବିଭୁ ଆଶିଶ ବିତରି ।
ସଙ୍ଗେ ଘେନି ଆସ ଆଶାସତୀ ବିନୋଦିନୀ,
କାଳି ରୂପ ଧରି ମୋତେ ମୋହୁ ସେ ମୋହିନୀ
ଆଶା କେତେ ରଙ୍ଗ କରେ,
କେ ବଞ୍ଚି ପାରନ୍ତା କହ ତାହା ବିହୁନରେ ।
ଆଜି ହୋଇ ନାହିଁ ଯାହା ହେବ ତାହା କାଳି,
ମନକୁ ଭୁଲାଇ ନର ରହିଥାଏ ଭାଳି ।
ନୋହିଲେ ଶ୍ମଶାନ ଭବ ହୁଅନ୍ତା କ୍ଷଣକେ,
ଶୂନ୍ୟ ହେଉ ଥାଅନ୍ତା ସବୁ ନୟନ-ପଲକେ ।

ଆସ ଆଶାସଙ୍ଗେ ଘେନି କଳ୍ପନା ମୋହର,
ଘରେ ଘରେ ବୁଲି ରଙ୍ଗ ଦେଖିବି ତୋହର ।
କାଳି କହ ଭ୍ରାନ୍ତ ନର ଶୋଇଅଛି ଶେଯେ,
କାଳି ଯେ ଆସିବ ନାହିଁ କ୍ଷଣେ ତ ନହେଜେ ।
ସବୁ ଗୁଣ ମାଟି ତାର ହେଲା କାଳି କହି,
କାଳି କାର୍ଯ୍ୟ ଆରମ୍ଭିବ ଆଜି ବସି ରହି ।

ମସ୍ତକ ଉପରେ କାଳ ବଜ୍ରଧରି କରେ
କେଉଁ ଦଣ୍ଡେ ପ୍ରହାରିବ ଜାଣେ କି ମନରେ ?
ଆଜି ମୁଁ ମରିବି ନାହିଁ ଅଛି ବହୁଦିନ,
କାଳି ଦେଖାଯିବ ଏବେ କିପାଇଁ ଉଦ୍‌ବିଗ୍ନ !
ଧର୍ମ୍ମ ଥାଉ କାଳିପାଇଁ ଆସୁ ହେ ବିଳାସ,
ଆସୁ ରଙ୍ଗରସ ମାତ୍ର ଆଜିକ ସକାଶ ।

ଧରା ପରେ ତା' ନିବାସ ଉଠିପାରେ କ୍ଷଣେ,
ଭୁଲିବା ମନ୍ତ୍ରାଏ ଚିତ୍ତ ବିଳାସ-ବ୍ୟସନେ ।
କେତେ କାର୍ଯ୍ୟ ଅବହେଳେ ପାରୁଥାନ୍ତା ସାଧି,
ନାଶନ୍ତା ମନରୁ ଯଦି କାଳିରୂପୀ ବ୍ୟାଧି ।
ମୃତ୍ୟୁ ନଦୀ-ତଟେ ଆସି ଦେଖେ 'କାଳି' କାହିଁ,
'କାଳି' ବୋଲି କହି ଆଶା ଥିଲା କି ଭୁଲାଇ !

ପୁତ୍ର ତାର ଦୂର ଦେଶେ କାନ୍ଦୁଛି ଜନନୀ,
ଖଣ୍ଡେ ପତ୍ର ପାଇନାହିଁ, ଚିନ୍ତୁଛି ଅବନୀ ।
ଅଶ୍ରୁ-ଝରଧାରେ ତହିଁ ଆସିଲା ସହସା,
'କାଳି' ରୂପଧରି ଆଶା, ସାନ୍ତ୍ୱନା ବରଷା ।
ହୃଦମରୁ ସିଞ୍ଚି ତାର, କହେ ମଧୁସ୍ୱର,
କାଳି ତ ଆସିବ ପତ୍ର ଆଜି ଧୈର୍ଯ୍ୟ ଧର ।

ବହୁଦିନ ହେଲା ବାଳା ବିରହ-ବିଧୁରା,
ଧୈର୍ଯ୍ୟ ନାଶିଲାଣି ଭେଦି ନୈରାଶ୍ୟ-ମହୁରା ।
ଆକୁଳେ ଚିନ୍ତଇ ବାମା, ଘନ ବହେ ଶ୍ୱାସ,
ଆଜି ଆସିବେ କି ଦାୟ, ନ ହୁଏ ବିଶ୍ୱାସ ।
ଆଶା ଆସି କାନେ କାନେ କହେ, ''ଲୋ ସୁନ୍ଦରି !
ଆସି ତ ପାରନ୍ତି କାଳି, ରହ ଧୈର୍ଯ୍ୟ ଧରି ।''

ପରିପନ୍ଥୀ ପରସ୍ପର ବିବାଦ ଭିଆଇ
ହାରି ଜଣେ ଚିନ୍ତେ ମନେ, ଆଉ ଆଶା ନାହିଁ ।
ଆଶା ସେହିକ୍ଷଣି ଆସି ବେଶେ ମନୋହର
କହେ, ''ମୂର୍ଖ, ଚିନ୍ତା ତୋର ବେଗେ ପରିହର ।
ପ୍ରତିହିଂସା ଆଜିସିନା ନହେଲା ପୂରଣ,
କାଳି ଦର୍ପ କରି ଚୂର୍ଣ୍ଣ ହେବୁ ହୃଷ୍ଟ ମନ ।
ପୂରିବ ତୋ' ଆଶା'', ଶୁଣି ମନେ ଦମ୍ଭ ବହେ,
'ଆଜି ଯା' ନୋହିଲା ତାହା କାଳି ହେବ' କହେ ।

ଦୁଷ୍ଟାଚାରେ ରତ ପୁତ୍ର ନ ମାନେ ଶାସନ,
ମନେ କ୍ଷୁର୍ଣ୍ଣ ଗୁରୁଜନ କରନ୍ତି ରୋଦନ,
ନାନାଦି ଉପାୟ ଚିନ୍ତି ବିଫଳ ପ୍ରୟାସ,
ସୁମତି ହୋଇବ ତାର ନୁହଇ ବିଶ୍ୱାସ,

ନିରାଶ ହୃଦୟେ କାହୁଁ ଆଶା ଦେଲା ଦେଖା,
ସହସା ଦିଶିଲା କ୍ଷୀଣ ବିଶ୍ୱାସ-ସୁରେଖା ।
ତମୋ ଭେଦି କ୍ଷୀଣ ଆଲୋକ ପରାଏ
ଆଶା କି ସମ୍ବୋଧି କହେ, "କିପାଁ କାନ୍ଦ ଆହେ ?
ଆଜି ସେ ଅଧମ, କାଲି ହେବ ସାଧୁଜନ,
କାଲି କଥା ଭାବି ଶାନ୍ତ କର ତବ ମନ ।"

ଋଣଗ୍ରସ୍ତ କପର୍ଦ୍ଦକ-ସମ୍ବଳ-ବିହିନ,
ଖାତକ ଦୁଆରେ ଆସି ଡାକେ ପ୍ରତିଦିନ,
ତର୍ଜ୍ଜନ ଗର୍ଜ୍ଜନ ଶତ କରେ ମହାଜନ,
ଲଜ୍ଜାରେ କାତର ଅତି ପୀଡ଼ିତ ମରମ ।
କି କହିବ ଭାବି ଭାବି ରହିଛି ମଉନେ
ଆଶା ଆସି କହେ କଥା, ସହସା ସେ ଶୁଣେ ।
କାଲି କଥା କହି ଆଶା ବିହିଲା ଉତ୍ତର,
"କାଲି ଆସିବ ହେ ଆଜି କିପାଁ ତରତର ?"

ଦରିଦ୍ର କୁଟୀରେ କାହିଁ ଅର୍ଦ୍ଧ ଅନଶନେ,
ଭୂମିରେ ଲୋଟନ୍ତି ଶିଶୁ ବିକଳ ରୋଦନେ,
ପାଶେ ବସି ମାତା ଛିନ୍ନ-ବାସ ଅଞ୍ଚଳରେ,
ଲୋତକ ନିବାରି ମନେ ଭାଳଇ ଅନ୍ତରେ ।
ଶିଶୁର କୋମଳ ମୁଖ ଚାହିଁ ଅଭାଗିନୀ,
କାନ୍ଦଇ ସହସା କହେ ଆଶା ମାୟାବିନୀ,
ଶୁଣ ଲୋ ଦୁଃଖିନୀ କିପାଁ ଲୋଚନ-ଆସାରେ
ତିନ୍ତାଉ ଅବନୀ ତୁହି ଚିନ୍ତାକର ବାରେ
ଆଜି ସିନା କଷ୍ଟ ଏଡ଼େ ! ସେ କି ଚିରକାଳ !
କାଲି ସକାଳେ କାହୁଁ ତୋ ଫିଟିବ କପାଳ ?

କାହିଁ ତରୁତଳେ ଶୀତେ ତନୁ ଥର ଥର,
ଦରିଦ୍ର ଭିକାରୀ ଭାବେ ଦୁଃଖ ଅଦୃଷ୍ଟର,
ଥିଲା ଏକ ଦିନ ଆହା ସେ ରାଜପ୍ରାସାଦେ
ପଡ଼ିଛି ବିପାକେ କ୍ରୁର କପାଳ ପ୍ରମାଦେ ।
ସହସା ଯୌବନେ ପାପ କୁହ କେ ପାସୋରି
କାଟିଥିଲା ଅବହେଳେ ଧର୍ମ୍ମଭୟ-ଡ଼ୋରି ।
ବିଳାସ ବ୍ୟସନ ଶତ ବନ୍ଧୁ ତୋଷାମୋଦୀ
ପାଶେ ବେଢ଼ି ବିବେକ ତା' ଥିଲେ କି ନିରୋଧି !

କ୍ରମେ ଯହୁଁ ଅନାଚାରେ ସରିଲା ସମ୍ପଦ,
ବନ୍ଧୁବର୍ଗ ତେଜି ତାକୁ ହେଲେ ନିରାପଦ ।
ସ୍ମରଇ ଆକୁଳେ ତାର ଜୀବନ-ସଙ୍ଗିନୀ
ଅତ୍ୟାଚାରେ ଉତ୍ପୀଡ଼ିତା ମରିଛି ଦୁଃଖିନୀ ।

ସ୍ତମ୍ଭ ଉଭି ହୃଦସ୍ପନ୍ଦ ଚାହେଁ ସେ ଆକାଶେ,
ଅକୂଳ ଅର୍ଣ୍ଣବେ କୂଳ ନ ପାଏ ନିରାଶେ ।
ତାରାରୂପେ ସତେ ଆଶା ଦୂର ନଭଭାଳେ,
ମିଟି ମିଟି ଚାହିଁ ତାକୁ କହେ କି ଏକାଳେ;
"କରମର ଲେଖା କେହି ପାରେ କି ଏଡ଼ାଇ
ଶନିଦଶା ତୋତେ ପରା ଅଛିରେ ଗୋଡ଼ାଇ ।
ଗ୍ରହ ଦୋଷେ ଅଦୃଷ୍ଟରେ ତୋହର ଏ ଭୋଗ,
ଆସି ତ ପାରଇ କାଲି ଗ୍ରହ ଶୁଭଯୋଗ ।"

କହୁଁ କହୁଁ ନେତ୍ର ପ୍ରାନ୍ତେ ଉଠେ କି ଝଲକି
ଶତ-ଭାବୀ-ସୁଖଛାୟା-ଆଲେଖ୍ୟ ପୁଲକି ।
ସର୍ବସ୍ୱାନ୍ତ ଛିନ୍ନକନ୍ଥା ପିନ୍ଧି କଳେବରେ,
କ୍ଷେତ୍ର ପ୍ରାନ୍ତେ ବସି ଦୁଃଖେ କାନ୍ଦୁଛି କାତରେ;
ଦରିଦ୍ର କୃଷକ ଏକ ବନ୍ଧ ଋଣଜାଳେ,
ପାଶେ ତା' ଦୁଃଖିନୀ ନାରୀ ମାରେ କର ଭାଳେ ।

କାହୁଁ ଭୀମ ବନ୍ୟା ଆସି ନାଶି ତା' କେଦାର
ଦୁଃଖ ଗୁରୁଭାରେ ପୁଣି ମିଶାଇଲା ଭାର ।
ଶିଶୁଙ୍କ ବଦନ ଚାହିଁ କାନ୍ଦନ୍ତି ଦମ୍ପତି,
ଚାହୁଁ ଚାହୁଁ ସରିଗଲା ସକଳ ସମ୍ପତ୍ତି ।
ଯାହା ଥିଲା ସବୁ ନେଲା କ୍ରୁର ମହାଜନ,
ଅର୍ଦ୍ଧାଶନେ ତଥାପି ତ ରହିଛି ଜୀବନ ।
ଅଚଳ ହେଲାଣି ଆସି ସଂସାର ତାଙ୍କର,
ସହସା ଆସି କି ଆଶା ରୂପ ମନୋହର
ପ୍ରତିଭାତେ ହୃଦପଟେ "କାଲି କାଲି" ଗାଏ,
କାଲି ତ ମେଣ୍ଟିବ ଦୁଃଖ ସାଦରେ ଶୁଣାଏ ।
ଘୋର ଆଶା-ଶୂନ୍ୟ ବେନି ଚାହିଁ ପରସ୍ପରେ,
କାଲି ଭାଗ୍ୟୋଦୟ ଆଶା ପୋଷନ୍ତି ମନରେ ।

ଆଜି ଯୁଦ୍ଧେ ହାରି ନୃପ ବିରସ-ବଦନ,
ସରମେ ନୁଆଁଇ ମଥା କ୍ଷୋଭେ ନିମଗନ ।
ବିଷମ ବଇରୀ କ୍ରୁର ଆକ୍ରୋଶ ସୁମରି,

ଉଷ୍ଣ ରକ୍ତ ଶିରା ଯାଉଛି ସଞ୍ଚରି ।
ରୋଷେ କ୍ଷଣେ ଜ୍ୱଳିଉଠେ ହୃଦେ ଦାବାନଳ,
ଦାନ୍ତ କଡ଼ମଡ଼ କ୍ରୋଧେ ବିକଟ ଚଞ୍ଚଳ ।
ବାହ୍ୟଜ୍ଞାନ-ଶୂନ୍ୟ ଅଗ୍ନି-ସ୍ଫୁଲିଙ୍ଗ ଉଦ୍‌ଗାରି,
ରକ୍ତଜବା ନେତ୍ର ବେନି ଉଠେ କି ବିସ୍ତାରି ?
ସହସା ଉଦେ କି ଆଶା ବିଶ୍ୱବିମୋହିନୀ,
ଝଙ୍କାରି ମଧୁର ବୀଣା ପୀୟୂଷ-ସ୍ୟନ୍ଦିନୀ,
ଉଷାହ ଆଲୋକ ହୃଦେ ସହସା କି ଫୁଟେ
କାଲି ଜୟ ଆଶା, ନେତ୍ରେ ନବରୂପ ଉଠେ ।

ବହୁ ଅର୍ଥ ବ୍ୟର୍ଥେ ବ୍ୟୟକରି ଅକାରଣ,
ରୋଗର ଯନ୍ତ୍ରଣା କା'ର ନହେଲା ବାରଣ ।
ମାସ ପରେ ମାସ ଆହା ଦିନ ପରେ ଦିନ,
ରୋଗ ଶେଯେ ପଡ଼ି ତନୁ କ୍ଳିଷ୍ଟ ଶିରୀ କ୍ଷୀଣ ।
ନିରାଶେ ଭାବୁଛି ରୋଗୀ ମରିବି ଏଥର
ଆସନ୍ନ ମୃତ୍ୟୁ ଧ୍ୟାଇଣ ପ୍ରାଣ ଥର ଥର ।
ଅନ୍ତରୀକ୍ଷେ ଦେଖି ଆଶା ତା' ବେଦନା ରାଶି,
ଓହ୍ଲାଇ ଆସେ କି ଧୀରେ ଯାତନା ଉଶ୍ୱାସି,
ସ୍ନେହାର୍ଦ୍ର-କୋମଳ କରେ ପରଶି କପାଳ
ହୃଦୟେ ଜଗାଏ ଶତ ଭରସା ବିଶାଳ ।
ମଧୁ-ମିଷ୍ଟ-ସ୍ୱରେ ଭାଷେ, ''ଦେଖାଯାଉ, କାଲି
ଭଲ ହୋଇପାରୁ, କିପାଁ କ୍ଳାନ୍ତ ଭାଳି ଭାଳି ?''
ତ୍ରିକାଳ ଗଲାଣି ଆସି ଚତୁର୍ଥେ ପ୍ରବେଶ
ଲୋଭ ଛାଡ଼ି ନ ପାରେ କେ ବୃଦ୍ଧ ପକ୍ୱକେଶ ।
ପ୍ରତି ତାମ୍ରମୁଦ୍ରା ଅତି ଯତନେ ପରଖି,
ଅୟସ-ସିନ୍ଧୁ କେ ଦୃଢ଼ ତାଲାବଦ୍ଧ ରଖି,
ଚୌର ଭୟେ ରାତ୍ରେ ନିଦ୍ରା ନ ହୁଏ ତାହାର,
ବିବେକ ଏକାଳେ ମୃଦୁ କରଇ ପ୍ରହାର ।
''କିପାଇଁ ଆୟାସ ଏତେ କିମ୍ବା ଏତେ କ୍ଳେଶ,
ଅଧେ ଉପରେ ତ ଆୟୁ ହେଲା ଆସି ଶେଷ ।

ଧର୍ମ୍ମ-ଧନ ରଖ ସଞ୍ଚି ଛାଡ଼ି ଭବ ମାୟା,
କିଏ ସେ କାହାର ବନ୍ଧୁ ସହୋଦର ଜାୟା !
ମନେ ନାହିଁ ତିଳେ ଛାଡ଼ିଯିବ ନିଜ ଦେହ,
କିପାଇଁ ପାର୍ଥିବ ଧନେ ଏ ଆଦର ସ୍ନେହ ?
ସହସା ବୃଦ୍ଧର ମନେ ଉଠେ ଚିନ୍ତାଶତ
ପ୍ରାଣେ ପ୍ରାଣେ ଆସି ଆଶା କହେ ଅନ୍ୟମତ ।
କ୍ଷଣେ ରୂପରଙ୍ଗ ପେଡ଼ି ଶତ ଇନ୍ଦ୍ରଜାଲ
ଆବରି ବୃଦ୍ଧର ଆଖି ବେଢ଼େ ମାୟାଜାଲ ।

କାନେ କାନେ କି କୋମଳେ କହେ କୁହୁକିନୀ
କହ ଦେଖି କି ସୁନ୍ଦର ରଜତ ଚାନ୍ଦିନୀ ।
ଅର୍ଥ ଜେ ନ ସଞ୍ଚେ ମୂର୍ଖ; ବନ୍ଧୁ ଅର୍ଥସମ
କେ ଅଛି ସଂସାରେ ତୁହି ଜାଣୁ ଆଜୀବନ ।
କେଜାଣେ ମାନବ ଆୟୁ ରହ ଏହିମତି
ଆଜି ଦିନ, କାଲି ଧର୍ମ୍ମେ ଆପେ ହେବୁ ବ୍ରତୀ ।

'କାଲି କାଲି, କହି ଯୁବା ବିନାଶ ଅୟନେ
ଚାଲିଯାଉଥାଏ ଦ୍ରୁତ ନ ବିଚାରି ମନେ ।
ଜୀବନ-ବସନ୍ତ ମୃଦୁ ମଳୟ ହିଲ୍ଲୋଳେ
ଭାସେ ଶତ ଶତ ମୁଖ-ଆମୋଦ କଲ୍ଲୋଳେ ।
କେବେ ଯଦି ତା' ବିବେକ କହେ ରୁକ୍ଷବାଣୀ
ଭୁଲାଏ ତା'ମନ ଆଶା କାଲି ରୂପ ଆଣି ।
ନଳିତେ ମଧୁରେ କହେ ସୁକୋମଳ ଗିର,
'ବାରେ ତ ନିରେଖି ଦେଖ ଧାରା କି ରୁଚିର !
ଆହା ମଧୁମୟ ନବ ଯଉବନ ଦିନ
ସର୍ବ ସୁଖମୟ ଚିନ୍ତା ଭାବନା-ବିହୀନ ।
ଯଉବନେ ସିନା ଭୋଗ ବିଳାସଟି ସାର,
ଧର୍ମ୍ମ କର୍ମ୍ମ ଲାଗି ଅଛି ସମୟ ଅପାର ।
ଆଜି ସୁଖ ଭୋଗ ତୁହି ନୋହି ଆନମନା,
କାଲି ତ ପାରିବୁ କରି ଧରମ ସାଧନା !

ପାଠଚୋର ଛାତ୍ର କେହି ପୋଥି ଧରି ହାତେ
ଅର୍ଦ୍ଧନିମିଳିତ ଆଖି ଶୋଇଛି ପ୍ରଭାତେ ।
ଶତ ଶତ ଅର୍ଥ ପିତା ସାରି ଅକାତରେ
ପଠାଇ ଅଛନ୍ତି ପୁତ୍ରେ ଦୂରଦେଶାନ୍ତରେ ।
ରଙ୍ଗମଞ୍ଚେ ଅଭିନୟ ଦେଖି ଉଜାଗର
ସାରା ରାତି, ପାଠେ ମନ ହୁଏ କି ତତ୍ପର !
ପରୀକ୍ଷାର କଥା ଭାବି ମନେ ଉଦେ ଶଙ୍କା,
ସେହିକ୍ଷଣି ଆସି ଆଶା ନାଶେ ମନୁ ଦକା !

ଆଳସ୍ୟ-ଅଞ୍ଜନ ବେନି ଲୋଚନେ ଲଗାଇ
କର ପରଶିଣ ମୃଦୁ ଦେଉଛି ଶୁଆଇ ।

ନିଦ୍ରାମଗ୍ନ ଛାତ୍ର ଭାବେ, ''କେ ପଢୁଛି ଆଉ,
ଯାହା ଯାହା ପାଠ ଅଛି କାଲିକି ସେ ଥାଉ।''
କାଲି କାଲି କହି ହୁଏ ପରୀକ୍ଷା ନିକଟ,
କାଲି ଆଶା ତହୁଁ ଜଣାପଡ଼େ କି ଉତ୍କଟ।

ଦୁଃଖେ ଲାଜେ ରକ୍ତମୁଖ ବେଦନା-ବ୍ୟଥିତ,
ପରୀକ୍ଷାରେ ହାରି ଛାତ୍ର ହୋଇଛି ଚିନ୍ତିତ।
ଭାସୁଅଛି ଆଜି ଦୁଃଖ-ନୀରେ ଶେଯୋପରି,
ଆଶା ଆସି ଭେଟିଲା କି କାଲିରୂପ ଧରି।
ସୁଲଳିତ କହେ ଆଶା, ''ଯୁବକ ସୁନ୍ଦର!
କାଲି କଥା ଭାବି ମନେ ନ ହୁଅ କାତର।
ଆଜି ଏତେ ଦୁଃଖ ଲାଜ, ଆଜି ଏତେ ବ୍ୟଥା,
କେଜାଣି କି ହୋଇପାରେ କହ କାଲି କଥା।
କାଳିକା କାଳିତ ତୋର ପୂରିବ ଅଭୀଷ୍ଟ,
ଥରେ ପରାଜୟେ କହ କିହେଲା ଅନିଷ୍ଟ ?
ଦୃଢ ଆଶା ଲଭି ପୁଣି ଉଠଇ ତରୁଣ,
କାଲି ଚିନ୍ତାମୁଗ୍ଧ ଦୁଃଖ ଭୁଲେ ନିଦାରୁଣ।
ବାଣିଜ୍ୟେ ହାରିଣ ବାରେ କେହି ବ୍ୟବସାୟୀ,
ଭାବେ 'ମୋ' ଜରମେ ପରା ଲକ୍ଷ୍ମୀକୃପା ନାହିଁ।
ନିରାଶେ ଚାହେଁ ସେ ତାର ଚଉଦିଗ ଫେରି
ପ୍ରତିଦ୍ୱନ୍ଦ୍ୱୀ ଶତ ଶତ ରହିଛନ୍ତି ଘେରି।
ଆଜି ତ ଦୁର୍ଦ୍ଦିନ ଜାଣି, ଆଶା କହେ, ''କାଲି,
ଭାଗ୍ୟୋଦୟ ସୁନିଶ୍ଚିତ, ବୃଥା କ୍ଷୋଭ ଭାଳି!''

ଅତୁଳ ସମ୍ପତ୍ତି ପୂର୍ବପୁରୁଷ-ସଞ୍ଚିତ;
ସର୍ବ ସୁଖ ପରିବୃତ ଅମର-ବାଞ୍ଛିତ,
ଅଳସ ବିଳାସୀ କେହି ବୃଥା ଅପବ୍ୟୟୀ,
ନିଶ୍ଚିନ୍ତେ କାଟୁଛି କାଳ କାଲି କାଲି କହି।
କାଲି ସେ ମରିବ ଯଦି କେ ଭୋଗିବ ଧନ
ନିଶ୍ଚିନ୍ତେ ରହିଛି ହେଳାକରି କାୟଶ୍ରମ।
ବସି ବସି ଖାଇଲେ ତ ସରେ ନଦୀବାଲି
ଆଶା କାନେ କହେ ''ତାହାଦେଖାଯିବ କାଲି।''

ସେ କେଉଁ ପ୍ରବାସୀ ଛାଡ଼ି ଦେଶ-ପରିବାର
କର୍ମ୍ମ-କ୍ଳାନ୍ତ ସନ୍ଧ୍ୟାଗମେ ସ୍ମରେ ବାରମ୍ବାର।
ସୁରମ୍ୟ କୁଟୀର ତାର ସୁଶୀଳା ରମଣୀ,
ସ୍ମରେ ସୁତସୁତା ବନ୍ଧୁ ଜନକ ଜନନୀ।

ପ୍ରବଳ ଆକାଙ୍କ୍ଷା ବାରେ ଦରଶନଲାଗି,
ଆଲୋଡ଼େ ଅଭାଗା ହୃଦ ନାନାଚିନ୍ତା ଜାଗି।

ଧୀରେ ଧୀରେ ମାଡ଼ିଆସେ ନଭେ ଅନ୍ଧକାର,
ଅଲକ୍ଷେ ଓହ୍ଲାଇ ଆସେ ନେତ୍ରେ ଅଶ୍ରୁଧାର।
ଦୂର ଗଗନରୁ କ୍ଷୁଦ୍ର ତାରାଟି ଅନାଇ
ବେଦନା ପ୍ରବାସୀ ହୃଦେ ଦିଏ କି ବଢ଼ାଇ!
ଜୀବନ-ବନ୍ଦୀ ସେ ପରା ଶତ ଦୁଃଖ ଧନ୍ଦା
ନିଷ୍ଠୁର କର୍ତ୍ତବ୍ୟ କ୍ରୂର ଶୃଙ୍ଖଳରେ ବନ୍ଧା।
ସ୍ମରେ ସେ ତରୁଣକାଳ ସ୍ୱାଧୀନତା ସୁଖ
ଦାସତ୍ୱ ମାୟାରୁ ମନ ବିଷାଦେ ବିମୁଖ।
କ୍ଷୁଦ୍ର ଶିଶୁ ମୁଖ ଛବି ପଡ଼ିଯାଏ ମନେ,
ପିତା ପିତା ଡାକେ ସେ କି ଆକୁଳ ରୋଦନେ।
କାହିଁ ପିତା ଦେଶାନ୍ତରୀ, ପିତା ବହୁଦୂର,
ବିହି କି ବିହିଲା ଏଡ଼େ ବିଚ୍ଛେଦ ନିଷ୍ଠୁର।
ଚାହିଁ ସେ ଆକାଶ ଭାବେ, କି ଭାବେ ସେ ଜାଣେ,
ସହସା ଅଶେଷ ଚିନ୍ତା ପ୍ରବେଶ ପରାଣେ।
ଦିଶେ ଗୃହଛବି ତୋରା ନୟନ ପଲକେ,
ପକ୍ଷୀପକ୍ଷ ଆକାଙ୍କ୍ଷା ସେ କରଇ କ୍ଷଣକେ।
ଆକୁଳତା ଦେଖି ତାର ଓହ୍ଲାଇ ଅଶ୍ୱରୁ,
ସ୍ନେହକରେ ଆଶା ଅଶ୍ରୁ ପୋଛି ନୟନରୁ,
କାନେ କାନେ କହେ କେତେ ମଧୁର ଭାରତୀ,
''କାଲି ତ ଭେଟିବୁ ପ୍ରିୟ ପରିବାର ଜତି।
କାଲି ତ ଆସିବ ଦିନ ସରିବ ପ୍ରବାସ,
କୁଟୁମ୍ବ-ମୁଖେନ୍ଦୁ ଦେଖି ଲଭିବୁ ଉଲ୍ଲାସ।''

ଆଶା ଛଳନାରେ ମୁଗ୍ଧ ଦୁଃଖୀ କଳପନା,
ଭବିଷ୍ୟ ସୁଖ ସେ କେତେ କରେ ସରଜନା।
ମନୋନଭେ କୁତୂହଳେ ଗଢ଼େ ଅଟ୍ଟାଳିକା,
ଫୁଟାଏ ସେ କେତେ ନବକୁସୁମ-କଳିକା।

ପ୍ରିୟଜନ କା'ର କେହି ଅଦୃଶ୍ୟ ବିଦେଶେ,
ଭାଳନ୍ତି କୁଟୁମ୍ବବନ୍ଧୁ କଥା ତାର କ୍ଳେଶେ।
ସ୍ୱାମୀ କଥା ଭାଳି କାନ୍ଦେ ବଧୂରା ବନିତା,
ପିତା ଆଗମନ ଆଶେ ଚାହିଁଛି ଦୁହିତା।

ଚାହିଁଛି ଆକୁଳେ ପଥ ଦିବସ ରଜନୀ,
ଦେଶତ୍ୟାଗୀ ପୁତ୍ର ଲାଗି ଦୁଃଖିନୀ ଜନନୀ ।
ବହୁ ବର୍ଷ ଦେଶାନ୍ତରୀ ନ ମିଳେ ସନ୍ଧାନ,
ଆଶାରେ ଆଶାରେ ମାତ୍ର ଜୀବିତ ପରାଣ ।
କେତେ ବ୍ରତ, ଉପବାସ, କେତେ ମାନସିକ,
ହେଲାଣି ବିଫଳ କହି କରମକୁ ଧିକ ।
କାନ୍ଦନ୍ତି ଆତୁର ହିୟା ଅବଳା ସରଳା,
କ୍ଷଣେ କି ଦେଖନ୍ତି ଆଶାମୂରତି ଉଜ୍ଜ୍ୱଳା ।
ଆଦର ସାନ୍ତ୍ୱନା ଘେନି ଆସେ ଆଶାସତୀ,
''କାଲି ସେ ଆସିବ'' ମୃଦୁ କହେ କି ଭାରତୀ !
ତୁରିତେ ଲୋଚନ ପୋଛି ଶୁଣନ୍ତି ସରଳା,
'କାଲି ସେ ଆସିବ' କାନେ କିଏ କହିଗଲା !

ଦଶମାସ କଷ୍ଟ କରି ଧରିଲା ଉଦରେ,
କନ୍ଦାଇ ଜନନୀ ପ୍ରାଣ କ୍ଷୁଦ୍ର ଶିଶୁମରେ ।
ବିଫଳ ତା ଚିତ୍ତ ବ୍ୟଥା ପ୍ରାଣ କି ବିଦରେ,
ଆକୁଳେ ଲୋଟ଼ଇ ମାତା ଶୟନ କବରେ ।
ମୃତ ଶିଶୁମୁଖ ଚାହିଁ ହେଉଛି ଆକୁଳ,
ବାଷ୍ପରୁଦ୍ଧ କଣ୍ଠ ଶୁଖେ, ନେତ୍ରେ ଅଶ୍ରୁଧୂଳ ।
ଅବଶ ନୀରସ ପ୍ରାଣେ ସହସା ଉଦୟ,
ନବୀନ ମୂରତି ଆଶା ରୂପ ମଧୁମୟ ।
କାନ୍ଦ କାନ୍ଦ ଆଜି ମାତା ଅନାଏ ଗଗନେ,
ନିରେଖେ ଅରୂପ ଆଶା ଶୋଭାଶୂନ୍ୟ ମନେ ।
ମରମେ ମରମେ ଆଶା କହେ ଶାନ୍ତିଗିର-
''ପୁଣି ତୁ ଲଭିବୁ ପୁତ୍ର କିପାଇଁ ଅଧୀର,
କାଲି ସକାଳେ ତୋ କୋଳେ ହସିବ କୁମାର
ଆଜି ଏ ବେଦନା ଅଶ୍ରୁ ସମ୍ବର, ସମ୍ବର !''

ଶତ ଅତ୍ୟାଚାର ଦୁଃଖେ ବିବଶା ବାଳିକା,
ଫୁଟି ନ ଫୁଟିଲା ସତେ ତରୁଣ କଳିକା ।
କରୁଣେ କବାଟ କୋଣେ କାନ୍ଦେ କ୍ଷୀଣପ୍ରାଣେ,
ବାହୁନି ବାହୁନି କେତେ ଦୁଃଖ ସେ ବଖାଣେ ।
ଏତେ ବଡ଼ ପରିବାରେ କେହି ନ ପଚାରେ,
ଶୀର୍ଣ୍ଣଶିରୀ ଦିନୁଁ ଦିନୁଁ କ୍ରୁର ଅବିଚାରେ ।
ଉପେକ୍ଷଣେ, ନିମନ୍ତ୍ରଣେ, ଗରଳ ଭୋଜନେ,
କହେ କି ବାଳାର ମନ ଗୋପନେ ଗୋପନେ !

ଅଭାଗୀ ଯାତନା କଥା କେହି ନ ବୁଝିଲା,
ତହିଁ ଆଶା ମନେ ତୀବ୍ର ବ୍ୟଥା କି ବାଜିଲା !
ସଖୀସମ ସ୍ନେହାଦରେ ଆଶା ବିନୋଦିନୀ,
ସହସା ହୃଦୟ ସରେ ନବ କୁମୁଦିନୀ—
ଦୁଃଖ ଅନ୍ଧାର ନିଶାରେ ଉଠିଲା କି ଫୁଟି,
ନବୀନ ସାନ୍ତ୍ୱନା ସୁଖ ସୁରଭି ଉକୁଟି ।
ଦୁଃଖ ଘନ ତମ ଭେଦି ଅଳ୍ପ ଅଳ୍ପ,
ହସିଲା କି ଜ୍ୟୋସ୍ନା-ଭାବି ସୁଖ ସଙ୍କଳପ ।
କାଲି ସୁଖ ଆଶା କେତେ ଆଙ୍କେ କଳପନା,
କ୍ଷଣେ କ୍ଷଣେ ବ୍ୟଥା ହରି ଢାଳେ କି ସାନ୍ତ୍ୱନା ।
କହେ ଆଶା, ''ସୁନ୍ଦରୀ ତୋ ନବୀନ ବୟସ,
ଏ ବୟସେ କିପା ଏଡ଼େ ବ୍ୟାକୁଳ ବିରସ ।
ଆଜି ଦିନ ସଦାଦିନ ନଥିବ କରମେ,
କାଲି କଥା ଭାବି ଶାନ୍ତି ଲଭ ହେ ମରମେ ।
ଉପରେ ତ ଦିନରାତି କରୁଛନ୍ତି ଜଣେ,
ନାଶି ତ ପାରନ୍ତା ହେଲେ ଦୁଃଖ ତୋର କ୍ଷଣେ ।
ଏକାମାଘେ ଶୀତ କାର ନ ଯିବ ବାହାରି,
'ଆଜି ଦୁଃଖ କାଲି ସୁଖ, ବୁଝ ହେ ବିଚାରି ।''
ବିଦ୍ୟାଳୟ କାର୍ଯ୍ୟ ଶେଷ ଦୀର୍ଘ ଅବକାଶ,
ବ୍ୟସ୍ତଛାତ୍ର ହୃଦେ ବେନି ବିଷାଦ ଉଲ୍ଲାସ ।
ବନ୍ଧୁ ବନ୍ଧୁଠାରୁ ହର୍ଷେ ମାଗୁଛି ମେଲାଣି,
କା'ର ନେତ୍ରେ ଅଶ୍ରୁ, କା'ର କରୁଣ ଚାହାଣୀ ।
''ମୋତେ ଗୋ ଭୁଲିବ ନାହିଁ'', କହେ କେ ଆଦରେ
କାଲି ପାଇବ ମୋ ପତ୍ର, ବନ୍ଧୁ ପ୍ରତ୍ୟୁତ୍ତରେ ।
ଆଶା ପ୍ରାଣେ ପ୍ରାଣେ ଆସି କହେ ପ୍ରିୟ ବାଣୀ,
କାଲି ପ୍ରାତଃ ସରି ସର୍ବେ ଭେଟାଇବି ଆଣି ।
କେ ମରେ କେ ବଞ୍ଚେ ଭବେ କାହାକୁ ତା' ଜଣା,
କାଲି ପତ୍ର ଆଶାକରେ ବନ୍ଧୁ କଳପନା ।
ସାରାଦିନ ଆଶା ପ୍ରିୟ ମିଳନ ସକାଶ,
ଭଗନ ବ୍ୟଥାରେ କେହି ପ୍ରେମିକ ନିରାଶ ।
ନିଭୃତେ ନିର୍ଜ୍ଜନେ କାହିଁ ମ୍ଳାନ-ସୁଖ-ଇନ୍ଦୁ,
ତରଳ ଶିଶିର ସମ ଢାଳେ ନେତ୍ର-ବିନ୍ଦୁ ।
ଆକୁଳେ ଉଦ୍‌ବେଳେ ହିୟା ନ ଘେନେ ସାନ୍ତ୍ୱନା,
ସେହି ଦଣ୍ଡେ ଆସେ ଆଶା କାଲି କଳପନା ।

ମଧୁର କବିତା କେତେ ଛନ୍ଦି ଆଶା-କବି,
ଆଙ୍କେ ସୁରଞ୍ଜିତ ମନୋହର କାଳି ଛବି ।

କାଳି ରୂପ ପ୍ରତିଭାତେ ମଧୁର ମିଳନେ,
କାଳି ଆଶା ଘେନେ ବୃଥା ତାକୁ କି ନନ୍ଦନେ ।
ଆଶା ସ୍ୱପ୍ନସୁଖ ଶତ କାଲି-ନିଦ୍ରା ଯୋଗେ,
ମୋହିତ ପ୍ରେମିକ ଭୋଳ ଜାଗ୍ରତେ କି ଭୋଗେ ।
କୋମଳ ଲଳିତ ଚାରୁ କରୁଣ ବିଧୁର,
ବିରହେ ମିଳନ ଆଶା ଦ୍ୱିଗୁଣ ମଧୁର ।

ଏହିମତେ କାଳି ରୂପେ ଆଶାକୁହୁକିନୀ,
ମୋହୁଛି ମାନବ ମନ ନିତି ମାୟାବିନୀ ।
ମାୟାରେ ବିଭୋର ମନ ନ ପାରୁ କି ବୁଝି,
ବିଧାତା ଅଛନ୍ତି କେଉଁ କାଳେ କାଳି ସୃଜି ।
କାଳି କହି ଜଡ଼ ପରି ଅଚେତ ଅବଶ
ଶୋଇ ଶୋଇ ନ କାଟ ତୁ ଯାମିନୀ ଦିବସ ।
ଆଜି ଶୁଭଦିନ ଆଜି କର୍ମଯାଥ କରି;
'କର୍ମଫଳ' ଲାଗି କାଳି ଆଶା ଥାଥ ଧରି ।



## ବରଷା ପ୍ରତି

(୧)

ବରଷା ଝରଇ ଝର ଝର ସ୍ୱନେ
ଜଗାଇ କି ଚିନ୍ତା ମୋହର ପରାଣେ
କେତେ କଥାମାନ
ସ୍ମରଇ ମୋ' ମନ
କେତେ କଥା ଭାଳି ଜ୍ୱଳଇ ମନ,
କେତେ ସୁଖ ଦୁଃଖ ଗତ, ନୂତନ
ଗୋଟି ଗୋଟି ପଡ଼େ ମନେ,
ଝର ଝର ଅଶ୍ରୁ ବହିଯାଏ ଆଜି
ମୋର ଏ ଦଗ୍‌ଧ ନୟନେ ।

(୨)

କାହିଁକି ରେ କହ ବରଷା ଝରୁଛୁ ?
ମୋ' ପୋଡ଼ା ପରାଣ ପୋଡ଼ି ତୁ ମାରୁଛୁ
ଶୀତଳ ତୋ ନୀର
ଝରେ ଝର ଝର
କିନ୍ତୁ ସେ ଦହେ ଯେ ମୋ' ପୋଡ଼ା ଅନ୍ତର,
ସତେ କି ଶମିବ ତାକୁ ତୋହ ନୀର ?
ହାୟରେ ହୃଦୟାନଳ !
ନରକ ଅନଳହେବ କି ତୋ' ସରି
ତୋ' ପରି କେ ଭୟଙ୍କର !

(୩)

ବରଷା ଝରଇ ଯେହ୍ନେ ଝର ଝର
ଦିବା ନିଶି ବହେ ନୟନରୁ ନୀର ।
ଧୋଇ ଦିଏ ମୋର
କପୋଳ ଯୁଗଳ
ତେବେ ସୁଦ୍ଧା ଶମେ କି ଏ ଅନ୍ତର ?
ହାୟ ହାୟ ଏ କି ଯନ୍ତ୍ରଣା ଘୋର !
ଏ କି ମୋ' କପାଳ ଲେଖା,
ଜନ୍ମଲଭି ଭବେ ସୁଖ ନ ଭୁଞ୍ଜିବି
ଦୁଃଖ ଭୁଞ୍ଜୁଥିବି ଏକା ?

(୪)

ବରଷା ଶୀତଳୁ ଧରଣୀ ଶରୀର
କିପାଇଁ ନ ଶମୁ ମୋର ଏ ଅନ୍ତର ?
(ଜାଣେ) ଫାଟିଛି କପାଳ
ଆଉ କିଏ ମୋର
ଶମିବ ସଦୟେ ବେଦନା ଭାର,
(କିଏ) ଶୁଣିବ ଦୁଃଖର କାହାଣୀ ମୋର ।
ମୋହର ଏବେ ଯେ ସରବେ ପର
କିଏ ପୋଛିବ ମୋ' ନୟନ ସଲିଳ
ବହେ ଯାହା ନିରନ୍ତର ।

(୫)

ବରଷା ନିବାଗୁ ଚାତକ ପିପାସା
(ତେବେ) କିପାଁ ନ ନିବାଗୁ ମୋ ମାନସତୃଷା,
ଅତୃପ୍ତ ବାସନା
ମରମ ବେଦନା
ଦାବାନଳ ସମ ଜ୍ୱଳେ ହୃଦରେ,
ନ ଲିଭାଉ କିପାଁ ଦୟାରେ ଥରେ !
ଅରଣ୍ୟ ଦାବ ଦହନ,
ଲିଭାଉ; କାହିଁକି ନ ଲିଭାଉ ତୁହି
ମୋ' ଅନ୍ତର ହୁତାଶନ !

(୬)

ପିନ୍ଧାଉ ପାଦପେ ହରିତ ବସନ'
ତୋତେ ଲଭି ହସେ ଗହନ କାନନ ।
ଆନନ୍ଦେ ଦର୍ଦ୍ଦୁର
କରେ କୋଳାହଳ
ତୋତେ ଦେଖି ସୁଖୀ ସରବ ଜନ,
ଜଗତକୁ ତୁହି ଦେଉ ଜୀବନ
ତେବେ କିପାଁଇ ଏ ଦଗ୍‌ଧ ମନେ
କହରେ, ବରଷା ଆଣି ଦେଉ ନାହୁଁ
ମୋ' ବାଞ୍ଛିତ ଶାନ୍ତି-ଧନେ ?

(୭)

କହରେ ବରଷା, ଗାଉଛୁ କି ଗୀତ,
ଯାହା ଶୁଣି ମୋର ଉତ୍ସୁକ ଚିତ୍ତ ।
ଆହାକି ମାଧୁରୀ
ତୋ' ସ୍ୱର ଲହରୀ
ଢାଳିଦିଏ ପ୍ରାଣେ, ଏ ସୁଧାରସ
କେଉଁ ଦେଶୁଁ ଆସେ ହୋଇ ହରଷ
ଢାଳୁଛୁ ଧରଣୀ ପରେ,
ମୋ' ଅନ୍ତରମରୁ ଶୁଖିଲା କାହିଁକି
ଦୟା ନାହିଁ କି ମୋ' ଠାରେ ?

(୮)

କହରେ ବରଷା, କହରେ ବାରତା
କେଉଁ ଦେଶୁଁ ଆସେ ତୋ' ମେଘ ପିତା
କହ କହ ଫେର
ଯାହା ଜାଣୁ ତୁହି,
ସେ ଅଦୃଶ୍ୟ ଦେଶ ସର୍ବ ଉଦନ୍ତ;
ଶୁଣିଲେ ଅଥବା ଶମିବ ଚିତ୍ତ
ନାନା ଚମତ୍କାର କଥା,
ଚିତ୍ତ ରଞ୍ଜିକ୍ଷଣେ ନିବାରିବ ପରା
ଏ ଜଞ୍ଜାଳ ଦୁଃଖ ଚିନ୍ତା ।

(୯)

ଜାଣୁ ତ ବରଷା, ଦିବାନିଶି ମୋର
କେତେ କର୍ମକ୍ଳାନ୍ତି ବେଦନା ଘୋର,
ବନର ଦହନ
ଦେଖଇ ନୟନ
କିନ୍ତୁ ମନ-ବନ ଅଗ୍ନି ଦେଖେ କେ
ପୋଡ଼ି ଛାରଖାର ହୋଏ କ୍ଷଣକେ
ଚିର ଜୀବନର ସୁଖ,
ଅଶ୍ରୁ ଝରିପଡ଼େ ବ୍ୟାକୁଳ ନୟନୁଁ
ବେଦନା-ବିଶୁଷ୍କ ମୁଖ ।

(୧୦)

ହାୟ ! ଧରି ବସିଅଛି ବୃଥା ଆଶା
ହୃଦୟେ ରଖିଛି ଘୋର ପିପାସା,
ଆକୁଳ ମୋ'ଚିତ୍ତ
କାହିଁ ଶାନ୍ତିବିତ୍ତ
ଲାଗେ ମୋତେ ଘୋର ଶୂନ୍ୟ ଏ ଭବ,
କ୍ରୂର ସ୍ୱାର୍ଥପର ପ୍ରାଣୀ ମାନବ
(ତେଣୁ) କହୁଛୁ କି ମୋର କାନେ,
ଧର ସେହି ବିଷ୍ଣୁ ପଦ ଅରବିନ୍ଦ
କାନ୍ଦ ଯାଇ ଶ୍ରୀଚରଣେ ।

(୧୧)

ହୋଇଥାନ୍ତି ଯଦି ଆହା ବିହଙ୍ଗମ
ତେବେ କି ଭାବନା କରନ୍ତା ମନ।
ଯାଆନ୍ତି ମୁଁ ଉଡ଼ି
ଘରଦ୍ୱାର ଛାଡ଼ି
ବିଷମ ଏ ଭବବନୁଁ ବହନ,
ଶମନ୍ତା ଅବା ମୋ ହୃଦ ଦହନ।
ବିଭୁପଦ ଅରବିନ୍ଦ
ଯୁଗଳ ତଳରେ, ଶୋକାଶ୍ରୁ ଜଳରେ
ଲୋଟି ଲଭନ୍ତି ଆନନ୍ଦ।

(୧୨)

ପାଳିବି ତୋହରି ବଚନ ବରଷା,
ସେହି ପ୍ରଭୁ ବିନା ନାହିଁ ମୋ ଆଶା।
ଛାଗେ ସେହି ଦିନେ
ଦୟା କରି ଦୀନେ,
ଶମିବେ ମୋହର ଦଗ୍ଧ ପରାଣ,
ଏତେ ଜାଣି ବୁଝି କାନ୍ଦଇ ମନ,
କି କରିବି କହ ମୁହିଁ,
ମନକୁ ବୁଝାଏ ମନ ତ ନ ବୁଝେ
ବୁଝାଇ ଯାଅ ଗୋ ତୁହି।

(୧୩)

ବୃଥା ଭବିଷ୍ୟତ ଆଶାରେ ମୋହିତ
ହେବାର କେବେହେଁ ନୁହେଁ ବିହିତ।
କାଳ ବିଡ଼ମ୍ବନା
ବିଷମ ଛଳନା–
କିଏ ଜାଣେ, ତେଣୁ କାନ୍ଦଇ ଚିତ
କହ କି କରିବି ବରଷା ମିତ,
କେବଳ ସେ ଦୟାମୟ
ପଦ-ଅରବିନ୍ଦ ସ୍ମରି ଶମିବି
ମୋର ଏ ଦଗ୍ଧ ହୃଦୟ।

(୧୪)

କେଉଁ ଦିନ ଶାନ୍ତି ଲଭିବି ପ୍ରାଣେ
ଭାବେ ତାହା ସଦା ଆକୁଳ ଧାନେ,
କହ କହ ତୁହି
ହୋଇବୁ କି ନାହିଁ
ସଦୟ ମୋ'ପରେ, ମର ଜଗତେ
ନ ଦେବୁ ଆନନ୍ଦ ଶାନ୍ତି କି ସତେ ?
ତୁହି ତ କରୁଣାକର
ଅବୁ କିପାଁ ଭୟ କରିବି କାହାକୁ
ଜାଣୁଛୁ ଦୁଃଖ ମୋହର।



## ବିଜନ ଚିନ୍ତା

ନୀରବ ରଜନୀ, ନୀରବ ସଂସାର
ନିଦ୍ରାବେଶେ ସ୍ତବ୍ଧ ଦିଗଦିଗନ୍ତର।
ନୀରବ ପ୍ରକୃତି ସୁଶାନ୍ତ ସୁନ୍ଦର
ଆବୋରିଛି ଅଙ୍ଗେ ବେଶ ଅନ୍ଧକାର।
ନୀରବେ ହସୁଛି ନଭେ ଶଶଧର
ମ୍ଳାନ ଦୀପ୍ତି ଛଟା କ୍ଷୀଣ କଳେବର
ହସୁଛି ତାରକା, ନୀରବ ନୟନ
ଜଳେ ରୂପପ୍ରଭା କରି ବିଲୋକନ।

ଭାସୁଛି ଆକାଶେ ନୀରବ ନୀରଦ,
ପ୍ରଚାରେ କି ନଭ ନୀରବତା ବେଦ।
ଶାନ୍ତି ମନ୍ତ୍ରେ ପୂତ ଦୀକ୍ଷିତ ସକଳେ
ଶୋଇଛି କି ଧରା ଶାନ୍ତି ମାତା କୋଳେ !
ଶାନ୍ତିର ସ୍ୱପନେ ହେରି ନିଦ୍ରାବେଶେ
ତାରା-ଶଶୀ-ଛଳେ ହସେ ମୃଦୁ ହାସେ।
ବ୍ୟଜନୁଛି ବାୟୁ ଶାନ୍ତିର ବ୍ୟଜନ,
ତାହା ଲଭି ଧରା ଶାନ୍ତ ତନୁ ପ୍ରାଣ।

ସୁସୁପ୍ତେ ଆନନ୍ଦେ ହୋଇଣ ବିଭୋର
ଶାଖୀ ଶାଖାବୃନ୍ଦେ ସଂଚାଳଇ କର ।
ସରବ ନୀରବ ବିଶ୍ୱଚରାଚର
କିନ୍ତୁ ଏକା ମୋର ବ୍ୟଥିତ ଅନ୍ତର ।
ମୁକ୍ତ ବାତାୟନ ସମୀପେ ଆସୀନ,
ଚିନ୍ତିତ ଅନ୍ତରେ କରେ ବିଲୋକନ ।
ବସୁମତି ଶୋଭା, ଆକାଶ ବିଭବ,
ମୋ ଅନ୍ତର ଛାଡ଼ି ସରବେ ନୀରବ ।
ସରବେ ଶାନ୍ତିର ସୁଶୀତଳ ଅଙ୍କେ
ଏକା ମୁଁ ମଜ୍ଜିତ ଦୁଃଖଶୋକ-ପଙ୍କେ ।
ଜଳୁଅଛି ଦୀପ ଅଗ୍ରତେ ମୋହର
କ୍ଷୀଣାଲୋକ କରି ପ୍ରକୋଷ୍ଠେ ସଞ୍ଚାର ।
ମୁକ୍ତ ବାତାୟନ ପଥେ ସମୀରଣ
ପରିବେଶି କରେ ଅମୃତ ସିଞ୍ଚନ ।
ଲଭି ସେ ମଧୁର ଅମୃତ ହିଲ୍ଲୋଳ
ନ ବହିଲା ହୃଦେ ଶାନ୍ତିର କଲ୍ଲୋଳ ।
ଥରେ ଯେବେ ଦଗ୍ଧ ହୋଇଛି ହୃଦୟ,
ଆଉ କିବା ସାଧ ହେବ ଶାନ୍ତିମୟ ।
ଆଗ୍ନେୟ-ଅଚଳ ସମ ଭୟଙ୍କର
ଦଗ୍ଧ ହୃଦୟର ଯାତନା ଦୁର୍ବାର ।
ଅନ୍ତରେ ଯାହାର ଜ୍ୱଳଇ ପାବକ
ତା'ବଳି ସଂସାରେ କେ ଭୋଗେ ନରକ !
ତା'ବଳି ଦୁଃଖୀ କେ ଅଛି ଏ ଜଗତେ,
ଭଗ୍ନ-ଆଶା-ସୂଚୀ ବିନ୍ଧ ଯାର ଚିତ୍ତେ ।
ନିରାଶାର ବିଷେ ଅନ୍ତର ଜର୍ଜର,
ତା'ବଳି ଯୌବନେ ମୃତ୍ୟୁ ସୁଖକର ।
ଆଶାଲତା ଯେବେ ଛିଡ଼େ ଚିରତରେ
ତା' ବଳି ଆଉ କି ଦୁଃଖ ଏ ସଂସାରେ !

ଶତ ଶତ ବ୍ୟାଧି ପୀଡ଼ିତ ଶରୀର
ବ୍ୟଥିତ ଚିତ୍ତରୁ ନୁହେ କ୍ଳେଶକର ।
ଥିଲେ ମନେ ଶାନ୍ତି, ସରବ ସଂସାର
ଦିଶଇ ନୟନେ ଆନନ୍ଦ ମନ୍ଦିର ।

କିନ୍ତୁ ଶାନ୍ତି ବିନା ଭୂପତି ଭୁବନେ
ହରୁ ଥିଲେ ଦିନ ବିଳାସ ବ୍ୟସନେ
ପାତି ହେମ ଶଯ୍ୟା ବସି ତହିଁ ପରେ
ହୀରା ମଣି ମୁକ୍ତା ସଜାଇ ଶରୀରେ
ସୁଖାଦ୍ୟେ ପୂର୍ଣ୍ଣିତ କରିଲେ ଉଦର
ପଦତଳେ ପାଇ ସହସ୍ର କିଙ୍କର

ନ ହେବ ତୃପ୍ତ ଏ ବିଦଗଧ ଚିତ୍ତ
ଶାନ୍ତ, ପିପାସାରେ ହେବ ଆକୁଳିତ ।
ବର୍ଷା ବାରି ପାଇଁ ମଣ୍ଡୁକ ଯେସନ
କରେ ଉଚ୍ଚରବ ଆକୁଳିତ ପ୍ରାଣ,
ଖୋଜି ବୁଲେ ଯେହ୍ନେ ସ୍ୱଚ୍ଛ ନିର୍ଝରିଣୀ
ତଳ ତଳ ନେତ୍ରୀ ଚକିତା ହରିଣୀ
ଧନ୍ୟ ସେହି ନର, ଶାନ୍ତ ଚିତ୍ତ ଯାର
ସହସ୍ର ନୃପତି ଅଗ୍ରତେ ତାର ଛାର ।
କିରୀଟ ନୁହଇ ସୁଖର ଆକର
ଚିତ୍ତ ଶାନ୍ତି ବିନା ସେହି ତ ଜହର ।
ଶାନ୍ତି ବିନା ପାଇ ସରବ ସଂସାର
ଚିତ୍ତେ ଲଭି ଅଛି ସୁଖ କେଉଁ ନର ?
ଆହା, ଶାନ୍ତିମୟ ଜୀବନ ଯାହାର
ତାପରି କେ ଭବେ ସୁଖୀ ଅଛି ଆର !

ଦାରିଦ୍ର୍ୟ ପୀଡ଼ନେ ଯଦ୍ୟପି ପୀଡ଼ିତ
ଅନ୍ନବସ୍ତ୍ରାଭାବେ ସତତ ବ୍ୟଥିତ,
ଯଦି ଭିକ୍ଷା କରେ ବୁଲି ଦ୍ୱାର ଦ୍ୱାର
ଗୃହ ବିନା ଆଶ୍ରା କରେ ତରୁତଳ,
ସହସ୍ର ଅଭାବେ ନିତ୍ୟ ନିପତିତ
ତଥାପି କି ସୁଖୀ, ଯାର ଶାନ୍ତ ଚିତ୍ତ !

ଶାନ୍ତିରେ ତାହାର ବଦନ ଉଜ୍ଜଳ
ସରୋବରେ ଯେହ୍ନେ ଫୁଲ୍ଲ ଶତଦଳ,
ଶରଦ ଆକାଶେ ଚନ୍ଦ୍ରମା ଯେସନ
ଭାସୁଥାଏ ହସି ଉଜ୍ଜ୍ୱଳ ଆନନ ।
କି ଶାନ୍ତି ତାହାର ହୃଦୟ-ମନ୍ଦିରେ
ଧନ୍ୟ ସେହି ନର ସଂସାର ମଧ୍ୟରେ ।

ଶାନ୍ତି ସମ ଧନ ନାହିଁ ଏ ସଂସାରେ
ଆହା, ମିଳିବ ସେ ଶାନ୍ତି କେଉଁଠାରେ ?

କେଉଁଠାରେ ସେହି ମହାମୂଲ୍ୟ ଧନ,
କେହି କି ଟିକିଏ ନ ଦେବ ସନ୍ଧାନ ?
କେଉଁଠାରେ ସେହି ଅପୂର୍ବ ରତନ
ଗୁପ୍ତେ ଦୀପ୍ତିଛଟା କରେ ବିକୀରଣ ।
ବସିଛି ନୀରବେ ବାତାୟନ ପାଶେ
ହେରି ଭବ ଶୋଭା ଶାନ୍ତି-ପ୍ରାପ୍ତି ଆଶେ ।
ଶୀତ ସମୀରଣ କରିଣ ସେବନ
ଲଭିବାର ଆଶେ ଶାନ୍ତି ମହାଧନ ।
କିନ୍ତୁ ଦଗ୍ଧ ଚିର ବ୍ୟଥା ବିଦୂରିତ
ହେରି ଭବ ଶୋଭା ହେବ କି କିଞ୍ଚିତ ?
ଦେଖି ନ ଦେଖିଲା ପରି ଏ ନୟନ
ହୃଦୟେ ତ ଦହେ ଅଶାନ୍ତି-ଦହନ ।
କର୍ତ୍ତବ୍ୟ କରମେ ନୋହିବ ବିମୁଖ
କ୍ରମେ କ୍ରମେ ତହୁଁ ଉପୁଜିବ ସୁଖ ।
ନ ପାଇଲେ ଫଳ ନୋହିବ ନିରାଶ
ବିପଦେ ଉଚିତ ଦ୍ୱିଗୁଣ ସାହସ ।
ଶେଷେ ପୁରସ୍କାର ଲଭିବ ନିଶ୍ଚୟ
ପିତା ଈଶ୍ୱର ଯେ ଚିର ଦୟାମୟ ।
ଧରିଥିବ ସଦା ସେ ପିତା ପୟର
କେବେ ତହୁଁ ମନ ନୋହିବ ଅନ୍ତର ।
ମୂର୍ଖ ନିଜେ ମୁହିଁ ଭୁଲି ସ୍ୱକରମ
କରୁଅଛି କିପାଁ ବିଫଳ ରୋଦନ ।
ଶୋକ ଦୂର କରି ଭାବି ଏହା ମନେ
ପାହିଲା ଯାମିନୀ ସୁପ୍ତିର ଶୟନେ ।



## ହାହାକାର ଅସହ୍ୟ, ଦୁର୍ବାର

ଜଗତର ପ୍ରତି ଅଣୁକଣା ଭେଦି ଉଠେ ହାହାକାର
ମାତ୍ର ମମ ହାହାକାର ଅସହ୍ୟ ଦୁର୍ବାର ।
ନାହିଁ ତା'ର ପ୍ରତିକାର
କଳେ ସେ ବାଡ଼ବ ତେଜେ,
ବହେ ସେ ପବନ ବେଗେ
ନାଚେ ସେ ତାଣ୍ଡବ ରଙ୍ଗେ ଝରେ ଅଶ୍ରୁଧାର ।
ବନ୍ଦିନୀ ମୁଁ ଚଉରାଶୀ ଚକ୍ରେ
କି ପାପ କରିଛି ପୂର୍ବେ,
ସହୁଅଛି ଏବେ ।
ଶତ ଲୁବ୍ଧକ ନାରକୀ
ଆସନ୍ତି ମୋ ପାଶେ
ଚୋଷିବାକୁ ମମ ପ୍ରାଣ-ମଧୁ ନିକାଞ୍ଚନେ,
କେତେ ପ୍ରଲୋଭନ, କେତେ ଚାଟୁବାଣୀ,
କେତେ ଧମକ ଚମକ ଅସ୍ତ୍ର ଶସ୍ତ୍ର ବାଢ଼
ଦେଖାଇ ଶାସନ୍ତି ମୋତେ,
ଏହି ଲୀଳା ଲାଗିଅଛି ନିତି ।
କୋମଳ ତରଳ ପ୍ରାଣ ହୁଅଇ କରତି
ବରତିବି ବୋଲି ଆଶା ନ ହୁଅଇ ତିଳେ
ହାୟ ହାୟ ହୁଏ ମାତ୍ର ଗୋପନେ ମରମେ ।
ସତ୍ୟ ସତ୍ୟ ଏ ଜୀବନ ସତ୍ୟ,
କେବେ ବିକି ନାହିଁ ହୃଦ ଅର୍ଥ ବିନିମୟେ
ସାଜିଛି ରଣ-ଚଣ୍ଡିକା ମୂର୍ତ୍ତି ଅହରହ ।
ତେଣୁ ଆଜି ନିର୍ବାସିତ ମୁଁ ପାପ କର୍ମରେ
ପଡ଼ିଛି ବନ୍ଦିରେ ।
କିଏ ସେ ଦେବତା
ନ ଶୁଣେ କି ମମ କଥା !
ଦୂରେ ତୁମେ କେତେ ଦୂରେ
କେ କହିବ ମୋତେ,
ଶୂର କି ଅସୁର ଗୃହେ ତୁମେ ଅଛ ବନ୍ଦି ?
ହେ ଦେବତା, ଦେଖିଛ କି ମମ ରୂପ
ସେହି ରୂପ ଘେନି ନିତ୍ୟ ମୁଁ ଧର୍ଷିତା ।

ରୂପହୀନା ହେବି ଭାବି କରିଛି ମୁଁ ଯତ୍ନ
କେତେ ଯତ୍ନ ବିଧବାଠୁଁ ବଳି ନିତିପ୍ରତି,
ସାଧିଛି ତପସ୍ୟା । ବେଶଭୂଷା
ହେବା ଥାଉ ଦୂରେ-ମସ୍ତକେ ନ ଦିଏ
ତୈଳ, ଚକମକି ଲୁଗା ମୁହିଁ
ପିନ୍ଧିବାର ଦୂରେ ଥାଉ,
ପରିଷ୍କାର ଲୁଗା କେବେ ନ ପିନ୍ଧଇ ତିଳେ,
ଅଳଙ୍କାରେ କେବେ ମୁହିଁ ନ ହୁଏ ଭୂଷିତା ।
ତଥାପି କିପାଇଁ ରହେ ଦେହେ ଏ ସୌନ୍ଦର୍ଯ୍ୟ ?
ଉଜ୍ଜ୍ୱଳ ସୁନ୍ଦର,
ତ୍ରିଭୁବନ କରେ ଝଳମଳ,
ନୁହେଁ ମୁଁ ଉର୍ବଶୀ ।
ମାତ୍ର ଶତ ଉର୍ବଶୀର ବିଦ୍ୟୁତ ଚମକ
ମମ ଦେହେ,
ଯେ ଶୁଣିବ ସେ ହସିବ
କହିବ ବାତୁଳୀ – ନିଜରୂପ ଅଭିମାନ
ବଖାଣୁଛି ଦାଣ୍ଡେ –
କି କରିବି, କି କହିବି କିପରି ବା ମୁହିଁ,
କହିବାକୁ ବାଧ ।

ଯେଉଁ ରୂପେ ପାଇ ଆଜି ଭୋଗୁଛି ଦୁର୍ଦ୍ଦଶା,
ସେ ରୂପ ନ କହି ମୁହିଁ କାହିଁ ଯିବି ?
କଳିଙ୍ଗ-କୁମାରୀ ମୁହିଁ ଦୂର ଦେଶ ବନ୍ଦିନୀ ।
ଯେ କବୀନ୍ଦ୍ର ଶିରୋଭୂଷା ଜନମିଲେ ପୂର୍ବେ
ଉତ୍କଳ ଭୂଖଣ୍ଡେ ତାଙ୍କ ନାମ କାଳିଦାସ
ଭୁବନ ବିଖ୍ୟାତ ।
ଚିତ୍ରିଛନ୍ତି ଯେଉଁ ଶକୁନ୍ତଳା ରୂପବତୀ
ବିଶ୍ୱବିମୋହିନୀ,
ସେହି ଶକୁନ୍ତଳା ମୁହିଁ ଚିତ୍ତେ ଆସେ ଭ୍ରମ ।

କାତର ପରାଣେ ଯେବେ ପଢ଼େ କାବ୍ୟ ଗୀତି,
ଶକୁନ୍ତଳା ଚିତ୍ର ମମ ଚକ୍ଷୁ ଅଗ୍ରେ ଭାତି ଉଠେ ।
ଦେଖେ ସେ ସ୍ୱରୂପ ଅନ୍ତରାଳେ ରହି,
ମୁକୁର ସମୀପେ ମିଳାଏ ମୁଁ ଗୋଟି ଗୋଟି ।
ରକ୍ଷକେଶ, ଶୁଷ୍କ ମୁଖ ତଥାପି କେ ଜାଣି,
ସେହି ଶକୁନ୍ତଳା ସଙ୍ଗେ ହୁଅଇ ସମାନ ।

ସତେ କି କଳିଙ୍ଗ-କନ୍ୟା ଏପରି ରୂପସୀ ?
କାଳିଦାସ ମହାକବି ଉତ୍କଳ-ଗୌରବ,
ଉତ୍କଳ ରତ୍ନ-ଚିତ୍ର ସଙ୍ଗେ ଶକୁନ୍ତଳା
ଭୁବନ-ମୋହିନୀ ଚିତ୍ର ଆଙ୍କି ବିଶ୍ୱବାସୀ,
ମୋହିଛନ୍ତି......



## ସ୍ୱାଗତମ୍

ସ୍ୱାଗତମ୍ ସ୍ୱାଗତମ୍ ତେଜସ୍ୱୀ ତପସ୍ୱୀବର,
ଗୋପବନ୍ଧୁ ଦୃଢ-ଚନ୍ଦ୍ର ଉତ୍କଳ-ଗଗନର ।
ପଦାରବିନ୍ଦ ବନ୍ଦନେ ଆଣିଛୁ ଭକତି-ଫୁଲ,
ତୁଳସୀଦଳକୁ ମଣି ହୀରା ନୁହେଁ ସମତୁଲ ।
ନିଜ ବଡ଼ପଣେ ପାଶେ ଘେନା ହେଉ ମହାମନା
ଚରଚା ସମ୍ଭାର-ଶୂନ୍ୟ ତୁଚ୍ଛ ପୂଜା ଅରଚନା ।
ମହାନୁଭବ !
ଆମେ ଏ ଦିଲ୍ଲୀରେ ଦୂର ପରବାସୀ
କେତୋଟି ଉତ୍କଳୀ ତବ ଗୁଣଗ୍ରାମ ମୁଗ୍‌ଧ ।

ଦେବୋପମ ! ଆଣିଛୁ ଆମର ଶ୍ରଦ୍ଧାର ଅଞ୍ଜଳି,
ଆମ ଦେଶନେତା, ଆମ ଆଦରଶ, ଆମ ଜାତିର
ଦୁର୍ଦ୍ଦିନ-ସମ୍ବଳଙ୍କ ଶ୍ରୀକରକମଳେ :-
ଦେବ !
ବାହୁନିବୁ କିସ ତବ ଗୁଣରାଶି,
ନ ଛାଡ଼ିଲ କିସ ଦେଶପ୍ରେମେ ଭାସି !

ଉଚ୍ଚ ପଦମାନ, ଧନ ସନମାନ,
ଦଣ୍ଡକେ ତେଜିଲ ମୃତ୍ତିକା ସମାନ ।

ଦେଶ ସେବାଯଜ୍ଞେ ଦେଲ ପୂର୍ଣ୍ଣାହୁତି,
ଅକଳନ୍ତା ତବ ତ୍ୟାଗର ବିଭୂତି ।
ଜାତି ପ୍ରାଣ ଜୀର୍ଣ୍ଣ ତରୀର ନାଉରୀ,
ଦୁଃଖ-ଜଳଧିରେ ଅସଂଖ୍ୟ ଲହରୀ,
କରିବଟି ପାରି ତୁମେ ହିଁ ଭରସା,
ଜଗତେ ଯେପରି ନୋହୁ ଲୋକହସା ।
ଆମ ଜାତି ଆମ କୀରତିମାଳିନୀ,
କଳିଙ୍ଗ-ଜନନୀ-ଯେହୁ କାଙ୍ଗାଳିନୀ,
କୃପାପାତ୍ର ଧରି ପର ଦୁଆରକୁ
ନ କରୁ ସମ୍ବଳ, ତୁମ ବୀର ବୁକୁ
ତପ୍ତ ରକ୍ତସ୍ରାବୀ, ରଖୁ ତାର ମାନ,
ତବ ଯଶ ଶିରୀ ବିକଶୁ ଅମ୍ଳାନ ।
କଳିଙ୍ଗର ସେନାପତି,
ମହାଭାରତୀୟ ମହାଯୁଦ୍ଧେ ତୁମେ
ଆମ ନେତା ମହାମତି !
ଆସ ଆଜି ଆସ ତେଜସ୍ୱୀ ତପସ୍ୱୀ
ଆସ ଅରିନ୍ଦମ ବୀର !
ପୂର୍ଣ୍ଣ ପ୍ରାଣେ ଆଜି ସ୍ନେହ ଶ୍ରଦ୍ଧାସାର ଅରପି ପୂଜିବୁ ଧୀର !



## କି ହେବ ଏବେ ବୃଥା କାନ୍ଦିଲେ ଭାଳି !

ଅନାଦରେ ସାରିଲ ହେଳାରେ ବିଭ,
ଏବେ କାନ୍ଦିବା ଭୀରୁ ! ନୁହେଁ ଉଚିତ ।
ମରିଚି ଗୋପବନ୍ଧୁ ମରିଚି ସତେ,
ମରିଚି ବୋଲି ଦଣ୍ଡେ ନ ହୁଏ ପ୍ରତେ ।
ମରିଛି ପାରେ ଏଡ଼େ କୀରତିମାନ,
ବରିଚି ମରଣେ ସେ ତା ଉଚ୍ଚ ସ୍ଥାନ ।
ଲୋକେ କହନ୍ତି ଆହା ମରନ୍ତି ସବୁ,
ମରଣ ଭୀତି ଘେନି ଭଜନ୍ତି ପ୍ରଭୁ ।
ପ୍ରଭୁଙ୍କ ରାଜ୍ୟେ ତାଂର ଏ କ୍ଷୁଦ୍ର ସ୍ଥାନ,
ବରିବ କିପାଁ କହ ସ୍ୱାଧୀନ ପ୍ରାଣ ।

ମରିବା ଲାଗି ଯଦି ଦେଲେ ଜନମ,
ମରଣେଶ୍ୱରେ କିପାଁ ପୂଜିବ ମନ ?
ଚାହେଁ ଯେ ଜୀବନ ସେ ମାରିବେ ତାଂରେ,
କିଏ ରଚିଲା ବିଶ୍ୱ ଏ ଅବିଚାରେ –
ଏ ତହୁଁ ବଳି ତାର ନରକ ବାସ,
କୋଟି କଳପ ପ୍ରାଣେ ନ ଦେବ ପ୍ରାସ ।

× × × × × × ×

ବନ୍ଧୁଥିଲା ପବନ ସ୍ୱପନ ଭୋଳେ
ସେଦିନ ସେ କିଆରୀ ନଟାର ଦୋଳେ ।
କଣ୍ଟକ କ୍ଷୀର ଜୋଳି ଲଗିଚ ମୂଳେ,
ଦେଖିଲି ଜୀବନର ଛବି ଉଜଳେ ।

ଧୀରେ ବସିଲି ଯେବେ ଦେବଦ୍ରୁକି ତଳେ,
ଛାଇଲା କେଡ଼େ ସ୍ନେହେ ପତ୍ର ଶଢଳେ ।
ଜୀବ ତ ସତେ ଯିବ ଜଗତୁ ଦିନେ,
ଝୁରିବ ମରିବ ସେ କିପାଁ ମରଣେ ?
କରମ ଧରମ ତା' ଜୀବନ ସାଥି,
ହେମ କି ହେବ, ପ୍ରେମ ବିଶ୍ୱ ବିଭାତି ।
ଚିର କଲ୍ୟାଣ-ସରେ ଆତ୍ମା-ସାରସ,
କ୍ଳେଶ-କର୍ଦ୍ଦମେ ଫୁଟି ଲଭେ ବିକାଶ ।
ମରିବା ନାହିଁ ତା'ର ଲେଖା କପାଳେ,
ଚିର ଅମୃତସାର କିରଣମାଳେ–
ଚିର ରବି ରୁଚିର ଜ୍ୟୋତି ବରଷି,
ତୋଳିବ ତାଙ୍କେ ତାଙ୍କେ ସ୍ନେହେ ଆକର୍ଷି ।
ଲୋକୁଁ ଲୋକ ଅନ୍ତର ସୁଖ ଶୋକରେ,
ଭ୍ରମିବ ମାନବାତ୍ମା ନାନା ବେଶରେ ।
ଅଶେଷ କର୍ମ-ସୁଧା ଜୀବନ ଧାରେ,
କ୍ଲାନ୍ତି ତମ ବିହୀନ ଜ୍ୟୋତି ସମ୍ଭାରେ ।
ହସିବ ଭାଷିବ ଏ ଆତ୍ମା ଅମର,
ସେ ପରା ଦେହଧାମେ ଅଧିଈଶ୍ୱର ।
ଆଉ କି ଭାବନା ମୋ ପ୍ରାଣେ ଦୁଃଖର,
ଜୀବ ଅନ୍ତେ ଜୀବନ ଚିର ସୁନ୍ଦର !
କାହିଁ ମରଣ ତା'ର ଦଣ୍ଡକ ଖେଳା
ନବ ନଦେ ଭାସିବ ଜୀବନ ଭେଳା ।
କିପାଇଁ ଝରେ ଅଶ୍ରୁ ମିଛେ ଅଙ୍ଖିନେ,
କି ବିଭୀଷିକା ମୃତ୍ୟୁ ଆଣିବ ପ୍ରାଣେ !
ଚିର ଅମୃତ ସୁତ ଚିର ମଙ୍ଗଳେ,
ଲୋକେ ଲୋକେ ବୁଲିବ ପ୍ରେମ ସମ୍ବଳେ ।
ତୋଷିବ ଶତ ଆତ୍ମା ଶତ ଆନନ୍ଦେ,
ବିଳସି କୋଟି କର୍ମ ବନ୍ଧନ ଛନ୍ଦେ ।
ବାନ୍ଧିବ କୋଟି ପ୍ରାଣେ ପ୍ରାଣ ନିଜର,
ପୋଛିବ କୋଟି ନେତ୍ରୁଁ ତପତ ଝର ।
ହରିବ କୋଟି ପ୍ରାଣ କ୍ଳେଶ ଅନ୍ଧାର
ଆପେ ମରି କରିବ ଆନେ ଉଦ୍ଧାର ।

× × × × × × ×

ଏ କି କଥା ମୋ ମନେ କିମ୍ପା ଉଦିଲା,
ଆଚମ୍ବିତେ ଯେ ବଜ୍ରବାଣୀ ଶୁଣିଲା ।
ନାହାନ୍ତି ଗୋପବନ୍ଧୁ ନାହାନ୍ତି ଭବେ,
କେଉଁ ସରଗେ ରାଜେ ଦୀପ୍ତ ଗୌରବେ ।
ଉତ୍କଳ କୁଳମଣି ପ୍ରାଣ-ଚନ୍ଦନ,
ଦେଶ ଜନନୀ କୋଳପୋଛା ନନ୍ଦନ ।
ଘନ ଅନ୍ଧାର କୁଟୀ କୋଣର ଦୀପ
ଦେଢ଼କୋଟି ମଉଡ଼ମଣି ଅଧିପ-
କଳିଙ୍ଗ ପ୍ରାଣ ରାଜାସନେ ଯତୀଶ,
ଅଶେଷ ଗୁଣ ଭାଳି କହିବି କିସ ?
ଅନାଥ-ବନ୍ଧୁ ମାତା ଶୋକ-ପାଶୋରା,
ଦୀନ-ହୃଦୟ-ହୀରା ରଙ୍କ-ପସରା ।
ମରିଛି ଗୋପବନ୍ଧୁ ପ୍ରାଣର ପୁଅ,
ପୋଛିବ କିଏ ଆଉ ମାଆର ଲୁହ ।
କେତେ ଉଚ୍ଚ ତାହାର ମନ ଉଦାର,
କି ମହାମାନବ ସେ ! ବୁଝିବେ ଛାର-
କାହୁଁ ଉତ୍କଳୀ ହୀନ ସ୍ୱାର୍ଥାନ୍ଧ ଭୀରୁ,
ଦେଖୁ କି ପ୍ରଭୁ, ଘେନିଗଲ ମହୀରୁ !
ଦେବ-ବାଞ୍ଛିତ ବରେ ଦେବଲୋକରେ,
ଦେବ ସ୍ଥାନ ତାହାରେ ଦେବଦଳରେ ।
ଉଚିତ ପୂଜା କେହି ନ କରେ ଭାଇ,
ରୋଷେ ରତନ ଗୋଟି ନେଲ ଛଡ଼ାଇ ।
ରାଜାର କୋହିନୁର ଦୀନ ପେଡ଼ିରେ,
ବାନ୍ଧି କି ଥିଲ ଚିରା କନା ଧଡ଼ିରେ !
ଲୁଚି ରହିବା ତା'ର ନୁହେଁ ନିୟତି,
କେତେ ଅନ୍ଧାର ପୁରେ ଜାଳିବ ବତି !
କେତେ ତୃଷିତ ଆତ୍ମା ଅଛନ୍ତି ଚାହିଁ,
କେତେ ହୃଦୟେ ହେବ ସେ ପ୍ରାଣସାଇଁ !
ମହା ବିଶ୍ୱ ଆହ୍ୱାନେ ଗଲା ସେ ଚାଲି,
କି ହେବ ଏବେ ବୃଥା କାନ୍ଦିଲେ ଭାଳି !



ମାୟାଜାଲେ କିପାଁ ଛନ୍ଦୁଅଛ ମୋର
ସାନ ମନ-ମୀନ ନାରାୟଣ,
ଅନ୍ଧ ମୁଁ ଆତୁରେ ଦରାଣ୍ଡି ବୁଲୁଛି
ସୁରଙ୍ଗ ରାଜୀବ ଶ୍ରୀଚରଣ ।
ଆଖି ଆଗେ ମୋର ଧରିଛ ଭୀଷଣ
ତ୍ରିଶୂଳ ଶ୍ରୀଚକ୍ର ସୁଦର୍ଶନ,
ନାଶିବ, ଗ୍ରାସିବ କିଦଣ୍ଡେ ଦଣ୍ଡିବ
ଭାଳି ଭଳି ମରେ ମୁଁ ଅଧମ ।
ତଥାପି ତୁମର ମୁରଲୀ ତରଙ୍ଗେ
ତୁମ ପ୍ରେମ-ଗଙ୍ଗା ଧାରାରେ,
ଭସାଇବି ମୋର ଅହମିକା ଘୋର
ମନରେ ଅର୍ଜ୍ଜିତ ବିଚାରେ ।
ରୁଦ୍ରରୂପେ ପ୍ରଭୁ, ଆସ ଯେତେ କତି
ତେତେ ହାସ ଆଖି କୋଣରେ,
ଫୁଟି ପଡ଼ିଲାଣି ଲୁଚାଇବ କେତେ
ଭକ୍ତ ଅନୁଭବେ ପ୍ରାଣରେ ।
ଆସ ଆସ ମୋର ପରମ ସୁନ୍ଦର
ଚିରସାଥି ଜନ୍ମେ ମରଣେ,
ଭୟ ନାହିଁ ହେଉ ଭଇରବ ବେଶ
ଧ୍ୟାନ ତ ଅଭୟ ଚରଣେ ।



ବିନାଶ ମୋହର ନୁହଇ ତୁମର
ପ୍ରେମମୟ ଅଭିପ୍ରାୟ
ନୋହିଲେ ରଚିନ କିପାଁ ସୁକୌଶଳେ
ଚାରୁ କାରୁକଳା ପ୍ରାୟ !
ଚିର ବିକାଶ ମୋ ଜନ୍ମ ଅଧିକାର
ଚିର ମୁକ୍ତ ମୋର ଉନ୍ନତି-ଦୁଆର
ଅମୃତ ସନ୍ତାନ ତୁମରି ମୁଁ ତାତ,
ଶୁଦ୍ଧ ନିରିମଳ ଚିର ଅବଦାତ
ପାତକ କଳଙ୍କ ନର୍କ ନିଗଡ଼େ
କେତେ ଦିନ ବନ୍ଧାଥିବି ମୁଁ ନିବିଡ଼େ !
ଧୂଳିରେ ଧୂସର କାତର କିପାଁ ମୁଁ
କରୁଥିବି ହାୟ ହାୟ !!

ନୟନେ ମୋହର ଶତ ସୂର୍ଯ୍ୟ-ପ୍ରଭା
ଅଙ୍ଗେ ଅଙ୍ଗେ ମୋର ନନ୍ଦନର ଶୋଭା
ବାହୁରେ ମୋହର ଅସୀମ ଶକତି
ହୃଦୟେ ଭରିଛି ବିମଳ ଭକତି
ଶତ ଶୋକ ଜରା ଘେରିଛି ମରଣ
ତଥାପି ନୁହେଁ ମୋ କ୍ଳାନ୍ତ ଚରଣ ।
ଜନମେ ଜନମେ ନବ ନବ ବେଶେ
ଧରିବି ନବୀନ କାୟ ।



କିପାଁ ଦୂରେ ବନ୍ଧୁ, ଆସ ଏ ମନ୍ଦିରେ
ଆସ ଶୁଭ ନବବର୍ଷ,
ଆସ ହେ ନିଖିଳ ଅବନୀ ମୋହନ
ଆସ ହେ ଅମୀୟ ହର୍ଷ ।
ନବ ଆଶୀର୍ବାଦେ ମଙ୍ଗଳ ପ୍ରସାଦେ
ନବ ପୁଷ୍ପଗନ୍ଧେ ନବ ଗୀତ ଛନ୍ଦେ
ଆସ ହେ ସୁନ୍ଦର, ନବରବି-ରଶ୍ମି !
ଦିଅ ଦିଅ ସୁଧାସ୍ପର୍ଶ ।
ନବ ଶକ୍ତିରୂପେ ଜୀବନ ସଞ୍ଚରି
ବିକାଶ ମାନସ କୁସୁମ-ମଞ୍ଜରୀ
ହରି ଅତୀତର ବେଦନା ବିଷାଦ
ତବ ପୁଣ୍ୟ ପ୍ରେମ ବର୍ଷ ।
ନୈରାଶ୍ୟ ଆଳସ୍ୟ ଦୈନ୍ୟ ଯାଉ ଦୂରେ
ନବ ସ୍ୱର ଜାଗୁ କ୍ଷୀଣ କଣ୍ଠ-ପୁରେ
ନବ କର୍ମ-ପଥେ ଚାଲୁ ଏ ଚରଣ
ପ୍ରାଣ ଘେନି ନବାଦର୍ଶ !
ବାଜେ ଆଜି କାନେ କାହାର ଆହ୍ୱାନ
ସେ କେଉଁ ଦୂର ଆକାଶେ,
ଘରଦ୍ୱାର ଛାଡ଼ି ଯିବି ମୁଁ ବାହାରି
କା' ପ୍ରେମ ପରମ ବିଳାସେ !
ଡାକେ ଡାକେ ମୋତେ ତା ମଧୁ ମୁରଲୀ
ପବନେ ବେଦନା ପଡ଼ଇ ଉଛୁଳି
ଯାଏ ମୁଁ ତରଳି ପାଗ ପରାଏ
ଘୁରି ମରେ ହତାଶ୍ୱାସେ ।

ଦିଶେ ଦିଶେ ପରା ତା'ରୂପ ସୁନ୍ଦର
ଗଗନେ ଗହନେ ରୂପ ଝରଝର
ମରମେ ମରମେ ତା' ମଧୁର ସ୍ୱର
ବିନୋଦ ବାଣାଟି ବାଜେ ରେ ।
ଲାଜେ ଲାଜେ ମୁହିଁ କିପାଁ ମରୁଥିବି
କୁଳ, ମାନ, ଜ୍ଞାନ ସରବ ତେଜିବି
ତା ପ୍ରେମ-ଯମୁନା ନୀରେ ନିମଜ୍ଜିବି
କିଏ କିଛି କହୁ ପଛେ ରେ ।
ସେତ ମୋର ପ୍ରିୟ ପରାଣର ଧନ
କିପାଁ ସଂଗୋପନେ ଅରଣ୍ୟ ରୋଦନ
ନିଜ କରମରେ ଲଭିବି ଯାହାରେ
ତା ପାଇଁ କିପାଁଇ ହତାଶେ ।
ଜୀଇ ଥାଉ ଥାଉ ମରୁଥିବି ନିତି
ବହୁଥିବ ଏତେ ଅସମ୍ଭାଳ ପ୍ରୀତି
ଥାପିବି ହୃଦୟେ ଆଣି ସେ ଚରଣ
ହସିବି ସେ ସ୍ନେହ ପରଶେ ।



ଯେତେ ମୁଁ ଚାହିଁଲି ଚାହିଁବା ଇଚ୍ଛିଲି
ଆଶା ତ ପୂରିଲା ନାହିଁ,
ଯେତେ ସେବା କଲି ସେବା ମନାସିଲି
ସାଧ ତ ସରିଲା ନାହିଁ ।
ନିତି ନୂଆ ନୂଆ ରୂପେ ପ୍ରଭୁ ମୋର
ଦୁଆରେ ହୋଇଲ ଉଭା,
ଯେତେ ନିରେଖିଲି ନବ ନବ ଶୋଭା
ତେତେ ହେଲ ମନଲୋଭା ।
ଯେତେ ଦୂରେ ଦୂରେ ଗଲି ଅପସରି
ତେତିକି ଆସିଲି ଜଡି,
ଅପାସୋରା ପରା ପୀରତି ପସରା
ପରାଣର ପ୍ରିୟ ପତି ।
ଗଲାଣି ସେ ଦିନ ଗଲାଣି ସେ ଭାବ,
ଗଲାଣି ସେ କଥା ଦୂରେ,
ନିତି ହାହାକାରେ ନୀରବ ଅଶ୍ରୁରେ
ଝୁରେ ମୁଁ ମରମ ପୁରେ ।
କହିଥିଲ କେତେ କଥା ଏ ଜୀବନେ
ଗୋପନେ ମୋ କାନେ କାନେ,
ଗାଇଥିଲ କେତେ ଆଶାର ସଙ୍ଗୀତ
ମୋ ହୃଦୟ-ବୀଣା ତାନେ ।
କେତେ ବେଶେ କେତେ ହାସ ହରଷରେ
ସୁଆଗେ କରିଲ ଲୀଳା,
ସବୁ ମିଛ ଏବେ ସବୁ ପ୍ରବଞ୍ଚନା
କହି ସେ ଆଶା ପୂରିଲା ।



ଆଜି ବାପ ତୋତେ କହବି କଥାଟି
ଶୁଣିବୁ ତୁ ଦେଇ ମନ,
କାହା ଭ୍ରମର ତୁ କାହା କୁଳମଣି
ଜାଣିବୁ କି ଗଣ୍ଠିଧନ ?
ନିରିମଳ ତୁହି ସରଗ ତରାଟି
ସରଗର ଝରାଫୁଲ,
ହସ, ଭାଷ ତୋର କଇତୁକ ବାବୁ
କି ମଧୁର କି ତରଳ !
ଆଖି ଦୋ'ଟି ତୋର ଆନନ୍ଦ ଉଜ୍ଜଳ
ଚଞ୍ଚଳ ପ୍ରତି ଅଙ୍ଗେ,
ଲବଣୀ ପିତୁଳା ସ୍ନେହ-ସୁଧା ବୋଳା
ଖେଳୁ ଖେଳ ନାନା ରଙ୍ଗେ ।
ଧୂଳିମାଟି ଘେନି କି ସୁନ୍ଦର ତୁହି
ଗଢ଼ିବସୁ ନାନା ଜାତି,
ପଶୁ,ପକ୍ଷୀ, ଜୀବ, ଦେବତା, ଦେଉଳ
ସଙ୍ଗୀ ସଙ୍ଗେ ହର୍ଷେ ମାତି ।
କେବେ କିରେ ବାପ, ଶୁଣିଛୁ ତୁ କାନେ
ବାପ ଗୋସିବାପ କଥା,
କେତେ ସେ ମହତ କରମ ସାଧିଲେ
ଭାଳିଲେ ହଜିବ ଚେତା ।
ବାପ ଦାଦି ତୋର ଥିଲେ ଅତି ବଡ଼
ରଖି ଯାଇଛନ୍ତି ନାମ,
ମନ୍ଦିର ତୋଳାଇ ପୋଖରୀ ଖୋଳାଇ
ଗଢ଼ି ନାନା ତୀର୍ଥ ଧାମ ।

କୋଣାର୍କ ମଥାରେ ଜଗନ୍ନାଥ ପୁରେ
ଉଡ଼େ ତ ତାଙ୍କରି ଛତି,
ଲକ୍ଷେ ଦେଉଳରେ ସଞ୍ଜ ଆଳତିରେ
ଜଳେ ତ ତାଙ୍କରି ବତି ।
ନଦୀ ବନ୍ଧସବୁ ତାଙ୍କରି କୀରତି
ଥିଲେ ବଡ଼ କାରିଗର,
ପଥର ଉପରେ ଆଙ୍କଛନ୍ତି ଛବି
ଅପରୂପ ମନୋହର ।
ଥିଲେ ବଡ଼ ବୀର ଲକ୍ଷେ ରାଜାଙ୍କର
ମଉଡ଼ମଣିର ଜାତି,
ପୁରୁଷ ଉତ୍ତମ, ଐର, ଖାରବେଳ,
ଅନଙ୍ଗଭୀମ, ଯଯାତି ।

ମହା ମହା ରାଜା ମହା ମହା ରଥୀ
ଥିଲେ ତୋର ବାପ ଜେଜେ,
କିଏ ସରି ହେବ ଗୁଣଜ୍ଞାନେ ତାଙ୍କୁ
କିଏ ସରି ହେବ ତେଜେ ।
ଓଡ଼ିଆ ବୋଲି ତୁ ମନେ ଗର୍ବ ବହି
ଚାଲରେ ଟେକି ତୋ ମଥା,
ନିତି ମନେ ମନେ ଗୁଣି ହେଉଥାଆ
ପୂର୍ବ ପୁରୁଷଙ୍କ କଥା ।
ଭଞ୍ଜ, ଜଗନ୍ନାଥ, ସାମନ୍ତସିଂହାର
ସାରଳାଦି କବିକୁଳ,
ତୋ ପୂର୍ବପୁରୁଷ ତାଙ୍କ ସନ୍ତାନ ତୁ
ଏକଥା ମନୁଁ ନ ଭୁଲ ।



## ସୁଖରେ ଦୁଃଖରେ ନିତି ନର୍ମ ସହଚରୀ

ତରୁଣ ଯୌବନେ ତୋର ତରଳ ଚାହାଣୀ,
ସୁଧାହାସଭରା କଥା ସଙ୍ଗୀତର ଠାଣି,
ସରଳ ହୃଦୟ ତୋର
ଲେଶେ ନାହିଁ ଅହଂକାର

ଭୁଲି ତ ପାରିବି ନାହିଁ ବିନମ୍ର ପ୍ରକୃତି,
ଲକ୍ଷ୍ମୀ ସ୍ୱରୂପିଣୀ ତୁ ତ କନ୍ୟା ଗୁଣବତୀ ।
କେତେ ବାଧ ପିତୃଷ୍ୱସା ଚରଣେ ତୁ ଥିଲୁ,
ପିତାମହୀ ସ୍ନେହାଦରେ ଯତ୍ନେ ତୁ ବଢ଼ିଲୁ,
ମନଯୋଗ ସହକାରେ ବସି ଏକାନ୍ତରେ,
କରୁ ଅଧ୍ୟୟନ ଯେବେ ଝରକା କଡିରେ ।
ଅନାଇ ଦେଖେ ମୁଁ ଆହା କି ଶାନ୍ତି ମୂରତି,
ଭାବେ, କାହା ଶିରୋମଣି ହେବ ଗୁଣବତୀ !
କାର ସଦ୍ମ-ସରୋବରେ ଫୁଟିବ ଏ ପଦ୍ମ,
ସରଳତାମଖା ଆହା ଟିକେ ନାହିଁ ଛଦ୍ମ ।
ପ୍ରକାଶ ଜୀବନେ ଆଜ
ଫୁଟିବ ସ୍ନେହ-ସରୋଜ
ହୋଇବୁ ଗୃହିଣୀମଣି ଚିର ଆଦରିଣୀ
ପ୍ରକାଶ ବି ଭାଗ୍ୟବାନ ଲଭି ଏ ସଙ୍ଗିନୀ !

ମନୋରମା, ମନୋରମ ଗୁଣ ରାଜି ଘେନି,
ଆଲୋକିବୁ ପ୍ରତି ପୁର ହେବୁ ତୁହି ରାଣୀ ।

କରିଣ ସୁଧାଂଶୁ ସମ
ସୁଧା ଅଂଶୁ ବିତରଣ
ଗୁରୁଜନ ମନପ୍ରାଣ ତୋଷିବୁ ନିଯତ,
ହେବୁ ପତି କୁଞ୍ଜବନେ ନିର୍ଝର ଅମୃତ ।

ଦେଖାଇବୁ ତୋ ପ୍ରତିଭା ପ୍ରତିଭା ସୁନ୍ଦରୀ,
ଯତ୍ନେ ମାତା, ସ୍ନେହେ ଭଗ୍ନୀ, ସେବାରେ କିଙ୍କରୀ ।
କରେ ଆଶୀର୍ବାଦ ହେବୁ ଚିର ଭାଗ୍ୟବନ୍ତୀ,
ଜନେ ଧନେ ପରିପୂର୍ଣ୍ଣ କରିବୁ ବସତି ।

ସେ କାଳେ ଗୋ ଭୁଲେ ଦିନେ
ସ୍ମରଣ କରିବୁ ମନେ
ମୋତେ ଥରେ ଥରେ ଇଚ୍ଛା ଥାଏ ତୋର,
ଭୁଲିଗଲେ ଭୁଲିଯିବୁ, ମୁଁ ସ୍ମରିବି ଚିର ।

ଶ୍ୱଶ୍ରୁ ପାଶେ ଆଦରିଣୀ
ହେବୁ ଦୁହିତା ରୂପିଣୀ

ପ୍ରୀତିମୟୀ ଭ୍ରାତୃଜାୟା ଜନନୀ-ରୂପିଣୀ,
ଦେବର ନଣନ୍ଦ ସନେ ହେବୁ ପଦ୍ମାନନୀ,
ଅନ୍ଧାରେ ଆଲୋକ ମିଶେ ଯଥା ଗୋଧୂଳିରେ,
ମିଶିଯାଏ ତରଙ୍ଗିଣୀ ଯଥା ପାରାବାରେ
ମିଶିଯାଏ ଲତା ଯଥା ପାଦପ ଅଙ୍ଗରେ,
ହୀରକ ମିଶଇ ଯଥା କାଞ୍ଚନ ସଙ୍ଗରେ ।
ମିଶିଯିବୁ ପତି ପଦେ ପଡ଼ି ସେହିପରି,
ସୁଖରେ ଦୁଃଖରେ ନିତି ନର୍ମ୍ମ ସହଚରୀ ।



## କି ଗୀତି ଗାଉ ବିରଳେ ?

ନଭେ ନବଘନ କଳା
ତହିଁ ବିଳସେ ଚପଳା
ପ୍ରାଣେ ମୋ ପ୍ରଣୟଲୀଳା-
ନୀର ଉଚ୍ଛଳେ,
ନବ ବରଷାର ଧାରେ
ଆସେ କେ ମରମ ଦ୍ୱାରେ,
ଅମିୟ ମୋହନ ବେଶେ
ଆଖି ଉଜ୍ଜ୍ୱଳେ ।
କି କଥା କହୁଛୁ କାନେ
ବସି କୁସୁମ ବିତାନେ,
କଦମ୍ବ କେତକୀ ପ୍ରାଣେ
ପତ୍ର ଗହଳେ,
କିଏ ସେ ତୋ ପ୍ରାଣସାଥି,
ତୋ' ବିନା ଫାଟେ କି ଛାତି,
ବିରହ ଦହନେ ତାତି
ମରୁ ବିକଳେ ।
ସମର ସମର ଗୀତି,
ଅଥୟ କଲାଣି ପ୍ରୀତି,
ମଧୁର ମିଳନ ଲାଗି
ଚିତ୍ତ ଚଞ୍ଚଳେ,
ବର୍ଷ ବର୍ଷ ଗଲା ବହି
ଆସିବେ ଆସିବେ କହି
ବହି ମୁଁ ହତଭାଗିନୀ
ହୃଦୟାନଳେ ।



# ଇଲିୟଡ୍

## ପ୍ରଥମ ସର୍ଗ

ବିନୋଦିନୀ ବୀଣାପାଣି ସୁଧାନିସ୍ୟନ୍ଦିନୀ,
ଅମର-ବିହାର ଗିରି ଶିଖର ବାସିନୀ ।
କୋମଳ ଅଙ୍ଗୁଳି-ଦାମ ଚାଳନେ ଯାହାର,
ଲଳିତ ମୋହନ ବାଜିଉଠେ ବୀଣାତାର ।
ପୁଲକେ କମ୍ପିତ ମୃଦୁ ଶୀତଳ ସମୀର,
ନାଚଇ ଲହରୀ ଛନ୍ଦେ ନୀର ଜଳଧିର ।
ଅମୃତ ଉଲ୍ଲାସେ ପୂରେ ଦିଗଦିଗନ୍ତର,
ଅନିମିଷ୍ ଦେବ-ସଭା ସଙ୍ଗୀତେ ମୁଖର ।
ବାଅ ଲୋ, ଅମିୟମୟି, ମୋହନ ମୁରଲୀ,
ଅମ୍ବରୁ ଅମୃତ ମେଘ ଝରୁଲୋ ତରଳି ।
ଅବନୀ ଅର୍ଣ୍ଣବେ ବାଜି ପ୍ରତିଧ୍ୱନି ଛଳେ,
ତାନେ ତାନେ ସୁଧାରାଶି ଉଛୁଳୁ ବିରଳେ ।

କୋମଳେ କରୁଣେ ଦେବି, ସୁମଧୁର ସ୍ୱରେ,
ଏକିଲିସ୍ କୋପ-ଗାଥା ଗାଅ ଆଜି ଥରେ ।
ବିଭୀଷଣ ବହ୍ନି ସମ କ୍ରୋଧଜ୍ୱାଳା ଯାର,
ଗ୍ରୀସୀୟ ଗରବ ହେଲେ କଲା ଛାରଖାର ।
ପ୍ରବେଶିଲେ ଯେଣୁ ଶତ ବୀରେନ୍ଦ୍ର ନନ୍ଦନ,
ଭୀଷଣ ତିମିରମୟ ଶମନ ସଦନ ।
ଯାର ରୋଷେ ଶତଶତ ଶୂର କଳେବର,
ବିସ୍ତୀର୍ଣ୍ଣ ବାରିଧି ବେଳା ଛାଇଲା ସତ୍ୱର ।
ଦିଗନ୍ତ-ପ୍ରସାରୀ ମହା ବାଲୁକା ବିତାନ,
କ୍ଷଣକେ ହୋଇଲା ଭୀମ-ବିଭତ୍ସ ଶ୍ମଶାନ ।
ବିକଟ ଆନନ୍ଦେ, ମୁଖେ କରି କୋଳାହଳ
ଗ୍ରାସିଲେ ଓଟାରି ଶବ, ଶିବା ଦଳ ଦଳ ।
ମହା କଳରବେ ଶ୍ୟେନ ଉଡ଼ିଲା ଆକାଶେ,
ସଲିଳ କୁକ୍‌କୁଟୀ ନୀଡ଼େ ଲୁଚିଲା ତରାସେ ।
ଶକୁନି ଗୃଧିନୀ କରି ପକ୍ଷ ବିଧୁନନ,
ଭକ୍ଷି ଶବ-ଶିରାସ୍ନାୟୁ ହରଷେ ମଗନ ।
ବିଦାରି ନଖରେ ହିୟା ସବଳେ କାମୋଡ଼ି,
ରୁଧିର ପିଅଇ ଶ୍ୱାନ ଦନ୍ତେ କଣ୍ଠ ମୋଡ଼ି ।
ଯୁଝେ ସ୍ଥଳଚର ରୋଷ ଖଚର ସଙ୍ଗରେ,
ରୁଧିର ପାରଣା ପିଇ ପଡ଼ି ଶବୋପରେ ।
ଅନ୍ତ କେ ଓଟାରି ଧରେ, ଗର୍ବେ ଅସ୍ଥି ଆନ,
ମାଂସଖଣ୍ଡ ବିଦାରଣେ ଅଛି କା ଧିଆନ ।
ହୃଦୟ, ଯକୃତ, ଶିରା କେ ଗିଳେ ଛିଣ୍ଡାଇ,
ମସ୍ତକ ଖପୁରି କେହି ଧରିଛି କୁଣ୍ଢାଇ ।
ବିଷମ ବିବାଦେ ବେଢ଼ି ପଶୁପକ୍ଷୀ ଦଳ,
ନିବାରି ସବଳ କ୍ଷୁଧା ମାରଇ ଦୁର୍ବଳ ।
ଅଦୂରେ ଅନାଇଛନ୍ତି ଶିବିର ଦୁଆରେ
ବିକଳ ସେନାନୀ ନଭଭେଦୀ ହାହାକାରେ ।
କିଆଶା-ଲତିକା ମନେ ଯତନେ ବଢ଼ାଇ,
ଆସିଥିଲେ ପ୍ରିୟଜନ-ମମତା ଛଡ଼ାଇ ।
କ୍ଷଣକେ ଭାଙ୍ଗିଲା ମୋହ-କୁହୁକ ଆଶାର,
ନିଦ୍ରାନ୍ତେ ସ୍ୱପନ ସୁଖ ସମାନ ଅସାର ।
କାହିଁ ସେ ଗୌରବ କାହିଁ ବିଜୟ ଉଲ୍ଲାସ,
ନବବର୍ଷ ପରାଜୟେ ଗ୍ରୀକ୍ ହତାଶ୍ୱାସ ।
ଏବେ ପୁଣି ନିଦାରୁଣ ମଡ଼କ ଭୀଷଣ,
ଚୌଦିଗେ ଗ୍ରୀସୀୟ ବଳ କରେ ଆକ୍ରମଣ ।
ଶତ ଶତ ବୀରେ ପେଶି ଶମନ-ମନ୍ଦିରେ,
ଲେଖଇ ବିଜୟ-ବାଣୀ ସମରୀ-ରୁଧିରେ ।
କହଲୋ, କରୁଣା ବହି ଦେବୀ ଦୟାମୟି,
କି ପାଇଁ ଲକ୍ଷଣ ଏତେ ଗୀରିସ୍ ଭୋଗଇ ?
କି ପାପ ସନ୍ତାପ ଲାଗି ଭୀମ ଦଣ୍ଡଭାର
ସ୍କନ୍ଧେ ବହି, କାନ୍ଦେ ଆଜି ଗ୍ରୀକ୍ ସ୍କନ୍ଧାବାର ।
ମତ୍ତ ଅହଙ୍କାରେ ଯେଣୁ ଗ୍ରୀସ୍ ନରପତି,
କୁକ୍ଷଣେ ହୋଇଲା ତାର ଭୀଷଣ କୁମତି ।
ଛାର ସେ ମାନବ କରେ ଦେବ ଅପମାନ,
ଦେବ ରୋଷେ ଆଜି ତେଣୁ ଏ ଦଣ୍ଡବିଧାନ ।
ଦଶଦିଶ ଆଲୋକିତ ଯା' ରମ୍ୟ କିରଣେ ।
ପ୍ରଫୁଲ୍ଲ ଗୋଲାପ ହସେ ପଲ୍ଲବ ଗହଣେ ।
ଯା'ର ପରଶ ଲଭି ସରେ ପଙ୍କଜିନୀ,
ବିକଶି କୋମଳ ଦଳ ହସେ ସୁହାସିନୀ ।
ସେ ରବି ରଜତଧନୁ ଜଗତ-ଜୀବନ-
ଶ୍ରୀଚରଣେ କ୍ରାଇସେସ୍ ସେବକ ସୁଜନ,
ଫିବସ୍ ପୁରୋଧା ବୃଦ୍ଧ ଚିରଧର୍ମମତି,
ରାଜ ଅପମାନ ଲଭି କ୍ଷୁବ୍ଧଚିତ୍ତ ଅତି ।

କାନ୍ଦନ୍ତି ବିକଳେ ଭ୍ରମି ମହୋଦଧି ତୀରେ,
ପବିତ୍ର କ୍ରାଇସା-ରବି ମନ୍ଦିର କତିରେ ।
ଏପଲୋ-ପୂଜକ ସାଧୁ ସଦା ନ୍ୟାୟବାନ,
ଶୁଭ୍ର କେଶ ବେଶ ଜ୍ୟୋତି-ମଣ୍ଡିତ ମହାନ ।

ଲଲାଟେ ମୁକୁଟ ଶିଖା ଜ୍ୱଳେ ତଦୁପରି,
ପବିତ୍ର ଲୋଚନୁଁ ଦିବ୍ୟ ଜ୍ୟୋତି ପଡ଼େ ଝରି ।
ବାର୍ଦ୍ଧକ୍ୟ ଶିଥିଳ ଅତି ନତ କଳେବର,
ପବିତ୍ର ଧରମ ଚିହ୍ନେ ଶୋଭେ ବେଙ୍କ, କର ।

ଆକୁଳେ ବ୍ୟାକୁଳେ ବୃଦ୍ଧ କରେ ହାହାକାର,
ନୟନ ପ୍ରବାହି ବହେ ଲୋତକ ଆସାର ।

କ୍ରାଇସେସ୍ ମନୋରମା ବିଶ୍ୱ-ବିନୋଦିନୀ,
ଏକମାତ୍ର ସୁତା ତାର ହୋଇଛି ବନ୍ଦିନୀ ।

ଗର୍ବିତ ଗ୍ରୀସୀୟ ସେନା ବଳେ ଅପହରି,
ଭେଟିଲେ ଛାମୁରେ ଆଣି କାମିନୀ ସୁନ୍ଦରୀ ।
ଉଦ୍ଦେଶ ନପାଇ ବୃଦ୍ଧ ଅତୀବ କାତରେ,
ତନୟା ଖୋଜିଲା ଯାଇ ନଗରେ ନଗରେ ।

ଗ୍ରୀସ୍-ରାଜାଗାରେ ବନ୍ଦୀ ଲଭି ସମାଚାର,
ଚିନ୍ତିଲାଦିବସ ନିଶି ଉଦ୍ଧାର ସୁତାର ।
ଅବଶେଷେ ପାଞ୍ଚି ମନେ ତନୟା ମୁକତି,
ଠୁଳ କଲା ଆପଣାର ସକଳ ସମ୍ପତ୍ତି ।

ସତ୍ୱରେ ସାଜିଲା ତରୀ ଘେନି ଉପହାର,
କରୀ-ଦନ୍ତ-କାରୁକାର୍ଯ୍ୟ ଶୋଭନ ସମ୍ଭାର,
ଅଶେଷ ରତନ ରାଜି ହେମ ଅଳଙ୍କାର,
ଶିଳ୍ପ ପଣ୍ୟ ଅଗଣନ ପର୍ବତ ଆକାର ।
ସପତ ବୋଇତେ ଭରି, ମହା ଆୟୋଜନେ
ମିଳିଲା ବହନ ଗ୍ରୀସ୍ ନରେଶ ଚରଣେ ।

ଭେଟି ସହ ରାଜ ପାଶେ ଉଭରି ସ୍ଥବିର,
ଚରଣେ ପ୍ରଣମି ଢାଳେ ନୟନର ନୀର ।
ଯେତେକ ଗ୍ରୀସୀୟ ବୀର ସନମାନେ ଅତି,
ସମ୍ବୋଧି ପୁଛିଲେ, ବୃଦ୍ଧ କିପାଁ ଏ ଆରତି ?

ସମ୍ବରି ଲୋତକ ତହୁଁ କହେ ପୁରୋହିତ,
କ୍ଷଣେ ସ୍ତବ୍ଧ ସ୍ୱର, କ୍ଷଣେ ବଚନ କମ୍ପିତ ।
ଆକୁଳ ହୃଦୟେ ଅତି ଘନ ବହେ ଶ୍ୱାସ,
ବିଦରେ ପରାଣ, ମୁଖେ ଯାତନା ବିକାଶ ।

''ଦଣ୍ଡେକ କରୁଣାବହି ଶୁଣ ମହାରାଜ,
ଶୁଣ ଆହେ ଗ୍ରୀକ୍-ବୀରକେଶରୀ-ସମାଜ ।
ଦୃଷ୍ଟର ବଚନ ନିଶ୍ଚେ ହୋଇବ ସଫଳ,
ଯେତେଦିନ ଥିବ ଭବେ ଧର୍ମ୍ମନ୍ୟାୟ ବଳ ।

ଟ୍ରୟଦେଶ ଧ୍ୱଂସମୟ ହେବ ସୁନିଶ୍ଚୟ,
ଅଭେଦ୍ୟ-ପ୍ରଚୀର ଗର୍ବେ ଲଭିବ ବିଲୟ ।

ବୀରୋଚିତ ପ୍ରତିଜ୍ଞାର କରି ସମାପନ,
ଆନନ୍ଦେ ଜନମଭୂମି କରିବ ଦର୍ଶନ ।
ଆଶିଷଇ ବୃଦ୍ଧ, ବୀରେ ଚିରଆୟୁ ଲଭ,
ବିସ୍ତାର ବିମଳ ଯଶ ଜିଣି ଏ ଆହବ ।
ନିବେଦନ ମାତ୍ର ଏକ ହେ ମହାରାଜନ,
ଅଭାଜନ ହେଉ ତବ କରୁଣା-ଭାଜନ ।

ଅଶେଷ ସମୃଦ୍ଧି ତବ ଐଶ୍ୱର୍ଯ୍ୟ ଅତୁଳ,
ଶୁଦ୍ଧାନ୍ତେ ଶୋଭନ୍ତି ଶତ ସୀମନ୍ତିନୀକୁଳ ।
କି ବିତ୍ତ ଅଭାବ ତବ, ଗ୍ରୀସ୍ ନରମଣି,
ପୂରାଇ ପାର ଏ ଦାସ କାମନା ଏକ୍ଷଣି ।

ଧନୀର ଖୁଆଡ଼େ ଭରା ମେଷ ଅଗଣନ,
ମାତ୍ର ଏକ ମେଷ ଶିଶୁ ମୋ' ଜୀବନ-ଧନ ।
ଧନୀର ଆରାମେ ରାଜେ ଶତ ଫୁଲତରୁ,
ଗୋଟିଏ ଗୋଲାପେ ମାତ୍ର ଶୋଭେ ଦୀନ-ମରୁ ।

ଦେଲେ ନ ସରିବ ଦେବ, କୀରତି ବଢ଼ିବ,
ସ୍ଥବିର ଆଶିଷେ ସୁଖ ଅଶେଷ ଭୁଞ୍ଜିବ ।
ଏକମାତ୍ର ସୁତା ମୋର, ନାହିଁ ଆଉ ଆନ,
ତା'ବିନା ବଞ୍ଚିବ କି ହେ ମୋ' ବୃଦ୍ଧ ପରାଣ ?

ଅନ୍ଧର ନୟନ-ମଣି, ମୋ'ଦୀନ-ସଞ୍ଚାଳି,
ଜନନୀବିହୀନା ଶିଶୁ ମୋ' ଗଳାର ମାଳି ।
ଅନୁଭବେ ବୁଝ ଥରେ ପିତାର ଯାତନା,
ଏଫିଜିନିୟାର କଥା କର ହେ ଭାବନା ।

ଦେବୀ ରୋଷେ ନର-ଶ୍ରେଷ୍ଠ ଦୃଢ଼ ହିୟା ବାନ୍ଧି,
ଅସିରେ କୋମଳ ଗଳା ଛେଦିଲା ନ କାନ୍ଦି ।
ପିତୃମନେ କି ବେଦନା ହୋଇଥିବ ତବ,
ଏବେ ସେ ବେଦନାଭୋଗ କର ଅନୁଭବ ।
ଅଧୀନେ ତନୟା ପୁନଃ କରି ଅରପଣ,
ହୁଅ ଦେବ, ଏପଲୋର ଆଦରଭାଜନ ।

ବିଶାଳ ପ୍ରାଚୀର ଯେହୁ ରଚିଲେ କୌଶଳେ,
ହେଲେ ତା ଭାଙ୍ଗିବେ ଦେବ ତୁମ୍ଭର ମଙ୍ଗଳେ ।

ଫିବସ୍ ପୟରେ ବୀର ! ବହିଣ ଭକତି,
କ୍ରାଇସେସ୍ ମମ କର ବନ୍ଧନ-ମୁକତି ।

ଉପହାର ଦ୍ରବ୍ୟରାଶି ଘେନ ବିନିମୟେ,
କରୁଣା କରିଣ ବୃନ୍ଦେ ସଦୟହୃଦୟେ ।
ସର୍ବ୍ବ ମୋ' ସମ୍ପଦ ସବୁ ହୁଏଁ ମୁଁ ଭିକାରୀ,
ସୁତା ସଙ୍ଗେ ହୋଇବି ମୁଁ କରୁଣା-ଦୁଆରୀ ।

ଦୟାରେ କେ ଦେବ ଯଦି ଯବ ମୁଷ୍ଟିମେୟ,
ଅଧୀନ ନୟନେ ତାହା ନ ହୋଇବ ହେୟ ।
ଏପରୋ କୃପାରେ ମୋର ସୁଖେ ଯିବ ଦିନ,
ଦେବପଦେ ମତି ଜନ, କାହିଁରେ ଉଦ୍‌ବିଗ୍ନ !''

ସ୍ଥବିର ବଚନ ଶୁଣି ହରଷ ଅନ୍ତରେ
ବୀରବୃନ୍ଦ ଅନୁମତି ଦେଲେ ସମସ୍ୱରେ ।
''ଦେବତା ସହିତ ବାଦ କରିବ କି ନର ?
ପ୍ରଦାନି କୁମାରୀ ସିନା ପୂଜିବା ପୟର ।''

କିନ୍ତୁ ଗ୍ରୀସ୍ ନରପତି ପାଷାଣ ଅନ୍ତର,
ଗରବେ ଗମ୍ଭୀରେ ଗର୍ଜ୍ଜି କହିଲା ଉତ୍ତର-
''ରେ ପାମର, ଛଦ୍ମବେଶୀ କପଟ-ସନ୍ନ୍ୟାସୀ,''
ପ୍ରବେଶିଲୁ କି ସାହସେ ଗ୍ରୀକ୍ ଦଳେ ଆସି ?
ପଳାରେ ଜୀବନ ଘେନି ତେଜି ଶତ୍ରୁଦଳ,
ବୃଥା ଅନୁନୟ ତୋର ବିଫଳ କେବଳ ।

ନାରେଲ୍ କିରୀଟ ତୋହର ଦଣ୍ଡ ହେମମୟ,
ଗ୍ରୀଗିସ୍-ନରେଶ ଦୂଳେ ନ କରଇ ଭୟ ।
ବେଗେ ପରିହର ଭଣ୍ଡ ନୃପେଶ ସକାଶ,
ପୁରୋହିତ ଚିହ୍ନେ ତୋର ନାହିଁ ମୋ' ବିଶ୍ୱାସ ।
ତୋ' ନନ୍ଦିନୀ ମୃଢ଼ମତି କିଙ୍କରୀ ଆମ୍ଭର,
ନ ଦେବୁଁ ଫେରାଇ, ବୃଥା-ଲୋଡଜ ସମ୍ୱର ।
ରେ ନିର୍ବୋଧ, ତୁଚ୍ଛ ଅତି କ୍ଷୁଦ୍ର ଉପହାର,
ଏଥିନୀ ବିଭବେ ପୂର୍ଣ୍ଣ ମୋ କୋଠଭଣ୍ଡାର ।

କି ଅଭାବ, ଅତୁଳନ ଚିର ନାହିଁ ସୀମା,
ତୁ ପୁଣି ଦେଖାଉ ତୁଚ୍ଛ ସମ୍ପଦଗରିମା !

ସମଗ୍ର ଗ୍ରୀସୀୟବଳ ସମୃଦ୍ଧି ଅପାର,
ସୁବିଶାଳ ଜନପଦ ମହାପାରାବାର ।

ଖଟଣୀ କିଙ୍କର ଯାର ଶତ ମହୀପତି,
କି ସାହସେ ଆସୁ ତାର ସିଂହାସନ କତି !
ପରାଣେ ମମତା ଯଦି ଥିଲେରେ ଅଧମ,
ପଳାଅ ବହନ ତେଜି ବିଫଳ ରୋଦନ ।

ବାହୁବଳେ ଅପହରି ଆଣିଛି କାମିନୀ,
ଚରଣ ସେବିବ ଏବେ ମଧୁରହାସିନୀ ।
ଏ ତ ମହାଭାଗ୍ୟ ତୋର ଦୀନା ତନୟାର,
ଗ୍ରୀକ୍ ରାଜେଶ୍ୱର ରୂପେ ମୋହିତ ଯାହାର ।
ବନ୍ଦିନୀ-କିଙ୍କରୀ ରାଜ-ଆରାମ-ନାୟିକା,
ଏଥୁଁ ବଳି କେଉଁ ସୁଖ ଲୋଡ଼ା ତୋ ଅଧିକା ?

ଲଳନା ଯୌବନ ସିନା ରାଜ-ଭୋଗ ଲାଗି,
ଖସିଲେ ବୟସ ମାତ୍ର ହୋଇବୁ ବିରାଗୀ ।
ସରିଲେ ସୌନ୍ଦର୍ଯ୍ୟ ତୋର ସୁତା-ସୁନ୍ଦରୀର,
ଆଉ ନ କହିବୁଁ ତାକୁ ସୁକୋମଳ ଗିର ।
ବାସି ଫୁଲ ଶେଯୋପରେ ରଖେ କେ ଆଦରି ?
ବିଗତ ଯୌବନା ନାରୀ ସିନା ସେହିପରି !

ସୁକଠିନ ଶ୍ରମେ ତେବେ ଯାପିବ ଜୀବନ,
ଝାଡ଼ିବ ସେ ଶେଯ ଏବେ ଯହିଁରେ ଶୟନ ।
ରାଜାସନେ ସନମାନେ କରେ ଯେ ଭାଜନ,
କିଙ୍କରୀ ଯୋଗାଏ କରେ ବସନ ଭୂଷଣ ।

ଦିନେ ତ ପେଷିବ ଚକି ସେ ଦାସୀ ସଙ୍ଗତେ,
କି କାର୍ଯ୍ୟ ନାରୀରେ ଆଉ ପଉବନ ଗତେ ?
ଆଦରଇ ଅଳି ସିନା ଦରଫୁଟାକଳି
ତେସନେ ଆଦରେ ନର ଯଉବନ ଝଳି ।

ଯୌବନ ନାୟିକା ମମ, ବାର୍ଦ୍ଧକ୍ୟେ କିଙ୍କରୀ,
ଅଛନ୍ତି ଆଗାରେ ବନ୍ଦୀ ଅନେକ ସୁନ୍ଦରୀ ।
ଦାସୀ ମାତ୍ର ଜଣେ ତୋର ନନ୍ଦିନୀ ତହିଁରେ,
ଅତି ଅଳ୍ପ ମୂଲ୍ୟେ କିଣା ରାଜ ବିପଣୀରେ ।

ଆମ୍ଭର ସେ ଶ୍ରମଲବ୍ଧ ଧନ ଯେ ସ୍ଥବିର,
ବହିଛି ତା'ପାଇଁ ଶତ ଶରୀରୁ ରୁଧିର।
ପ୍ରିୟ ଜନ୍ମଭୂମି ପ୍ରିୟ ଜନକ ଜନନୀ,
ସରବେ ଜଦାଇ ଛାଡ଼ି ଆସିଅଛି ଧନୀ।

ଚିର ଜନମର ଲାଗି ଆଉ ନ ଫେରିବ,
ଆର୍ଗସ ନିବାସ ଆଉ ନେତ୍ରେ ନ ଦେଖିବ।
ବିଅର୍ଥେ ଭାନୁକୁ ସିନା ଉଦ୍ଧାର ତାହାର,
ଦଣ୍ଡକ ବିଳମ୍ବେ ଆଉ ନାହିଁ ତୋ ନିସ୍ତାର।
ଛଦ୍ମବେଶୀ ଭଣ୍ଡ ତୋର ପୁରୋହିତ ବେଶ,
ସୁଶାଣିତ ଅସିଧାରେ ହେବ ଅବଶେଷ।

ବଚନ ଅନଳସ୍ରାବୀ ଶ୍ରବଣେ ପଶିଲା,
ଥରଥର ତନୁ ଯତି ସଭୟେ ଫେରିଲା।
ଦରଦର ଅଶ୍ରୁଧାର ଝରିଲା କପୋଳେ,
କାନ୍ଦିଲା ବାରିଧି ତଟେ ଭ୍ରମି ଉଚ୍ଚରୋଳେ।

ଦାରୁଣ-ବେଦନା ଭାରେ ବ୍ୟଥିତ ଅନ୍ତର,
ଦେବ ଦିବାକରେ ଚାହିଁ ଡାକେ ନିରନ୍ତର।
''ହେ ପିତଃ, ମରୀଚିମାଳି, ଲାଟୋନା-ନନ୍ଦନ
ବାରେକ ଶ୍ରବଣ ଡେରି ଶୁଣ ନିବେଦନ।

କି ଦଶା କରିଲା ଦେଖ ଗ୍ରୀକ୍ ସେନାପତି,
ହରିଲା ଦୁହିତା ମୋର ବଳେ ମୂଢ଼ମତି।
ଗର୍ଜ୍ଜନେ ତର୍ଜ୍ଜନେ ପୀଡ଼ି ବ୍ୟଥିତ ମରମ,
ନୀଚ ପଶୁ ସମ ହାହା, କଲା ବିତାଡ଼ନ।

କି କରିଛି ଦୋଷ ଦେବ ତବ ପଦତଳେ,
ବାର୍ଦ୍ଧକ୍ୟେ ଏ ଗୁରୁଦଣ୍ଡ, କାନ୍ଦୁଛି ବିକଳେ।
ତୁ ଦେବତା, ଜାଣୁ ସବୁ ଅନ୍ତର ବେଦନା,
ତୋ'ବିନା ଶୁଣିବ କିଏ ଏ ଦୀନ ପ୍ରାର୍ଥନା।

ଅଶେଷ କରୁଣା ତୋର କରୁଣାନିଧାନ,
ଜଗତ ଜୀବନ ସୁଖ ତୋହରି ବିଧାନ।
ନିରନ୍ତର ଟିନିଡ଼ସ୍ ପୂଜଇ ଶ୍ରୀପଦ,
ତବ ହେତୁ କ୍ରାଇସାର ଗୌରବ ସମ୍ପଦ।

ତବ କରେ ତା' ଆଳୟେ ସୁଖୀ ନରନାରୀ,
ଭୀଷଣ ତିମିର ରାଶି କ୍ଷଣକେ ସଂହାରି,
ବିତରି କରୁଣା ଦେବ, ପାଳୁ ପ୍ରଜାଗଣେ,
ବଞ୍ଚିଛି ଜଗତ ସିନା ତୋହରି କିରଣେ!
ତୋ' କିରଣେ ଫୁଟେ ଫୁଲ, ଗାଏ ନୀଳ ଅଳି,
ତରୁଡାଳେ ବସି କରେ ବିହଙ୍ଗ କାକଳି।

ସରସେ ସାରସ-ପନ୍ତି ଉଠଇ ବିକଶି
କୋମଳ ଗୋଲାପ ହୃଦ ଉଠଇ ଉଲ୍ଲସି।
ତୁହି ଇଷ୍ଟଦେବ ପ୍ରଭୁ ଧାର୍ମିକ ସିନାର,
ତୋ'ବିନା ନାଶିବ କେ ମୋ' ଦୁଃଖ ଅନ୍ଧକାର!

ସତତ ସେବିଛି ପାଦ ଏକାନ୍ତ ଧିଆନେ,
ଆଜି କି ରଖିବୁ ନାହିଁ, ଏ ଦୁଃଖୀ ପରାଣେ!
କରିଅଛି ତବୋଦ୍ଦେଶେ ଯଦି ବଳିଦାନ,
ଅନଳେ ଆହୁତି ଯଦି କରିଛି ପ୍ରଦାନ,
ସଜାଇଛି ଯଦି ତବ ମନ୍ଦିର ସତତ,
କୁସୁମ ସୁହାର ଗୁନ୍ଥି ତବ ମନୋମତ।

ଅରଚିଛି ଯଦି ପାଦ ଏକାନ୍ତେ ଭକତ,
ନୋହିବ କରୁଣା ଊଣା ହେ ଦେବ ମହତ।
ପ୍ରକାଶିଣ ପରାକ୍ରମ ରଖିବ ସମ୍ମାନ,
ଶୋଧିବ ସେ ମଦମତ୍ତ ନୃପ-ଅପମାନ।
ବଡ଼ ଆଶା ମନେ ପ୍ରଭୁ, ତବ କୃପା-କର
ବରଷିଣ ଶୁଖାଇବ ମୋ' ଦୁଃଖ-ସାଗର।

ଅଧୀର ଭାସ୍କର ରୋଷେ, ଶୁଣିଣ ଆରତି,
ପ୍ରକମ୍ପି ଆସନ ତେଜି ଉଠିଲେ ଝଟତି।
ନୁଆଁଇ ରଜତ ଧନୁ କ୍ରୋଧେ ତରତର,
ବିଶାଳ ବିକ୍ରମେ ଦେବ ଓହ୍ଲାନ୍ତି ସତ୍ୱର।

ତ୍ୟଜି ଦିବ୍ୟ ଅଗ୍ନିମୟ ସ୍ୟନ୍ଦନ ସଦନ,
ତ୍ୟଜି ଗିରିବର ତୁଙ୍ଗ ଶୃଙ୍ଗ ଅପଘନ,
ଘୂର୍ଣ୍ଣିତ ପ୍ରଚଣ୍ଡ କ୍ରୋଧେ ଆରକ୍ତ ନୟନ,
ଭୀମ କଡ଼ମଡ଼ ନାଦେ ବାଜଇ ଦଶନ
ବାଜଇ ଗଭୀର ରୋଳେ ଶିଞ୍ଜିନୀ ତାହାର,
ରଜତ ତୂଣୀରେ ବାଣ ଶୁଣାଏ ଝଙ୍କାର।

ମହା ବାହୁବଳେ କୋପେ ଆକର୍ଣ୍ଣ ବିସ୍ତାରି;
ଟଙ୍କାରିଲେ ରୌପ୍ୟଧନୁ ରୋଷେ ହୁହୁଙ୍କାରି ।
ବ୍ରହ୍ମାଣ୍ଡ ବିଧ୍ୱଂସି ଭୀମବାଣ ଶତ ଶତ,
ଛାଇଲା ଆକାଶ ଧରା ସାଗର ପର୍ବତ ।

ଚରାଚର ମରାମର ଆତଙ୍କେ ଅଧୀର,
କମ୍ପିଲେ ଶିବିର କୋଣେ ଗୀରିସୀୟ ବୀର ।
କମ୍ପିଲା ଜଳଧିତଳେ ବରୁଣ-ଆସନ,
ନେପଚ୍ୟୁନ୍ ସେଟାରନ୍ ଭୟେ ନିଗମନ ।

ଟିଟାନ୍ ସେଣ୍ଟର ଜଳ-ନିବାସୀ ଦଇତ,
ପ୍ଲୁଟୋ ନିକେତନେ ପ୍ରେତଆତ୍ମା ମହାଭୀତ ।
କମ୍ପିଲା ବାରିଧି ବାରି କମ୍ପିଲା ଗଗନ,
ଅଲିମ୍ପିସ୍ ସଭାତଳେ ଦେବ ଅପଘନ ।
ବିସ୍ତାର ବାଲୁକାମୟ କମ୍ପେ ବେଳାଭୂମି,
ଉଠଇ ବାଲୁକା ଝଡ଼ ଅନମ୍ବର ଚୁମ୍ବି ।

ଆକାଶ ପଡ଼ଇ ଭାଙ୍ଗି ଭୀମ ବଜ୍ରନାଦେ,
ପ୍ରବଳ ପବନ ଧାଏଁ ଭୀଷଣ ଉନ୍ମାଦେ ।
ଉପାଡ଼ିଣ ଅଗଣନ ମହା ମହୀରୁହ,
ଭୂମିରେ ନୁଆଁ ଏ ଭାଙ୍ଗି ଶତ ଶତ ଗୃହ ।

ମହା ପ୍ରଳୟର କାଳ ଅନ୍ଧାର ଘୋଟଇ,
ଆକାଶୁଁ ସହସ୍ର ଉଲ୍‌କା-ପିଣ୍ଡ ବରଷଇ ।
ଭୀଷଣ ଭୈରବ ରବେ ବିକଟେ ଗରଜି,
ଧାବଇ ଗଗନେ ରବି ଅନ୍ତକ ସରଜି ।

ଆଦେଶେ ଭୈରବ ଘୋରକାଳ-ଅନୁଚର,
ବିନାଶିଲେ ଶତ ଶତ ଅଶ୍ୱ, କରୀବର ।
ଘୋର ମହାମାରୀ ତହୁଁ ପଶି ସ୍କନ୍ଧାବାରେ,
ଓଟାରିଲା ସେନାଚୟେ ଶମନ ଆଗାରେ ।

ନବ ଦିନ ନବ ରାତି ପ୍ରତାପେ ରବିର,
କାନ୍ଦିଲା ଆକୁଳେ ଗ୍ରୀସ୍ ସମରୀ-ଶିବିର ।
ଶୋଇଲେ ଅସଂଖ୍ୟ ଶବ ପ୍ରତି ତମ୍ବୁତଳେ,
ଆତ୍ମୀୟ ସୋଦର ବନ୍ଧୁ କାନ୍ଦିଲେ ବିକଳେ ।

ଦେବତାର କୋପ ନୁହେ ମାନବ ବିଧାନ,
ଭୁଞ୍ଜିବ ଏସନ ଦେବେ କଲେ ହତମାନ ।
ସାହସେ ଦେବତା କେହି ପ୍ରତିକାର ଆଣେ,
କହି ନ ପାରିଲେ କିଛି ତପନ ସକାଶେ ।

ଉଚିତ ଶାସନ ମଣି ଦେବୀ ରଣେଶ୍ୱରୀ,
ନ୍ୟାୟବନ୍ତୀ ରହିଲା ସେ ମରମରେ ମରି ।
କାନ୍ଦିଲା ବିଦେଶୀଯୁନେ ପୀଡ଼ିତା ମରମେ,
ମାତା କି ବାଞ୍ଛଇ ଦଣ୍ଡ, ସୁତ ଅଧରମେ !

ନବ ଦିନ ନବ ରାତ୍ରି ଗଲା ଯହୁଁ ଚଳି,
ଦିନୁଁ ଦିନ ଦିବାକର କୋପ ଗଲା ବଳି ।
ସହି ନ ପାରିଲା ଆଉ ସନ୍ତାନ ବେଦନା,
ତ୍ରିଦିବଈଶ୍ୱରୀ ଯୁନୋ ହୋଇଲା ବିମନା ।

ସପତ୍ନୀ ତନୟେ ଯେଣୁ ରୋଷ ଅତିଶୟ,
ନପାରନ୍ତି କହି କିଛି ଯୋଡେ ବହି ଭୟ ।
ମରମେ ଭୀଷଣ କ୍ରୋଧ ଲୁଚାଇ ମରମେ,
ଓହ୍ଲାଇଲେ ଧରାପରେ ଦିବସ ଦଶମେ ।

ଧୀରେନ୍ଦ୍ର ବୀରେନ୍ଦ୍ର ସୁଧି ଥିଟିସ୍ ନନ୍ଦନେ,
ଆଦେଶିଲେ ଆସି ଦେବୀ ସଭା ବିରଚନେ ।
ବିରଚିତ ବୀରସଭା ଆଜ୍ଞା ଅନୁସରି,
କହେ ତହୁଁ ଏକିଲିସ୍ ରଥୀ ଅଗ୍ରସରି ।

ନରେଶେ ସମ୍ବୋଧି ବୀର କୋମଳେ ସୁଧୀରେ,
ବିନୟେ ସଂଯତି ଅତି କହଇ ଗମ୍ଭୀରେ ।
ହେ ରାଜନ, ରଣ-ଶଯ୍ୟା ବୀରର ବାଞ୍ଛିତ,
ଶାଣିତ କୃପାଣ ଅରି ଶୋଣିତେ ରଞ୍ଜିତ ।
ଯଶୋମୟ ବେଳା-ବାଲି ଶୟନ ମଧୁର,
ଆଶାରେ ଗୀରିସ୍ ଆସିଅଛି ବହୁଦୂର ।

ପରିହରି ପରିଜନ, ସନ୍ତାନ, କାମିନୀ,
ସୁଦୂର ପ୍ରବାସେ କାଟେ ଦିବସ ଯାମିନୀ ।
କହ ରାଜେଶ୍ୱର, ଏଥୁଁ ଦୁଃଖ କି ଭୀଷଣ,
ଅଳସ-ଶୟନେ ଏବେ ମଡ଼କେ ମରଣ ।

ମହାକାଳ ମହାମାରୀ ଘୋଟିଲା ଭୀଷଣ,
ସହସ୍ର ଅୟୁତ ଯୋଦ୍ଧା ଦେଲେଣି ଜୀବନ।
ହେ ରାଜନ, ଟ୍ରୟଭୂମି କର ପରିହାର,
ଅଭାଗା ଗ୍ରୀକ୍‌ର ଆଉ ନାହିଁ ତ ନିସ୍ତାର।

କି କୁକ୍ଷଣେ ଗୀରିସାୟ ତେଜି ପରିଜନ,
ଦୁଃଖମୟ ଟ୍ରୟେ ପଦ କରିଲେ ଅର୍ପଣ।
କର ପଳାୟନ ଏବେ ସମୟ ପ୍ରଚୁର,
ଉଦାସୀନେ ଦିନେ ଦିନ ଧନପ୍ରାଣ ଜୁର।

ଗଣକେ ଆହ୍ୱାନି ଅବା କର ହେ ବିଚାର,
ଏ ଦୈବୀ ବିପଦେ ଏବେ କିବା ପ୍ରତିକାର !
ଅନଶନେ ଧରାସନେ ଦେବତା ପୟରେ,
ନିବେଦି ବିପଦ ହେତୁ ବୁଝ ସ୍ୱପନରେ।

ଏପଲୋପୂଜନ ଯଦି ଏ କ୍ରୋଧ କାରଣ,
ଉଚିତ ରାଜନ ତାହା ଆଶୁ ନିବାରଣ।
ବିଳମ୍ବେ ନରେଶ ମହା ଘଟିବ ପ୍ରମାଦ,
ବ୍ୟାପିବ ହୃଦୟେ ଶତ ବ୍ୟାକୁଳ ବିଷାଦ।
ବିଧିମତେ ପୂଜ ଭୂପ ଫିବସ୍ ଚରଣ,
ଦଳିବ ବିପଦ ଅବା ହେବ ନିବାରଣ।''

ନିରସ୍ତ ହୁଅନ୍ତେ ବୀର, ସର୍ବ ଜ୍ଞାନାକର,
ପୁରୋହିତ କ୍ୟାଲକସ୍ ବିହିଲେ ଉତ୍ତର।
ବୟସେ ଲୋଳିତ ତନୁ କୁଞ୍ଚିତ କପୋଳ,
ମସ୍ତକେ ପଳିତ କେଶ ବରଣ-ଧବଳ।
ସର୍ବଶାସ୍ତ୍ର ବିଶାରଦ ବିବୁଧପ୍ରବର,
ତ୍ରିକାଳ ସତତ ଯାର ନୟନ-ଗୋଚର।
ଉତ୍‌ଥାନେ ଟଳଇ ପାଦ, ସମ୍ଭ୍ରାନ୍ତ ସୁଜନ,
କମ୍ପିତ ବଚନେ କହେ କରି ସମ୍ବୋଧନ !

ହେ ବୀରେନ୍ଦ୍ର ଏକିଲିସ୍, ଜାଣ କି କାରଣ,
ମରୀଚିମାଳୀଙ୍କ ଶର ଆଚ୍ଛାଦେ ଗଗନ।
କହିବି ପ୍ରକାଶି ବୀର ପରଶି କୃପାଣ,
ଅଭୟ ପ୍ରଦାନି ନିଶ୍ଚେ ରଖିବ ପରାଣ।

ବିଦିତକରଣେ ଜାଣ, ବୀରେନ୍ଦ୍ର ସୁଜନ,
ପ୍ରଜା ପକ୍ଷେ ସୁକଠିନ ଭୂପତିର ଭ୍ରମ।
ଯଦି ବା ବିପଦୁଁ ଆମ୍ଭ ପରାଣ ତରିବ,
ନରବର ଦଣ୍ଡ ନିଶ୍ଚେଁ ଅଧୀନ ଭୋଗିବ।''

ଶ୍ରବଣେ ପୁରୋଧା ଗିର ପିଲୁସ୍ ନନ୍ଦନ,
କହେ ଭୀମ ଭୁଜ ଯୁଗ କରି ବିଧୂନନ।
''ଯେତେଦିନ ଧମନୀରେ ଶୋଣିତ ମୋହର,
ବହିବ ରଖିବି ମାନ ଗ୍ରୀକ୍ ବଚନର।

ସାଧ କେ ଅନିଷ୍ଟ ତିଳେ କରିବ ତୁମ୍ଭର,
ଏକିଲିସ୍ ଅସିଧାରେ ନ ଡରେ କେ ନର !
ବିଶ୍ୱପତି ଯୋଭ୍ ଦେବ ସ୍ୱରଗ ଈଶ୍ୱର,
ଏକାନ୍ତ ହୃଦୟେ ପାଦ ପୂଜି ନିରନ୍ତର।

ଯା' ପ୍ରସାଦେ ଲଭିଅଛ ଭୂତଭାବୀ ଜ୍ଞାନ,
ପ୍ରତିଜ୍ଞା କରିଲି ମୁହିଁ ଧରିଣ ଶ୍ରୀନାମ।
ଯେ ଜନ ବିରୋଧୀ ତବ ଠୁଳେ ନ ବଞ୍ଚିବ,
ଶାଣିତ କୃପାଣ ଧାରେ ପରାଣ ହାରିବ।
ରାଜା ମହାରାଜା ଯେହୁ ଗ୍ରୀକ୍ ସେନାପତି,
କେଶାଗ୍ର ପରଶେ ଠୁଳେ ନୋହିବ ଶକତି।''

ଆଶ୍ୱାସେ ସାହସ ଲଭି ପୁରୋଧା ପ୍ରବର,
ଧର୍ମ୍ମମତି ସୁଗମ୍ଭୀରେ ବିହିଲା ଉତ୍ତର।
ଶୁଣ ଆହେ ବୀରବର, ପ୍ରାଚୀନ ବଚନ,
ନିଜେ ସେନାପତି ଏହି ବିପଦ କାରଣ।

ଫିବସ୍ ପୁରୋଧା ନେତ୍ରେ ନିରେଖି ଆସାର,
କ୍ରୋଧଭରେ ବିହିଛନ୍ତି ଏଭୀମ ସଂହାର।
ପ୍ରେରଣେ ବିମୁଖ ଯେତେ କାଳ ନରବର,
ପୂତ କୃପାଦେଶେ ସୁତା ରବି ସେବକର।
ପ୍ରାର୍ଥନା ଅର୍ଚ୍ଚନା ସବୁ ବିଫଳ କେବଳ,
ଦିନେ ଦିନେ ବଢୁଥିବ ରବି ରୋଷାନଳ।
ନନ୍ଦିନୀ ବଦନ ଚାହିଁ ହରଷ ହୃଦୟ,
ସ୍ତବେ ତୁଷ୍ଟ ପୁରୋହିତ କ୍ଷମିବ ନିଶ୍ଚୟ।

ନୀରବେ ସ୍ଥବିର କ୍ରୋଧେ କରି ଗରଜନ,
ଭୂତଳେ ପଡ଼ିଲା ଭୂପ ତେଜି ସିଂହାସନ।
ଥର ଥର ବିକମ୍ପିତ ଯୁଗଳ ଅଧର,
ଜଳିଲା ଅନଳସ୍ରାବୀ ଲୋଚନ ପ୍ରଖର।
କହିଲା ଦର୍ପିତ ଶୂର କମ୍ପାଇ ଅମ୍ବର,
ବୃଥା ଭାବୀ ବାଣୀ ତୋର୍ ମୂର୍ଖତା ମାତର।

ରେ ନିର୍ବୋଧ, ମିଥ୍ୟା ତୋର ଗଣନାର ଫଳ,
ସତତ ଗ୍ରୀସ୍‌ର ବୃଦ୍ଧି ଘୋଷୁ ଅମଙ୍ଗଳ।
ଅନ୍ତରେ ବିରାମ ବୀଜ କରୁଛୁ ରୋପଣ,
କରନ୍ତି ବିଶ୍ୱାସ ଯେଣୁ ମୋତେ ବୀରଗଣ।
ଆନର ଗୌରବ-ଆଭା ଝଲସେ କି ଆଖି,
ଈର୍ଷ୍ୟା ପରବଶେ ଅନ୍ଧ ହେଉ ମିଥ୍ୟାସାକ୍ଷୀ।

କ୍ରାଇସିସ୍ ଧରାଧାମେ ରମଣୀ ରତନ,
ନର୍ତ୍ତନେ ବାଦନେ ଗୀତେ ଶିକ୍ଷେ ଅନୁପମ।
ପ୍ରସନ୍ନ ପଙ୍କଜାନନୀ ଲଳିତା ଲଳନା,
ଅନୃତ ବଚନେ ମୋରେ କରୁଛୁ ବଞ୍ଚନା।

ବହୁ କ୍ଳେଶ ପରିଶ୍ରମେ ଲଭିଛି ଯେ ଧନ,
ତେଜିବି ତାହାକୁ ଯଦି ଦେବେ ଅପ୍ରସନ୍ନ।
ମାନିନି ମୋ'ହେତୁ ଏହି ବିପଦ ଘଟନ,
ରାଜାର ଉଚିତ ସତ୍ୟ ପ୍ରଜାର ରକ୍ଷଣ।

ବିଦେଶ ଲୁଣ୍ଠନେ କଷ୍ଟ ପାଇଲି ଅପାର,
ମୋ' ଭାଗ୍ୟ ହୋଇବ କିପାଁ ନିଷ୍ଫଳ ଅସାର।
ତେଜିବି କାମିନୀ ଏବେ ଲଭିବ କଲ୍ୟାଣ,
ମୋ' କ୍ଷତି ପୂରଣେ ଗ୍ରୀସ୍ କରୁ ସୁବିଧାନ।''

ଶୁଣି ଏକିଲିସ୍ କହେ, ''ସ୍ୱାର୍ଥ ନରପତି,
ସମ୍ଭ୍ରମ ଅପେକ୍ଷା ତବ ପ୍ରିୟତର ଅତି।
ତୁମ୍ଭଲାଗି ଗ୍ରୀକ୍ ଢାଳେ ରକ୍ତ ଆପଣାର,
ଏରୂପେ ବିନାଶ ତାର ହେଲା ପୁରସ୍କାର।

ଛାଡ଼ି ସୁତ ସୁତା ଜାୟା ଜନକ ଜନନୀ,
ବିପକ୍ଷେ ଆସିଲା ଗ୍ରୀକ୍ ଭସାଇ ତରଣୀ।

ଲଙ୍ଘି ଶତ ଜନପଦ ଭୀମ ପାରାବାର,
ଶେଷ ଶବଶଯ୍ୟା ତାର ବାଲୁକା ବିସ୍ତାର।
ନବବର୍ଷ ଅକାରଣ ଦାରୁଣ କଷଣ,
ଭୀଷଣ ରୁଧିରପାନ କରି ପ୍ରାଣପଣ।

ତୁମ୍ଭ ସ୍ୱାର୍ଥ ଲାଗି ନୃପ ତୁମ୍ଭ ସନମାନ-
ସକାଶେ, ତେଜଇ ପ୍ରାଣ ଗ୍ରୀସିସ୍ ସନ୍ତାନ।
ତୁମ୍ଭେ ହେ ଭୁଲିଲ ଦେଖି ରମଣୀର ରୂପ,
ଶତ ଆତ୍ମବଳିଦାନ, ଉଚିତ କି ଭୂପ!

ଶତ୍ରୁଦେଶ ପଦତଳେ ଦଳିତ ଲୁଣ୍ଠିତ,
ବିଚାରେ ଭୋଗିବା ସର୍ବେ ହୋଇଣ ମିଳିତ।
କିନ୍ତୁ ନତ ଅର୍ଥ ଲୋଭ ହେ ନୃପ-ପ୍ରଧାନ,
କିଙ୍କର କରମ ସେ ତ ତବ ଅପମାନ।

ବିତ୍ତ ଲୋଭେ ଯୁଝ ଯଦି ରଣେ ନରବର,
ଟ୍ରୟ-ଦେଶ ଜୟେ ଆଶା ପୂରିବ ସତ୍ୱର।
ମହାବଳୀ ଗ୍ରୀକ୍‌ସେନା ଯୋଡ଼୍ କରୁଣାରେ,
ଭାଙ୍ଗିବେ ଭୂତଳେ ଫିଙ୍ଗି ଅଭେଦ୍ୟ ପ୍ରାକାରେ।''

କହିଲା ଉଭଗ ଭୂପ, ''ବିଦ୍ରୂପ ଛଳରେ,
ଭୁଲାଇ ରମିବ ପରା ବ୍ରିସିସ୍ ସଙ୍ଗରେ।
ମହାବଳୀ ବୀର ତୁମ୍ଭେ ସମ ଦେବତାର,
ପ୍ରୟାସ ତୁମ୍ଭରି ପୁଣି ମୋତେ ଛଳିବାର।
ତୁମ୍ଭରି ବଚନ ମାନି ତେଜିବି ରମଣୀ,
ତାର ସମ ମୂଲ୍ୟ ଆହେ, ପ୍ରଦାନ ଏକ୍ଷଣି।

ଅନ୍ୟଥା ଅପରା ଦିବ୍ୟା ରମ୍ଭୋରୁ ସୁନ୍ଦରୀ,
ଅଛି ଅଧିକାର ମୋର ଆଣିବାକୁ ଧରି।
ଏଜାକସ୍, ଇଲେସିସ୍ ତେଜନ୍ତୁ ବନ୍ଦିନୀ,
ଅବା ଦେଇପାର ମୋତେ ତୁମ୍ଭରି କାମିନୀ।
କର ହେ, ପ୍ରତିଜ୍ଞା ଏବେ ଦେବି ଅନୁମତି,
ସ୍ୱଦେଶେ ବାହୁଡ଼ି ଯିବ ପୁରୋଧା-ସନ୍ତତି।
କେହି ବୀରବର ଘେନି ନାରୀରକ୍ଷା ଭାର,
ସଜାଇ ବୋଇତ ଏବେ ହେଉ କର୍ଣ୍ଣଧାର।

ଉଚ୍ଚ ଯଦି ତବ ମହାବୀର ଏକିଲିସ୍,
ପବିତ୍ର କୃପାଜ ଯାଅ ଘେନି କ୍ରାଇସିସ୍ ।
ଅରପି କୁମାରୀ ନତଶିରେ ବୀରବର,
ଭକ୍ତ-ପୁରୋହିତ ପଦେ ପଡ଼ିବ ସତ୍ୱର ।
ଗୀରିସ୍ କଲ୍ୟାଣ ଲାଗି ଭାବନା ତୁମ୍ଭର,
ସେନାନୀ-ଜୀବନ ଦାନେ ହୁଅ ତତପର ।''

ବିଷମ ବିଦ୍ରୂପ ଶେଲ ହୃଦୟେ ବିନ୍ଧିଲା,
ମରମେ ମରମେ ଘାରି ପ୍ରଚଣ୍ଡେ ଶୁଷିଲା ।
ଅସମ୍ଭାଳ କ୍ରୋଧେ କହେ ଫିଲୁସ୍ ନନ୍ଦନ,
ବିସ୍ତାରି ଶୋଣିତ ରଙ୍ଗ ପାବକ ଲୋଚନ ।
କ୍ରୋଧେ ପ୍ରକମ୍ପିତ ତନୁ କମ୍ପିତ ବଚନ,
ଦଶନେ ଦଶନ କ୍ଷଣେ କରି ନିଷ୍ପେଷଣ ।

ତୋ' ସମ ସ୍ୱାର୍ଥାନ୍ଧ ଆଉ କେ ଅଛି ପାମର,
ବୃଥାରେ ବୋଲାଉ ତୁହି ରାଜରାଜେଶ୍ୱର ।
ଦର୍ପଭରେ ଧରି ଶିରେ ଅହଂକାର ଭାର,
ନିତ୍ୟ ପ୍ରଜାପୁଞ୍ଜ ପରେ କରୁ ଅତ୍ୟାଚାର ।

କେ ଅଛି ଏ ଧରାଧାମେ ଆରେ ନୀଚମନା,
ତୋପରି ନୃପେଶ ବେଶେ କରେ ପ୍ରତାରଣା ?
ତୋ' ଆଜ୍ଞା ପ୍ରମାଣେ ସତେ ଗୀରିସ୍ ସନ୍ତାନ,
ଧରିଣ କୃପାଣ ରଣେ ତ୍ୟଜିବ ପରାଣ ?

ଟ୍ରୟଦେଶବାସୀ ଦୂରେ ବସତି ଯାହାର,
କଦାଚନ କରିନାହିଁ ଆମ୍ଭ ଅପକାର ।
ରାଜ୍ୟେ ମୋର ଟ୍ରୟସେନା ନ କରେ ଗମନ,
ଅବାଧେ ସମର-ବାଜି କରେ ବିଚରଣ ।

ଜଳନିଧି ପରପାରେ ମୋ ରାଜ୍ୟ ରୁଚିର,
ଚୌଦିଗେ ବେଷ୍ଟିତ ଉଚ୍ଚ ପର୍ବତ ପ୍ରାଚୀର ।
ଶସ୍ୟ ଶ୍ୟାମଳିତ ଧରା ପୂର୍ଣ୍ଣ ଫୁଲଫଳ,
ନିବସନ୍ତି ମହାନନ୍ଦେ ଯହିଁ ପ୍ରଜାଦଳ ।

ଟ୍ରୟ ନୁହେଁ ଆମ୍ଭ ଅରି ତୁମ୍ଭରି କାରଣ,
କରେ କରବାଳ ସିନା ଧରୁ ଅକାରଣ !

ତୁମ୍ଭରି କାରଣେ ବୃଥା ଢାଳିବୁ ରୁଧିର,
ଏତେକାଳେ ପୁରସ୍କାର ଦେଲ ଆହେ ବୀର !
ଭୟ ଦରଶାଇ ସତେ କରିବ ଗ୍ରହଣ,
ଅତୀବ ଉଚିତ ମୋର ଶ୍ରମଲବ୍ଧ ଧନ ।

ତବ ଲଭ୍ୟଧନ ସହ ତୁଚ୍ଛ ପଟାନ୍ତର,
ସମରର ପରିଶ୍ରମ ସବୁ ତ ମୋହର ।
ଅସାର ବିଫଳ ଗିରେ ତୋଷି ମୋର ମନ,
ପ୍ରତି ବିଜୟର ବସ୍ତୁ କରିଛ ଗ୍ରହଣ ।

ପ୍ରତିଯୁଦ୍ଧେ ଅସ୍ତ୍ରାଘାତ ସହିଛି ଅପାର,
ସାମାନ୍ୟ ଲୁଣ୍ଠିତ ଦ୍ରବ୍ୟ ମୋ ଭାଗ୍ୟେ ବିଚାର ।
ଆଜିଠାରୁ ବୀରବର ମଦେ ଦରପିତ,
ଏକିଲିସ୍ ନୁହେଁ ଆଉ ତବ ବଶୀଭୂତ ।

ଦେଖିବି ତେଜିଣ ମୋତେ ଆହେ ନରବର,
ଭୁଜବଳେ ଟ୍ରୟ ଜୟ ହେବ କି ତୁମ୍ଭର ?
କହିଲା ସରୋଷେ ରାଜା, ''ଫିଲୁସ୍ କୁମର,
ତୋ' ବୃଥା ବଚନେ ମୋର ନାହିଁ ତିଳେ ଡର ।

ଟ୍ରୟ ଜୟ ଲାଗି ସେନା ଅଭାବ ତ ନାହିଁ,
ନିଜେ ରକ୍ଷାକର୍ତ୍ତା ମୋର ଯୋଭ୍ ସ୍ୱର୍ଗସାଇଁ ।
କେଉଁ ରାଜା ସହିବ ହେ ଏଡ଼େ ଅପମାନ,
ଆମ୍ଭେ ପୁଣି ମହାବଳ ଭୂପତି-ପ୍ରଧାନ ।

ବିବାଦ କଳହେ ସଦା ସନ୍ତୋଷ ତୁମ୍ଭର,
ଅଜସ୍ର ଶୋଣିତ ପାତେ ହୃଷ୍ଟ ନିରନ୍ତର ।
ଅଛି ବଳ ତେଣୁ ଅତି ଗରବେ ମଗନ,
ନିମିଷେ ଦେବେଶ କରି ପାରନ୍ତି ହରଣ ।

ପଳାଅ ତ୍ୱରିତ ନୀରେ ଭସାଇ ତରଣୀ,
ନିଜ ଦେଶ ସୁଶାସନ କର ନରମଣି ।
ବୃଥା ଗର୍ବ କାପୁରୁଷ ତେଜି ମୋ ସକାଶ,
ତୁଚ୍ଛ ମାର୍ଗିଡନ୍ ଆଗେ କର ହେ ପ୍ରକାଶ ।

ଦେବତା କ୍ରୋଧାଗ୍ନି ଜ୍ୱଳେ ଜାଣିଲି ନିଶ୍ଚୟ,
ପ୍ରେରିବି ଦୁହିତା ଏବେ ପୁରୋଧା ନିକଟେ।
କିନ୍ତୁ ରାଜସୁତ ତୁମ୍ଭେ ଜାଣ ସୁନିଶ୍ଚିତ,
ବ୍ରୀସିସ୍ ସୁନ୍ଦରୀ ଭୋଗେ ନ ବଳାଅ ଚିତ୍ତ

ଅରପ ଚଞ୍ଚଳେ ବୃଥା ବିଳମ୍ବେ କୁଫଳ,
ଅବଗତ ନୁହ କେତେ ସମ୍ରାଟର ବଳ।
ସହଜେ ନଦେଲେ ପଶି ତମ ତମ୍ବୁବାସେ,
ପ୍ରକାଶି ସ୍ୱୀୟ ବିକ୍ରମ ଆଣିବି ସକାଶେ।

କେଡ଼େ ବଳବାନ ଗ୍ରୀକ୍ ଜାଣିବ ସେକ୍ଷଣି,
ଦେବଙ୍କ ଅଧୀନ ସିନା ଯେତେ ନରମଣି !
ରେ ବିଦ୍ରୋହୀ, ଆତ୍ମନିନ୍ଦା କରି ପୁନର୍ବାର,
କରିବୁ ପ୍ରାର୍ଥନା କ୍ଷମା ଚରଣେ ରାଜାର।

ଏକିଲସ୍ ଦର୍ପମତି ଶୁଣି ରାଜଗିର,
କ୍ଷୋଭେ କ୍ରୋଧେ ସ୍ୱଗତତ ଅନ୍ତରେ ଅଧୀର।
ପରେ ପରେ ନବଭାବ ହୃଦୟେ ଉଦିତ,
କ୍ଷଣେ ମହାକୋପେ ପୁଣି କ୍ଷଣେ ଧୀରଚିତ୍ତ।

ବାରମ୍ବାର କ୍ରୋଧ ମନେ ତୋଳେ ଉତ୍ତେଜନା,
''ଖୋଲ ତରବାରି ରାଜା ଗଉରବ ରଖ ନା।''
ବିବେଚନା ପୁନଃ ହୃଦେ ହୋଇଣ ପ୍ରବଳ,
ଧଇରବ ସ୍ନିଗ୍ଧଜଳେ ସିଞ୍ଚଇ ଶୀତଳ।

— ଅସଂପୂର୍ଣ୍ଣ —



